# ଶ୍ରୀଶ୍ରୀମା' ସାରଦା ଦେବୀ

ସ୍ୱାମୀ ଗମ୍ଭୀରାନନ୍ଦ-ପ୍ରଣୀତ ବଙ୍ଗ-ସଂସ୍କରଣ
'ଶ୍ରୀମା ସାରଦା ଦେବୀ' ଅବଲମ୍ବନରେ ଲିଖିତ



ରାମକୃଷ୍ଣ ମଠ
ଭୁବନେଶ୍ୱର

ପ୍ରକାଶକ
**ସ୍ୱାମୀ ଆତ୍ମପ୍ରଭାନନ୍ଦ**
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୭୫୧ ୦୦୨



ପ୍ରଥମ ସଂସ୍କରଣ : ୨୮ ଜୁନ୍ ୧୯୮୦
**ପଞ୍ଚମ ପୁନର୍ମୁଦ୍ରଣ : ୧୦ ଜୁଲାଇ ୨୦୧୩**
ରଥଯାତ୍ରା
୨୦୦୦

**ମୂଲ୍ୟ – ଟ. ୯୦.୦୦**

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର—୭୫୧ ୦୦୨

***SRISRIMAA SARADA DEVI*** : Published by Ramakrishna Math, Vivekananda Marg, Bhubaneswar – 2; 5th Reprint on 10th July 2013; **Price : ₹ Ninety only.**

# ପ୍ରଥମ ସଂସ୍କରଣର ନିବେଦନ

ଶ୍ରୀଶ୍ରୀମା' ସାରଦାଦେବୀଙ୍କ ପରି ଅଦୃଷ୍ଟପୂର୍ବ ଦେବୀଚରିତ୍ରର ମର୍ମୋଦ୍‌ଘାଟନ ପାଇଁ ଯେଉଁ ଅନ୍ତର୍ଦୃଷ୍ଟି ଓ ବାଙ୍‌ନୈପୁଣ୍ୟ ଆବଶ୍ୟକ, ତାହା ଆମର ନାହିଁ । ତଥାପି ଆମର ବିଶ୍ୱାସ, କୌଣସି ବୁଦ୍ଧିମତ୍ତାର ଆଶ୍ରୟ ନ ନେଇ ସହଜ ଭାବରେ ଏହି ଅଲୌକିକ ଜୀବନର ଘଟଣାବଳୀ କେବଳ ଗୋଟିକ ପରେ ଗୋଟିଏ ସ୍ଥାପନ କଲେ ଶୁଦ୍ଧଚିତ୍ତ ପାଠକ ଏହାର ତାତ୍ପର୍ଯ୍ୟ ଅନାୟାସରେ ବୁଝିପାରିବେ । ମା' କୌଣସି ନିଗୂଢ଼ ଦର୍ଶନ ବା ଜଟିଳ ମତବାଦର ପ୍ରତିଷ୍ଠା କରି ନାହାନ୍ତି; ସେ ଆସିଥିଲେ ମାନବସମାଜର କଲ୍ୟାଣବିଧାୟିନୀ ଜନନୀରୂପେ । ଜନନୀଙ୍କର ସ୍ନେହ ସନ୍ତାନ ନିକଟରେ ବ୍ୟାଖ୍ୟା କରିବାର ପ୍ରୟୋଜନ ନାହିଁ ।

ପାଠକବୃନ୍ଦଙ୍କ ସମ୍ମୁଖରେ ଶ୍ରୀଶ୍ରୀମା'ଙ୍କର ଜୀବନଚରିତ ଏହି ନୂତନ ଗ୍ରନ୍ଥରେ ଉପସ୍ଥାପିତ କରିପାରିଥିବାରୁ ଆମେ ନିଜକୁ ଧନ୍ୟ ଓ କୃତାର୍ଥ ମନେ କରୁଅଛୁ । ଆମର କେତେଜଣ ସୁହୃତ୍ ଓ ବନ୍ଧୁମାନଙ୍କର ପରାମର୍ଶ ଅନୁଯାୟୀ ଆମେ ଏହି ମହାନ୍ ଓ ଦାୟିତ୍ୱପୂର୍ଣ୍ଣ କର୍ମରେ ବ୍ରତୀ ହେବାର ପ୍ରେରଣା ପାଇଛୁ । ଶ୍ରୀଶ୍ରୀମା'ଙ୍କର ଲୀଳାସମ୍ବରଣର ମାତ୍ର କେତୋଟି ବର୍ଷ ମଧ୍ୟରେ ଏହି ଦେବୀଚରିତ୍ରଦ୍ୱାରା ସମାକୃଷ୍ଟ ହୋଇ ବହୁ ବିଜ୍ଞ ଲେଖକ ଯେଉଁସବୁ ତଥ୍ୟପୂର୍ଣ୍ଣ ଓ ପ୍ରାମାଣିକ ଗ୍ରନ୍ଥାଦି ପ୍ରଣୟନ କରିଛନ୍ତି, ଶ୍ରୀଶ୍ରୀମା'ଙ୍କ ଜନ୍ମ-ଶତବର୍ଷ ଉପଲକ୍ଷେ କଲିକତା ଉଦ୍‌ବୋଧନ କାର୍ଯ୍ୟାଳୟରୁ ବଙ୍ଗଳା ଭାଷାରେ ପ୍ରକାଶିତ 'ଶ୍ରୀମା' ସାରଦା ଦେବୀ' ଗ୍ରନ୍ଥ ସେଥିରୁ ବହୁ ଉପାଦାନ ଗ୍ରହଣ କରିଛି । ଉକ୍ତ ପୁସ୍ତକର ସ୍ୱନାମଧନ୍ୟ ଲେଖକ ସ୍ୱାମୀ ଗମ୍ଭୀରାନନ୍ଦ ଏହିସବୁ ଉପାଦାନ ବ୍ୟତୀତ ବହୁ ପ୍ରତ୍ୟକ୍ଷଦ୍ରଷ୍ଟା ବ୍ୟକ୍ତିଙ୍କଠାରୁ ନୂତନ ନୂତନ ତଥ୍ୟାଦି ସଂଗ୍ରହ କରି ପୁସ୍ତକକୁ ଆହୁରି ତଥ୍ୟପୁଷ୍ଟ କରିଛନ୍ତି । ବର୍ତ୍ତମାନର ଓଡ଼ିଆ ସଂସ୍କରଣ ପୂର୍ବୋକ୍ତ ପୁସ୍ତକରୁ ଅଧିକାଂଶ ତଥ୍ୟ ସଂଗ୍ରହ କରିଛି । ଆମର ଆଶା ଏହି ସଂସ୍କରଣ ପୂର୍ବରୁ ପ୍ରକାଶିତ ସଂସ୍କରଣଗୁଡ଼ିକ ତୁଳନାରେ ଅଧିକ ତଥ୍ୟଯୁକ୍ତ ହୋଇଥିବାରୁ ପାଠକମାନଙ୍କଦ୍ୱାରା ସମାଦୃତ ହେବ । ଆହୁରି ଅଧିକ ଉପାଦାନ ଥିବା ସତ୍ତ୍ୱେ ସାଧାରଣ ପାଠକପାଠିକାମାନଙ୍କ ସୁବିଧା ନିମନ୍ତେ ପୁସ୍ତକର ଅଯଥା କଳେବର-ବୃଦ୍ଧି କରାଯାଇ ନାହିଁ ।

ଶ୍ରୀଶ୍ରୀମା'ଙ୍କ ଚରିତ୍ରରେ ଜଣେ ଆଦର୍ଶ କନ୍ୟା, ଆଦର୍ଶ ଗୃହିଣୀ, ଆଦର୍ଶ ମାତା, ଆଦର୍ଶ ସନ୍ନ୍ୟାସିନୀ ଏବଂ ଆଦର୍ଶ ଗୁରୁଙ୍କର ଏକ ମାଧୁର୍ଯ୍ୟମଣ୍ଡିତ ସମାବେଶ ହୋଇଅଛି । ଆମର ଧାରଣା ଏହି ଅଭୂତପୂର୍ବ ଚରିତ୍ର ମାଧ୍ୟମରେ ମାନବଜାତି ଏପରି ଏକ ସୁଦୃଢ଼ ଆଦର୍ଶ ପାଇଛି, ଯାହା ଶ୍ରୀଶ୍ରୀମା'ଙ୍କର ସରଳ

ଗ୍ରାମ୍ୟ ଅନାଡ଼ମ୍ବରପୂର୍ଣ୍ଣ ଜୀବନଯାତ୍ରା ସତ୍ତ୍ୱେ ସମାଜର ସକଳ ସ୍ତରର ନରନାରୀଙ୍କ ଜୀବନଧାରାକୁ ଭଗବତ୍-ଅଭିମୁଖୀ କରାଇବାରେ ସମର୍ଥ ।

ଆମେ ଆନନ୍ଦ ସହକାରେ ଜଣାଉଅଛୁ ଯେ ସ୍ୱାମୀ ଭକ୍ତିରୂପାନନ୍ଦ ପ୍ରକାଶନ ବିଭାଗର ବିଭିନ୍ନ ଦାୟିତ୍ୱରେ ଥିବା ସତ୍ତ୍ୱେ ଏହି ପୁସ୍ତକଟିର ପ୍ରଣୟନକାର୍ଯ୍ୟ ଅତିଶୀଘ୍ର ସମ୍ପନ୍ନ କରିଛନ୍ତି । ପୁସ୍ତକର ପାଣ୍ଡୁଲିପି ଆମର ବନ୍ଧୁ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ମହାପାତ୍ର ଶ୍ରୀ ନୀଳମଣି ସାହୁ ସଂଶୋଧନ କରିଦେଇଛନ୍ତି । ଏମାନଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ କରୁଅଛୁ ।

ଏହି ପୁସ୍ତକ ଅଧ୍ୟୟନ କରି ଯଦି କୌଣସି ପାଠକ ଆଧ୍ୟାତ୍ମିକ ଜୀବନପ୍ରତି ଆକୃଷ୍ଟ ହୁଅନ୍ତି, ତେବେ ଆମେ ଆମର ଶ୍ରମ ସାର୍ଥକ ମନେ କରିବୁ ।

ସ୍ନାନଯାତ୍ରା
୨୮ ଜୁନ୍, ୧୯୮୦

ସ୍ୱାମୀ ସ୍ତୁତ୍ୟାନନ୍ଦ

# ସୂଚୀପତ୍ର

# ଅବତରଣିକା

ଭଗବାନ ତାଙ୍କର ଶକ୍ତି ସାହାଯ୍ୟରେ ହିଁ ଯୁଗଧର୍ମ ପ୍ରବର୍ତ୍ତନ କରିବାରେ ସକ୍ଷମ ହୁଅନ୍ତି, କାରଣ ନିର୍ଗୁଣ ନିର୍ବିଶେଷ ବ୍ରହ୍ମ କାର୍ଯ୍ୟକାରଣର ଅତୀତ । ଅବତାର ପୁରୁଷ, ଶକ୍ତି ବା ମହାମାୟାଙ୍କୁ ଆରାଧନାପୂର୍ବକ ତାଙ୍କୁ ଉଦ୍‌ବୋଧିତ କରନ୍ତି ଓ ଲୋକକଲ୍ୟାଣ କାର୍ଯ୍ୟରେ ନିଯୁକ୍ତ କରିଥାଆନ୍ତି । ଏହି ଭାବରେ ଈଶ୍ୱରାରାଧିତା ଶକ୍ତି ଯୁଗ ଯୁଗ ଧରି ବିଭ୍ରାନ୍ତ ଓ ବିପର୍ଯ୍ୟସ୍ତ ମାନବସମାଜର ପୁନରଭ୍ୟୁତ୍‌ଥାନ ଘଟାଇଥାଆନ୍ତି । କେବଳ ତାହା ନୁହେଁ, ଶ୍ରୀଭଗବାନ ଯେତେବେଳେ ନରରୂପରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ମହାମାୟା ମଧ୍ୟ ନାରୀରୂପ ଧରି ତାଙ୍କର ସହଗାମିନୀ ହୁଅନ୍ତି । ଶ୍ରୀରାମଚନ୍ଦ୍ରଙ୍କ ସହିତ ସୀତାଦେବୀ, ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀରାଧିକା, ବୁଦ୍ଧଦେବଙ୍କ ସହିତ ଯଶୋଧାରା, ଶ୍ରୀଚୈତନ୍ୟଙ୍କ ସହିତ ବିଷ୍ଣୁପ୍ରିୟାଙ୍କ ଆଗମନ ଏହି ସତ୍ୟକୁ ପ୍ରମାଣିତ କରିଥାଏ । ତେଣୁ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଶକ୍ତିରୂପେ ହେଉ ବା ନାରୀରୂପେ ହେଉ, ଅବତାରଙ୍କ ସହିତ ସଂଯୁକ୍ତ ଥାଇ ଶକ୍ତି ତାଙ୍କ ଦିବ୍ୟଲୀଳାକୁ ପ୍ରକାଶିତ କରିବାରେ ବିଶେଷରୂପେ ସାହାଯ୍ୟ କରିଥାଆନ୍ତି । ଶକ୍ତିଙ୍କ ବ୍ୟତୀତ ଅବତାରଙ୍କ ଦିବ୍ୟଲୀଳା ଅସମ୍ଭବ ଏବଂ ଆମ ନିକଟରେ ଅବୋଧ ହୋଇଯାଏ ।

ଶ୍ରୀରାମକୃଷ୍ଣଦେବଙ୍କ ଉପାସନାରେ ସନ୍ତୁଷ୍ଟା ସେହି ଦେବୀଙ୍କୁ ବର୍ତ୍ତମାନ ଯୁଗରେ ପୁନରାୟ ମାନବ-କଲ୍ୟାଣରେ ରତ ଦେଖି ପୂଜ୍ୟପାଦ ଆଚାର୍ଯ୍ୟ ସ୍ୱାମୀ ବିବେକାନନ୍ଦ ଉଦାତ୍ତ କଣ୍ଠରେ ଆହ୍ୱାନ କରିଛନ୍ତି — ''ଯେଉଁ ଶକ୍ତିର ଉନ୍ମେଷମାତ୍ରେ ଦିଗଦିଗନ୍ତବ୍ୟାପୀ ପ୍ରତିଧ୍ୱନି ଜାଗରିତ ହୋଇଛି, ତାହାର ପୂର୍ଣ୍ଣାବସ୍ଥା କଳ୍ପନାରେ ଅନୁଭବ କର ଏବଂ ବୃଥା ସନ୍ଦେହ, ଦୁର୍ବଳତା ଓ ଦାସସୁଲଭ ଈର୍ଷାଦ୍ୱେଷ ତ୍ୟାଗ କରି ଏହି ମହାଯୁଗଚକ୍ର ପରିବର୍ତ୍ତନରେ ସାହାଯ୍ୟ କର ।''

ଈଶ୍ୱରଙ୍କ ଅବତରଣର ଯେପରି ଗୋଟିଏ ଧାରା ଅଛି, ଶକ୍ତିଙ୍କ ଆବିର୍ଭାବର ମଧ୍ୟ ଗୋଟିଏ ରୀତି ଅଛି । ଅଗ୍ନି ଓ ତାହାର ଦାହିକା ଶକ୍ତି ଭଳି ଅଭିନ୍ନ ଈଶ୍ୱରଶକ୍ତିଙ୍କ ଶରୀର-ଗ୍ରହଣ ଗୋଟିଏ ଉଦ୍ଦେଶ୍ୟ, ଗୋଟିଏ କାଳ ଓ ଗୋଟିଏ ନିୟମରେ ହେଲେ ସୁଦ୍ଧା ତାହାର କାର୍ଯ୍ୟସିଦ୍ଧି ପୁରୁଷଦେହ ଅବଲମ୍ବନରେ ଗୋଟିଏ ପ୍ରକାର ଓ ନାରୀଦେହ ଅବଲମ୍ବନରେ ଅନ୍ୟ ପ୍ରକାର ହୋଇଥାଏ ।

ଶ୍ରୀଶ୍ରୀଚଣ୍ଡୀରେ ଦେବୀ ଆଶ୍ୱାସ ପ୍ରଦାନ କରି କହିଛନ୍ତି —

ଇତ୍‌ଥଂ ଯଦା ଯଦା ବାଧା ଦାନବୋତ୍‌ଥା ଭବିଷ୍ୟତି ।
ତଦା ତଦାଽବତୀର୍ଯ୍ୟାହଂ କରିଷ୍ୟାମ୍ୟରିସଂକ୍ଷୟମ୍ ॥

—''ଏହିପରି ଯେତେବେଳେ ଦାନବଗଣଙ୍କ ପ୍ରାଦୁର୍ଭାବ ହେତୁ ବିଘ୍ନ ଉପସ୍ଥିତ ହେବ, ସେତେବେଳେ ମୁଁ ଆବିର୍ଭୂତା ହୋଇ ଶତ୍ରୁ ବିନାଶ କରିବି ।'' (ଚଣ୍ଡୀ, ୧୧/୫୪-୫୫) । କିନ୍ତୁ ଅସୁରମାନଙ୍କର ତାଣ୍ଡବଲୀଳା କେବଳ

ବହିର୍ଜଗତରେ ସୀମାବଦ୍ଧ ରହେ ନାହିଁ । ଅନ୍ତର୍ଜଗତରେ ସୁବୃତ୍ତି ଓ କୁବୃତ୍ତି ଭିତରେ ଯେଉଁ ଅବିରାମ ସଂଘର୍ଷ ଚାଲିଛି, ଉପନିଷଦ୍‌ରେ ତାହାକୁ ମଧ୍ୟ ଦେବାସୁର-ସଂଗ୍ରାମ ବୋଲି ନିର୍ଦ୍ଦେଶ କରାଯାଇଛି । ଆଧୁନିକ ଏହି ମନୋରାଜ୍ୟର ସଂଗ୍ରାମ ପୌରାଣିକ ଦେବଦାନବ ଯୁଦ୍ଧ ଅପେକ୍ଷା ଘୋରତର । ପ୍ରାଚୀନ ଯୁଗରେ ସଂଘର୍ଷ ସାଧାରଣତଃ ସ୍ଥୂଳଜଗତର ଗଣ୍ଡି ଅତିକ୍ରମ କରୁ ନ ଥିଲା; କିନ୍ତୁ ଆଧୁନିକ ଦ୍ୱନ୍ଦ୍ୱ ଅନ୍ତର୍ଜଗତରେ ଉଦ୍‌ଭୂତ ଓ ଦୈନନ୍ଦିନ ଜୀବନକୁ ପ୍ରସାରିତ ହୋଇ ମାନବର ମନୁଷ୍ୟତ୍ୱ ମୂଳରେ କୁଠାରାଘାତ କରିବାକୁ ଉଦ୍ୟତ । ସୁତରାଂ ବର୍ତ୍ତମାନ ଶକ୍ତିଙ୍କ କ୍ରିୟା ଏବଂ ଅସୁରସଂହାର ପ୍ରଧାନତଃ ମାନସିକ କ୍ଷେତ୍ରରେ ହେବା ଉଚିତ । ଆଧୁନିକ ଜଗତରେ ସର୍ବାଧିକ ପ୍ରୟୋଜନ ନୈତିକ ଉନ୍ନତି ଓ ଆଧ୍ୟାତ୍ମିକ ଅନୁଭୂତି । ଅତଏବ ଏହି ଯୁଗରେ ଶକ୍ତି ଅନ୍ତଃଶତ୍ରୁ ବିଜୟରେ ବ୍ୟାପୃତ । ଯୁଦ୍ଧରେ ଅରିବିନାଶ ଅପେକ୍ଷା ସତ୍ତ୍ୱଗୁଣ ପ୍ରଭାବରେ ତାହାର ମନୋଜୟ କରିବା ଅଧିକତର ଶକ୍ତିର ପରିଚାୟକ । ତେଣୁ ବର୍ତ୍ତମାନ ଅବତାରଙ୍କର ଅସ୍ତ୍ରବାହୁଲ୍ୟ, ସିଂହଗର୍ଜନ ବା ସମର-କୋଳାହଳ ନାହିଁ—କେବଳ ଅଛି ଲଜ୍ଜା, ବିନୟ, ସଦାଚାର, ପବିତ୍ରତା, କଲ୍ୟାଣ-ସ୍ପୃହା ଓ ଈଶାନୁଭୂତି । ଅରିସଂହାରଦ୍ୱାରା ଭକ୍ତମାନଙ୍କର ସାଧନମାର୍ଗ ନିଷ୍କଣ୍ଟକ କରିବା ପାଇଁ ଭଗବାନଙ୍କର ଆଂଶିକ ବା ଗୁଣବିଶେଷର ଆବିର୍ଭାବ ଯଥେଷ୍ଟ । କିନ୍ତୁ ମାନବସମାଜକୁ ଆଧ୍ୟାତ୍ମିକ ଅନୁଭୂତିର ଉଚ୍ଚତର ସୋପାନକୁ ଉନ୍ନୀତ କରିବା ପାଇଁ ସ୍ୱୟଂ ବ୍ରହ୍ମଶକ୍ତିଙ୍କୁ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡ଼େ । ଭାରତର ପୁରାତନ ସଂସ୍କୃତିର ପରିପ୍ରେକ୍ଷିରେ ଏହି ଐଶୀ-ଶକ୍ତିଙ୍କର ଆବିର୍ଭାବ ଏକ ଅଭୂତପୂର୍ବ ଜାଗରଣର ସମ୍ଭାବନାକୁ ସମୁଜ୍ଜ୍ୱଳ କରିଛି ।

ଆଚାର୍ଯ୍ୟ ସ୍ୱାମୀ ବିବେକାନନ୍ଦ କହିଛନ୍ତି ଯେ, ମାତୃଜାତିର ଅଭ୍ୟୁଦୟ ବ୍ୟତୀତ ଭାରତର କଲ୍ୟାଣ ସମ୍ଭବ ନୁହେଁ । ଏକ ପକ୍ଷରେ ପକ୍ଷୀର ଉତ୍‌ଥାନ ହୁଏ ନାହିଁ; ତେଣୁ ରାମକୃଷ୍ଣ ଅବତାରଲୀଳାରେ ଆମେ ଦେଖିବାକୁ ପାଉ ସ୍ତ୍ରୀ-ଗୁରୁ ଗ୍ରହଣ, ନାରୀଭାବ-ସାଧନ, ସ୍ୱୀୟ ସହଧର୍ମିଣୀଙ୍କ ଶିକ୍ଷା-ଦୀକ୍ଷାର ଭାର ଗ୍ରହଣ, ମାତୃଭାବର ପ୍ରଚାର ।

ଭାରତୀୟ ସଂସ୍କୃତିର ଚିରନ୍ତନ ରୀତି ହେଉଛି, ନିଜେ ଆତ୍ମସ୍ଥ ରହି, ଅନ୍ୟର ଭାବରାଶି ଗ୍ରହଣ କରି ନିଜ ଚିନ୍ତା-ରାଜ୍ୟର ସମୃଦ୍ଧି ସାଧନ କରିବା । ବର୍ତ୍ତମାନ ଯୁଗରେ ଆମ ନାରୀସମାଜ ପାଶ୍ଚାତ୍ୟ ନାରୀସମାଜର ଆଦର୍ଶଦ୍ୱାରା କେତେକାଂଶରେ ନିଜକୁ ସତେଜ କରିନେବାର ପ୍ରୟୋଜନ ଅଛି । ପୁନଶ୍ଚ ପାଶ୍ଚାତ୍ୟ ସଭ୍ୟତା ପକ୍ଷରେ ବଞ୍ଚି ରହିବା ପାଇଁ ଆମ ମାତୃଭକ୍ତିର କିଛିଟା ଅବଶ୍ୟ ଗ୍ରହଣ କରିବାକୁ ହେବ । ଉଭୟ ଦେଶର ଦାତବ୍ୟ ଅନେକ କିଛି ଥିଲେ ମଧ୍ୟ ମୌଳିକ ଦୃଷ୍ଟିଭେଦ ନ ମାନି ଅନ୍ୟକୁ ଅନୁସରଣ କଲେ ହିତ ପରିବର୍ତ୍ତେ ଅହିତର ସମ୍ଭାବନା ବେଶୀ । ଅତଏବ ଦେବୀ-ଗୁରୁ-ମାତୃଶକ୍ତି-ସମନ୍ୱିତ ଏକ ଅତ୍ୟୁଚ୍ଚ ଆଶ୍ରୟସ୍ଥଳ

ଉପସ୍ଥାପିତ କରିବାର ପ୍ରୟୋଜନ ଥିଲା, ଯାହା ସାହାଯ୍ୟରେ ଆଧୁନିକ ଭାରତ-ସମାଜ ନିଜକୁ ଏହି ବିପର୍ଯ୍ୟୟର ଊର୍ଦ୍ଧ୍ୱରେ ରଖିବ ଏବଂ ପାଶ୍ଚାତ୍ୟ ସମାଜକୁ ମଧ୍ୟ ସେଥିପ୍ରତି ଆକର୍ଷଣ କରିବ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଏହି ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ଧର୍ମର ଅଧୋଗତି ଯେପରି ହୋଇଛି, ସେହିପରି ଶକ୍ତିର ଅବତରଣ ମଧ୍ୟ ହୋଇଛି । ଦେବୀ-ଗୁରୁ-ମାତୃ-ଜ୍ଞାନରେ ଏହି ଶକ୍ତିଙ୍କର ଆରାଧନା ଭିତର ଦେଇ ନବୀନ ସଭ୍ୟତାର ଭିତ୍ତିପତ୍ତନ ହେବ ।

ସମସାମୟିକ ଜଗତରେ ଯେଉଁ ସବୁ ଅତିମାନବମାନେ ଅକସ୍ମାତ୍ ଖ୍ୟାତିଲାଭ କରି କିଛିକାଳ ବିସ୍ମୟ ସୃଷ୍ଟିକରି ଇତିହାସର ପୃଷ୍ଠାରୁ ଚିରବିଦାୟ ନିଅନ୍ତି, ଶ୍ରୀଶ୍ରୀସାରଦାଦେବୀଙ୍କର ଜୀବନୀ ସେହି କ୍ଷଣିକ ଚମକପ୍ରଦ ସ୍ତରର ନୁହେଁ । ବରଂ ଯେଉଁ ମହାନ୍ ଚରିତ୍ରସମୂହ ନୀରବ ସାଧନାଦ୍ୱାରା ମାନବ-ସଂସ୍କୃତିକୁ ଉଚ୍ଚତର ଆଦର୍ଶରେ ଅନୁପ୍ରାଣିତ କରନ୍ତି, ଯେଉଁମାନଙ୍କର ପ୍ରଭାବ ସମସାମୟିକ ଦୃଷ୍ଟିରେ କ୍ଷୀଣ ମନେହେଲେ ସୁଦ୍ଧା ଦୀର୍ଘକାଳ ସ୍ଥାୟୀ ହୋଇଥାଏ ଏବଂ କ୍ରମବିସ୍ତାର ଲାଭ କରିଥାଏ, ଶ୍ରୀଶ୍ରୀମା'ଙ୍କ ପୂତ ଚରିତ୍ର ସେହି ପର୍ଯ୍ୟାୟଭୁକ୍ତ । ଆମେ ଶ୍ରୀଶ୍ରୀସାରଦା ଦେବୀଙ୍କ ଜୀବନରେ ମାତୃତ୍ୱାଦି ଦୈବଭାବର ପରାକାଷ୍ଠା ଦେଖିବାକୁ ପାଇବା ଏବଂ ଧର୍ମମାର୍ଗର ପରିପୁଷ୍ଟି ପାଇଁ ଏହା କିପରି ଭାବରେ ନିୟୋଜିତ, ତାହାର ମଧ୍ୟ ପରିଚୟ ପାଇବା । ଆମେ ଦେଖିବା ତାଙ୍କ ଜୀବନରେ ଦୁହିତୃ-ଭଗିନୀ-ବଧୂ-ପତ୍ନୀ-ଗୃହିଣୀ ପ୍ରଭୃତି ନାରୀ-ଜନୋଚିତ ସମ୍ବନ୍ଧ ଓ ଅବସ୍ଥାବିଶେଷର ଉପଯୋଗୀ ଆଦର୍ଶ ସ୍ଥାପିତ ହୋଇଛି ଏବଂ ତାଙ୍କର ଅମଳ ଧବଳ ଲୀଳା-ବିଳାସ ସ୍ୱତଃ ମାନବମନକୁ ଆକର୍ଷଣପୂର୍ବକ ଚିରଧ୍ୟେୟ ବସ୍ତୁରୂପେ ବିରାଜିତ ରହିଛି ।

## ଶକ୍ତି ପୀଠ

ଶସ୍ୟଶ୍ୟାମଳା ବଙ୍ଗଭୂମିର ବାଙ୍କୁଡ଼ା ଜିଲ୍ଲା ସାଧାରଣତଃ ଅଭାବଗ୍ରସ୍ତ ଓ ଘନ ଘନ ଦୁର୍ଭିକ୍ଷପୀଡ଼ିତ ବୋଲି ପରିଚିତ ହେଲେ ମଧ୍ୟ ଏହାର ଦକ୍ଷିଣପୂର୍ବଭାଗରେ ଅବସ୍ଥିତ ଜୟରାମବାଟୀ ଗ୍ରାମଟି ଲକ୍ଷ୍ମୀଙ୍କ କୃପାଦୃଷ୍ଟିରୁ ଅନ୍ୟାନ୍ୟ ଗ୍ରାମ ଅପେକ୍ଷା ଅଧିକ ସମୃଦ୍ଧ ଏବଂ ଅକ୍ଳାନ୍ତକର୍ମା କୃଷକମାନଙ୍କର କଠୋର ପରିଶ୍ରମରୁ ଏଠାକାର ଶସ୍ୟକ୍ଷେତ୍ର ଆଖୁ, ଧାନ, ଗହମ ଓ ନାନାପ୍ରକାର ଫଳଫୁଲରେ ପୂର୍ଣ୍ଣ ରହି ସଦା ଆନନ୍ଦମୟ । ଶ୍ରୀରାମକୃଷ୍ଣଙ୍କ ଜନ୍ମସ୍ଥାନ କାମାରପୁକୁରଠାରୁ ଜୟରାମବାଟୀ ପ୍ରାୟ ତିନି ମାଇଲ ପଶ୍ଚିମରେ ଅବସ୍ଥିତ । ଏହା ବିଷ୍ଣୁପୁର ମହକୁମା ଅନ୍ତର୍ଗତ କୋତୁଲପୁର ଥାନା ଅଧୀନସ୍ଥ । ଗ୍ରାମର ଉତ୍ତର-ପଶ୍ଚିମ କୋଣରୁ ପୂର୍ବକୁ ପ୍ରବାହିତ 'ଆମୋଦର' ନଦୀ ଗ୍ରାମର ଉତ୍ତର ସୀମା ନିର୍ଦ୍ଧାରଣ କରି କ୍ରୀଡ଼ାଚଞ୍ଚଳ ବାଳିକା ପରି ଆଙ୍କି ବାଙ୍କି ଚାଲିଯାଇଛି କାମାରପୁକୁର ଗ୍ରାମ ଆଡ଼କୁ । ବକ୍ରଗତି 'ଆମୋଦର' ଜୟରାମବାଟୀର ଉତ୍ତର ପ୍ରାନ୍ତରେ ଏକ ମନୋହର ଉପଦ୍ୱୀପ ସୃଷ୍ଟି

କରିଛି । ଏହି ହରିତ ଶସ୍ୟାଚ୍ଛାଦିତ, ତ୍ରିଭୁଜାକୃତି କୂର୍ମପୃଷ୍ଠ ଭୂମିଖଣ୍ଡ ବିଲ୍ୱ, ବକୁଳ, ଗୁଳୁଚି, ଆମ୍ର, ବଟ, ଅଶ୍ୱତ୍ଥାଦି ବୃକ୍ଷ ବକ୍ଷରେ ଧାରଣ କରି ଛାୟାଶୀତଳ, ଜନକୋଳାହଳରୁ ଦୂରରେ ଅବସ୍ଥିତ ରହି ନୀରବ-ଗମ୍ଭୀର ଏବଂ ଇତସ୍ତତଃ ଗୋଟିଏ ଯୋଡ଼ିଏ ଶ୍ମଶାନଚିହ୍ନ-ଶୋଭିତ ହୋଇଥିବାରୁ ବୈରାଗ୍ୟ-ଉଦ୍ଦୀପକ । ଶ୍ରୀଶ୍ରୀମାତାଠାକୁରାଣୀ ବାଲ୍ୟକାଳରେ ଏହି ଆମୋଦର ନଦୀରେ ବିଶେଷ ପର୍ବାଦି ଦିନ ତାଙ୍କର 'ଗଙ୍ଗାସ୍ନାନ' ସମାପନ କରୁଥିଲେ ।

ଜୟରାମବାଟୀର ସ୍ୱାଭାବିକ ପରିବେଶ ଅତି ସୁନ୍ଦର—ଚାରି ଦିଗରେ ଉନ୍ମୁକ୍ତ ପ୍ରାନ୍ତର । ଆମୋଦର ନଦୀ ଓ ଗାଁ ମଧ୍ୟବର୍ତ୍ତୀ କ୍ଷେତ୍ର ଅତି ଉର୍ବର । ସେଥିରେ ସ୍ୱଳ୍ପସନ୍ତୁଷ୍ଟ ଗ୍ରାମବାସୀମାନଙ୍କର ବର୍ଷକ ଉପଯୋଗୀ ଧାନ, ଡାଲି, ଲଙ୍କା, ହଳଦୀ ଓ ବିଭିନ୍ନ ଶାକସବ୍‌ଜୀ ଉତ୍ପନ୍ନ ହୋଇଥାଏ । କପା ଚାଷ ମଧ୍ୟ ଥିଲା । କଥିତ ଅଛି, ମା'ଙ୍କ ଜନ୍ମ ପୂର୍ବରୁ ଗାଁରେ ସେପରି ପ୍ରାଚୁର୍ଯ୍ୟ ନ ଥିଲା । ମା'ଙ୍କ ଆଗମନ ପରେ ଅବସ୍ଥାର ଉନ୍ନତି ଘଟିଲା । ବିଶେଷ ପ୍ରୟୋଜନ ହେଲେ ଗ୍ରାମବାସୀମାନେ ତିନି ମାଇଲ ଦୂରସ୍ଥ କାମାରପୁକୁର ଗାଁର ହାଟକୁ ଯାଉଥିଲେ କିମ୍ବା ନିକଟବର୍ତ୍ତୀ ଆହୁରି କେତେକ ଅପେକ୍ଷାକୃତ ବଡ଼ ଗାଁମାନଙ୍କରୁ ପଣ୍ୟଦ୍ରବ୍ୟ କିଣୁଥିଲେ ।

ଶ୍ରୀଶ୍ରୀମା'ଙ୍କ ପିତୃବଂଶ ମୁଖୋପାଧ୍ୟାୟଗଣ ଏହି ଗ୍ରାମର ପ୍ରାଚୀନ ଅଧିବାସୀ । କେତେକ ବ୍ରାହ୍ମଣ ପରିବାର ଓ ଅନ୍ୟାନ୍ୟ ଜାତିର ପ୍ରାୟ ଶହେ ପରିବାର ସେମାନଙ୍କର ସ୍ୱଳ୍ପପରିସର ମୃତ୍ତିକାଗୃହରେ ଅନାଡ଼ମ୍ବର ପଲ୍ଲୀଜୀବନ ଯାପନ କରୁଥିଲେ । ଗ୍ରାମର ଦକ୍ଷିଣ ଦିଗରେ ତାଳବୃକ୍ଷ ପରିବେଷ୍ଟିତ ବାଣୁଜ୍ୟେ ପୁଷ୍କରିଣୀରେ ଗ୍ରାମବାସୀମାନେ ସ୍ନାନ କରନ୍ତି ଓ ପାନୀୟଜଳ ଆହରଣ କରନ୍ତି ।

ଗାଁର ମଧ୍ୟସ୍ଥଳରେ ପୁଣ୍ୟପୁକୁର ନାମକ ପ୍ରାଚୀନ ପୁଷ୍କରିଣୀ ଅବସ୍ଥିତ । ଏହି ପୁଷ୍କରିଣୀର ପଶ୍ଚିମ ତୀରରେ ଶ୍ରୀଶ୍ରୀମା'ଙ୍କର ନୂତନ ଘର । ନିକଟରେ ଗୋଟିଏ କ୍ଷୁଦ୍ର ଚାଳଘର ଅଛି । ଏହା ମୁଖୋପାଧ୍ୟାୟମାନଙ୍କର ପ୍ରାଚୀନ ଦେବାଳୟ । ସେଠାରେ ସୁନ୍ଦରନାରାୟଣ ନାମକ ବିଗ୍ରହ ପୂଜା ପାଆନ୍ତି । ଏହି କକ୍ଷ ସଂଲଗ୍ନ ଅନ୍ୟ ଗୋଟିଏ ବଖରାରେ ପ୍ରତିବର୍ଷ କାଳୀପୂଜା ଅନୁଷ୍ଠିତ ହୋଇଥାଏ । ଏହି ଦେବାଳୟ ପ୍ରାଙ୍ଗଣରେ ଗ୍ରାମ୍ୟ ପାଠଶାଳା ଅବସ୍ଥିତ । ପଣତକାନିରେ ମୁଢ଼ି ନେଇ ଗାଁର ବାଳକବାଳିକାମାନେ ସେଠାରେ ପ୍ରତ୍ୟହ ଦୁଇଓଳି ସମବେତ ହୁଅନ୍ତି । କାଳୀମଣ୍ଡପର ଉତ୍ତର-ପଶ୍ଚିମ କୋଣରେ ପାଚେରିକୁ ଲାଗି କଳା ପଥର ଖଣ୍ଡେ ରହିଛି ଯାହାକୁ ଲୋକେ ମା' ଷଷ୍ଠୀ ବୋଲି ପୂଜା କରନ୍ତି । ନବ-ବିବାହିତ ବର ଓ ବଧୂ ଆସି ଏଠାରେ ମୁଣ୍ଡିଆ ମାରନ୍ତି । ଆମର ଅନୁମାନ ଶ୍ରୀରାମକୃଷ୍ଣ ଓ ଶ୍ରୀଶ୍ରୀମା' ମଧ୍ୟ ଏଠାକୁ ବିବାହ ପରେ ନିଶ୍ଚୟ ଆସିଥିବେ । ପୁଣ୍ୟପୁଷ୍କରିଣୀର ଦକ୍ଷିଣ-ପୂର୍ବ

କୋଣରେ ପ୍ରସିଦ୍ଧ ସିଂହବାହିନୀଙ୍କ ଦେବାଳୟ । ମୁଖୋପାଧ୍ୟାୟମାନେ ଦେବୀଙ୍କ ପୁରୋହିତ ।

ପୁଣ୍ୟପୁଷ୍କରିଣୀର ତୀରବର୍ତ୍ତୀ ଶ୍ରୀଶ୍ରୀମା'ଙ୍କ ନୂତନ ଗୃହର ପଶ୍ଚିମରେ ଯେଉଁ ପ୍ରଧାନ ଗ୍ରାମ୍ୟପଥ ରହିଛି, ସେହି ରାସ୍ତା ଧରି ଟିକିଏ ଉତ୍ତରକୁ ଅଗ୍ରସର ହେଲେ ବାମ ଦିଗରେ ମା'ଙ୍କ ଜନ୍ମସ୍ଥାନ ଉପରେ ସୁନ୍ଦର ମନ୍ଦିର ବିଦ୍ୟମାନ । ୧୯୨୩ ଖ୍ରୀଷ୍ଟାବ୍ଦ ୧୯ ଏପ୍ରିଲ୍, ଗୁରୁବାର, ଅକ୍ଷୟତୃତୀୟା ତିଥିରେ ଏହି ମନ୍ଦିର ପ୍ରତିଷ୍ଠା ହୋଇଥିଲା । ମୁଖୋପାଧ୍ୟାୟମାନେ ପ୍ରଥମେ ଏହି ସ୍ଥାନରେ ବାସ କରୁଥିଲେ, ପରେ ବଂଶବୃଦ୍ଧି ହେବାରୁ ଦକ୍ଷିଣ-ପଶ୍ଚିମକୁ ଚାଲିଗଲେ । ଗ୍ରାମର ପଶ୍ଚିମ ଦିଗରେ 'ଆହେର' ନାମକ ବୃହତ୍ ଜଳାଶୟ ଅବସ୍ଥିତ । କୃଷକମାନେ ଚାଷ ପାଇଁ ପ୍ରଧାନତଃ ଏହାରି ଉପରେ ନିର୍ଭର କରନ୍ତି । ଏହି ଜଳାଶୟର ଉତ୍ତର ତୀରରେ ଶିହଡ଼ ଗ୍ରାମକୁ ଯିବାର ରାସ୍ତା । ଶିହଡ଼ ଗ୍ରାମରେ ଶ୍ରୀଶ୍ରୀମା'ଙ୍କର ମାତୁଳାଳୟ ।

କଲିକତା ନଗରୀରୁ କାମାରପୁକୁର ଓ ଜୟରାମବାଟୀ ଅଧିକ ଦୂର ନ ହେଲେ ସୁଦ୍ଧା ସେଠାକୁ ଯିବା ସେତେବେଳେ ବିଶେଷ ଆୟାସସାଧ୍ୟ ଓ ଦୁର୍ଗମ ଥିଲା । ଲୋକେ ପଥରେ ପଡୁଥିବା ଚଟି(ଧର୍ମଶାଳା)ରେ ବିଶ୍ରାମ କରି ବର୍ଦ୍ଧମାନ (୩୨ ମାଇଲ), ତାରକେଶ୍ୱର (୩୦ ମାଇଲ), ବିଷ୍ଣୁପୁର (୨୭ ମାଇଲ) ବା ବର୍ଷାଦିନେ ନୌକାରେ ଆରାମବାଗରୁ କୋଲାଘାଟ ଯାଇ ସେଠାରୁ କଲିକତା ପାଇଁ ଟ୍ରେନ୍ ଧରୁଥିଲେ । କୌଣସି କୌଣସି ରାସ୍ତାରେ ଦସ୍ୟୁଭୟ ମଧ୍ୟ ଥିଲା । ପଥମଧ୍ୟସ୍ଥ ନଦୀଗୁଡିକ ବର୍ଷାଦିନେ ଭୟଙ୍କର ରୂପ ଧରୁଥିଲା ।

ଆଧୁନିକ ସଭ୍ୟତାର କେନ୍ଦ୍ରସ୍ଥଳରୁ ବିଚ୍ଛିନ୍ନ ହେଲେ ସୁଦ୍ଧା ଜୟରାମବାଟୀ ଗ୍ରାମରେ ଆନନ୍ଦୋତ୍ସବର ଅଭାବ କେବେହେଲେ ନ ଥିଲା । ସାରାବର୍ଷ ଧରି ବିଭିନ୍ନ ପର୍ବପର୍ବାଣି ସେଠାରେ ଅନୁଷ୍ଠିତ ହେଉଥିଲା । ଶରତକାଳରେ ସିଂହବାହିନୀଙ୍କ ମନ୍ଦିରରେ ଆଡ଼ମ୍ବରରେ ଅନୁଷ୍ଠିତ ପୂଜାଦି ଅନୁଷ୍ଠାନରେ ଗ୍ରାମବାସୀମାନେ ମାତି ଉଠୁଥିଲେ । ରାଧାଷ୍ଟମୀ, ଶ୍ୟାମାପୂଜା, ଶିହଡ଼ ଗ୍ରାମର ଶାନ୍ତିନାଥ ମନ୍ଦିରରେ ଶିବ-ରାତ୍ରି ଉଦ୍ଯାପନ, ବୈଶାଖ-ଜ୍ୟେଷ୍ଠ ମାସରେ ଶୀତଳା ଦେବୀଙ୍କ ପୂଜା ଏବେ ମଧ୍ୟ ପ୍ରଚଳିତ ଅଛି ।

ସର୍ବୋପରି କ୍ଷୁଦ୍ର ଜୟରାମବାଟୀ ଗ୍ରାମ ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ସ୍ୱୀୟ ଅଙ୍କରେ ଧାରଣ କରି ବର୍ତ୍ତମାନ ଯୁଗର ଶ୍ରେଷ୍ଠ ଶକ୍ତିପୀଠରେ ପରିଣତ ହୋଇଛି । ଯିବା ଆସିବାର ସୁବିଧା, ରାମକୃଷ୍ଣ ମଠ ଓ ମିଶନର କେନ୍ଦ୍ରସ୍ଥାପନ ଓ ଏହି କେନ୍ଦ୍ରମାଧ୍ୟମରେ ବିଭିନ୍ନ ସେବା-ଅନୁଷ୍ଠାନ ଯୋଗୁଁ ଜନସାଧାରଣଙ୍କ ଦୃଷ୍ଟି କ୍ରମେ ଏହି ପବିତ୍ର ପୀଠ ପ୍ରତି ଆକୃଷ୍ଟ ହେଉଅଛି ଏବଂ ତାହା ସଙ୍ଗେ ସଙ୍ଗେ ଗ୍ରାମର ଉନ୍ନତି ମଧ୍ୟ ହେଉଅଛି । ଶ୍ରୀଶ୍ରୀମା'ଙ୍କ ଚରଣ ସ୍ପର୍ଶରେ ପବିତ୍ରୀକୃତ ଏହି ପୂଣ୍ୟଭୂମିରେ ଦେହ ଅବଲୁଣ୍ଠିତ କରିବା ପାଇଁ ଦେଶ-ବିଦେଶରୁ ଅସଂଖ୍ୟ ଭକ୍ତବୃନ୍ଦ ସମବେତ

ହୁଅନ୍ତି । ଶ୍ରୀଶ୍ରୀମା' ଏହି ଭୂମିର ଧୂଳି ଦିନେ ମସ୍ତକରେ ଧାରଣ କରି କହିଥିଲେ, ''ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ ।''

## ଆବିର୍ଭାବ

ମୁଖୋପାଧ୍ୟାୟ ବଂଶ କେବେଠାରୁ ଜୟରାମବାଟୀରେ ବସବାସ କରିବାକୁ ଲାଗିଲେ, ତାହା ଏବେ ମଧ୍ୟ ଅବିଦିତ । ପ୍ରାଚୀନ ଦୁଇଟି ଦଲିଲ-ପତ୍ରରୁ ଜଣାଯାଏ ଯେ ୧୦୭୬ ସନ ବୈଶାଖ ୧୨ ତାରିଖ ଦିନ ବିଷ୍ଣୁପୁରର ରାଜା ଶ୍ରୀଯୁକ୍ତ ଖେଲାରାମ ମୁଖୋପାଧ୍ୟାୟଙ୍କୁ କିଛି ବ୍ରହ୍ମୋତ୍ତର ଓ ଦେବୋତ୍ତର ନିଷ୍କର ଭୂମି ଦାନ କରିଥିଲେ । ସେହି ଦଲିଲରେ ଖେଲାରାମଙ୍କୁ ଗ୍ରାମ୍ୟଦେବତା ଧର୍ମଠାକୁରଙ୍କ ପରିଚାଳକ ବୋଲି ଉଲ୍ଲେଖ କରାଯାଇଛି । ଏବେ ମଧ୍ୟ ମୁଖୋପାଧ୍ୟାୟମାନେ ଖେଲାରାମଙ୍କ ବଂଶଧରରୂପେ ଧର୍ମଠାକୁରଙ୍କର ସେବା ପରିଚାଳନା କରୁଛନ୍ତି । ମୁଖୋପାଧ୍ୟାୟମାନଙ୍କ ଜୟରାମବାଟୀ ଗ୍ରାମକୁ ଆଗମନ ସହିତ ପଶ୍ଚିମବଙ୍ଗରେ ଏକ ଧର୍ମବିପ୍ଳବର ଇତିହାସ ସଂଶ୍ଳିଷ୍ଟ ଥିଲା ବୋଲି ମନେହୁଏ । ବୌଦ୍ଧ-ପ୍ରାଧାନ୍ୟ-ବିମୁକ୍ତ ହିନ୍ଦୁସମାଜ ସେତେବେଳେ ଉଦାର ଭାବାପନ୍ନ ବୌଦ୍ଧମାନଙ୍କୁ ସେମାନଙ୍କ ଦେବାଦେବୀଙ୍କ ସହିତ ନିଜ ଅଙ୍କରେ ଗ୍ରହଣ କରିଥିଲା । ସମ୍ଭବତଃ ଏହି ସୂତ୍ରରେ ମୁଖୋପାଧ୍ୟାୟ ବଂଶ ଏଠାକୁ ଆଗମନ କରିଥିଲେ ଓ ଧର୍ମଠାକୁରଙ୍କର ପୂଜକ ହୋଇଥିଲେ ।

ପୁରୁଷାନୁକ୍ରମେ 'ରାମ' ମନ୍ତ୍ରର ଉପାସକ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟ ଇଷ୍ଟନିଷ୍ଠା, ସଦାଚାର, ଲୋକକଲ୍ୟାଣସାଧନ ଇତ୍ୟାଦି ସଦ୍‌ଗୁଣ ଯୋଗୁଁ ଗ୍ରାମବାସୀମାନଙ୍କର ବିଶେଷ ଶ୍ରଦ୍ଧାଭାଜନ ହୋଇଥିଲେ । ସେ ଶିହଡ଼ ଗ୍ରାମ ନିବାସୀ ଶ୍ରୀଯୁକ୍ତ ହରିପ୍ରସାଦ ମଜୁମ୍‌ଦାରଙ୍କ କନ୍ୟା ଶ୍ରୀମତୀ ଶ୍ୟାମାସୁନ୍ଦରୀ ଦେବୀଙ୍କ ପାଣିଗ୍ରହଣ କରିଥିଲେ । ଶ୍ୟାମାସୁନ୍ଦରୀ ମଧ୍ୟ ରାମଚନ୍ଦ୍ରଙ୍କ ପରି ଧର୍ମପ୍ରାଣା ଥିଲେ । ତାଙ୍କର ସରଳତା, ପବିତ୍ରତା ଓ ଦୃଢ଼ତାର କାହାଣୀ ଏବେ ମଧ୍ୟ ଲୋକମୁଖରେ ପ୍ରଚଳିତ ଅଛି । ଏହି ଭକ୍ତ-ଦମ୍ପତିଙ୍କ ଗୃହ ଆଲୋକିତ କରି ଶ୍ରୀଶ୍ରୀମାତାଠାକୁରାଣୀ ସାରଦାମଣି ଦେବୀଙ୍କ ଆବିର୍ଭାବ ହୋଇଥିଲା । ପିତା ଓ ମାତାଙ୍କ ବିଷୟରେ ଶ୍ରୀମା'ଙ୍କ ନିକଟରୁ ସାମାନ୍ୟ ଯେଉଁ ଗୋଟିଏ ଯୋଡ଼ିଏ କଥା ଶୁଣାଯାଇଛି, ସେଥିରୁ ସେମାନଙ୍କର ଅମଳ ଚରିତ୍ରର ଯେପରି ସୁନ୍ଦର ପରିଚୟ ମିଳେ, ଅନ୍ୟ ଦିଗରେ ନିଜ ଜନକ-ଜନନୀଙ୍କ ପ୍ରତି ଶ୍ରୀମା'ଙ୍କର ଅଗାଧ ପ୍ରେମର ଆଭାସ ମଧ୍ୟ ମିଳେ । ମା' କହୁଥିଲେ, ''ମୋ ବାପା-ମା ଅତି ଭଲ ଲୋକ ଥିଲେ । ବାପା ରାମଭକ୍ତ ଥିଲେ । ଖୁବ୍ ନୈଷ୍ଠିକ—ଅନ୍ୟ ବର୍ଣ୍ଣର ଦାନ ଗ୍ରହଣ କରୁ ନ ଥିଲେ । ମୋ ମା' କେତେ ଦୟାଳୁ ଥିଲେ—ଲୋକମାନଙ୍କର କେତେ ଯତ୍ନ କରୁଥିଲେ, ସେବା କରୁଥିଲେ । ସେ କେତେ ସରଳସ୍ୱଭାବ ଥିଲେ ।''

ନିଜ ଜନନୀଙ୍କ ସମ୍ବନ୍ଧରେ ଆହୁରି ମଧ୍ୟ କହିଛନ୍ତି, ''ମୋ ମା ଥିଲେ ଯେପରି ସାକ୍ଷାତ୍ ଲକ୍ଷ୍ମୀ, ସାରା ବର୍ଷ ସବୁ ଜିନିଷ ପତ୍ର ସଜାଡ଼ି ଠିକ୍‌ଠାକ୍ କରି ରଖୁଥିଲେ । କହୁଥିଲେ, 'ମୋର ଭକ୍ତ-ଭଗବାନଙ୍କ ସଂସାର ।' ....ଏହି ସଂସାରଟି ଥିଲା ଯେପରି ତାଙ୍କ ଦେହର ରକ୍ତ ।''

ରାମଚନ୍ଦ୍ରଙ୍କର ତିନି ଭାଇ ଥିଲେ—ତ୍ରୈଲୋକ୍ୟନାଥ, ଈଶ୍ୱରଚନ୍ଦ୍ର ଓ ନୀଳମାଧବ । ସମସ୍ତେ ଗୋଟିଏ ପରିବାରଭୁକ୍ତ । ଏହି ପରିବାରରେ ଅର୍ଥ ସ୍ୱଚ୍ଛଳତା କେବେ ନ ଥିଲା । ଚାଷ ଓ ପୌରୋହିତ୍ୟରୁ ଲବ୍‌ଧ ସ୍ୱଳ୍ପ ଆୟରେ କୌଣସି ପ୍ରକାରେ ସଂସାର ଚଳୁଥିଲା । ଅଭାବ ସତ୍ତ୍ୱେ ରାମଚନ୍ଦ୍ର ଦାନରେ ମୁକ୍ତହସ୍ତ ଥିଲେ ।

ଥରେ ଶିହଡ଼ ଗ୍ରାମରେ ଅବସ୍ଥାନକାଳରେ ଶ୍ୟାମାସୁନ୍ଦରୀ ଦେବୀଙ୍କର ଉଦରାମୟ ରୋଗ ହେଲା । ଦିନେ ସନ୍ଧ୍ୟାପରେ ଅନ୍ଧାରରେ ଏଲ୍ଲାପୁକୁର ପୋଖରୀ କୂଳକୁ ସେ ଶୌଚ ପାଇଁ ଯାଇଥିଲେ । ନିକଟରୁ ହଠାତ୍ ଏକ ଝନ୍‌ଝନ୍ ଶବ୍ଦ ହେଲା ଓ ଯେଉଁ ବେଲଗଛ ମୂଳେ ସେ ବସିଥିଲେ, ସେହି ଗଛରୁ ଏକ କ୍ଷୁଦ୍ର ବାଳିକା ଓହ୍ଲାଇ ଆସି କୋମଳ ହସ୍ତରେ ଶ୍ୟାମାସୁନ୍ଦରୀଙ୍କୁ ଆଲିଙ୍ଗନ କଲା । ଶ୍ୟାମାସୁନ୍ଦରୀ ଅଚେତନ ହୋଇ ଭୂମିରେ ଶୋଇପଡ଼ିଲେ । ପରେ ଲୋକେ ଖୋଜି ବାହାର କଲାରୁ ସେ ଅନୁଭବ କଲେ ଯେପରିକି ସେହି ବାଳିକାଟି ତାଙ୍କ ଗର୍ଭରେ ପ୍ରବେଶ କରିଛି ।

ରାମଚନ୍ଦ୍ରଙ୍କର ମଧ୍ୟ ଅନୁରୂପ ଅନୁଭବ ହୋଇଥିଲା । ଦିନେ ଖରାବେଳେ ଶୋଇଥିବା ସମୟରେ ସ୍ୱପ୍ନ ଦେଖିଲେ ଯେ, ଗୋଟିଏ ହେମାଙ୍ଗୀ ବାଳିକା ତାଙ୍କ ପିଠି ଉପରେ ଶୋଇ ତାର କୋମଳ ବାହୁପାଶରେ ତାଙ୍କ କଣ୍ଠ ବେଷ୍ଟନ କରି ରହିଛି । ବାଳିକାର ଅସାମାନ୍ୟ ରୂପ ଓ ମୂଲ୍ୟବାନ ଅଳଙ୍କାର ଦେଖି ରାମଚନ୍ଦ୍ର ବିସ୍ମିତ ହୋଇ ପ୍ରଶ୍ନ କଲେ, ''ତୁମେ କିଏ ?'' ବୀଣାବିନିନ୍ଦିତ ସସ୍ନେହ କଣ୍ଠରେ ବାଳିକା ଉତ୍ତର ଦେଲା, ''ମୁଁ ତୁମ ପାଖକୁ ଆସିଲି ।'' ରାମଚନ୍ଦ୍ରଙ୍କର ନିଦ୍ରାଭଙ୍ଗ ହେଲା । ସ୍ୱପ୍ନ କଥା ଚିନ୍ତା କରି ତାଙ୍କର ବିଶ୍ୱାସ ହେଲା ଯେ ସ୍ୱୟଂ ଲକ୍ଷ୍ମୀ ତାଙ୍କୁ କୃପା କରି ଦର୍ଶନ ଦେଇଛନ୍ତି ।

ଠିକ୍ ଏହି ଘଟଣା ପରେ ରାମଚନ୍ଦ୍ର କଲିକତା ଯାଇଥିଲେ । ଫେରିଆସି ଶ୍ୟାମାସୁନ୍ଦରୀଙ୍କ ପୂର୍ବୋକ୍ତ ଅନୁଭବ କଥା ଶୁଣି ତାଙ୍କ ଧର୍ମନିଷ୍ଠ ମନରେ ବିଶ୍ୱାସ ଜନ୍ମିଲା ଯେ ଏହି ଘଟଣା ବାସ୍ତବିକ ସତ୍ୟ । ଭକ୍ତିପରାୟଣ ଦମ୍ପତି ତଦ୍‌ବଧି ଭୋଗବିଳାସରେ ଉଦାସୀନ ରହି ପବିତ୍ର ଦେହ ଓ ପୂତ ହୃଦୟରେ ଦେବଶିଶୁର ଜନ୍ମ ପାଇଁ ପ୍ରତୀକ୍ଷା କରିବାକୁ ଲାଗିଲେ । ଶ୍ରୀମା' ଭୂମିଷ୍ଠ ହେବାଯାଏ ରାମଚନ୍ଦ୍ର ସ୍ତ୍ରୀ ଅଙ୍ଗ ସ୍ପର୍ଶ କରିନାହାନ୍ତି । ଶ୍ୟାମାସୁନ୍ଦରୀ ଦେବୀ ପରବର୍ତ୍ତୀ କାଳରେ ଥରେ କହିଥିଲେ, ''ଗର୍ଭାବସ୍ଥାରେ ମୋର ଯେ କିପରି ରୂପ ତା' ଆଉ କଅଣ କହିବି ?

ସେଥର ଲୋକେ ମୋତେ କେତେ ଯେ ଲୁଗାପଟା ଦେଇଥିଲେ, ତାର ହିସାବ ନାହିଁ ।''

କ୍ରମେ ସମୟ ସନ୍ନିକଟ ହୋଇ ଆସିଲା । ହେମନ୍ତ ଋତୁ ପରେ ଶୀତ ଆରମ୍ଭ ହୋଇଛି, ବଙ୍ଗଭୂମିର ପଲ୍ଲୀରେ ଏହା ସର୍ବୋତ୍କୃଷ୍ଟ ସମୟ । କୃଷକମାନେ କୃଷିଲବ୍ଧ ଶସ୍ୟ ଗୃହକୁ ଆଣି କ୍ଷେତଲକ୍ଷ୍ମୀଙ୍କୁ ଭଣ୍ଡାରରେ ରଖି ଆନନ୍ଦମୁଖର । କ୍ଷେତରେ ରବିଶସ୍ୟର ଶ୍ୟାମଳଶ୍ରୀ କ୍ରମେ ବିକଶିତ ହେଉଛି । ନବାନ୍ନ ଉତ୍ସବ ଉଦ୍‌ଯାପିତ ହୋଇଯାଇଛି । ତାନ୍ତ୍ରିକ ସାଧକମାନେ 'ପୌଷ-କାଳୀ'ଙ୍କ ଦର୍ଶନ ପାଇଁ ଉତ୍ସୁକ ହୋଇ ଉଠିଛନ୍ତି । ଏଣେ ଖ୍ରୀଷ୍ଟାନମାନେ ଯୀଶୁଙ୍କ ଜନ୍ମୋତ୍ସବ ପାଇଁ ପ୍ରସ୍ତୁତ ହେଉଛନ୍ତି । ଅଧିକନ୍ତୁ ଦକ୍ଷିଣାୟନ ଶେଷ ହେବାରୁ ଦେବଗଣ ଜାଗରିତ ହୋଇଛନ୍ତି ।

ଦିବାବସାନ ପରେ ଯେତେବେଳେ ଜୟରାମବାଟୀ ଗ୍ରାମର ଶ୍ରମକ୍ଳାନ୍ତ ଦେହ ରାତ୍ରିଦେବୀଙ୍କ ଉଜ୍ଜ୍ୱଳ ତାରକାଖଚିତ କୃଷ୍ଣାଞ୍ଚଳରେ ଆବୃତ ହେଲା, ସେତେବେଳେ ରାମଚନ୍ଦ୍ରଙ୍କ କ୍ଷୁଦ୍ର ଗୃହକୁ ଆନନ୍ଦମୁଖରିତ କରି ୧୨୬୦ ସାଲର ପୌଷ ଆଠ ତାରିଖ ଗୁରୁବାର ଦିନ (୧୮୫୩ ଖ୍ରୀଷ୍ଟାବ୍ଦର ୨୨ ଡିସେମ୍ବର), କୃଷ୍ଣା ସପ୍ତମୀ ତିଥି, ରାତ୍ରି ୨ ଦଣ୍ଡ ୯ ପଳ, ଅତି ଶୁଭ କ୍ଷଣରେ ଶ୍ରୀଶ୍ରୀମା' ସାରଦାମଣି ଦେବୀ ଭୂମିଷ୍ଠା ହେଲେ । ମଙ୍ଗଳ ଶଙ୍ଖଧ୍ୱନିରେ ଆକୃଷ୍ଟ ଗ୍ରାମବାସୀମାନେ ନବଜାତ ଶିଶୁର ଅଶେଷ ମଙ୍ଗଳ କାମନା କରିବାକୁ ଲାଗିଲେ । ଯଥାକାଳରେ ଜନ୍ମପତ୍ରିକା ସମ୍ପାଦିତ ହୋଇ କନ୍ୟାର ରାଶ୍ୟାଶ୍ରିତ ନାମ ରଖାହେଲା ଶ୍ରୀମତୀ ଠାକୁରମଣି ଦେବୀ ଏବଂ ଲୋକବିଶ୍ରୁତ ନାମ ହେଲା ସାରଦାମଣି ।

ସାରଦାମଣି ପିତାମାତାଙ୍କର ପ୍ରଥମ ସନ୍ତାନ । ତାଙ୍କ ପରେ କାଦମ୍ବିନୀ ନାମ୍ନୀ କନ୍ୟା ଏବଂ ପ୍ରସନ୍ନକୁମାର, ଉମେଶଚନ୍ଦ୍ର, କାଳୀକୁମାର, ବରଦାପ୍ରସାଦ ଓ ଅଭୟଚରଣ ନାମକ ପାଞ୍ଚ ପୁଅ ଏହି ବ୍ରାହ୍ମଣଦମ୍ପତିଙ୍କର ଗୃହ ଅଳଙ୍କୃତ କରିଥିଲେ । କାଦମ୍ବିନୀଦେବୀ ବିବାହର ଅଳ୍ପ ଦିନ ପରେ, ଉମେଶ ଯୌବନର ପ୍ରାରମ୍ଭରେ ଏବଂ ଅଭୟ ଡାକ୍ତରୀ ଶିକ୍ଷା ଲାଭ କରିବା ପରେ ଦେହରକ୍ଷା କରିଥିଲେ । ଅନ୍ୟାନ୍ୟ ଭାଇମାନେ ଉପାର୍ଜନକ୍ଷମ ହୋଇ ପୃଥକ୍ ପୃଥକ୍ ଅବସ୍ଥାନ କରୁଥିଲେ ।

ରାମଚନ୍ଦ୍ରଙ୍କର ଦରିଦ୍ର-ସଂସାରରେ ଶ୍ରୀମା'ଙ୍କ ଶୈଶବ ଓ ବାଲ୍ୟକାଳ ଅତିବାହିତ ହେଲେ ସୁଦ୍ଧା ପରସ୍ପରପ୍ରତି ସ୍ନେହ-ପ୍ରୀତି ଓ ଶ୍ରଦ୍ଧା ଏହି ପରିବାରର ଦୈନନ୍ଦିନ ଜୀବନକୁ ଅତି ମଧୁମୟ କରି ରଖିଥିଲା । କ୍ଷୁଦ୍ର ନିଷ୍କର ଜମିରେ ଯାହା ଧାନ ଫସଲ ହେଉଥିଲା, ତାହା ପରିବାର ପ୍ରତିପାଳନ ପାଇଁ ଯଥେଷ୍ଟ ନ ହେବାରୁ ରାମଚନ୍ଦ୍ର ଯଜମାନାଦି କ୍ରିୟା ଓ ତୁଳା ଚାଷ କରୁଥିଲେ । ଶ୍ୟାମାସୁନ୍ଦରୀ ଶିଶୁ ସାରଦାଙ୍କୁ କ୍ଷେତରେ ଶୁଆଇ ଦେଇ କପା ସଂଗ୍ରହ କରୁଥିଲେ । ସାରଦା ବଡ଼ ହେବା ପରେ, ମା'ଙ୍କୁ ଏହି କାମରେ ସାହାଯ୍ୟ କରୁଥିଲେ । ତୁଳାରୁ ପଇତା କାଟି ଏହାର

ବିକ୍ରୟଲବ୍ଧ ଅର୍ଥଦ୍ୱାରା ପରିବାରର ବସନଭୂଷଣାଦି ସଂଗୃହୀତ ହେଉଥିଲା । ଛୋଟଭାଇମାନଙ୍କର ରକ୍ଷଣାବେକ୍ଷଣ ମା'ଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ଥିଲା । ସେ କହୁଥିଲେ, ''ଭାଇମାନଙ୍କୁ ନେଇ ଗଙ୍ଗାସ୍ନାନ ପାଇଁ ଯାଉଥିଲି; ଆମୋଦର ନଦୀ ଆମର ଗଙ୍ଗା; ସ୍ନାନ ସାରି ସେଠି ବସି ସମସ୍ତେ ମୁଢ଼ି ଖାଇବା ପରେ ସେମାନଙ୍କୁ ଘରକୁ ନେଇ ଆସୁଥିଲି ।'' ଅନ୍ୟାନ୍ୟ କାମ ସମ୍ବନ୍ଧରେ କହିଛନ୍ତି, ''ଅଣ୍ଟା ବୟସରେ ବେକେ ପାଣିରେ ପଶି ଗାଈଗୋରୁଙ୍କ ପାଇଁ ଦଳଘାସ କାଟୁଥିଲି । କ୍ଷେତରେ କାମ କରୁଥିବା ମଜୁରିଆଙ୍କ ପାଇଁ ଖାଇବା ନେଇ ଯାଉଥିଲି । ବର୍ଷେ ପଙ୍ଗପାଳ ଉପଦ୍ରବରୁ ସବୁ ଧାନ ନଷ୍ଟ ହୋଇଯାଇଥିଲା । କ୍ଷେତରେ ପଡ଼ିଥିବା ଧାନ ମୁଁ ଗୋଟେଇ ଆଣିଥିଲି ।'' ବାଲ୍ୟକାଳରେ ପାଠାଭ୍ୟାସ ସମ୍ବନ୍ଧରେ ସେ କହିଥିଲେ, ''ପ୍ରସନ୍ନ, ରାମନାଥ (ଜ୍ଞାତିଭାଇ) ପାଠଶାଳାକୁ ଯାଉଥିଲେ । ସେମାନଙ୍କ ସହିତ କେବେ କେବେ ଯାଉଥିଲି ଓ ଟିକିଏ ଟିକିଏ ପଢ଼ିବା ଶିଖିଥିଲି ।''

ଏହା ବ୍ୟତୀତ ପ୍ରତ୍ୟକ୍ଷଦର୍ଶୀମାନଙ୍କ ନିକଟରୁ ମା'ଙ୍କ ବାଲ୍ୟକାଳର ଆହୁରି କିଛି କିଛି ସ୍ମୃତି ଆମେ ପାଇଅଛୁ । ମା'ଙ୍କ ପିଲାଦିନର ସଙ୍ଗିନୀ ଅଘୋରମଣି କହିଛନ୍ତି—''ମା' ଖୁବ୍ ସାଦାସିଧା ଥିଲେ, ଯେପରିକି ମୂର୍ତ୍ତିମତୀ ସରଳତା । କେବେ କାହା ସହିତ କଳିକଜିଆ କରିନାହାନ୍ତି । ଖେଳିଲାବେଳେ ମା' କର୍ତ୍ତ୍ରୀ ବା ଗୃହିଣୀ ସାଜୁଥିଲେ । କଣ୍ଢେଇ ଗଢ଼ି ଖେଳୁଥିଲେ ସତ; କିନ୍ତୁ କାଳୀ ଓ ଲକ୍ଷ୍ମୀଙ୍କ ମୂର୍ତ୍ତି ଗଢ଼ି ଫୁଲ ବେଲପତ୍ର ଦେଇ ପୂଜା କରିବାକୁ ଭଲପାଉଥିଲେ । ଅନ୍ୟ ଝିଅମାନେ କଳିକଜିଆ କଲେ, ମା' ଆସି ପରସ୍ପର ଭିତରେ ବୁଝାମଣା କରିଦେଉଥିଲେ । ଥରେ ଜଗଦ୍ଧାତ୍ରୀ ପୂଜା ସମୟରେ ରାମହୃଦୟ ଘୋଷାଲ ନାମକ ଜଣେ ବ୍ୟକ୍ତି ମା'ଙ୍କୁ ପ୍ରତିମା ସମ୍ମୁଖରେ ବସି ଧ୍ୟାନ କରୁଥିବାର ଦେଖିଲେ । କିନ୍ତୁ ଅନେକ ସମୟ ଧରି ଦେଖି ମଧ୍ୟ ସେ ନିର୍ଣ୍ଣୟ କରିପାରିଲେ ନାହିଁ, କିଏ ଦେବୀ ବା କିଏ ମା' ! ଶେଷରେ ଡରି ସେଠାରୁ ପଳାଇଗଲେ ।'' ଅନ୍ୟାନ୍ୟ ପ୍ରତ୍ୟକ୍ଷଦର୍ଶୀମାନେ କହିଛନ୍ତି, ''ପିଲାଦିନୁ ସାରଦା ଯେପରି ବୁଦ୍ଧିମତୀ, ଶାନ୍ତ ଓ ଶିଷ୍ଟ ଥିଲା, ସେପରି କାମରେ ମଧ୍ୟ ତାର ଉତ୍ସାହ ଥିଲା । ତାକୁ କେବେ କାମ କରିବାକୁ କହିବାକୁ ହେଉ ନ ଥିଲା; ସେ ନିଜେ ବିବେଚନା କରି ନିଜର କାମସବୁ ସୁନ୍ଦର ଭାବରେ କରି ରଖୁଥିଲା ।''

ଘୋଷାଲ ମହାଶୟ ଶ୍ରୀମା'ଙ୍କୁ ଜଗଦ୍ଧାତ୍ରୀରୂପେ ଦର୍ଶନ କରିବା ଏହି ଅପୂର୍ବ ଜୀବନର ଏକ ବିଚ୍ଛିନ୍ନ ଘଟଣା ମାତ୍ର ନୁହେଁ । ଶ୍ରୀମା'ଙ୍କର ବାଲ୍ୟଲୀଳା ଦେବୀତ୍ୱ ଓ ମାନବତ୍ୱର ଅତ୍ୟାଶ୍ଚର୍ଯ୍ୟ ମିଶ୍ରଣରେ ଅତି ଚମକପ୍ରଦ । ଉତ୍ତରକାଳରେ ଶ୍ରୀମା' ଯାହା ଭାବନ୍ତୁନା କାହିଁକି, ସେ ନିଜକୁ ସାଧାରଣତଃ ମାନବୀରୂପେ ପ୍ରକାଶ କରୁଥିଲେ । କିନ୍ତୁ ଆମେ ଯେଉଁ ସମୟର କଥା ଲେଖୁଛୁ, ସେତେବେଳେ ଦୈବବିଧାନରେ ତାଙ୍କର ଶୈଶବ ଓ ବାଲ୍ୟ ଅଲକ୍ଷିତ ଭାବରେ ଅଲୌକିକ ଶକ୍ତି

ଦ୍ୱାରା ପରିବେଷ୍ଟିତ ଥିଲା । ସେତେବେଳର କଥା ସ୍ମରଣ କରି ମା' କହିଥିଲେ, ''ବାବା, ପିଲାଦିନେ ମୁଁ ଦେଖୁଥିଲି, ମୋ'ରି ପରି ଜଣେ ଝିଅ ମୋ ସହିତ ସର୍ବଦା ରହି ମୋର ପ୍ରତ୍ୟେକ କାମରେ ସାହାଯ୍ୟ କରୁଥିଲା—ମୋ ସହିତ ଆମୋଦ ଆହ୍ଲାଦ କରୁଥିଲା; କିନ୍ତୁ ଅନ୍ୟ ଲୋକ ଆସିଲେ ଆଉ ତାକୁ ଦେଖିପାରୁ ନ ଥିଲି । ଦଶ ଏଗାର ବର୍ଷ ଯାଏ ଏପରି ହେଉଥିଲା ।'' ପାଣିରେ ପଶି ଗାଈ ପାଇଁ ଦଳଘାସ କାଟିଲାବେଳେ ଗୋଟିଏ ସମବୟସ୍କା ଝିଅ ଆସି ଘାସ କାଟିଦେଉଥିଲା । ଗୋଟିଏ ବିଡ଼ା କାଟି ରଖି ଆସି ଶ୍ରୀଶ୍ରୀମା' ଦେଖନ୍ତି ଏହି ଝିଅଟି ଆଉ ଗୋଟିଏ ବିଡ଼ା କାଟି ରଖିଅଛି ।

ଶ୍ରୀମା'ଙ୍କର ବାଲ୍ୟଜୀବନ ଯେ କେତେ କର୍ମ ବହୁଳ ଥିଲା, ତାହାର କିଛି ଆଭାସ, ଆମେ ପାଇଛୁ । ଅତି ଅପରିଣତ ବୟସରୁ ହିଁ ତାଙ୍କୁ କେବେ କେବେ ରୋଷେଇ ଇତ୍ୟାଦି ମଧ୍ୟ କରିବାକୁ ପଡୁଥିଲା । ବୁଦ୍ଧି ଓ କର୍ମପଟୁତା ଥିଲେ ମଧ୍ୟ ରୋଷେଇର ଓଜନିଆ ପାତ୍ରଗୁଡ଼ିକୁ ଉଠାଇବା ପାଇଁ ହାତରେ ଯଥେଷ୍ଟ ଶକ୍ତି ନ ଥିବାରୁ ପିତାଙ୍କ ସାହାଯ୍ୟ ନେବାକୁ ପଡୁଥିଲା ।

ଶ୍ରୀମା'ଙ୍କ ବୟସ ଯେତେବେଳେ ଏଗାର ବର୍ଷ (୧୮୬୪/୬୫ ଖ୍ରୀଷ୍ଟାବ୍ଦ) ସେତେବେଳେ ଏହି ଅଞ୍ଚଳରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ମା'ଙ୍କ ପିତା ଦରିଦ୍ର ହେଲେ ମଧ୍ୟ ଲୋକମାନଙ୍କର ହା' ହା'କାରରେ ବିଚଳିତ ହୋଇ ପରିବାର କଥା ନ ଭାବି ଗୋଟିଏ ଅନ୍ନଛତ୍ର ଖୋଲିଦେଲେ । ଏହି ଘଟଣାର ବିବରଣ ଶ୍ରୀମା' ଏହିପରି ଭାବରେ ଦେଇଛନ୍ତି—''କିପରି ଭୟଙ୍କର ଦୁର୍ଭିକ୍ଷ ! କେତେ ଲୋକ ଅନାହାରରେ ଆମ ଘରକୁ ଆସୁଥିଲେ । ଗତ ବର୍ଷର କିଛି ଧାନ ଅମାରରେ ଥିଲା । ସେହି ଧାନକୁ କୁଟି ଚାଉଳ କରି ସେଥିରେ ବିରିଡାଲି ମିଶାଇ ହାଣ୍ଡି ହାଣ୍ଡି ଖେଚୁଡ଼ି ଆମେ ରାନ୍ଧି ରଖୁଥିଲୁ । ବାପା କହୁଥିଲେ ଘରେ ସମସ୍ତେ ଏ ଖେଚୁଡ଼ି ଖାଇବେ ଏବଂ ଯେ ଆସିବ ତାକୁ ମଧ୍ୟ ଦିଆଯିବ । କୌଣସି କୌଣସି ଦିନ ଏତେ ଲୋକ ହେଉଥିଲେ ଯେ ଖେଚୁଡ଼ି ନିଅଣ୍ଟ ପଡ଼ିଯାଉଥିଲା । ସେତେବେଳେ ପୁଣି ଖେଚୁଡ଼ି ରନ୍ଧାଯାଉଥିଲା । ରନ୍ଧା ହେବାପରେ ଖେଚୁଡ଼ି ଥଣ୍ଡା କରିବା ପାଇଁ ପତରରେ ଢାଳି ଦୁଇହାତରେ ପଙ୍ଖା କରୁଥିଲି । ଆହା ! କ୍ଷୁଧାର ଜ୍ୱାଳାରେ ସମସ୍ତେ ଖାଇବା ପାଇଁ ଜଗି ବସିଥାନ୍ତି । ଦିନେ ଗୋଟିଏ ଡମ ଘରର ଝିଅ ଆସିଥିଲା । ନ ଖାଇ ନ ପିଇ ଉନ୍ମାଦ ପରି ହୋଇଯାଇଥିଲା । ସେ ଦୌଡ଼ି ଆସି ଗାଈମାନଙ୍କ ପାଇଁ ଯେଉଁ କୁଣ୍ଡା କୁଣ୍ଡରେ ଥିଲା, ତାହା ଖାଇବାକୁ ଆରମ୍ଭ କରିଦେଲା । ଆମେ ସବୁ ଡାକୁଛୁ ଯେ ଭିତରକୁ ଆସି ଖେଚୁଡ଼ି ଖାଅ—କିନ୍ତୁ ତାହା ଶୁଣିବା ପାଇଁ ତାହାର ଧୈର୍ଯ୍ୟ ନ ଥିଲା । ଏହି ଅଭିଜ୍ଞତା ଫଳରେ ଲୋକେ ଧାନ ଅମାରରେ ରଖିବାକୁ ଆରମ୍ଭ କଲେ ।''

ଶ୍ରୀମା' ସେତେବେଳେ ବାଳିକା । ଏହି ବାଲ୍ୟଲୀଳା ଅନେକାଂଶରେ ଗାଁରେ ଅନ୍ୟାନ୍ୟ ଝିଅମାନଙ୍କ ପରି । କିନ୍ତୁ ଏହା ମଧ୍ୟରେ ଅକସ୍ମାତ୍ ଯେପରି ଅଲୌକିକ ଜ୍ୟୋତି ବିଚ୍ଛୁରିତ ହୋଇ ଆମ ଆଖି ଝଲସାଇଦିଏ । ଯଦିଓ ଶ୍ରୀମା'ଙ୍କ ପିତାମାତା ଓ ଭାଇମାନେ ଏହି ଛୋଟ ଝିଅଟିକୁ ସାଧାରଣ ଦୁହିତାରୂପେ ଓ ସ୍ନେହଶୀଳା ଭଗିନୀରୂପେ ଗ୍ରହଣ କରିବାକୁ ଚାହିଁଥିଲେ, ତଥାପି ଶ୍ରୀମା'ଙ୍କର ଏହି ଆଲୋକ-ଅନ୍ଧକାର ମିଶ୍ରିତ ବାଲ୍ୟଲୀଳା ସମ୍ଭବତଃ ସେମାନଙ୍କର ଦୃଷ୍ଟି ଅତିକ୍ରମ କରିପାରି ନ ଥିଲା । ବୋଧହୁଏ ଏହି ରହସ୍ୟ ବୁଝିପାରି ଶ୍ରୀମା'ଙ୍କର ମା' ଶେଷ ବୟସରେ ଦିନେ ତାଙ୍କୁ କହିଥିଲେ, ''ମା'ଗୋ, ତୁ ମୋର କିଏ ? ମୁଁ ତ ତୋତେ ଚିହ୍ନିପାରୁ ନାହିଁ ମା' ।'' ଶ୍ରୀମା' ସେତେବେଳେ ବାହ୍ୟିକ ବିରକ୍ତି ସହକାରେ କହିଲେ, ''ମୁଁ ପୁଣି କିଏ ? ମୋର କ'ଣ ଚାରିଟା ହାତ ଅଛି ? ତା ହେଲେ ତୁମ ପାଖକୁ ଆସିବି କାହିଁକି ?''

ପରେ ଦିନେ ଶ୍ୟାମାସୁନ୍ଦରୀ ଦେବୀ ଅତୀତର ଜୀବନ ସ୍ମରଣ କରି ସାରଦା ମା'ଙ୍କୁ କହିଥିଲେ, ''ତୋତେ ଯେପରି ଆଉଥରେ ପାଏ ମା' ।'' ଶ୍ରୀମା'ଙ୍କ ଭାଇ କାଳୀକୁମାର ଏହି କଥାର ସମର୍ଥନ କରି କହିଥିଲେ, ''ଆମ ଭଉଣୀ ଯେପରି ସାକ୍ଷାତ୍ ଲକ୍ଷ୍ମୀ ଥିଲେ । ଆମକୁ ମଣିଷ କରିବା ପାଇଁ ସେ କଅଣ କରି ନାହାନ୍ତି । ଧାନ କୁଟିଛନ୍ତି, ସୂତା କାଟିଛନ୍ତି, ଗାଈଗୋରୁମାନଙ୍କର ସେବା ଯତ୍ନ କରିଛନ୍ତି, ରନ୍ଧାବଢ଼ା କରିଛନ୍ତି—କହିବାକୁ ଗଲେ ସଂସାରର ଅଧିକାଂଶ କାମ ସେ କରିଛନ୍ତି ।''

## ବଧୂ

ଶିହଡ଼ ଗ୍ରାମରେ ଶ୍ରୀରାମକୃଷ୍ଣଦେବଙ୍କର ଭଣଜା ଶ୍ରୀଯୁକ୍ତ ହୃଦୟରାମ ମୁଖୋପାଧ୍ୟାୟଙ୍କର ଘର ଥିଲା । ଏହି ସୂତ୍ରରେ ଶ୍ରୀରାମକୃଷ୍ଣ ଏହି ଗ୍ରାମକୁ ଯିବାଆସିବା କରୁଥିଲେ । ଶ୍ରୀମା'ଙ୍କର ମାମୁଁଘର ଏହି ଗ୍ରାମରେ । ଦିନେ ହୃଦୟଙ୍କ ଘରେ ଗୋଟିଏ ଯାତ୍ରା ଅଭିନୟ ଅନୁଷ୍ଠିତ ହୋଇଥିଲା । ତାହା ଦେଖିବା ପାଇଁ ଜୟରାମବାଟୀ ଓ ନିକଟବର୍ତ୍ତୀ ଅନେକ ଗ୍ରାମରୁ ବହୁ ଲୋକ ଆସିଥିଲେ । କ୍ଷୁଦ୍ର ବାଳିକା ସାରଦା ମଧ୍ୟ ଜଣେ ସ୍ତ୍ରୀଲୋକ କୋଳରେ ବସି ଏହି ଅଭିନୟ ଦେଖୁଥିଲେ । ଯାତ୍ରା ଶେଷରେ ଏହି ସ୍ତ୍ରୀଲୋକ ତାଙ୍କୁ ଆଦର କରି ପଚାରିଲେ, ''ଏଠାରେ ଯେ ଏତେ ଲୋକ ଅଛନ୍ତି, ଏମାନଙ୍କ ମଧ୍ୟରୁ ତୁ କାହାକୁ ବାହାହେବୁ ?'' ସାରଦା ତତ୍କ୍ଷଣାତ୍ ଦୁଇ ହାତ ଉଠାଇ ନିକଟରେ ବସିଥିବା ଶ୍ରୀରାମକୃଷ୍ଣଙ୍କୁ ଦେଖାଇଦେଲେ । ଶ୍ରୀମା' ଯେଉଁଦିନ ଏହିଭାବରେ ସ୍ୱୟମ୍ବରା ହୋଇଥିଲେ, ସେଦିନ ବିବାହ ଶବ୍ଦର ଅର୍ଥ ମଧ୍ୟ ତାଙ୍କୁ ଜଣା ନ ଥିଲା । କିନ୍ତୁ ଯେଉଁ ଦୈବପ୍ରେରଣାରେ ସେ ନିଜ ସ୍ୱାମୀଙ୍କୁ ହାତ ଉଠାଇ ନିର୍ଦ୍ଦିଷ୍ଟ କରିଥିଲେ,

ସେହି ଦୈବବିଧାନ ହିଁ ତାଙ୍କ ମନର ସେହି ଅଭିଳାଷ କେତେବର୍ଷ ପରେ ପୂରଣ କରିଥିଲା ।

ଶ୍ରୀଶ୍ରୀମା'ଙ୍କୁ ସେତେବେଳେ ପାଞ୍ଚ ବର୍ଷ ପୂରି ଛଅ ଚାଲିଥାଏ । ଏଣେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଶ୍ରୀରାମକୃଷ୍ଣଙ୍କ ଦେହ ଓ ମନକୁ ଅବଲମ୍ବନ କରି ଯୁଗଧର୍ମ ପ୍ରବର୍ତ୍ତନ ପାଇଁ ପ୍ରବଳ ସାଧନା ଚାଲିଥାଏ । ଅଜ୍ଞ ଲୋକେ ତାଙ୍କୁ କେନ୍ଦ୍ରଭ୍ରଷ୍ଟ ଓ ଉଦ୍‌ଭ୍ରାନ୍ତ ବୋଲି ଭାବୁଥିଲେ । ଯେତେବେଳେ ଏହି କଥା କାମାରପୁକୁର ଗ୍ରାମରେ ତାଙ୍କ ମାତା ଶ୍ରୀଯୁକ୍ତା ଚନ୍ଦ୍ରମଣିଦେବୀଙ୍କ କର୍ଣ୍ଣରେ ପହଞ୍ଚିଲା, ସେତେବେଳେ ଜ୍ୟେଷ୍ଠପୁତ୍ର ରାମକୁମାରଙ୍କର ଅକାଳ ମୃତ୍ୟୁରେ ସେ ଅତିଶୟ କାତରା । ତେଣୁ କନିଷ୍ଠ ପୁତ୍ରର ଏହି ଅବସ୍ଥା କଥା ଶୁଣି ତାଙ୍କୁ ଶୀଘ୍ର ନିଜ ପାଖକୁ ଅଣାଇଲେ ଓ ବନ୍ଧୁବାନ୍ଧବଙ୍କ ପରାମର୍ଶ ଅନୁଯାୟୀ ଔଷଧ ପ୍ରୟୋଗ ଓ ଶାନ୍ତିସ୍ୱସ୍ତ୍ୟୟନ ଇତ୍ୟାଦି ଦ୍ୱାରା ପ୍ରକୃତିସ୍ଥ କରିବାକୁ ଚେଷ୍ଟା କଲେ । କହିବା ବାହୁଲ୍ୟ ଯେ, ଏହି ସବୁ ଉପାୟ ବିଶେଷ କାର୍ଯ୍ୟକାରୀ ହେଲା ନାହିଁ । ଅତଏବ ଜନନୀ ଅନ୍ୟ ଦଶ ଜଣଙ୍କ ସହିତ ପରାମର୍ଶ କରି ସିଦ୍ଧାନ୍ତ ନେଲେ ଯେ ଶ୍ରୀରାମକୃଷ୍ଣଙ୍କ ମନ ଏବେ ସାମୟିକ ଭାବରେ ଶାନ୍ତ ଥିଲେ ସୁଦ୍ଧା ସଂସାରରେ ଉଦାସୀନତାବଶତଃ ତାଙ୍କ ମନ ପୁଣି ଅପ୍ରାକୃତିକ ହୋଇଯାଇପାରେ । ତେଣୁ ଏହି ବୈରାଗ୍ୟପୂର୍ଣ୍ଣ ସନ୍ତାନକୁ ବିବାହବନ୍ଧନରେ ଆବଦ୍ଧ କରିବା ପାଇଁ ଗୋପନରେ ପାତ୍ରୀ ସନ୍ଧାନରେ ଲାଗିପଡ଼ିଲେ । କିନ୍ତୁ ସବୁ ଚେଷ୍ଟା ବ୍ୟର୍ଥ ହେଲା । ଅବଶେଷରେ ଶ୍ରୀରାମକୃଷ୍ଣ ସବୁ ଘଟଣା ଶୁଣି ବିରକ୍ତ ନ ହୋଇ ବରଂ ବାଳକସୁଲଭ ଆନନ୍ଦ ଉତ୍ସାହ ପ୍ରକାଶ କରିବାକୁ ଲାଗିଲେ ଏବଂ ନିଜେ ଉପଯୁକ୍ତ ପାତ୍ରୀଙ୍କର ସନ୍ଧାନ ଦେଇ କହିଲେ — ''ଜୟରାମବାଟୀରେ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଘର ଦେଖ, ସେଠାରେ ବିବାହ ପାଇଁ କନ୍ୟା କୁଟାବନ୍ଧା ହୋଇ ରହିଛି ।'' ପାତ୍ରୀ ନିର୍ବାଚନରେ ଆଉ ବିଳମ୍ବ ହେଲା ନାହିଁ । ବିବାହର ଶୁଭଦିନ ମଧ୍ୟ ସ୍ଥିର ହୋଇଗଲା । ୧୮୫୯ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମକାଳରେ ନିର୍ଦ୍ଧାରିତ ଦିବସରେ ଶ୍ରୀଯୁକ୍ତ ରାମେଶ୍ୱର କନିଷ୍ଠଭ୍ରାତା ଶ୍ରୀରାମକୃଷ୍ଣଙ୍କୁ ସଙ୍ଗରେ ଘେନି ଜୟରାମବାଟୀରେ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଘରେ ଉପସ୍ଥିତ ହେଲେ । ଶୁଭଲଗ୍ନରେ ଶ୍ରୀମତୀ ସାରଦାମଣି ଦେବୀଙ୍କ ସହିତ ଶ୍ରୀରାମକୃଷ୍ଣଙ୍କର ଶୁଭ-ପରିଣୟ ଅନୁଷ୍ଠିତ ହେଲା । ବରପକ୍ଷ କନ୍ୟାପକ୍ଷକୁ ତିନିଶହ ମୁଦ୍ରା ପଣ ଦେଇଥିଲେ । ଶ୍ରୀରାମକୃଷ୍ଣ ସେତେବେଳେ ଚତୁର୍ବିଂଶତି ବର୍ଷରେ ପଦାର୍ପଣ କରିଥିଲେ। ବିବାହ ବିଷୟରେ ଶ୍ରୀମା' କହିଛନ୍ତି, ''ଖଜୁରିକୋଳି ଯେଉଁ ସମୟରେ ହୁଏ, ସେହି ସମୟରେ ମୋର ବିବାହ ହୋଇଥିଲା, ମାସ କଥା ଜଣା ନାହିଁ । ଦଶଦିନ ପରେ ଯେତେବେଳେ କାମାରପୁକୁର ଗଲି ସେଠାରେ ଖଜୁରି କୋଳି ଗୋଟାଇଛି । ଧର୍ମଦାସ ଲାହା (କାମାରପୁକୁରର ଜମିଦାର) ଆସି କହିଲେ, ଏହି

ଝିଅଟି ସହିତ ବିବାହ ହୋଇଛି ? ଇଶ୍ୱର ମୁଖୋପାଧ୍ୟାୟ (ଜ୍ଞାତି ଭାଇ) ମୋତେ କୋଳ କରି କାମାରପୁକୁର ନେଇଯାଇଥିଲେ ।

ବିବାହର ପରଦିନ ଉପରଓଳି ବରପକ୍ଷ ବରବଧୂଙ୍କୁ ନେଇ କାମାରପୁକୁର ଫେରିଗଲେ । ସେଠାରେ ଶ୍ରୀଯୁକ୍ତା ଚନ୍ଦ୍ରମଣିଦେବୀ ପୁତ୍ର ଓ ପୁତ୍ରବଧୂଙ୍କୁ ଯଥାରୀତି ବରଣ କଲେ । ସ୍ତ୍ରୀ-ଆଚାର, ଫୁଲଶଯ୍ୟା, ବୋହୂ-ଭାତି ଇତ୍ୟାଦି ପରେ ବିବାହ ଉତ୍ସବ ସମାପ୍ତ ହେଲା ।

ସାମାଜିକ ସମ୍ମାନ ରକ୍ଷା ପାଇଁ ଗାଁର ଜମିଦାର ଲାହାବାବୁଙ୍କ ନିକଟରୁ କେତୋଟି ଅଳଙ୍କାର ଆଣି ବାଳିକାବଧୂଙ୍କୁ ଅଳଙ୍କୃତ କରାଯାଇଥିଲା । ବିବାହ ଉତ୍ସବ ପରେ ଅବୋଧ ବାଳିକାର ଅଙ୍ଗରୁ କିପରି ଭାବରେ ଅଳଙ୍କାର ଖୋଲିନେବେ, ଏହା ଚିନ୍ତା କରି ଚନ୍ଦ୍ରମଣିଦେବୀ ଦୁଃଖରେ ଭାରାକ୍ରାନ୍ତ ହେଲେ । କିନ୍ତୁ ବୁଦ୍ଧିମାନ ଶ୍ରୀରାମକୃଷ୍ଣ ମା'ଙ୍କର ସମସ୍ୟା ଜାଣିପାରିଲେ ଏବଂ ଆଶ୍ୱାସନା ଦେଲେ ଯେ ଏଥିପାଇଁ ଚିନ୍ତା କରିବା ନିଷ୍ପ୍ରୟୋଜନ । କାର୍ଯ୍ୟତଃ ବଧୂ ନିଦରେ ଶୋଇଥିବା ବେଳେ ସେ କୌଶଳ କରି ଅଳଙ୍କାରଗୁଡ଼ିକ ଖୋଲିଦେଲେ । ନିଦରୁ ଉଠି ଶ୍ରୀମା' ଯେତେବେଳେ ଦେଖିଲେ ଯେ ତାଙ୍କ ଦେହରେ ଅଳଙ୍କାର ନାହିଁ, ସେ ଦୁଃଖରେ ବିଚଳିତ ହୋଇ ପଚାରିଲେ, ''ମୋର ଗହଣା କୁଆଡ଼େ ଗଲା ?'' ସରଳା ବାଳିକା ମୁହଁରୁ ଏକଥା ଶୁଣି ଚନ୍ଦ୍ରାଦେବୀ ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, ''ମା', ଗଦାଇ ତୋ ପାଇଁ ଏହାଠାରୁ କେତେ ଭଲ ଭଲ ଅଳଙ୍କାର ପରେ କରିଦେବ ।'' ବାଳିକା ଏକଥା ଶୁଣି ଶାନ୍ତ ହେଲେ ସତ, କିନ୍ତୁ ସେଦିନ ଜୟରାମବାଟୀରୁ ତାଙ୍କ ଦଦେଇ ଆସି ଝିଅାରୀଙ୍କୁ ନିରାଭରଣା ଦେଖି ଅତ୍ୟନ୍ତ କ୍ରୁଦ୍ଧ ହେଲେ ଏବଂ ମା'ଙ୍କୁ କୋଳରେ ନେଇ ଗାଁକୁ ଫେରିଗଲେ ।

ଶ୍ରୀରାମକୃଷ୍ଣ ସେଥର ପ୍ରାୟ ଦୁଇବର୍ଷକାଳ କାମାରପୁକୁରରେ ଥିଲେ । ବିବାହର ଦୁଇବର୍ଷ ପରେ ସେ ଥରେ ଶ୍ୱଶୁରଘରକୁ ଯାଇଥିଲେ । ସେହି ସମୟର କଥା ସ୍ମରଣ କରି ମା' କହିଥିଲେ, ''ମୋର ସାତବର୍ଷ ବୟସରେ ଠାକୁରେ ଜୟରାମବାଟୀ ଆସିଥିଲେ । ମୋତେ କହିଲେ, 'ତୁମକୁ ଯଦି କେହି ପଚାରେ କେତେବର୍ଷରେ ବିବାହ ହୋଇଛି, ତାହାଲେ ପାଞ୍ଚ ବର୍ଷ କହିବ, ସାତ ବର୍ଷ ନୁହେଁ ।'' ସେଥର ଠାକୁରଙ୍କ ସିହିତ ତାଙ୍କ ଭଣଜା ହୃଦୟ ମଧ୍ୟ ଆସିଥିଲେ । ସେ କେତେକ ପଦ୍ମଫୁଲ ସଂଗ୍ରହ କରି ଛୋଟ ମାଇଁଙ୍କୁ ଖୋଜି ବାହାର କଲେ ଏବଂ ତାଙ୍କ ଆପତ୍ତି ସତ୍ତ୍ୱେ ସେହି ଫୁଲ ତାଙ୍କ ପାଦରେ ଦେଇଥିଲେ । କେହି ଶିଖାଇ ନ ଦେଲେ ମଧ୍ୟ ସାରଦା ଠାକୁରଙ୍କ ପାଦ ଧୋଇ ତାଙ୍କୁ ପଙ୍ଖା କରିଥିଲେ ।

ତେର ଓ ଚଉଦ ବର୍ଷ ବୟସରେ ଶ୍ରୀମା' ଦୁଇଥର କାମାରପୁକୁରକୁ ଯାଇଥିଲେ । ସେତେବେଳେ ଠାକୁର ଦକ୍ଷିଣେଶ୍ୱରରେ । କିଛି ଦିନ ପରେ ୧୮୬୭ ଖ୍ରୀଷ୍ଟାବ୍ଦରେ ଠାକୁରେ ଭୈରବୀ ବ୍ରାହ୍ମଣୀ ଓ ହୃଦୟଙ୍କୁ ନେଇ କାମାରପୁକୁରକୁ

ଆସିଲେ ଓ ଶ୍ରୀମା'ଙ୍କୁ ଡକାଇ ପଠାଇଲେ । ଠାକୁରେ ସେଥର ସାତମାସ କାଳ କାମାରପୁକୁରରେ ଥିଲେ; ପରେ ଦକ୍ଷିଣେଶ୍ୱର ଫେରିଯାଇ ସାଧନ-ସମୁଦ୍ରରେ ନିମଜ୍ଜିତ ହେଲେ । ସ୍ୱାସ୍ଥ୍ୟର ବିଶେଷ ଅବନତି ହେବାରୁ ଚିକିତ୍ସକମାନଙ୍କ ପରାମର୍ଶ ଅନୁଯାୟୀ ସନ ୧୮୮୦ ପର୍ଯ୍ୟନ୍ତ ସେ ପ୍ରତିବର୍ଷ ବର୍ଷାକାଳ ଚାରିମାସ କାମାରପୁକୁରରେ କଟାଉଥିଲେ । ଶ୍ରୀମା' ମଧ୍ୟ ସେତେବେଳେ ତାଙ୍କ ନିକଟରେ ଆସି ରହୁଥିଲେ ।

କାମାରପୁକୁରରେ ଘଟିଥିବା ଗୋଟିଏ ଅଲୌକିକ ଘଟଣା ଶ୍ରୀମା' ପରବର୍ତ୍ତୀକାଳରେ ଏହି ଭାବରେ କହିଥିଲେ । ନିକଟବର୍ତ୍ତୀ ହାଲଦାର ପୁଷ୍କରିଣୀକୁ ଏକାକୀ ସ୍ନାନ କରିବାକୁ ଯିବା ପାଇଁ ସେ ସଂକୁଚିତ ହେଉଥିଲେ । ରାସ୍ତାକୁ ଆସି ଭାବିଲେ, ''ମୁଁ ନୂଆବୋହୂ, ଏକୁଟିଆ କିପରି ଗାଧୋଇବାକୁ ଯିବି ?'' ଚିନ୍ତା କରୁ କରୁ ଦେଖିଲେ ଆଠଟି ଝିଅ ଆସିଲେ ଓ ଶ୍ରୀମା'ଙ୍କ ସହିତ ଚାଲିବାକୁ ଆରମ୍ଭ କଲେ — ମା'ଙ୍କ ସାମନାରେ ଚାରିଜଣ ଓ ପଛରେ ଚାରିଜଣ । ସେମାନଙ୍କ ସହିତ ଗାଧୋଇ ମା' ଘରକୁ ଫେରିଆସିଲେ । ମା' ଯେତେଦିନ କାମାରପୁକୁରରେ ଥିଲେ ପ୍ରତିଦିନ ଏହିପରି ହେଉଥିଲା ।

ଜୟରାମବାଟୀ ଗ୍ରାମରେ ଦାରିଦ୍ର୍ୟ ଓ ସହସ୍ର କର୍ମ ମଧ୍ୟରେ ଥାଇ ସୁଦ୍ଧା ଶ୍ରୀମା'ଙ୍କର ବିଦ୍ୟାଶିକ୍ଷା ପ୍ରତି ଆଗ୍ରହ ଥିଲା । ଶ୍ୱଶୁରଘରକୁ ଆସି ପ୍ରତିକୂଳ ଅବସ୍ଥାରେ ମଧ୍ୟ ସେହି ସ୍ପୃହା ବର୍ଦ୍ଧିତ ହୋଇଥିଲା । ଶ୍ରୀମା' କହିଥିଲେ, ''କାମାରପୁକୁରରେ ଲକ୍ଷ୍ମୀ (ଠାକୁରଙ୍କର ଝିଆରୀ) ଓ ମୁଁ, 'ବର୍ଣ୍ଣପରିଚୟ' ଅଳ୍ପ ଅଳ୍ପ ପଢ଼ିଥିଲୁ । ହୃଦୟ ଆସି ବହିଟି ଆମ ନିକଟରୁ କାଢ଼ିନେଲା, 'ଝିଅମାନେ କ'ଣ ଲେଖିବା ପଢ଼ିବା ଶିଖିବେ ? ଲକ୍ଷ୍ମୀ କିନ୍ତୁ ବହି ଛାଡ଼ିଲା ନାହିଁ । ମୁଁ ମଧ୍ୟ ଗୋପନରେ ଅଣାଏ ପଇସା ଦେଇ ଆଉ ଗୋଟିଏ ବହି କିଣି ନେଲି । ଲକ୍ଷ୍ମୀ ଚାଟଶାଳୀକୁ ପଢ଼ିବା ପାଇଁ ଯାଉଥିଲା । ଘରକୁ ଫେରି ମୋତେ ପଢ଼ାଉଥିଲା ।'' ପରେ ଦକ୍ଷିଣେଶ୍ୱରରେ ମଧ୍ୟ ମା' ଯତ୍ନ ସହକାରେ ବିଦ୍ୟାଭାସ କରୁଥିଲେ । ଜଣେ ସ୍ତ୍ରୀଲୋକ ଗାଧୋଇବା ପାଇଁ ଆସି ପ୍ରତିଦିନ ମା'ଙ୍କୁ ପାଠ ପଢ଼ାଉଥିଲେ ଏବଂ ପଢ଼ାଇଥିବା ପାଠ ଆଦାୟ କରୁଥିଲେ । ଏହା ଫଳରେ ମା' ରାମାୟଣ ଇତ୍ୟାଦି ପଢ଼ିପାରୁଥିଲେ — କିନ୍ତୁ ବିଶେଷ ଲେଖିପାରୁ ନ ଥିଲେ ।

ଶାଶୁ ଓ ଶ୍ୱଶୁରଙ୍କ ପ୍ରତି ମା'ଙ୍କର ଗଭୀରଶ୍ରଦ୍ଧା ଥିଲା । ଶ୍ୱଶୁରଙ୍କ ସମ୍ବନ୍ଧରେ ମା' ପରେ କହିଥିଲେ, ''ମୋ ଶ୍ୱଶୁର ବଡ଼ ତେଜସ୍ୱୀ ଓ ନିଷ୍ଠାବାନ୍ ବ୍ରାହ୍ମଣ ଥିଲେ । ସେ ଅପରିଗ୍ରାହୀ ଥିଲେ । ତାଙ୍କର କିପରି ଜ୍ୱଳନ୍ତ ଭକ୍ତି ଥିଲା ! ମା' ଶୀତଳା ତାଙ୍କ ସଙ୍ଗେ ସଙ୍ଗେ ରହୁଥିଲେ । ପ୍ରତିଦିନ ଭୋରରୁ ଉଠି ପୂଜା ପାଇଁ ଫୁଲ ତୋଳିବାକୁ ଯାଉଥିଲେ । ଦିନେ ଲାହାବାବୁଙ୍କ ବଗିଚାରେ ଗୋଟିଏ ନଅବର୍ଷର ଝିଅ ଆସି କହିଲା, 'ବାବା ଏଠାକୁ ଆସ, ଏହି ଡାଳରେ ବହୁତ ଫୁଲ ଅଛି । ମୁଁ ଡାଳକୁ

ନୁଆଁଇ ଧରୁଛି, ତୁମେ ଫୁଲ ତୋଳ ।' ଏପରି ଥିଲେ ବୋଲି ତ ଭଗବାନ ତାଙ୍କ ଘରେ ଜନ୍ମ ନେଇଥିଲେ ।''

କାମାରପୁକୁରରେ ଶ୍ରୀମା' ସନ୍ତରଣ, ସଙ୍ଗୀତ ଓ ରନ୍ଧନାଦିରେ ବିଶେଷ ପଟୁତା ଅର୍ଜନ କରିଥିଲେ । ପଲ୍ଲୀବାଳାଙ୍କୁ ଏସବୁ କେହି ଶିଖାନ୍ତି ନାହିଁ—ଦେଖି ଶୁଣି ନିଜେ ଶିଖିବାକୁ ହୁଏ । ଶ୍ରୀଶ୍ରୀଠାକୁର କାମାରପୁକୁରରେ ଅବସ୍ଥାନକାଳରେ ଶ୍ରୀମା'ଙ୍କୁ ନାନାଭାବରେ ଶିକ୍ଷା ଦେଉଥିଲେ । ଗୋଟିଏ ଦିଗରେ ଯେପରି ଆଧ୍ୟାତ୍ମିକ ଜୀବନର ଆଦର୍ଶ ବିଷୟରେ ଉପଦେଶ ଦେଉଥିଲେ, ଠିକ୍ ସେପରି ଅନ୍ୟଦିଗରେ ତାଙ୍କୁ ଘରକରଣା କାମ, ଦେବ-ଦ୍ୱିଜ-ଅତିଥିସେବା, ଗୁରୁଜନଙ୍କ ପ୍ରତି ଶ୍ରଦ୍ଧା, କନିଷ୍ଠମାନଙ୍କ ପ୍ରତି ସ୍ନେହପରାୟଣତା, ପରିବାରର ସେବାରେ ଆତ୍ମସମର୍ପଣ ଇତ୍ୟାଦି ବିଷୟରେ ମଧ୍ୟ ଶ୍ରୀରାମକୃଷ୍ଣ ଶିକ୍ଷା ଦେଇଥିଲେ । ଯେଠାରେ ଯେମିତି, ସେଠାରେ ସେମିତି, ଯେତେବେଳେ ଯେମିତି, ସେତେବେଳେ ସେମିତି, ଯାହାକୁ ଯେମିତି, ତାହାକୁ ସେମିତି—ଏହି ନୀତିକୁ ଭିତ୍ତି କରି ଲୋକବ୍ୟବହାର, ପରିବାରରେ ସମସ୍ତଙ୍କ ରୁଚି, ସ୍ୱଭାବ ଓ ପ୍ରୟୋଜନ ଅନୁଯାୟୀ ସେମାନଙ୍କ ସହିତ ଆଦାନ-ପ୍ରଦାନ, ଗାଡ଼ିରେ ବା ଡଙ୍ଗାରେ ଯିବା ଆସିବା ସମୟରେ ଜିନିଷପତ୍ର ସମ୍ବନ୍ଧରେ ସତର୍କତା, ଏପରିକି ଦୀପର ବଳିତାଟି କିପରି ଭାବରେ ରଖାଯାଏ, ଇତ୍ୟାଦି କୌଣସି ବିଷୟ ସେ ଅପୂର୍ବ ଶିକ୍ଷାରୁ ବାଦ୍ ପଡ଼ିନାହିଁ । ଏହି କାମଗନ୍ଧହୀନ, ସ୍ୱାର୍ଥଶୂନ୍ୟ, ଆନନ୍ଦମିଶ୍ରିତ ଆଗ୍ରହ ସହିତ ଉପଦେଶ ଲାଭ କରି ସରଳା ପଲ୍ଲୀବାଳା କିପରି ଆନନ୍ଦବିଭୋର ବୋଧ କରୁଥିଲେ ତାହା ସେ ପରବର୍ତ୍ତୀ କାଳରେ ପ୍ରକାଶ କରିଥିଲେ—''ହୃଦୟରେ ଆନନ୍ଦର ପୂର୍ଣ୍ଣଘଟ ସ୍ଥାପିତ ରହିଛି, ଏପରି ସର୍ବଦା ଅନୁଭବ କରୁଥିଲି । ସେହି ଦିବ୍ୟ ଉଲ୍ଲାସରେ ଅନ୍ତର କିପରି ପୂର୍ଣ୍ଣ ରହୁଥିଲା, ତାହା କହି ବୁଝାଇହେବ ନାହିଁ ।''

ଠାକୁରେ ମା'ଙ୍କୁ ସଂସାରର ଅନିତ୍ୟତା ଓ ଦୁଃଖକଷ୍ଟ ବିଷୟ ବୁଝାଉଥିଲେ, କହୁଥିଲେ, ''ବୈରାଗ୍ୟ ଓ ଭଗବଦ୍ ଭକ୍ତି ହିଁ ସାର । ବିଲୁଆ କୁକୁରଙ୍କ ପରି କେତେଗୁଡ଼ିଏ ଛୁଆ ଜନ୍ମ ଦେଇ କଅଣ ହେବ ?'' ମା' ସବୁବେଳେ କର୍ମରେ ବ୍ୟସ୍ତ ରହୁଥିଲେ । କାମାରପୁକୁରରେ ଘରର ଯାବତୀୟ କାର୍ଯ୍ୟ ନିଜେ କରୁଥିଲେ ।

ଦିନେ ନିକଟବର୍ତ୍ତୀ ଗ୍ରାମରେ ଯାତ୍ରା ଅଭିନୟ ଦେଖିବା ପାଇଁ ଶ୍ରୀମା' ଜଣେ ମହିଳାଙ୍କ ସହିତ ସେଠାକୁ ଯିବାକୁ ଚାହିଁଲେ; କିନ୍ତୁ ଶ୍ରୀରାମକୃଷ୍ଣ ଅନୁମତି ଦେଲେ ନାହିଁ । ସାନ୍ତ୍ୱନା ଛଳରେ ସେ କହିଲେ—ସେ ନିଜେ ସମସ୍ତ ଅଭିନୟ କରି ଦେଖାଇବେ । ଏହି ଯାତ୍ରା ସେ ଥରେ ମାତ୍ର ଦେଖିଥିଲେ । କିନ୍ତୁ ଅପୂର୍ବ ସ୍ମୃତିଶକ୍ତି ଓ ନାଟ୍ୟ କୌଶଳ ସାହାଯ୍ୟରେ ସେ ସମସ୍ତ ପାଲାଟିକୁ ଏପରି ସୁନ୍ଦରଭାବରେ ଅଭିନୟ କଲେ ଯେ ସ୍ତ୍ରୀଲୋକମାନେ ଯାତ୍ରା ନ ଦେଖିବାର ଦୁଃଖ ଭୁଲି ମୁଗଧ୍ ଚିତ୍ତରେ ତାହା ଦେଖିବାକୁ ଲାଗିଲେ ।

କାମାରପୁକୁରରେ ଠାକୁରଙ୍କର ଆଚାରବ୍ୟବହାର ସମ୍ବନ୍ଧରେ ଶ୍ରୀମା' କହିଥିଲେ, ''ତାଙ୍କୁ କେବେହେଲେ ନିରାନନ୍ଦ ଦେଖିନାହିଁ । ପାଞ୍ଚବର୍ଷର ଶିଶୁ ସହିତ ହେଉ କିମ୍ବା ଜଣେ ବୃଦ୍ଧଙ୍କ ସହିତ ହେଉ, ସମସ୍ତଙ୍କ ସହିତ ସମଭାବରେ ମିଶି ଆନନ୍ଦ କରୁଥିଲେ । ସକାଳୁ ଉଠି କହୁଥିଲେ, ଆଜି ଏହି ଶାଗ ଖାଇବି, ଏହାକୁ ରାନ୍ଧ' ଇତ୍ୟାଦି । ତାହା ଶୁଣି ଆମେ ସେହିପରି ଯୋଗାଡ଼ କରୁଥିଲୁ ।''

ଦକ୍ଷିଣେଶ୍ୱରରେ ଦୀର୍ଘ ସାଧନାର ଅବସାନ ହେଲା । ସନ ୧୮୬୭ରେ ହୃଦୟ ଓ ଭୈରବୀ ବ୍ରାହ୍ମଣୀଙ୍କ ସହିତ ଶ୍ରୀରାମକୃଷ୍ଣ କାମାରପୁକୁରକୁ ଆସିଲେ । ସେ ପୂର୍ବରୁ ଆନୁଷ୍ଠାନିକଭାବେ ସନ୍ନ୍ୟାସ ଗ୍ରହଣ କରିଥିଲେ ଓ ଗୁରୁ ତୋତାପୁରୀଙ୍କ ନିକଟରୁ ଶୁଣିଥିଲେ, ''ସ୍ତ୍ରୀ ନିକଟରେ ଥିଲେ ସୁଦ୍ଧା ଯାହାର ତ୍ୟାଗ, ବୈରାଗ୍ୟ, ବିବେକ, ବିଜ୍ଞାନ ସର୍ବତୋଭାବେ ଅକ୍ଷୁଣ୍ଣ ରହେ ସେ ବ୍ୟକ୍ତି ଯଥାର୍ଥରେ ବ୍ରହ୍ମରେ ପ୍ରତିଷ୍ଠିତ । ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁ ଯେ ସମଭାବରେ ଆତ୍ମା ଭାବି ସେହିପରି ଦୃଷ୍ଟି ଓ ତଦନୁରୂପ ବ୍ୟବହାର କରିପାରନ୍ତି ତାଙ୍କର ଯଥାର୍ଥ ବ୍ରହ୍ମବିଜ୍ଞାନ ଲାଭ ହୋଇଛି । ସ୍ତ୍ରୀପୁରୁଷଙ୍କ ମଧ୍ୟରେ ଭେଦବୁଦ୍ଧି ସମ୍ପନ୍ନ ଅନ୍ୟାନ୍ୟ ସାଧକମାନେ ବ୍ରହ୍ମବିଜ୍ଞାନଠାରୁ ବହୁତ ଦୂରରେ ।'' ତତ୍ତ୍ୱଦର୍ଶୀ ତୋତାପୁରୀ ଏହା ମଧ୍ୟ କହିଥିଲେ ଯେ, ''ଶ୍ରୀରାମକୃଷ୍ଣଙ୍କ ଭଳି ନିର୍ବିକଳ୍ପସମାଧିବାନ୍ ପୁରୁଷ ଯଦି ନିର୍ବିକାର ଚିତ୍ତରେ ସହଧର୍ମିଣୀଙ୍କ ପ୍ରତି ସ୍ୱୀୟ କର୍ତ୍ତବ୍ୟ ପାଳନ କରନ୍ତି, ତେବେ ସେଥିରେ ଧର୍ମହାନି ହେବ ନାହିଁ ।'' ତେଣୁ ସରଳ, ସତ୍ୟନିଷ୍ଠ, ଧର୍ମସାଧନରେ ନିର୍ଭୀକ ଠାକୁର ଶ୍ରୀମା'ଙ୍କୁ କାହିଁକି ଗ୍ରହଣ କରିଥିଲେ, ତାହା ଆମେ ସହଜରେ ବୁଝିପାରୁ । ସେଥିରେ ତାଙ୍କର କୌଣସି କ୍ଷତି ହୋଇ ନାହିଁ । କିନ୍ତୁ ଭୈରବୀ ବ୍ରାହ୍ମଣୀଙ୍କ ଉପରେ ଏହାର ଅନ୍ୟ ପ୍ରତିକ୍ରିୟା ହେଲା । ଭୈରବୀଙ୍କୁ ଶ୍ରୀମା' ଯଥେଷ୍ଟ ଶ୍ରଦ୍ଧା କଲେ ସୁଦ୍ଧା ଠାକୁରଙ୍କ ସହିତ ତାଙ୍କର ସହଜ ମିଳାମିଶାକୁ ଭୈରବୀ ଯଥାଯଥ ଭାବରେ ଉପଲବ୍ଧି କରିପାରିଲେ ନାହିଁ । ସେ ଶ୍ରୀରାମକୃଷ୍ଣଙ୍କର ଭବିଷ୍ୟତ ଧର୍ମଜୀବନ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରିବାକୁ ଲାଗିଲେ । ସିଦ୍ଧଗୁରୁ ତୋତାପୁରୀ ଯାହାଙ୍କୁ ଏହି ବିଷୟରେ ନିଃଶଙ୍କ ଚିତ୍ତରେ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ, ସ୍ନେହାନ୍ଧ ବ୍ରାହ୍ମଣୀ ତାଙ୍କୁ ନିଜ ଅଞ୍ଚଳରେ ଘୋଡ଼ାଇ ରକ୍ଷା କରିବାକୁ ଅଗ୍ରସର ହେଲେ । ସେ ବୁଝିପାରିଲେ ନାହିଁ, ଏପରି ଚେଷ୍ଟା ବୃଥା । ପରେ ସେ ନିଜର ଦୋଷ ବୁଝିପାରି ଠାକୁରଙ୍କ ନିକଟରୁ କ୍ଷମା ମାଗିଥିଲେ ଏବଂ ତାଙ୍କର ଅନୁମତି ନେଇ କାଶୀଧାମକୁ ଯାତ୍ରା କରିଥିଲେ ।

ଠାକୁରଙ୍କ ଦିବ୍ୟ ସହଚର୍ଯ୍ୟ ହେତୁ ଶ୍ରୀମା'ଙ୍କର ଆଚାର-ବ୍ୟବହାର ଓ ଅନ୍ୟାନ୍ୟ ଚେଷ୍ଟା ଭିତରେ ଗୋଟିଏ ପରିବର୍ତ୍ତନ ଆସିଥିଲା । କିନ୍ତୁ ସାଧାରଣ ମାନବ-ମନ ତାହା ବୁଝିପାରିଥିଲା କି ନାହିଁ, ତାହା ସନ୍ଦେହଜନକ । କାରଣ ସେହି ପ୍ରଭାବ ତାଙ୍କୁ ଚପଳା ନ କରି ଶାନ୍ତସ୍ୱଭାବ-ସଂପନ୍ନ କରିଥିଲା, ପ୍ରଗଲ୍‌ଭା ନ କରି

ଚିନ୍ତାଶୀଳ କରିଥିଲା, ସ୍ୱାର୍ଥଦୃଷ୍ଟିନିବଦ୍ଧା ନ କରି ନିଃସ୍ୱାର୍ଥ ସେବିକା କରିଥିଲା ଏବଂ ଅନ୍ତରରୁ ସର୍ବପ୍ରକାର ଅଭାବବୋଧ ତିରୋହିତ କରି ସମସ୍ତଙ୍କ ଦୁଃଖ-କଷ୍ଟରେ ଅନନ୍ତ ସମବେଦନାସଂପନ୍ନ କରି ତାଙ୍କୁ କରୁଣାର ସାକ୍ଷାତ୍ ପ୍ରତିମାରେ ପରିଣତ କରିଥିଲା ।

## ଦେବୀଙ୍କ ଜାଗରଣ

ଜୟରାମବାଟୀକୁ ଫେରିଆସି ଶ୍ରୀଶ୍ରୀମା'ଦେଖିଲେ, ପଲ୍ଲୀଜୀବନ ପୂର୍ବଭଳି ଚାଲିଛି; ଜନକ-ଜନନୀ, ଭ୍ରାତା-ଭଗିନୀ, ଆତ୍ମୀୟ-ସ୍ୱଜନଙ୍କ ସ୍ନେହପ୍ରୀତି ସମଭାବରେ ରହିଛି; ଦୈନନ୍ଦିନ କର୍ମପ୍ରବାହ ପୂର୍ବଭଳି ଚାଲିଛି । କିନ୍ତୁ ପ୍ରାଣର ନିଭୃତ କୋଣରେ ଗୋଟିଏ ଅସ୍ଫୁଟ ବ୍ୟଥା ଯେପରି ମଝିରେ ମଝିରେ ଗୁମୁରି ଉଠିବାକୁ ଲାଗିଲା । କାମାରପୁକୁରରେ ଯେଉଁ ଦୈବ ଆନନ୍ଦର ଅଧିକାରିଣୀ ଶ୍ରୀମା' ହୋଇଥିଲେ, ତାହାର ସ୍ମୃତି ଅବିରାମ ହୃଦୟରେ ଜାଗ୍ରତ ରହି ତାଙ୍କୁ ମଥିତ କରିବାକୁ ଲାଗିଲା । ଦେଖୁ ଦେଖୁ ସୁଦୀର୍ଘ ଚାରିବର୍ଷ କାଳ କଟିଗଲା । ଏଥି ମଧ୍ୟରେ ଦକ୍ଷିଣେଶ୍ୱରରୁ ଗୋଟିଏ ଯୋଡ଼ିଏ କଥା ଗାଁରେ ଆସି ପହଞ୍ଚିଲା । ଗ୍ରାମବାସୀମାନେ ଶ୍ରୀରାମକୃଷ୍ଣଙ୍କର ସାଧନାଜନିତ ଦିବ୍ୟ ଅବସ୍ଥାର କଥା ବୁଝି ନ ପାରି ସିଦ୍ଧାନ୍ତ କଲେ ଯେ ସେ ଉନ୍ମାଦ । ଶ୍ରୀମା'ଙ୍କ ମନରେ ଓ କାର୍ଯ୍ୟରେ ପୂର୍ବଭଳି ଫୂର୍ତ୍ତି ନ ଥିଲା । ଯନ୍ତ୍ରପରି ସେ ସବୁ କରିଯାଉଥିଲେ । କିନ୍ତୁ ଅହରହ ଶ୍ରୀରାମକୃଷ୍ଣଙ୍କ ବିରହଜନିତ ମର୍ମବ୍ୟଥା ଯଦିଓ ସହାନୁଭୂତି ସଂପନ୍ନା ପଲ୍ଲୀରମଣୀମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା, ତଥାପି ଅଜ୍ଞତା ଓ ସଂକୀର୍ଣ୍ଣତା ହେତୁ ସେ ସହାନୁଭୂତି ଶ୍ରୀମା'ଙ୍କର ନିବିଡ଼ ବ୍ୟଥାକୁ ଅଧିକତର କରି ତାଙ୍କର ପଲ୍ଲୀ-ଜୀବନକୁ ଅସହନୀୟ କରିପକାଇଲା । ପରଦୁଃଖରେ ଯେଉଁମାନେ ଆନନ୍ଦ ପାଇଥାଆନ୍ତି, ସେମାନେ ମା'ଙ୍କୁ ଇଙ୍ଗିତ କରି କହିବାକୁ ଲାଗିଲେ—ସେ ପାଗଳର ସ୍ତ୍ରୀ । ଅଥବା ସହାନୁଭୂତି ଛଳରେ ନିଷ୍ଠୁର ଆଘାତ ଦେଇ କହୁଥିଲେ—ଶ୍ୟାମା-ଝିଅର ପାଗଳ ଜ୍ୱାଇଁ ସହିତ ବିବାହ ହୋଇଛି । ସତୀଙ୍କ ନିକଟରେ ପତିନିନ୍ଦା ଅସହ୍ୟ—ତେଣୁ ସେ କାହା ସହିତ ନ ମିଶି ସର୍ବଦା ନିଜକୁ କାମରେ ବ୍ୟସ୍ତ ରଖିଲେ । ଏକାନ୍ତ ଅସହ୍ୟବୋଧ କଲେ ଗାଁର ଭକ୍ତିମତୀ ସହୃଦୟା ରମଣୀ ଭାନୁ ପିଉସୀଙ୍କ ଘର ବାରଣ୍ଡାରେ କାନି ପାତି ଶୋଇ ପଡୁଥିଲେ । ଶୁଦ୍ଧ-ସ୍ୱଭାବା ଭାନୁ ପିଉସୀଙ୍କର ଗୋଟିଏ ଅନ୍ତର୍ଦୃଷ୍ଟି ଥିଲା । ଯାହାର ପ୍ରଭାବରେ ସେ ଶ୍ରୀରାମକୃଷ୍ଣଙ୍କ ଦିବ୍ୟଭାବର ଆଭାସ ପାଇଥିଲେ । ସେ ଶ୍ୟାମାସୁନ୍ଦରୀଙ୍କୁ କହିଥିଲେ, ''ତୁମର ଜ୍ୱାଇଁ ଶିବ, ସାକ୍ଷାତ୍ କୃଷ୍ଣ—ଏବେ ଯାହା ବିଶ୍ୱାସ କରୁନାହଁ, ପରେ ତାହା ଜାଣିପାରିବ ।'' ପ୍ରଥମରୁ ଭାନୁ ପିଉସୀ ଠାକୁର ଓ ଶ୍ରୀମା'ଙ୍କୁ ହରଗୌରୀ ରୂପେ ଚିହ୍ନି ପାରିଥିଲେ ।

କିନ୍ତୁ ଏହି ଭାବରେ ଆତ୍ମଗୋପନ କରି ଚିରକାଳ ରହିବା ସମ୍ଭବ ନୁହେଁ । ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ବିଭିନ୍ନ କଥା ଶୁଣିଲେ ମଧ୍ୟ ତାହା ଶ୍ରୀମା' ବିଶ୍ୱାସ କରିପାରୁ ନ ଥିଲେ । ଯାହାଙ୍କ ଦିବ୍ୟ ସାନ୍ନିଧ୍ୟ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲା, ସେ ପାଗଳ, ଏହା ବିଶ୍ୱାସଯୋଗ୍ୟ କଥା ନୁହେଁ । ଶ୍ରୀମା' ତେଣୁ ଠିକ୍ କଲେ, 'ସମସ୍ତେ ଯେତେବେଳେ ଏପରି କହୁଛନ୍ତି, ମୁଁ ନିଜେ ଥରେ ଯାଇ ଦେଖି ଆସେ ।' ଚୈତ୍ର ୧୨୭୮ ସାଲରେ ଗୋଟିଏ ପର୍ବ ଉପଲକ୍ଷେ ସେହି ଅଞ୍ଚଳରେ ବହୁ ସ୍ତ୍ରୀଲୋକ ଗଙ୍ଗାସ୍ନାନ ପାଇଁ ଯାଉଥିଲେ । ମା'ଙ୍କର ଇଚ୍ଛା ହେଲା ସେ ମଧ୍ୟ ସେମାନଙ୍କ ସହିତ ଯିବେ; କିନ୍ତୁ ପିତାଙ୍କୁ ସାହାସ କରି କିଛି କହିପାରିଲେ ନାହିଁ । ଜଣେ ପଲ୍ଲୀବାଳାଙ୍କ ମାଧ୍ୟମରେ ରାମଚନ୍ଦ୍ର ସବୁ ଜାଣିପାରି ଶ୍ରୀମା'ଙ୍କୁ ଯିବା ପାଇଁ ଅନୁମତି ଦେଲେ । କେବଳ ସେତିକି ନୁହେଁ, ସେ ନିଜେ ମଧ୍ୟ କନ୍ୟାଙ୍କ ସହିତ ଯିବା ପାଇଁ ମନସ୍ଥ କଲେ ।

କନ୍ୟା ଓ ସଙ୍ଗୀଗଣଙ୍କ ସହିତ ଶ୍ରୀରାମଚନ୍ଦ୍ର ତାରକେଶ୍ୱର ଦେଇ କଲିକତା ଦିଗକୁ ଯାତ୍ରା କଲେ । ପ୍ରାୟ ୬୦ ମାଇଲ ପଥ । ପ୍ରଥମ ଦୁଇଦିନ ବେଶ୍ ଭଲଭାବରେ କଟିଗଲା । ପଥ ପାର୍ଶ୍ୱରେ ଉନ୍ମୁକ୍ତ ପ୍ରାନ୍ତର, ପ୍ରାନ୍ତର ମଧ୍ୟେ ମଧ୍ୟେ ରବିଶସ୍ୟର ଶ୍ୟାମଳ ଛବି; କେଉଁଠି ବା ଘନ-ବୃକ୍ଷସମାଚ୍ଛନ୍ନ ଗ୍ରାମ । କେଉଁଠି କେଉଁଠି ପୁଷ୍ପସୁଶୋଭିତ ସରୋବର ନୟନମନକୁ ଆନନ୍ଦ ଦେଉଥାଏ । ପୁଣି ପଥ ମଝିରେ ମଝିରେ ବିସ୍ତୀର୍ଣ୍ଣ ବିଶାଳ ଅଶ୍ୱତ୍ଥବଟ ପ୍ରଭୃତି ବୃକ୍ଷସମୂହ କ୍ଳାନ୍ତ ପଥିକକୁ ବିଶ୍ରାମ ପାଇଁ ଆହ୍ୱାନ କରୁଥାଏ । ଦକ୍ଷିଣେଶ୍ୱରରେ ଶୀଘ୍ର ପହଞ୍ଚିବା ପାଇଁ ଶ୍ରୀମା'ଙ୍କର ଦେହ ଓ ମନରେ ଅଦମ୍ୟ ଉତ୍ସାହ ଥିଲେ ମଧ୍ୟ ମ୍ୟାଲେରିଆ ରୋଗ ଭୋଗି ଭୋଗି ମା'ଙ୍କର ସ୍ୱାସ୍ଥ୍ୟ ସେତେବେଳେ ଖୁବ୍ ଭଲ ନ ଥିଲା । ଏତେଦୂର ପଥ ଚାଲିବା ତାଙ୍କ ଜୀବନରେ ପ୍ରଥମ । ଅନ୍ୟମାନଙ୍କର ଅସୁବିଧା ହେବ, ପିତା ଉଦ୍‌ବିଗ୍ନ ହେବେ, ଇତ୍ୟାଦି ଭାବି ସେ ସଙ୍କୋଚବଶତଃ ନିଜ ଅସୁବିଧା କଥା ଦୁଇ ତିନି ଦିନ କିଛି କହି ନ ଥିଲେ । କିନ୍ତୁ ଶେଷରେ ଦିନେ ପ୍ରବଳ ଜ୍ୱରରେ ସମ୍ପୂର୍ଣ୍ଣ ଅକ୍ଷମ ହୋଇପଡ଼ିବାରୁ ପିତା ଓ ପୁତ୍ରୀଙ୍କୁ ବାଧ୍ୟ ହୋଇ ଗୋଟିଏ ଚଟିରେ ଆଶ୍ରୟ ନେବାକୁ ପଡ଼ିଲା । ଏହି ଅବସ୍ଥାରେ ଶ୍ରୀମା'ଙ୍କର ମନର ଅବସ୍ଥା ଆମେ ସହଜରେ ଅନୁମାନ କରିପାରୁ । ଜ୍ୱରର ଯନ୍ତ୍ରଣା ତାଙ୍କ ଜୀବନରେ ନୂତନ ନୁହେଁ । ସେଥିଯୋଗୁଁ ହତାଶ ହେବାର କୌଣସି କାରଣ ନ ଥିଲା । ସର୍ବାପେକ୍ଷା କଷ୍ଟଦାୟକ ଚିନ୍ତା ହେଲା, ସେ ପତିଙ୍କର ଦର୍ଶନ ଲାଭ କରିବାରେ ପୁଣି କେବେ ସକ୍ଷମ ହେବେ ? ଏହି ଚିନ୍ତା ଓ ଦୈହିକ ଯନ୍ତ୍ରଣା ମଧ୍ୟରେ ତାଙ୍କର ଗୋଟିଏ ଅଲୌକିକ ଦର୍ଶନ ହେଲା । ଜ୍ୱରର ପ୍ରଭାବରେ ଶ୍ରୀମା' ସେତେବେଳେ ସମ୍ପୂର୍ଣ୍ଣ ଅଚେତନ । ସେ ଦେଖିଲେ ପାଖରେ ଜଣେ ରମଣୀ ଆସି ବସିଲେ, ତାଙ୍କର ବର୍ଣ୍ଣ ଶ୍ୟାମଳ । କିନ୍ତୁ ଏପରି ସୁନ୍ଦର ରୂପ ସେ କେବେହେଲେ ଦେଖିନାହାନ୍ତି । ସେ ବସି ତାଙ୍କ ଦେହ

ଓ ମୁଣ୍ଡ ଆଉଁସିବାକୁ ଲାଗିଲେ । ଏପରି ନରମ ଶୀତଳ ହାତର ସ୍ପର୍ଶରେ ଦେହର କଷ୍ଟ ତତ୍‌କ୍ଷଣାତ୍ ତିରୋହିତ ହେଲା । ଶ୍ରୀମା' ପଚାରିଲେ, ''ତୁମେ କେଉଁଠାରୁ ଆସିଛ ମା' ?'' ନବାଗତା ରମଣୀ କହିଲେ ''ମୁଁ ଦକ୍ଷିଣେଶ୍ୱରରୁ ଆସିଅଛି ।'' ଶୁଣି ଅବାକ୍ ହୋଇ ଶ୍ରୀମା' କହିଲେ, ''ଦକ୍ଷିଣେଶ୍ୱରରୁ ? ମୁଁ ଠିକ୍ କରିଥିଲି ଦକ୍ଷିଣେଶ୍ୱରକୁ ଯିବି, ତାଙ୍କୁ (ଠାକୁରଙ୍କୁ) ଦେଖିବି, ତାଙ୍କର ସେବା କରିବି । କିନ୍ତୁ ରାସ୍ତାରେ ଜ୍ୱର ହେବାରୁ ଏସବୁ ଆଉ ମୋ ଭାଗ୍ୟରେ ନାହିଁ ।'' ରମଣୀ କହିଲେ ''ସେ କି କଥା ! ତୁମେ ଦକ୍ଷିଣେଶ୍ୱର ନିଶ୍ଚୟ ଯିବ, ଶୀଘ୍ର ଭଲ ହୋଇ ସେଠାକୁ ଯିବ, ତାଙ୍କୁ ଦେଖିବ । ତୁମରି ପାଇଁ ତ ମୁଁ ତାଙ୍କୁ ସେଠାରେ ଅଟକାଇ ରଖିଛି ।'' ଶ୍ରୀମା' କହିଲେ, ''ସତରେ ! ତୁମେ ଆମର କ'ଣ ହୁଅ ମା' ?'' ସ୍ତ୍ରୀ ଲୋକଟି କହିଲେ, ''ମୁଁ ତୁମର ଭଉଣୀ ।'' ମା' କହିଲେ, ''ସତରେ, ସେଇଥିପାଇଁ ତୁମେ ଆସିଛ !'' ଏପରି କଥାବାର୍ତ୍ତା ହେଉ ହେଉ ମା' ଶୋଇ ପଡ଼ିଲେ । ପରଦିନ ସକାଳେ ମା' ଉଠି ଦେଖିଲେ ଜ୍ୱର ସମ୍ପୂର୍ଣ୍ଣ ଛାଡ଼ିଯାଇଛି । ଏହି ଦିବ୍ୟ ଦର୍ଶନ ଲାଭ କରି ତାଙ୍କ ମନରେ ସେତେବେଳେ ଯଥେଷ୍ଟ ଉତ୍ସାହ ମଧ୍ୟ ଆସିଛି । ତେଣୁ ଏଠାରେ ବସି ନ ରହି ପିତାଙ୍କ ସହିତ ଧୀରେ ଧୀରେ ଅଗ୍ରସର ହେବାକୁ ଲାଗିଲେ । ରାସ୍ତାରେ ଗୋଟିଏ ପାଲିଙ୍କି ମଧ୍ୟ ମିଳିଗଲା । ପୁଣି ଥରେ ଜ୍ୱର ଆସିଲା । କିନ୍ତୁ ସେତେ ପ୍ରବଳ ନୁହେଁ । ଶ୍ରୀମା' ପିତାଙ୍କ ଦୁଶ୍ଚିନ୍ତା ନ ବଢ଼ାଇବା ପାଇଁ କିଛି କହିଲେ ନାହିଁ । କ୍ରମେ ସୁଦୀର୍ଘ ପଥ ଶେଷ କରି ଗଙ୍ଗା ପାରି ହୋଇ ରାତି ନଅଟା ସମୟରେ ଦକ୍ଷିଣେଶ୍ୱରରେ ପହଞ୍ଚିଲେ ।

ଦକ୍ଷିଣେଶ୍ୱର ଗଙ୍ଗାଘାଟରେ ସମସ୍ତେ ଯେତେବେଳେ ଓହ୍ଲାଉଛନ୍ତି, ସେତେବେଳେ ମା' ଶୁଣିବାକୁ ପାଇଲେ ଠାକୁରେ କହୁଛନ୍ତି, ''ଆରେ ହୃଦୟ, ଏବେ ବାରବେଳା ନାହିଁ ତ ରେ ? ପ୍ରଥମ ଥର ପାଇଁ ଆସିଛି ।'' ଶ୍ରୀମା' ନିଶ୍ଚିନ୍ତ ହେଲେ ଯେ, ସେ ଗଙ୍ଗା ଉପରେ ଆସୁ ଆସୁ ବାରବେଳା କଟି ଯାଇଛି । ଶ୍ରୀରାମକୃଷ୍ଣଙ୍କର ସେହି ପ୍ରଥମ କଥାରେ ଏପରି ଏକ ଦିବ୍ୟ ସ୍ପର୍ଶ ଥିଲା ଯେ ସେ ସିଧା ଠାକୁରଙ୍କ ଘରେ ଯାଇ ଉଠିଲେ । ଠାକୁର ଶ୍ରୀମା'ଙ୍କୁ କହିଲେ, ''ତୁମେ ଆସିଛ ? ବେଶ୍ କରିଛ ।'' ଘରେ ସତରଞ୍ଜି ବିଛା ହେଲା । ମା' ସେଥିରେ ଉପବେଶନ କଲେ । ଠାକୁରେ ଯେତେବେଳେ ଜାଣିଲେ ଯେ ଶ୍ରୀମା' ପୀଡ଼ିତା, ସେତେବେଳେ ସେ ତାଙ୍କର ଚିକିତ୍ସା ପାଇଁ ଚିନ୍ତିତ ହୋଇ ବାରମ୍ବାର କହିବାକୁ ଲାଗିଲେ, ''ତୁମେ ଏତେ ଦିନ ପରେ ଆସିଲ ? ଏବେ କଅଣ ମୋର ସେଜୋବାବୁ (ମଥୁରାବାବୁ) ଅଛନ୍ତି ଯେ ତୁମର ଯତ୍ନ କରିବେ ? ମୋର ଡାହାଣ ହାତ ଯେପରି ଭାଙ୍ଗି ଯାଇଛି ।'' କେତେ ମାସ ପୂର୍ବରୁ (୧୬ ଜୁଲାଇ, ୧୮୭୧ ଖ୍ରୀଷ୍ଟାବ୍ଦ) ଦକ୍ଷିଣେଶ୍ୱର କାଳୀମନ୍ଦିରର ପ୍ରତିଷ୍ଠାତ୍ରୀ ରାଣୀ ରାସମଣିଙ୍କର ଜାମାତା ଓ ଶ୍ରୀରାମକୃଷ୍ଣଙ୍କର ପରମ ଅନୁଗତ ଶିଷ୍ୟ ମଥୁରାନାଥ ଦେହତ୍ୟାଗ

କରିଥାଆନ୍ତି । କଥାବାର୍ତ୍ତା ପରେ ମା' ଯେତେବେଳେ ନହବତ୍‌କୁ ଯିବା ପାଇଁ ଉଦ୍ୟତ ହେଲେ, ଠାକୁର ସେତେବେଳେ ବାଧା ଦେଇ କହିଲେ, ''ନା, ନା, ନହବତ୍ ଘରେ ରହିଲେ ଡାକ୍ତର ଦେଖାଇବାର ଅସୁବିଧା ହେବ । ତେଣୁ ଏହି ଘରେ ରୁହ ।'' ଶ୍ରୀମା'ଙ୍କ ପାଇଁ ପୃଥକ୍ ଶଯ୍ୟା ହେଲା । ସଙ୍ଗିନୀ ଜଣେ ଝିଅ ମଧ୍ୟ ତାଙ୍କ ସହିତ ରହିଲା । ସେତେବେଳେ କାଳୀବାଡ଼ିରେ ସମସ୍ତଙ୍କର ଆହାର ହୋଇଯାଇଛି । ତେଣୁ ହୃଦୟରାମ ଦୁଇ ତିନି ସେର ମୁଢ଼ି ନେଇ ଆସିଲେ । ପରଦିନ ଚିକିତ୍ସକ ଆସି ଔଷଧପତ୍ର ଦେଲେ । ତିନି ଚାରିଦିନ ମଧ୍ୟରେ ଭଲ ହୋଇ ଶ୍ରୀମା' ନହବତ୍‌କୁ ଚାଲିଗଲେ । ଠାକୁରଙ୍କର ଜନନୀ ଚନ୍ଦ୍ରମଣି ମଧ୍ୟ ସେତେବେଳେ ସେଠାରେ ଅବସ୍ଥାନ କରୁଥିଲେ ।

ଶ୍ରୀରାମକୃଷ୍ଣଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି ଶ୍ରୀଶ୍ରୀମା'ଙ୍କର ଚକ୍ଷୁ-କର୍ଣ୍ଣର ବିବାଦ ଘୁଞ୍ଚିଲା । ଗାଁର ହୃଦୟହୀନ, ଅଜ୍ଞ ଲୋକମାନେ ମିଛ-ସତ କେତେ କଥା ନ ରଚାଉଛନ୍ତି—ଠାକୁରଙ୍କୁ ପାଗଳ ବୋଲି କହିବାକୁ ମଧ୍ୟ ଇତସ୍ତତଃ କରୁନାହାନ୍ତି । କିନ୍ତୁ ଆଜି ଶ୍ରୀମା' ପ୍ରତ୍ୟକ୍ଷ ଦେଖିଲେ ଯେ ଦେବତା, ଦେବତା ହିଁ ରହିଛନ୍ତି । ପତ୍ନୀଙ୍କୁ ଭୁଲିଯିବା ତ ଦୂରର କଥା, ସେ ବରଂ ବର୍ତ୍ତମାନ ଅଧିକ ଦୟାଳୁ । ସେ ପ୍ରାଣର ଉଲ୍ଲାସରେ ଠାକୁର ଓ ତାଙ୍କ ଜନନୀଙ୍କର ସେବାରେ ମନୋନିବେଶ କଲେ । ରାମଚନ୍ଦ୍ର ମଧ୍ୟ ଆଶ୍ୱସ୍ତ ହୋଇ କିଛିଦିନ ପରେ ଗାଁକୁ ଫେରିଗଲେ ।

ଶ୍ରୀରାମକୃଷ୍ଣ କାମାରପୁକୁରରେ ଅବସ୍ଥାନ କଲାବେଳେ ତୋତାପୁରୀଙ୍କ ଉପଦେଶ ଅନୁଯାୟୀ ନିଜ ସାଧନଲବ୍ଧ ବ୍ରହ୍ମଜ୍ଞାନର ଗଭୀରତା ପରୀକ୍ଷା ଏବଂ ପତ୍ନୀଙ୍କ ପ୍ରତି ନିଜ କର୍ତ୍ତବ୍ୟ ପାଳନରେ ଅଗ୍ରସର ହୋଇଥିଲେ । ପରେ ସୁଦୀର୍ଘ ଚାରିବର୍ଷ ବିଭିନ୍ନ ସାଧନାଦିରେ ତାଙ୍କର ଅତୀତ ହୋଇଛି । ବର୍ତ୍ତମାନ ପତ୍ନୀଙ୍କୁ ନିକଟରେ ପାଇ ସେ ପୁନର୍ବାର ଅସମାପ୍ତ କର୍ତ୍ତବ୍ୟ ସମ୍ପାଦନ ଦିଗରେ ଯତ୍ନବାନ ହେଲେ । ସେହି କର୍ତ୍ତବ୍ୟ ପତିପତ୍ନୀଙ୍କର ଚିରାଚରିତ ସାଧାରଣ ବ୍ୟବହାର ମାତ୍ରେ ନିଃଶେଷିତ ନ ହୋଇ ଅତିଜାଗତିକ ଭୂମିରେ ଗୁରୁଶିଷ୍ୟଙ୍କର ମନ୍ତ୍ର ଓ ସାଧନାରୂପେ ଆତ୍ମପ୍ରକାଶ କରି ମାନବର ଆଧ୍ୟାତ୍ମିକ ରାଜ୍ୟରେ ଏକ ନବୀନ ସମ୍ପଦ ଆନୟନ କରିଥିଲା ।

ଏହି ସମୟରେ ଠାକୁର ଅବସର ଅନୁଯାୟୀ ଶ୍ରୀମା'ଙ୍କୁ ଗୃହକର୍ମ, ଆତ୍ମୀୟବର୍ଗଙ୍କ ପ୍ରତି ବ୍ୟବହାର, ସାମାଜିକ ଭଦ୍ରତା ଇତ୍ୟାଦି ସାଂସାରିକ ଶିକ୍ଷାରୁ ଆରମ୍ଭ କରି ଭଜନ, କୀର୍ତ୍ତନ, ଧ୍ୟାନ, ସମାଧି—ଏପରିକି ବ୍ରହ୍ମଜ୍ଞାନ ବିଷୟକ ଉପଦେଶ ମଧ୍ୟ ଦେଉଥିଲେ । ଏହି ସବୁ ତତ୍ତ୍ୱକଥା ଶୁଣି ଶ୍ରୀମା'ଙ୍କ ନିକଟରେ ମାନବଜୀବନର କର୍ତ୍ତବ୍ୟ ଓ ଉଦ୍ଦେଶ୍ୟ ଅତି ସ୍ପଷ୍ଟ ଭାବରେ ପ୍ରତୀତ ହୋଇଥିଲା । ଠାକୁରେ ଦିନେ ତାଙ୍କୁ କହିଥିଲେ, ''ଜହ୍ନମାମୁଁ ଯେପରି ସମସ୍ତଙ୍କର 'ମାମୁଁ', ଈଶ୍ୱର ମଧ୍ୟ ସେହିପରି ସମସ୍ତଙ୍କର ଆପଣାର । ତାଙ୍କୁ ଡାକିବାର ଅଧିକାର

ସମସ୍ତଙ୍କର ଅଛି । ଯିଏ ତାଙ୍କୁ ଡାକିବ ତାକୁ ସେ ଦର୍ଶନ ଦେଇ କୃତାର୍ଥ କରିବେ । ତୁମେ ଡାକ, ତୁମେ ମଧ୍ୟ ଦର୍ଶନ ପାଇବ ।'' ସେ କେବଳ ଉପଦେଶ ଦେଇ କ୍ଷାନ୍ତ ହେଉ ନ ଥିଲେ, ଶ୍ରୀମା' ଏହିସବୁ କଥା ନିଜ ଜୀବନରେ କେତେଦୂର କାର୍ଯ୍ୟକାରୀ କରୁଛନ୍ତି, ସେଥିପ୍ରତି ମଧ୍ୟ ଦୃଷ୍ଟି ରଖୁଥିଲେ ।

ଶ୍ରୀଶ୍ରୀମା' ସାରାଦିନ ନହବତ୍‌ରେ ରହି ସଂସାରକର୍ମ କରୁଥିଲେ । ଦିନେ ଶ୍ରୀମା'ଙ୍କୁ ଏକାନ୍ତରେ ପାଇ ଠାକୁରେ ପରୀକ୍ଷା ଛଳରେ ପଚାରିଲେ, ''ତୁମେ କଅଣ ମୋତେ ସଂସାରକୁ ଟାଣିନେବାକୁ ଆସିଛ ?'' ଶ୍ରୀମା' ଇତସ୍ତତଃ ନ କରି ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ନା ! ମୁଁ ତୁମକୁ ସଂସାରକୁ କାହିଁକି ଟାଣିନେବି ? ତୁମକୁ ବରଂ ଇଷ୍ଟ-ପଥରେ ସାହାଯ୍ୟ କରିବାକୁ ଆସିଛି ।'' ଶ୍ରୀମା' ମଧ୍ୟ ଦିନେ ଠାକୁରଙ୍କର ପଦସେବା କରୁ କରୁ ତାଙ୍କୁ ପ୍ରଶ୍ନକଲେ, ''ମୋତେ ତୁମେ କେଉଁ ଦୃଷ୍ଟିରେ ଦେଖ ?'' ଠାକୁର ଉତ୍ତରରେ କହିଲେ, ''ଯେଉଁ ମା' ମନ୍ଦିରରେ ଅଛନ୍ତି, ସେହି ମା' ଏହି ଶରୀରକୁ ଜନ୍ମ ଦେଇଛନ୍ତି ଓ ବର୍ତ୍ତମାନ ନହବତ୍‌ରେ ବାସ କରୁଛନ୍ତି ଏବଂ ସେ ହିଁ ଏବେ ମୋର ପଦସେବା କରୁଛନ୍ତି । ତୁମକୁ ସର୍ବଦା ସାକ୍ଷାତ୍ ଆନନ୍ଦମୟୀ ବୋଲି ମୁଁ ପ୍ରକୃତରେ ଦେଖୁଥାଏ ।'' କାମଗନ୍ଧଶୂନ୍ୟ ଓ ମାନବୀୟ ଦେହସମ୍ବନ୍ଧବିହୀନ ଏହି ଅପାର୍ଥିବ ପ୍ରେମଲୀଳାର ଅନୁସରଣ କରିବାକୁ ହେଲେ ଆମମାନଙ୍କୁ କେତେଦୂର ଆତ୍ମସମାହିତ ହେବାକୁ ପଡ଼ିବ ତାହା ପାଠକମାନେ ଚିନ୍ତା କରି ଦେଖନ୍ତୁ ।

ଶ୍ରୀମା' ଠାକୁରଙ୍କ କକ୍ଷରେ ରାତ୍ରିରେ ଶୟନ କରୁଥିଲେ । କିନ୍ତୁ ଏହା ତ ସାଧାରଣ ଦାମ୍ପତ୍ୟ-ଜୀବନ ନୁହେଁ । ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀମା'ଙ୍କର ଏହି ଯେଉଁ ଆତ୍ମପରୀକ୍ଷା ତାହା ନିକଟରେ ଅଗ୍ନିପରୀକ୍ଷା ମଧ୍ୟ ତୁଚ୍ଛ ବୋଲି ମନେହୁଏ । ଦେହବୋଧଶୂନ୍ୟ ଠାକୁରଙ୍କର ସମସ୍ତ ରାତ୍ରି ସମାଧିରେ ଅତିବାହିତ ହୁଏ । ଗୋଟିଏ ରାତ୍ରିରେ ପାର୍ଶ୍ୱରେ ଶାୟିତା ଶ୍ରୀମା'ଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରି ବିଚାର କଲେ—''ମନ, ଏହାର ନାମ ସ୍ତ୍ରୀ-ଶରୀର । ଲୋକେ ଏହାକୁ ଚରମ ଭୋଗ୍ୟ ବସ୍ତୁ ବୋଲି ମନେ କରନ୍ତି ଏବଂ ଭୋଗ କରିବା ପାଇଁ ସର୍ବଦା ଲାଳାୟିତ ହୁଅନ୍ତି । କିନ୍ତୁ ଏହା ଗ୍ରହଣ କଲେ ଦେହରେ ଆବଦ୍ଧ ରହିବାକୁ ହୁଏ । ପ୍ରେମମୟ ଈଶ୍ୱରଙ୍କୁ ଲାଭ କରାଯାଏ ନାହିଁ । ଭିତରେ ଅସତ୍ୟ ଘୋଷଣା କର ନାହିଁ; ଠିକ୍ କରି କୁହ, ତୁ ଏହାକୁ ଗ୍ରହଣ କରିବାକୁ ଚାହୁଁ ନା ଈଶ୍ୱରଙ୍କୁ ଚାହୁଁ ? ଯଦି ଏହାକୁ ଚାହୁଁ, ତେବେ ଏହା ତୋ ସମ୍ମୁଖରେ ରହିଛି, ଏହାକୁ ଗ୍ରହଣ କର—ଏହିପରି ବିଚାର କରି ଶ୍ରୀମା'ଙ୍କ ଅଙ୍ଗ ସ୍ପର୍ଶ କରିବା ପାଇଁ ହସ୍ତ ପ୍ରସାରଣ କରିବା ମାତ୍ରେ ମନ କୁଣ୍ଠିତ ହୋଇ ଉଚ୍ଚ ସମାଧି-ପଥରେ ଲୀନ ହୋଇଗଲା—ସେ ରାତ୍ରିରେ ଆଉ ସାଧାରଣ ଭୂମିକୁ ଆସିଲା ନାହିଁ । ପରଦିନ ଦୀର୍ଘ ସମୟ ଧରି ଈଶ୍ୱରଙ୍କ ନାମ ଉଚ୍ଚାରଣ କରିବାରୁ ତାଙ୍କ ମନ ବ୍ୟବହାରିକ ଜଗତକୁ ଫେରି ଆସିଲା ।

ଶ୍ରୀମା' ଆଠମାସ କାଳ ଠାକୁରଙ୍କ ସହିତ ଏକ ଶଯ୍ୟାରେ ଶୟନ କରିଥିଲେ । ସେତେବେଳେ ଠାକୁରଙ୍କର ମନ ଯେପରି ଊର୍ଦ୍ଧ୍ୱଲୋକରେ ବିଚରଣ କରୁଥିଲା; ମା'ଙ୍କ ମନ ମଧ୍ୟ ଏହି ଆରାଧ୍ୟ ଦେବତାଙ୍କ ଧ୍ୟାନରେ ସର୍ବଦା ନିମଗ୍ନ ରହୁଥିଲା; ତେଣୁ କାହାରି ହେଲେ ଭୋଗ-ସ୍ପୃହାର ଅବକାଶ ନ ଥିଲା । ପରବର୍ତ୍ତୀ କାଳରେ ଭକ୍ତମାନଙ୍କ ନିକଟରେ ଠାକୁର ଶ୍ରୀମା'ଙ୍କ ମହିମା ବିଷୟରେ କହିଥିଲେ, ''ସେ ଯଦି ଏତେ ଭଲ ନ ହୋଇଥାନ୍ତା, ତା'ହେଲେ ମୋର ଦେହବୁଦ୍ଧି ଆସିଥାଆନ୍ତା କି ନାହିଁ କିଏ କହିପାରିବ ? ବିବାହ ପରେ ମା'ଙ୍କୁ (ଜଗଦମ୍ବାଙ୍କୁ) ବ୍ୟାକୁଳ ହୋଇ ପ୍ରାର୍ଥନା କରିଥିଲି, 'ମୋ ପତ୍ନୀଙ୍କ ମନରୁ କାମଭାବ ସମ୍ପୂର୍ଣ୍ଣ ଦୂର କରିଦିଅ ।' ତାହା ସହିତ ଏକତ୍ର ବାସ କରି ମୋର ବୋଧ ହୋଇଥିଲା ଯେ ମା' ମୋ ପ୍ରାର୍ଥନା ପ୍ରକୃତରେ ଶୁଣିଥିଲେ ।''

ଶ୍ରୀମା'ଙ୍କ ସହିତ ଠାକୁରଙ୍କର ଯଥାର୍ଥ ସମ୍ବନ୍ଧ ବହୁ ଭାବରେ ପ୍ରକଟିତ ହେଲେ ମଧ୍ୟ ଏହି ଅଭିବ୍ୟକ୍ତି ପରିପୂର୍ଣ୍ଣତା ଲାଭ କରିଥିଲା ଷୋଡ଼ଶୀ-ପୂଜା ମାଧ୍ୟମରେ । କ୍ଷୁଦ୍ର ବାଳିକାକୁ ଠାକୁର ପତ୍ନୀରୂପେ ଗ୍ରହଣ କରିଥିଲେ । କାମାରପୁକୁରରେ ଅବସ୍ଥାନ କାଳରେ ତାଙ୍କୁ ଦିବ୍ୟ ପ୍ରେମର ଆସ୍ୱାଦ ପ୍ରଦାନ କରିଥିଲେ ଏବଂ ଦକ୍ଷିଣେଶ୍ୱରରେ ତାହାଙ୍କୁ ଲୌକିକ ଓ ଦେବସୁଲଭ ଅପୂର୍ବ ସମ୍ପଦରାଶିରେ ଭୂଷିତ କରିଥିଲେ । ବର୍ତ୍ତମାନ ତାଙ୍କ ଦେବୀତ୍ୱର ଉଦ୍‌ବୋଧନକାଳ ସମାଗତ । ଯାହାଙ୍କୁ ଠାକୁର ନିଜ ଲୀଳା ସମ୍ପୂର୍ଣ୍ଣ କରିବା ପାଇଁ ରଖିଯିବେ, ତାଙ୍କୁ ନିଜ ଅନ୍ତରର ପୂଜା ନିବେଦନ କରି ନିଜ ପାଇଁ ଓ ମାନବସମାଜ ପାଇଁ ସେହି ଦେବୀଙ୍କୁ ତାଙ୍କ ଶକ୍ତି ବିଷୟରେ ଅବହିତ କରିବାର ପ୍ରୟୋଜନ ଥିଲା ।

୧୮୭୨ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ପାଞ୍ଚ ତାରିଖ ଅମାବାସ୍ୟା ତିଥିରେ ଦକ୍ଷିଣେଶ୍ୱର ମନ୍ଦିରରେ ଫଳହାରିଣୀ କାଳୀପୂଜାର ଆୟୋଜନ ଚାଲିଥାଏ । ଆଜି ରାତିରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଷୋଡ଼ଶୀ (ତ୍ରିପୁରସୁନ୍ଦରୀ) ମୂର୍ତ୍ତିରେ ଆରାଧନା କରିବାକୁ ଠାକୁରଙ୍କ ମନରେ ଆଗ୍ରହ ଉପସ୍ଥିତ ହୋଇଛି । କିନ୍ତୁ ପୂଜାର ଆୟୋଜନ ମନ୍ଦିରରେ ନ କରି ଠାକୁରଙ୍କ କକ୍ଷରେ ହୋଇଛି । ଏହିସବୁ କାମରେ ଠାକୁର ହୃଦୟର ସାହାଯ୍ୟ ନେଉଥିଲେ । କିନ୍ତୁ ହୃଦୟ ଆଜି କାଳୀ ମନ୍ଦିରରେ ପୂଜା କରିବେ; ତେଣୁ ସେ ପୂଜାର ଯଥାଯଥ ଆୟୋଜନ କରି ମନ୍ଦିରକୁ ଚାଲିଗଲେ । ପୂଜାଦ୍ରବ୍ୟ ସବୁ ଯଥାସ୍ଥାନରେ ସଜ୍ଜିତ ହେଲା । ଆରାଧ୍ୟ ଦେବୀଙ୍କର କୌଣସି ପ୍ରତିମା ନ ଥିଲେ ମଧ୍ୟ ତାଙ୍କ ପାଇଁ ଆଲିମ୍ପନଶୋଭିତ ପୀଠ ଠାକୁରଙ୍କ ଆସନର ଉତ୍ତରରେ ପୂଜକଙ୍କ ସମ୍ମୁଖରେ ସ୍ଥାପିତ ହେଲା । ଏହିପରି ଷୋଡ଼ଶୀପୂଜାର ସମସ୍ତ ଆୟୋଜନ ଶେଷ କରିବାରେ ରାତି ନଅଟା ବାଜିଗଲା ।

ଶ୍ରୀମା'ଙ୍କୁ ପୂଜା ସମୟରେ ଉପସ୍ଥିତ ରହିବା ପାଇଁ ଠାକୁର ପୂର୍ବରୁ କହି ରଖିଥିଲେ । ଏବେ ସେ କକ୍ଷକୁ ଆସି ନିବିଷ୍ଟ ମନରେ ପୂଜା ଦେଖିବାକୁ ଲାଗିଲେ ।

ମନ୍ତ୍ର ଉଚ୍ଚାରଣ କରି ପୂଜାଦ୍ରବ୍ୟ ସବୁ ଶୋଧନ କରି ସେ ଯଥାବିଧି ପୂର୍ବକୃତ୍ୟ ଶେଷ କଲେ ଓ ଶ୍ରୀମା'ଙ୍କୁ ନିର୍ଦ୍ଦିଷ୍ଟ ପୀଠରେ ଉପବେଶନ କରିବାକୁ ଇଙ୍ଗିତ କଲେ । ପୂଜା ଦେଖୁ ଦେଖୁ ମା'ଙ୍କର ଅର୍ଦ୍ଧବାହ୍ୟଦଶା ଉପସ୍ଥିତ ହୋଇଥିଲା । ତେଣୁ ସେ ମନ୍ତ୍ରମୁଗ୍ଧଙ୍କ ପରି ପରିଚାଳିତ ହୋଇ ଠାକୁରଙ୍କ ସମ୍ମୁଖସ୍ଥ ପୀଠରେ ଉପବେଶନ କଲେ । ମନ୍ତ୍ରପୂତ କଳସୀର ପାଣିଦ୍ୱାରା ଠାକୁର ଶ୍ରୀମା'ଙ୍କର ଅଭିଷେକ କଲେ । ତାପରେ ପ୍ରାର୍ଥନାମନ୍ତ୍ର ଉଚ୍ଚାରଣ କଲେ, ''ହେ ବାଳେ, ହେ ସର୍ବଶକ୍ତିର ଅଧିଶ୍ୱରୀ ମାତଃ, ତ୍ରିପୁରସୁନ୍ଦରୀ, ସିଦ୍ଧିଦ୍ୱାର ଉନ୍ମୁକ୍ତ କର । ଏହି (ଶ୍ରୀମା'ଙ୍କର) ଦେହ, ମନ ପବିତ୍ର କରି ଏଥିରେ ଆବିର୍ଭୂତ ହୁଅ ଓ ସର୍ବକଲ୍ୟାଣ ସାଧନ କର ।'' ପରେ ସେ ମାତା ଠାକୁରାଣୀଙ୍କ ଅଙ୍ଗରେ ଯଥାବିଧି ମନ୍ତ୍ର ବିନ୍ୟାସ କରି ସାକ୍ଷାତ୍ ଦେବୀଜ୍ଞାନରେ ତାଙ୍କର ଷୋଡ଼ଶୋପଚାର ପୂଜା କଲେ । ଅତଃପର ଭୋଗ ନିବେଦନ ହେଲା । ପୂଜକ ନିବେଦିତ ମିଷ୍ଟାନ୍ନର କିୟଦଂଶ ଦେବୀଙ୍କ ଶ୍ରୀମୁଖରେ ପ୍ରଦାନ କଲେ । ଦେଖୁ ଦେଖୁ ଶ୍ରୀମା' ବାହ୍ୟଜ୍ଞାନ ହରାଇ ସମାଧିସ୍ଥ ହେଲେ । ଠାକୁର ମଧ୍ୟ ମନ୍ତ୍ର ଉଚ୍ଚାରଣ କରୁ କରୁ ସମାଧିରାଜ୍ୟକୁ ଚାଲିଗଲେ । ସେହି ଭୂମିରେ ପୂଜକ ଓ ପୂଜିତା ଆତ୍ମସ୍ୱରୂପରେ ଏକୀଭୂତ ହେଲେ । ଦୀର୍ଘକାଳ କଟିଯିବା ପରେ ଗଭୀର ରାତିରେ ଠାକୁରଙ୍କର ଆଂଶିକ ବାହ୍ୟଦଶା ଫେରି ଆସିଲା । ସେ ଦେବୀଙ୍କୁ ଆତ୍ମନିବେଦନ କରି ନିଜ ସାଧନାର ଫଳ ଓ ଜପମାଳା ପ୍ରଭୃତି ସର୍ବସ୍ୱ ଦେବୀଙ୍କ ଶ୍ରୀଚରଣରେ ଚିରଦିନ ପାଇଁ ବିସର୍ଜନ ଦେଇ ତାଙ୍କୁ ପ୍ରଣାମ କଲେ— ''ହେ ସର୍ବମଙ୍ଗଳର ମଙ୍ଗଳସ୍ୱରୂପା, ହେ ସର୍ବକର୍ମନିଷ୍ପନ୍ନକାରିଣୀ, ହେ ଶରଣଦାୟିନୀ, ତ୍ରିନୟନୀ, ଶିବମୋହିନୀଗୌରୀ, ହେ ନାରାୟଣୀ ! ତୁମକୁ ପ୍ରଣାମ !'' ମୂର୍ତ୍ତିମତୀ ବିଦ୍ୟାରୂପିଣୀ ମାନବୀଙ୍କ ଦେହ ଅବଲମ୍ବନରେ ଈଶ୍ୱରୀଙ୍କର ଉପାସନା କରି ଠାକୁରଙ୍କର ସାଧନାର ପରିସମାପ୍ତି ହେଲା । ଶ୍ରୀଶ୍ରୀମାତାଠାକୁରାଣୀଙ୍କର ମଧ୍ୟ ଦେବୀତ୍ୱର ପୂର୍ଣ୍ଣ ବିକାଶର ଦ୍ୱାର ମୁକ୍ତ ହେଲା ।

ଶ୍ରୀମା'ଙ୍କୁ ସେତେବେଳେ ଅଠରବର୍ଷ ପୂର୍ଣ୍ଣ ହୋଇ ଉଣେଇଶି ବର୍ଷ ଚାଲିଥାଏ । ପୂଜା ବିଷୟରେ ଶ୍ରୀମା' ପରବର୍ତ୍ତୀ କାଳରେ ଭକ୍ତମାନଙ୍କୁ କହିଥିଲେ ଯେ, ପ୍ରଥମେ ଠାକୁର ମା'ଙ୍କ ପାଦରେ ଅଳତା, କପାଳରେ ସିନ୍ଦୂର ଲଗାଇ ଦେଲେ, ନୂତନ ବସ୍ତ୍ର ପିନ୍ଧାଇ ଦେଲେ, ମୁହଁରେ ପାନ ଓ ନୈବେଦ୍ୟ ପ୍ରଦାନ କଲେ । ଶ୍ରୀମା' ଭାବ-ରାଜ୍ୟରେ ଆରୂଢ଼ ହୋଇ ଠାକୁରଙ୍କ ପୂଜା ଓ ତତ୍‌ସହିତ ତାଙ୍କର ସମସ୍ତ ସାଧନାଲବ୍ଧ ଫଳ ଗ୍ରହଣ କଲେ । ବସ୍ତୁତଃ ବିନା ସାଧନାରେ ସେ ସିଦ୍ଧିର ଅଧିକାରିଣୀ ହେଲେ । ଶ୍ରୀଶ୍ରୀଠାକୁର ମଧ୍ୟ ସହଧର୍ମିଣୀଙ୍କ ପ୍ରତି ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ପାଳନ କରି ଋଣମୁକ୍ତ ହେଲେ ।

ଷୋଡ଼ଶୀ ପୂଜା ପରେ ମଧ୍ୟ ଶ୍ରୀମା' ପାଞ୍ଚ ଛଅ ମାସ କାଳ ରାତିରେ ଠାକୁରଙ୍କ କକ୍ଷରେ ଶୟନ କରିଥିଲେ । ଠାକୁରଙ୍କର ଭାବ ଓ ସମାଧି ସହିତ

ପୂର୍ଣ୍ଣଭାବରେ ପରିଚିତ ନ ଥିବାରୁ, ସେ ଯେପରି ପତିଙ୍କ ସନ୍ନିଧାନରେ ଆନନ୍ଦିତ ହେଉଥିଲେ, ସେପରି ଅନ୍ୟ ଦିଗରେ ଭୟରେ ବିନିଦ୍ର ରଜନୀ କଟାଉଥିଲେ । ସେ କହିଥିଲେ, ''ଠାକୁରେ ଯେ କିପରି ଅପୂର୍ବ ଦିବ୍ୟଭାବରେ ଅବସ୍ଥାନ କରୁଥଲେ, ତାହା ବର୍ଣ୍ଣନା କରିବା ଅସମ୍ଭବ । ସେହି ଅବସ୍ଥାରେ କେତେବେଳେ ହସ, କେତେବେଳେ କାନ୍ଦ, କେତେବେଳେ ସମ୍ପୂର୍ଣ୍ଣ ଭାବ ସମାଧିସ୍ଥ—ଏହି ଭାବରେ ସାରା ରାତି କଟିଯାଉଥିଲା । ସେହି ଦିବ୍ୟ ଆବେଶ ଦେଖି ଭୟରେ ମୋର ଦେହ କମ୍ପୁଥିଲା । କେତେବେଳେ ସକାଳ ହେବ ସେହି ଅପେକ୍ଷାରେ ରହୁଥିଲି । ଦିନେ ତାଙ୍କର ସମାଧି ଭାଙ୍ଗୁ ନାହିଁ ଦେଖି ହୃଦୟଙ୍କୁ ଡକାଇ ପଠାଇଲି । ସେ ଆସି କାନରେ ଭଗବାନଙ୍କର ନାମ ଉଚ୍ଚାରଣ କରିବାରୁ କେତେବେଳକେ ଯାଇ ତାଙ୍କର ଚୈତନ୍ୟ ହେଲା । ତେଣୁ ସେ ମୋତେ ଶିଖାଇ ଦେଇଥିଲେ କେଉଁ ପ୍ରକାର ଭାବ ହେଲେ କି କି ନାମ ଶୁଣାଇବାକୁ ହେବ । ତଥାପି କେତେବେଳେ ଯେ ତାଙ୍କର ଭାବସମାଧି ହେବ, ତାହା ଚିନ୍ତା କରି ସାରା ରାତି ଚେଇଁ ରହୁଥିଲି । ଏକଥା ଠାକୁର ଦିନେ ଜାଣିପାରି ମୋତେ ନହବତ୍‌ରେ ଅଲଗା ଶୋଇବାକୁ ନିର୍ଦ୍ଦେଶ ଦେଲେ ।''

ଶ୍ରୀଶ୍ରୀମା' ଠାକୁର ଓ ତାଙ୍କ ଜନନୀ ଚନ୍ଦ୍ରମଣି ଦେବୀଙ୍କୁ ସର୍ବାନ୍ତକରଣରେ ସେବା କରିବାକୁ ଲାଗିଲେ । ଚନ୍ଦ୍ରମଣି ଦେବୀ ଶେଷ ବୟସରେ ବୋହୂଙ୍କ ଉପରେ ନିର୍ଭର କରୁଥିଲେ । ଠାକୁରଙ୍କ ସେବାକୁ ଅବଲମ୍ବନ କରି ଯେଉଁ ସାହଚର୍ଯ୍ୟ ପାଉଥିଲେ, ତାହା ଶ୍ରୀମା'ଙ୍କ ପକ୍ଷରେ ଯଥେଷ୍ଟ ଥିଲା । ବାହ୍ୟଭୂମିରେ ଅବସ୍ଥାନ କାଳରେ ଠାକୁର ପ୍ରକୃତିଭାବର ପ୍ରାଧାନ୍ୟବଶତଃ ନିଜକୁ ଜଗଦମ୍ବାଙ୍କ ସଖୀ ବା ପରିଚାରିକା ବୋଲି ମନେ କରୁଥିଲେ ଏବଂ ଶ୍ରୀମା'ଙ୍କୁ ମଧ୍ୟ ସେହି ଦୃଷ୍ଟିରେ ଦେଖୁଥିଲେ । ଠାକୁରଙ୍କ ସେବାରେ ତାଙ୍କର କୌଣସି ଦାବୀ ନ ଥିଲା । ଠାକୁର ଯେତେବେଳେ ଯେତିକି ଚାହୁଁଥିଲେ ଶ୍ରୀମା' ତାହା ସଂପାଦନା କରି ତୃପ୍ତ ରହୁଥିଲେ ।

ଷୋଡ଼ଶୀ ପୂଜାର ପ୍ରାୟ ବର୍ଷେ ପରେ ଶ୍ରୀମା' ଅସୁସ୍ଥ ହୋଇ ପଡ଼ିଲେ । ଠାକୁରଙ୍କ ଭକ୍ତ ଶ୍ରୀ ଶମ୍ଭୁନାଥ ମଲ୍ଲିକ ଅନେକ ଚିକିତ୍ସା କରାଇଲେ, କିନ୍ତୁ ଫଳ ହେଲା ନାହିଁ । ଅଗତ୍ୟା ଠାକୁରଙ୍କର ଉଦ୍‌ବେଗ ହ୍ରାସ କରିବା ପାଇଁ ଶ୍ରୀଶ୍ରୀମା' ଜୟରାମବାଟୀ ଯିବା ଠିକ୍ କଲେ ।

## ଦୈବାଧୀନା

ପ୍ରାୟ ବର୍ଷେକାଳ ଗାଁରେ ରହି ୧୨୮୧ ସାଲ ବୈଶାଖ ମାସରେ ଶ୍ରୀମା' ଦକ୍ଷିଣେଶ୍ୱରକୁ ଫେରିଲେ । ଏହି କେତେମାସ ଭିତରେ ଦୁଇଟି ମର୍ମାନ୍ତିକ ଘଟଣା ଘଟିଥିଲା । ୧୨୮୦ ସାଲ ମାର୍ଗଶୀର ମାସ ୨୭ ତାରିଖ ଦିନ ଠାକୁରଙ୍କ ମଝିଆ

ଭାଇ ଶ୍ରୀଯୁକ୍ତ ରାମେଶ୍ୱର ଦେହରକ୍ଷା କଲେ । ଚୈତ୍ରମାସ ୧୪ ତାରିଖ ଦିନ ରାମନବମୀ ତିଥିରେ ରାମଗତପ୍ରାଣ ଶ୍ରୀଶ୍ରୀମା'ଙ୍କ ପିତୃଦେବ ଶ୍ରୀଯୁକ୍ତ ରାମଚନ୍ଦ୍ର ଇହଲୋକ ତ୍ୟାଗ କଲେ । ପିତୃସ୍ନେହରେ ଲାଳିତା ପ୍ରଥମା କନ୍ୟାଙ୍କ ହୃଦୟରେ ସେହି ବ୍ୟଥା କିପରି ଆଘାତ କରିଥିଲା ତାହା ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ । ସମ୍ଭବତଃ ଏହି ବେଦନାରୁ ମନକୁ ରକ୍ଷା କରିବା ପାଇଁ ଶ୍ରୀଶ୍ରୀମା' ମାସକ ମଧ୍ୟରେ ଦକ୍ଷିଣେଶ୍ୱରକୁ ଫେରିଯାଇଥିଲେ ।

ପତିଙ୍କ ଦେହତ୍ୟାଗ ପରେ ଶ୍ୟାମାସୁନ୍ଦରୀଦେବୀଙ୍କ ଦୁଃଖର କଥା କହିଲେ ନ ସରେ; ଘରେ ଅର୍ଥ ନାହିଁ, ପୁଅମାନେ ସମସ୍ତେ ଅଳ୍ପ ବୟସ୍କ, ଚାଷ-ବାସ ଦେଖିବା ପାଇଁ ଲୋକ ନାହିଁ । ଶ୍ୟାମାସୁନ୍ଦରୀ ଅନ୍ୟମାନଙ୍କ ଘରୁ ଧାନ ଆଣି ଢିଙ୍କିରେ କୁଟୁଥିଲେ ଓ ପାରିଶ୍ରମିକ ସ୍ୱରୂପ ତାହାର ଏକ ଚତୁର୍ଥାଂଶ ପାଉଥିଲେ । ଏହିଭଳି ବିଭିନ୍ନ କଷ୍ଟସାଧ୍ୟ କର୍ମ କରି ପରିବାର ପ୍ରତିପାଳନ କରୁଥିଲେ ।

ଦକ୍ଷିଣେଶ୍ୱରକୁ ଆସି ଶ୍ରୀମା' ଆମାଶୟ ରୋଗରେ ଆକ୍ରାନ୍ତ ହେଲେ । ଚିକିତ୍ସାରେ କିଛି ଫଳ ହେଲା ନାହିଁ । ତଥାପି ଶାଶୁ ଓ ପତିଙ୍କୁ ଛାଡ଼ି ସେ ଅନ୍ୟତ୍ର ଯିବାକୁ ଚାହିଁଲେ ନାହିଁ । ଟିକିଏ ଭଲ ହେବାରୁ ସେ ୧୨୮୨ ସାଲ ଆଶ୍ୱିନ ମାସରେ ଗାଁକୁ ଗଲେ । କିନ୍ତୁ ସେଠାରେ ରୋଗ ଏତେ ବଢ଼ିଗଲା ଯେ ଜୀବନ-ରକ୍ଷା ସଂଶୟର ବିଷୟ ହୋଇଉଠିଲା । ଶ୍ରୀଶ୍ରୀମା'ଙ୍କ ଶରୀର ଏତେ ଦୁର୍ବଳ ହୋଇ ପଡ଼ିଥିଲା ଯେ ବାରମ୍ବାର ଶୌଚ ଯିବା ପାଇଁ ଅକ୍ଷମ ହୋଇ ନିକଟବର୍ତ୍ତୀ ପୋଖରୀ କୂଳରେ ସେ ଶୋଇ ରହୁଥିଲେ । ପୋଖରୀ ପାଣିରେ ନିଜର ଅସ୍ଥିଚର୍ମସାର ଦେହର ପ୍ରତିଛବି ଦେଖି ସେ ଭାବିଲେ, 'ଛି ! ଦେହର ଏହି ଅବସ୍ଥା ! ଦେହ ଏଇଠି ପଡ଼ିରହୁ—ମୁଁ ଦେହ ଛାଡ଼ିଯିବି ! ସେତେବେଳେ ମା'ଙ୍କ ଦେହ ଫୁଲି ଯାଇଛି, ନାକ କାନ ଦେଇ ରସ ବାହାରୁଛି । ଭାଇ ଉମେଶ କହିଲା, ''ଦେଈ ! ଏଠାରେ ସିଂହବାହିନୀ ଦେବୀ ଅଛନ୍ତି । ସେଠାରେ ଅଧିଆ ପଡ଼ ।'' ସେଦିନ ପୂର୍ଣ୍ଣିମା ରାତି । କିନ୍ତୁ ଶ୍ରୀମା'ଙ୍କ ନିକଟରେ ତାହା ଅମାବାସ୍ୟା ପରି ଅନ୍ଧାର । ଆଖିରୁ ପାଣି ଝରି ଝରି ଦୃଷ୍ଟି ଶକ୍ତି ପ୍ରାୟ ଚାଲିଯାଇଛି । ସେ ଦେବୀଙ୍କ ମନ୍ଦିର ସମ୍ମୁଖରେ ଅଧିଆ ପଡ଼ିଲେ । ଶ୍ରୀମା'ଙ୍କ ଭାଷାରେ, ''ସେହି ଅବସ୍ଥାରେ ଅଣ୍ଡାଳି ଅଣ୍ଡାଳି ଶୌଚ କ୍ରିୟା କଲି । ଧରମ ମା'(ଭିକ୍ଷା ମା')ଙ୍କ ଘର ନିକଟରେ—ସେ ମଝିରେ ମଝିରେ ଗଳା ଖଙ୍କାରି ଦେଉଥାଏ, ମୁଁ ଯେପରି ନ ଡରେ । କିଛି ସମୟ ପରେ ମୋ ମାଆଙ୍କୁ ଦେବୀ ଦେଖା ଦେଲେ । କୁମ୍ଭାରଘର ଝିଅ ରୂପରେ ଆସି କହିଲେ, 'ଯାଇ ତାକୁ ଉଠାଇ ଆଣ । ଏହି ଅବସ୍ଥାରେ ତାକୁ ପକାଇ ରଖିଛ ? ଶୀଘ୍ର ଆଣ । ଏହି ଔଷଧ ଦିଅ । ଏଥିରେ ଭଲ ହୋଇଯିବ ।' ଦେବୀ ମୋତେ କହିଲେ, 'ଲାଉ ଫୁଲ ଲୁଣ ସହିତ ରଗଡ଼ି ତା'ର ରସ ଆଖିରେ ଦେ, ଆଖି ଭଲ ହୋଇଯିବ ।' ମା'ଙ୍କୁ ଦେଇଥିବା ଔଷଧ ଖାଇଲି ଓ ଲାଉଫୁଲରସ

ଆଖିରେ ଦେଲି । ଆଖିରୁ ସବୁ ମଇଳା ବାହାରିଗଲା ଓ ଆଖି ଭଲ ହୋଇଗଲା । ଦେହଫୁଲା କମିଗଲା, ସ୍ୱାସ୍ଥ୍ୟ ଫେରି ଆସିଲା । ଲୋକେ ପଚାରିଲେ ଉତ୍ତର ଦେଉଥିଲି, 'ମା ସିଂହବାହିନୀ ଔଷଧ ଦେଇଛନ୍ତି ।'

ଦୈବୀଶକ୍ତି ଯେ ଅମୋଘ ଏହା ତାହାର ଏକ ପ୍ରତ୍ୟକ୍ଷ ପ୍ରମାଣ । ସିଂହବାହିନୀଙ୍କ ପ୍ରତି ଶ୍ରୀମା'ଙ୍କର ଅଗାଧ ଭକ୍ତି, ଶ୍ରଦ୍ଧା ଥିଲା । ଶ୍ରୀମା' ଆରୋଗ୍ୟଲାଭ କରିବା ଦେଖି ଦୂରଦୂରାନ୍ତରୁ ବହୁ ଲୋକ ଦେବୀଙ୍କ ନିକଟକୁ ଆସିବାକୁ ଲାଗିଲେ ଓ ନିଜ ନିଜ ଈପ୍‌ସିତ ବସ୍ତୁ ଲାଭ କରି କୃତାର୍ଥ ହେବାକୁ ଲାଗିଲେ ।

ଶ୍ରୀମା' ଯେତେବେଳେ ଜୟରାମବାଟୀରେ ଅସୁସ୍ଥ, ସେହି ଅବସ୍ଥାରେ ୨୭ ଫେବୃଆରୀ ୧୮୭୬ ଖ୍ରୀଷ୍ଟାବ୍ଦରେ ଦକ୍ଷିଣେଶ୍ୱରଠାରେ ଚନ୍ଦ୍ରମଣିଦେବୀ ଭଗବତ୍-ପାଦପଦ୍ମରେ ମିଳିତ ହେଲେ ।

ଆମାଶୟ ରୋଗ ଭୋଗିବାର କିଛିଦିନ ପରେ ମା' ପୁଣି ମ୍ୟାଲେରିଆ ରୋଗଦ୍ୱାରା ଆକ୍ରାନ୍ତ ହେଲେ । ପ୍ଲୀହା ବଢ଼ିଯିବାରୁ ନିକଟବର୍ତ୍ତୀ ଗ୍ରାମ କୟାପାଟ ବଦନ୍‌ଗଞ୍ଜରେ ଚିଆଁ ଦିଆହେଲା । ଏହା ସେତେବେଳର ଏକ ବିକଟ ଗ୍ରାମ୍ୟ ଚିକିତ୍ସା । ଗୋଟିଏ ଜଳନ୍ତା କାଠଖଣ୍ଡ ପେଟ ଉପରେ ଘଷା ହେଉଥିଲା । ରୋଗୀକୁ ଚାରିପାଞ୍ଚଜଣ ଲୋକ ମାଡ଼ିବସୁଥିଲେ । କଷ୍ଟରେ ଅଧୀର ହୋଇ ରୋଗୀ ଚିତ୍କାର କରୁଥିଲା । ଯେତେବେଳେ ମା'ଙ୍କର ପାଳି ଆସିଲା, ତିନିଚାରିଜଣ ଲୋକ ତାଙ୍କୁ ଧରିବାକୁ ଆସିବାରୁ ମା' କହିଲେ, ''ମୋତେ ଧରାଧରି କରିବାକୁ ପଡ଼ିବ ନାହିଁ । ମୁଁ ଚୁପ୍ କରି ଶୋଇ ରହିବି ।'' ସେ ସେହି ଅମାନୁଷିକ ଯନ୍ତ୍ରଣା ନୀରବରେ ସହିଥିଲେ । ପରେ ଯେକୌଣସି କାରଣରୁ ହେଉ ପ୍ଲୀହା ବୃଦ୍ଧି କମିଗଲା ।

ସ୍ୱାମୀଙ୍କ ଅବସ୍ଥା ଅସ୍ୱଚ୍ଛଳ ନ ହେଲେ ସୁଦ୍ଧା ଶ୍ରୀମା' ନିଜ ପାଇଁ ତାଙ୍କ ନିକଟରୁ କେବେହେଲେ କୌଣସି ସାହାଯ୍ୟ ମାଗି ନାହାନ୍ତି । ଘରେ ଦୁଃଖ-କଷ୍ଟ ସବୁ ମୁହଁ ବୁଜି ସହିଛନ୍ତି ଏବଂ ଦେବତାଙ୍କୁ ନିଜ ମନର ମିନତି ଜଣାଇଛନ୍ତି । ଯେଉଁଘରେ ଏପରି ଶରଣାଗତି ଅଛି ଏବଂ ଶ୍ରୀମତୀ ଶ୍ୟାମାସୁନ୍ଦରୀଙ୍କ ଭଳି ଭକ୍ତିମତୀ ମାତା ଘରର ଗୃହିଣୀ, ସେଠାରେ ଦେବତାଙ୍କ ଆବିର୍ଭାବ ଅବଶ୍ୟମ୍ଭାବୀ । ଥରେ ଗାଁର କାଳୀପୂଜା ସମୟରେ ଗ୍ରାମ୍ୟ ସଂକୀର୍ଣ୍ଣତାବଶତଃ ଶ୍ୟାମାସୁନ୍ଦରୀଙ୍କ ସଂଗୃହୀତ ପୂଜାର ଚାଉଳ ଫେରାଇ ଦିଆଗଲା । ଶ୍ୟାମାସୁନ୍ଦରୀ ବହୁ ଯତ୍ନ ଓ ଭକ୍ତିସହକାରେ ତାହା ସଂଗ୍ରହ କରି ରଖିଥିଲେ, କିନ୍ତୁ ଅନ୍ୟମାନଙ୍କ ନିଷ୍ଠୁରତା ହେତୁ ସେ ତାହା ଦେବୀଙ୍କୁ ଅର୍ପଣ କରିପାରିଲେ ନାହିଁ । ମର୍ମପୀଡ଼ିତା ହୋଇ ସେ ସାରା ରାତି ଅଶ୍ରୁପାତ କଲେ ଏବଂ ଦୁଃଖ କରି କହିବାକୁ ଲାଗିଲେ, ''କାଳୀଙ୍କ ପାଇଁ ଚାଉଳ ରଖିଥିଲି, ମୋ ଚାଉଳ ନେଲେ ନାହିଁ । ଏ ଚାଉଳ କିଏ ଖାଇବ ?'' ରାତିରେ ସ୍ୱପ୍ନରେ ଜଣେ ଦେବୀ ଆସି ତାଙ୍କୁ ସ୍ପର୍ଶ କରି ଜାଗ୍ରତ କଲେ । ଶ୍ୟାମାସୁନ୍ଦରୀ ଚାହିଁ

ଦେଖିଲେ, ରକ୍ତବର୍ଣ୍ଣା ସେହି ଦେବୀ ଦୁଆରବନ୍ଧ ଉପରେ ଗୋଡ଼ ଉପରେ ଗୋଡ଼ ରଖି ବସିଅଛନ୍ତି । ସେ କହୁଛନ୍ତି, ''ତୁମେ କାନ୍ଦୁଛ କାହିଁକି ? କାଳୀଙ୍କ ଚାଉଳ ମୁଁ ଖାଇବି—ତୁମେ ଚିନ୍ତା କରୁଛ କାହିଁକି ?'' ଶ୍ୟାମାସୁନ୍ଦରୀ ପଚାରିଲେ, ''ତୁମେ କିଏ ?'' ଦେବୀ ଉତ୍ତର ଦେଲେ, ''ମୁଁ ଜଗଦମ୍ବା, ଜଗଦ୍ଧାତ୍ରୀ ରୂପରେ ତୁମର ପୂଜା ଗ୍ରହଣ କରିବି ।''

ପରଦିନ ଶ୍ୟାମାସୁନ୍ଦରୀ ମା'ଙ୍କୁ ପଚାରିଲେ, ''ଆଲୋ ସାରଦା ! ନାଲିରଙ୍ଗ, ଗୋଡ଼ ଉପରେ ଗୋଡ଼ ଦେଇ ବସିଥିବା ସେ ଠାକୁର କିଏ ?'' ଶ୍ରୀମା' ଉତ୍ତର ଦେଲେ, ''ସେ ଜଗଦ୍ଧାତ୍ରୀ ।'' ଆଇମା' ଏହାଶୁଣି କହିଲେ, ''ଜଗଦ୍ଧାତ୍ରୀଙ୍କୁ ପୂଜା କରିବି ।'' ସେ ବିଶ୍ୱାସଙ୍କ ଘରୁ ପାଞ୍ଚ ମହଣ ଧାନ ଅଣାଇଲେ । ସେତେବେଳେ ଦିନରାତି ବର୍ଷା ଚାଲିଥାଏ । ଆଇମା' କହିଲେ, ''ମା', ତୁମର କିପରି ପୂଜା କରିବି ? ଧାନ ଶୁଖାଇ ପାରିଲି ନାହିଁ ।'' କିନ୍ତୁ ମା'ଙ୍କ କୃପାରୁ ଏପରି ହେଲା ଯେ ଚାରିଆଡ଼େ ବର୍ଷା ଚାଲିଛି, କିନ୍ତୁ ଆଇମା'ଙ୍କ ଅଗଣାରେ ଖରା । ପ୍ରତିମାକୁ ଶୁଖାଇ ସେଥିରେ ରଙ୍ଗ ଦିଆହେଲା । ମା'ଙ୍କ ଭାଇ ପ୍ରସନ୍ନ ଦକ୍ଷିଣେଶ୍ୱର ଯାଇ ଠାକୁରଙ୍କୁ ସମ୍ବାଦ ଦେଲେ । ସେ ଶୁଣି କହିଲେ, ''ମା' ଆସିବେ ? ବେଶ୍ ଭଲ କଥା ।'' ମାମୁଁ କହିଲେ, ''ଆପଣଙ୍କୁ ନେବା ପାଇଁ ଆସିଛି ।'' ଠାକୁର କହିଲେ, ''ଏହି ମୋର ଯିବା ହେଲା, ବେଶ୍ କଥା, ପୂଜା କର । ତୁମମାନଙ୍କର ମଙ୍ଗଳ ହେବ ।'' ଜଗଦ୍ଧାତ୍ରୀ ପୂଜା ହେଲା । ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ବହୁ ଲୋକ ପୂଜା ଦେଖିବା ପାଇଁ ଆସିଥିଲେ । ପ୍ରତିମା ବିସର୍ଜନ ସମୟରେ ଆଇମା' ଜଗଦ୍ଧାତ୍ରୀଙ୍କୁ କାନରେ କହି ରଖିଲେ, ''ମା' ଜଗାଇ, ପୁଣି ଆର ବର୍ଷ ଆସିବ ! ମୁଁ ତୁମ ପାଇଁ ସାରାବର୍ଷ ଧରି ସବୁ ଯୋଗାଡ଼ କରି ରଖିବି ।''

ପରବର୍ଷ ଆଇମା' ଯେତେବେଳେ ଶ୍ରୀମା'ଙ୍କୁ ପୂଜା କଥା କହିଲେ, ଶ୍ରୀମା' ସେଥିରେ ଆପତ୍ତି କଲେ । କହିଲେ, ''ବର୍ଷେ ପୂଜା ହେଲା, ପ୍ରତିବର୍ଷ ପୂଜାର ଆୟୋଜନ କଅଣ ?'' ରାତ୍ରିରେ ଶ୍ରୀମା' ସ୍ୱପ୍ନ ଦେଖିଲେ, ଦେବୀ ତାଙ୍କ ସଖୀମାନଙ୍କ ସହିତ ଆସି ହାଜିର—ଜଗଦ୍ଧାତ୍ରୀ ଓ ତାଙ୍କର ଦୁଇ ସଖୀ—ଜୟା ଓ ବିଜୟା । ସେମାନେ କହିଲେ, ''ତେବେ ଆମେ ଫେରିଯିବୁ ?'' ଶ୍ରୀମା' ପଚାରିଲେ, ''ତୁମେମାନେ କିଏ ?'' ଦେବୀ କହିଲେ, ''ମୁଁ ଜଗଦ୍ଧାତ୍ରୀ ।'' ଶ୍ରୀମା' ଶୁଣି ବ୍ୟସ୍ତ ହୋଇ କହିଲେ, ''ନା, ତୁମେମାନେ କାହିଁକି ଯିବ ? ତୁମେ ରୁହ, ତୁମକୁ ଯିବା ପାଇଁ ତ ମୁଁ କହିନି !'' ସେହିବର୍ଷଠାରୁ ପ୍ରତିବର୍ଷ ଜଗଦ୍ଧାତ୍ରୀ -ପୂଜା ଅନୁଷ୍ଠିତ ହୋଇ ଆସୁଛି । ଘରେ ସେତେବେଳେ ବେଶୀ ଲୋକ ନ ଥିଲେ । ତେଣୁ ପୂଜା ସମୟରେ ବିଭିନ୍ନ କାମ କରିବା ପାଇଁ ପ୍ରତିବର୍ଷ ଶ୍ରୀମା' ଜୟରାମବାଟୀକୁ ଆସୁଥିଲେ । ଏହି ପୂଜା ଉତ୍ତମ ରୂପେ କରିବା ପାଇଁ ଶ୍ରୀମା' କିଛି ଦେବୋତ୍ତର ଜମି ମଧ୍ୟ ରଖି ଯାଇଛନ୍ତି । ଏହି ଜମିର ଆୟରୁ ପ୍ରତିବର୍ଷ

ପୂଜା ଅନୁଷ୍ଠିତ ହୋଇଆସୁଛି । ଦେବୀଙ୍କର ଉଭୟ ପାର୍ଶ୍ୱରେ ଜୟା ଓ ବିଜୟାଙ୍କ ପ୍ରତିମା ସ୍ଥାପିତ ଓ ପୂଜିତ ହୁଏ । ଭକ୍ତମାନେ ବିଶ୍ୱାସ କରନ୍ତି ଯେ ଜଗଦ୍ଧାତ୍ରୀ ସ୍ୱୟଂ ଶ୍ରୀମା'ଙ୍କ ରୂପ ଧରି ଅବତୀର୍ଣ୍ଣ ହୋଇଥିଲେ । ସୁତରାଂ ଦେବୀଙ୍କର ଆରାଧନା କଲେ ମା' ମଧ୍ୟ ସେଠାରେ ଆବିର୍ଭୂତା ହୁଅନ୍ତି ।

## ଆଲୋକ–ଛାୟାରେ

ଚନ୍ଦ୍ରମଣିଦେବୀଙ୍କ ଦେହରକ୍ଷା ପରେ ୧୮୭୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୭ ତାରିଖ ଦିନ ଶ୍ରୀମା' ଦକ୍ଷିଣେଶ୍ୱରକୁ ଫେରି ଆସିଲେ ଏବଂ ଠାକୁରଙ୍କ ସେବାରେ ଆତ୍ମନିୟୋଗ କଲେ । ଏହା ତାଙ୍କର ତୃତୀୟ ଆଗମନ ।

ମଥୁରାନାଥଙ୍କ ଦେହତ୍ୟାଗ ପରେ ଜଗଦମ୍ବାଙ୍କ ଇଚ୍ଛାନୁଯାୟୀ ପରମ ଭକ୍ତ ଶ୍ରୀଶମ୍ଭୁନାଥ ମଲ୍ଲିକ ଠାକୁରଙ୍କର ସମସ୍ତ ବ୍ୟୟଭାର ବହନ କରୁଥିଲେ । ସେ ଠାକୁର ଓ ମା'ଙ୍କର ସବୁ ପ୍ରକାର ସେବା ପାଇଁ ସର୍ବଦା ପ୍ରସ୍ତୁତ ଥିଲେ । ଶମ୍ଭୁବାବୁଙ୍କ ଭଳି ଭକ୍ତିପରାୟଣ ବ୍ୟକ୍ତିଙ୍କ ପକ୍ଷରେ ଏହା ବୁଝିବାରେ ବିଳମ୍ବ ହେଲା ନାହିଁ ଯେ ଗ୍ରାମର ସ୍ୱାଧୀନତା ମଧ୍ୟରେ ପାଳିତା ମାତାଠାକୁରାଣୀଙ୍କ ପକ୍ଷରେ ଏହି ସ୍ୱଳ୍ପପରିସର ନହବତ୍ ଘରେ ବାସ କରିବା ଅତ୍ୟନ୍ତ କଷ୍ଟଦାୟକ । ଅତଏବ ଶ୍ରୀମା' ୧୮୭୮ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଦକ୍ଷିଣେଶ୍ୱରକୁ ଫେରିବା ପୂର୍ବରୁ ସେ କାଳୀବାଡ଼ି ନିକଟରେ ଗୋଟିଏ ଚାଳଘର ନିର୍ମାଣ କରିବା ପାଇଁ କିଛି ଜମି କିଣି ରଖିଥିଲେ । ନେପାଳ ସରକାରଙ୍କ କର୍ମଚାରୀ ଶ୍ରୀଯୁକ୍ତ ବିଶ୍ୱନାଥ ଉପାଧ୍ୟାୟ (କ୍ୟାପ୍‌ଟେନ୍) ସେତେବେଳେ ଶ୍ରୀରାମକୃଷ୍ଣଙ୍କ ପ୍ରତି ବିଶେଷ ଶ୍ରଦ୍ଧାସଂପନ୍ନ । ସେ, ଗୃହନିର୍ମାଣର ଶୁଭ ସଂକଳ୍ପ କଥା ଶୁଣି ପ୍ରୟୋଜନୀୟ କାଠ ପ୍ରଦାନ କରିଥିଲେ । ଗଙ୍ଗାର ପଶ୍ଚିମ ତୀରବର୍ତ୍ତୀ ବେଲୁଡ଼ ଗ୍ରାମର କାଠଗୋଲାରୁ ଯଥା ସମୟରେ ତିନୋଟି ଶାଳ କାଠଗଡ଼କୁ ଗଙ୍ଗାରେ ଭସାଇ ଭସାଇ ଆଣି ଦକ୍ଷିଣେଶ୍ୱରରେ ପହଞ୍ଚାଇଥିଲେ । ଗୃହନିର୍ମାଣ ସମାପ୍ତ ହେବାରୁ ଶ୍ରୀମା' ସେଠାରେ ଅବସ୍ଥାନ କରିବାକୁ ଲାଗିଲେ । ତାଙ୍କୁ ଗୃହକର୍ମରେ ସାହାଯ୍ୟ କରିବା ପାଇଁ ତାଙ୍କ ସହିତ ଜଣେ ସ୍ତ୍ରୀଲୋକଙ୍କୁ ନିଯୁକ୍ତ କରାଗଲା । ହୃଦୟଙ୍କ ପତ୍ନୀ ମଧ୍ୟ ଏହି ଘରେ ମା'ଙ୍କ ସହିତ ରହିବାକୁ ଲାଗିଲେ ।

ଶ୍ରୀଶ୍ରୀମା' ଏହି ଘରେ ଠାକୁରଙ୍କର ରୁଚି ଅନୁଯାୟୀ ଖାଦ୍ୟ ପ୍ରସ୍ତୁତ କରି ଠାକୁରବାଡ଼ିକୁ ନେଇଯାଉଥିଲେ ଏବଂ ଠାକୁରଙ୍କୁ ଭୋଜନ କରାଇ ଫେରି ଆସୁଥିଲେ । ଠାକୁର ମଧ୍ୟ କେବେ କେବେ ଏହି ଘରକୁ ଆସୁଥିଲେ ଏବଂ କିଛି ସମୟ କଥାବାର୍ତ୍ତା କରି ଫେରିଯାଉଥିଲେ । ଏହି ଘରେ ଶ୍ରୀମା' ବେଶୀଦିନ ରହିପାରିଲେ ନାହିଁ । ଠାକୁରଙ୍କର ଆମାଶୟ ରୋଗ ଯୋଗୁଁ ସେବା କରିବା ପାଇଁ ଶ୍ରୀମା' ପୁଣି ନହବତ୍ ଘରେ ରହିବାକୁ ଲାଗିଲେ । ରୋଗ ଏତେ ବଢ଼ିଗଲା

ଯେ ଠାକୁରଙ୍କ ପକ୍ଷରେ ବାରମ୍ବାର ଶୌଚ ଯିବା ମଧ୍ୟ ଅସମ୍ଭବ ହୋଇଉଠିଲା । ଏହି ଅବସ୍ଥାରେ ଦୈବକ୍ରମେ କାଶୀରୁ ଜଣେ ସାଧିକା ଆସି ପହଞ୍ଚିଲେ ଓ ଠାକୁରଙ୍କର ସେବାଭାର ନିଜେ ଗ୍ରହଣ କଲେ । ତାଙ୍କର ଅତୀତ ଓ ଭବିଷ୍ୟତ ସମ୍ପୂର୍ଣ୍ଣ ଅଜ୍ଞାତ । ସେ ଯେପରି ଦୈବ ନିର୍ଦ୍ଦେଶରେ ବିଜୁଳି ପରି ଅକସ୍ମାତ୍ ଆବିର୍ଭୂତ ହେଲେ ଓ ଠାକୁର ସୁସ୍ଥ ହୋଇ ଉଠିବା ପରେ ଚିରଦିନ ପାଇଁ କୁଆଡ଼େ ଅନ୍ତର୍ହିତ ହୋଇଗଲେ ! ଶ୍ରୀମା' ପରବର୍ତ୍ତୀ କାଳରେ କାଶୀଧାମରେ ବହୁ ଚେଷ୍ଟା କରି ମଧ୍ୟ ତାଙ୍କର କୌଣସି ସନ୍ଧାନ ପାଇଲେ ନାହିଁ । ଆଗନ୍ତୁକା ମହିଳା ଶ୍ରୀମା'ଙ୍କୁ ଠାକୁରଙ୍କ ସେବା ପାଇଁ ନହବତ୍‌ରେ ଆସି ରହିବାକୁ ପରାମର୍ଶ ଦେଇଥିଲେ ।

ଦିନେ ରାତିରେ ଠାକୁର ଭଗବତ୍-ଭାବରେ ବିଭୋର ହୋଇ ଶ୍ରୀମା' ଓ ଆଗନ୍ତୁକା ମହିଳାଙ୍କୁ ବହୁ ଈଶ୍ୱରୀୟ କଥା କହିବାକୁ ଲାଗିଲେ । ସେହି ଉପଦେଶର ଆକର୍ଷଣରେ ସେମାନେ ଏତେ ତନ୍ମୟ ହୋଇ ଉଠିଲେ ଯେ ସକାଳ ହୋଇ ସୂର୍ଯ୍ୟ ଉଇଁବା ପରେ ମଧ୍ୟ ତାହା ସେମାନେ ଜାଣିପାରି ନ ଥିଲେ ।

ଠାକୁର ସୁସ୍ଥ ହୋଇ ଉଠିଲେ । ଶ୍ରୀମା' ଜୟରାମବାଟୀକୁ ଯାତ୍ରା କଲେ । ସମ୍ଭବତଃ ୧୨୮୭ ସାଲରେ ଶ୍ରୀଶ୍ରୀମା', ଆଇମା, ଲକ୍ଷ୍ମୀ ଦେବୀ ଓ ଅନ୍ୟ କେତେଜଣ ଦକ୍ଷିଣେଶ୍ୱରକୁ ଆସିଥିଲେ; କିନ୍ତୁ ହୃଦୟଙ୍କର ଦୁର୍ବ୍ୟବହାର ଯୋଗୁଁ ସେଠାରେ ରହିବାପାଇଁ ଅନିଚ୍ଛୁକ ହୋଇ ସେହିଦିନ ଗାଁକୁ ଫେରିଗଲେ । ମର୍ମାନ୍ତିକ ବେଦନା ନେଇ ଶ୍ରୀମା' ଫେରି ଆସିଲେ । କିନ୍ତୁ ସେଥିପାଇଁ ସ୍ୱାମୀଙ୍କ ଉପରେ ତାଙ୍କର କୌଣସି ଅଭିମାନ ହେଲା ନାହିଁ କିମ୍ବା ହୃଦୟଙ୍କ ଉପରେ ମଧ୍ୟ ସେ କୌଣସି ଅଭିଶାପ ବର୍ଷଣ କରି ନାହାନ୍ତି । ହୃଦୟ ଅହଙ୍କାରରେ ମତ୍ତ ହୋଇ ମର୍ଯ୍ୟାଦା ଲଙ୍ଘନ କଲେ । ଅପାତଦୃଷ୍ଟିରେ ସେ ହୁଏତ ଇଚ୍ଛାନୁଯାୟୀ କାମ କରିପାରିଥିବାରୁ ଖୁସୀ ହୋଇଥିବେ—କିନ୍ତୁ ବିଧାତା ତାଙ୍କର ଭାବୀ ଜୀବନ ଅନ୍ୟପ୍ରକାର ଗଢୁଥିଲେ । ପୂର୍ବେ ଶ୍ରୀମା'ଙ୍କ ସହିତ ଦୁର୍ବ୍ୟବହାର କରିବା ଦେଖି ଠାକୁର ତାଙ୍କୁ ସାବଧାନ କରିଦେଇଥିଲେ—''ଆରେ ହୃଦେ ! (ନିଜ ଦେହ ଦେଖାଇ) ୟାକୁ ତୁ ତାଚ୍ଛଲ୍ୟ କରୁ ବୋଲି ତାଙ୍କୁ (ଶ୍ରୀମା'ଙ୍କୁ) ଏପରି କଥା ଆଉ କେବେ କହିବୁ ନାହିଁ । ଏହା ଭିତରେ ଯିଏ ଅଛି, ସିଏ ରାଗିଗଲେ ହୁଏତ ରକ୍ଷା ପାଇପାରୁ ! କିନ୍ତୁ ତା ଭିତରେ ଯିଏ ଅଛି, ସିଏ ରାଗିଲେ ତୋତେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବି ରକ୍ଷା କରିପାରିବେ ନାହିଁ ।'' କିନ୍ତୁ ହୃଦୟଙ୍କ କଠିନ ହୃଦୟ ଉପରେ ସେହି କଥାର କୌଣସି ପ୍ରଭାବ ପଡ଼ିଲା ନାହିଁ । ତେଣୁ ଦୈବ ନିର୍ବନ୍ଧରୁ ତାଙ୍କୁ ଦକ୍ଷିଣେଶ୍ୱର ଛାଡ଼ି ମା'ଙ୍କୁ ପୁନରାଗମନର ପଥ ପରିଷ୍କାର କରିଦେବାକୁ ହେଲା ।

ଠାକୁରଙ୍କ ପୁତୁରା ରାମଲାଲ କାଳୀମନ୍ଦିରରେ ପୂଜାରୀ ହୋଇ ଗର୍ବରେ ଆତ୍ମହରା ହେଲେ ଏବଂ ଠାକୁରଙ୍କର ତଦାରଖରେ ହେଳା କରିବାକୁ ଲାଗିଲେ । ମା' କାଳୀଙ୍କ ପ୍ରସାଦ ଠାକୁରଙ୍କ ଘରେ ପଡ଼ିରହି ଶୁଖି ଯାଉଥିଲା, କିନ୍ତୁ ସେଥିପ୍ରତି

କାହାରି ଦୃଷ୍ଟି ନ ଥିଲା । ଠାକୁର ସର୍ବଦା ଭାବାବସ୍ଥାରେ ରହୁଥିଲେ । ଅସୁବିଧା ହେବାରୁ ଠାକୁର ଜୟରାମବାଟୀକୁ ବାରମ୍ବାର ସମ୍ବାଦ ପ୍ରେରଣ କରିବାକୁ ଲାଗିଲେ । ମା'ଙ୍କୁ ଫେରି ଆସିବା ଲାଗି ଠାକୁର କହି ପଠାଇଲେ, ''ତୁମେ ନିଶ୍ଚୟ ଆସିବ—ସବାରିରେ ହେଉ ବା ପାଲିଙ୍କିରେ ହେଉ; ଦଶଟଙ୍କା ଲାଗୁ ବା କୋଡ଼ିଏ ଟଙ୍କା ଲାଗୁ—ମୁଁ ଦେବି ।'' ଏପରି ଆହ୍ବାନ ପାଇ ଶ୍ରୀମା' ବର୍ଷକ ପରେ ମାଘ ବା ଫାଲ୍‌ଗୁନ ମାସରେ (୧୨୮୮ ସାଲ) ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ ।

ଗାଁରେ ସାତ ଆଠ ମାସ କାଳ ରହି ୧୨୯୦ ସାଲ ମାଘ ମାସରେ ଦକ୍ଷିଣେଶ୍ୱରକୁ ପୁନର୍ବାର ଆସିଲେ । ଭାବାବସ୍ଥାରେ ପଡ଼ିଯିବାରୁ ଠାକୁରଙ୍କର ବାମହାତର ହାଡ଼ ସ୍ଥାନଚ୍ୟୁତ ହୋଇଥିଲା, ସେଥିପାଇଁ ଖୁବ୍ ଯନ୍ତ୍ରଣା ହେଉଥାଏ । ଶ୍ରୀମା' ଆସି ପହଞ୍ଚିବା ମାତ୍ରେ ଠାକୁର ତାଙ୍କୁ ପଚାରିଲେ, ''କେବେ ଗାଁରୁ ବାହାରିଛ ?'' ଗୁରୁବାର ବାରବେଳାରେ ବାହାରିଛନ୍ତି ଜାଣି ଠାକୁର କହିଲେ, ''ଗୁରୁବାର ଦିନ ବାରବେଳାରେ ବାହାରିଛ ବୋଲି ମୋ ହାତ ଭାଙ୍ଗିଲା । ଫେରିଯାଇ ପୁଣି ଥରେ ଆସ ।'' ଶ୍ରୀମା' ସେହିଦିନ ଫେରିଯିବାକୁ ଚାହିଁଲେ । ଠାକୁର କିନ୍ତୁ ଦିନଟାଏ ରହି ପରଦିନ ଫେରିବାକୁ କହିଲେ ।

ଏହାପରେ ଶ୍ରୀମା' କେବେ ଦକ୍ଷିଣେଶ୍ୱରକୁ ଆସିଥିଲେ ତାହା ନିଶ୍ଚିତଭାବେ ଜଣା ନାହିଁ । ତେବେ ୧୨୯୧ ସାଲ ଫାଲ୍‌ଗୁନ ମାସରେ ମା' ଦକ୍ଷିଣେଶ୍ୱରକୁ ଆସିଥିଲେ ଓ ଶ୍ରୀରାମକୃଷ୍ଣଙ୍କ ଲୀଳାବସାନ ପର୍ଯ୍ୟନ୍ତ ଆଉ ଗାଁଆକୁ ଫେରିନାହାନ୍ତି । ଠାକୁର ଜୟରାମବାଟୀକୁ ବହୁବାର ଯାଇଛନ୍ତି । କାମାରପୁକୁର ଗଲେ ସେ ପ୍ରତିଥର ଶିହଡ଼ ଯାଉଥିଲେ ଏବଂ ଯିବା ପଥରେ ଜୟରାମବାଟୀରେ କିଛିଦିନ କଟାଉଥିଲେ । ଥରେ ଶ୍ୱଶୁରାଳୟରେ ରାତିରେ ସମସ୍ତେ ଆହାରାନ୍ତେ ଶୋଇପଡ଼ିଥିଲେ । ଠାକୁର ଅକସ୍ମାତ୍ ଉଠି କହିଲେ, ''ଭାରୀ ଭୋକ ହେଉଛି ।'' ଘରେ ସ୍ତ୍ରୀ-ଲୋକମାନେ ଚିନ୍ତିତ ହେଲେ; କଅଣ ଖାଇବାକୁ ଦେବେ ? ଘରେ ଖାଇବା ଭଳି କିଛି ନଥାଏ । କେବଳ ହାଣ୍ଡିରେ ପଖାଳ ଭାତ ଥିଲା । ଶ୍ରୀମା' ତାହା ଜଣାଇବାରୁ ସେ କହିଲେ, ''ନେଇ ଆସ ।'' ଶ୍ରୀମା' କହିଲେ, ''କିନ୍ତୁ ତରକାରୀ କିଛି ନାହିଁ ।'' ଠାକୁର କହିଲେ, ''ଖୋଜି ଦେଖ, ହୁଏତ କିଛି ଥିବ ।'' ଶ୍ରୀମା' ଅନୁସନ୍ଧାନ କରି ଦେଖିଲେ ଗୋଟିଏ ପାତ୍ରରେ ଟିକିଏ ତରକାରୀ ରହିଛି । ଠାକୁରଙ୍କର କି ଆନନ୍ଦ ! ରାତି ଅଧରେ ଏହି ଅଳ୍ପ ତରକାରୀ ସାହାଯ୍ୟରେ ସେରେ ଚାଉଳର ପଖାଳଭାତ ଖାଇ ଶାନ୍ତ ହେଲେ ।

ଜୟରାମବାଟୀରୁ ଶ୍ରୀମା' ଚାଲି ଚାଲି ଦକ୍ଷିଣେଶ୍ୱର ଯାଉଥିଲେ । ଦୀର୍ଘ ସତୁରୀ ମାଇଲ ପଥ । ଥରେ କୌଣସି ପର୍ବ ଉପଲକ୍ଷେ କେତେଜଣ ସ୍ତ୍ରୀଲୋକ ଗଙ୍ଗାସ୍ନାନ ପାଇଁ କଲିକତା ଯାଉଥାଆନ୍ତି । ଶ୍ରୀମା' ମଧ୍ୟ ସେମାନଙ୍କ ସହିତ ଯୋଗ

ଦେଲେ । କାମାରପୁକୁରରୁ ଚାରି କୋଶ ବାଟ ଚାଲି ଚାଲି ଆରାମ୍‌ବାଗରେ ପହଞ୍ଚି ଅବଶିଷ୍ଟ ଦିନ ସେଠାରେ କଟାଇବେ—ଏପରି ସ୍ଥିର ଥିଲା; କାରଣ ସମ୍ମୁଖରେ ନରହନ୍ତାମାନଙ୍କର ବସତିସ୍ଥଳ କୁଖ୍ୟାତ ପଞ୍ଚକ୍ରୋଶ ବ୍ୟାପୀ ତେଲୋଭେଲୋ ପଡ଼ିଆ । ପଡ଼ିଆ ମଝିରେ ଏବେ ମଧ୍ୟ ଭୀଷଣ କାଳିମୂର୍ତ୍ତି ଅଛନ୍ତି । ଦସ୍ୟୁମାନେ ଲୁଣ୍ଠନ କରିବା ପୂର୍ବରୁ ଏହି ଡକାୟତମାନଙ୍କ କାଳୀଙ୍କୁ ପୂଜା କରିଥାଆନ୍ତି । ଡକାୟତମାନଙ୍କ ଭୟରେ ଦଳବଦ୍ଧ ହୋଇ ଏହି ଭୟଙ୍କର ପଡ଼ିଆ ଅତିକ୍ରମ କରିବାକୁ ହୁଏ । ଶ୍ରୀମା' ଓ ସଙ୍ଗୀମାନେ ଆରାମ୍‌ବାଗରେ ପହଞ୍ଚି ଦେଖିଲେ ଯେ ଯଥେଷ୍ଟ ସମୟ ରହିଛି । ଟିକିଏ ଶୀଘ୍ର ଚାଲିଲେ ଏହି ଭୟଙ୍କର ପ୍ରାନ୍ତର ଅତିକ୍ରମ କରି ତାରକେଶ୍ୱରରେ ପହଞ୍ଚିପାରିବେ; ତେଣୁ ବିଶ୍ରାମ ନ କରି ଅଗ୍ରସର ହେବା ଠିକ୍‌ହେଲା । ଶ୍ରୀମା' ତାଙ୍କ କ୍ଳାନ୍ତ ଦେହ ନେଇ ଏହି ଦୀର୍ଘପଥ ଚାଲିପାରିବେ ନାହିଁ ଜାଣି ସୁଦ୍ଧା ସଙ୍ଗୀମାନଙ୍କର ଅସୁବିଧା ସୃଷ୍ଟି ନ କରିବା ପାଇଁ ସେମାନଙ୍କ ସହିତ ଯାତ୍ରା କରିବା ପାଇଁ ରାଜି ହେଲେ । କିନ୍ତୁ ଅଳ୍ପ କିଛି ବାଟ ଚାଲି ଅକ୍ଷମତା ଯୋଗୁଁ ଧିରେ ଧିରେ ଚାଲିବାକୁ ଲାଗିଲେ । ସଙ୍ଗୀମାନେ ଦୁଇଚାରିଥର ତାଙ୍କ ପାଇଁ ଅପେକ୍ଷା କଲେ । କିନ୍ତୁ ଏହି ଭାବରେ ଚାଲିଲେ ସଂଧ୍ୟା ପୂର୍ବରୁ ଗନ୍ତବ୍ୟ ସ୍ଥଳରେ ନ ପହଞ୍ଚି ପାରିବାର ଆଶଙ୍କା ରହିଛି ଜାଣି ଶ୍ରୀମା' ନିଜେ ସେମାନଙ୍କୁ ତାଙ୍କ ପାଇଁ ଚିନ୍ତିତ ନ ହୋଇ ଅଗ୍ରସର ହେବାକୁ କହିଲେ । ଅଗତ୍ୟା ଏଭଳି ଭୀଷଣ ପରିସ୍ଥିତିରେ ସଙ୍ଗୀମାନେ ଶ୍ରୀମା'ଙ୍କୁ ପଛରେ ଛାଡ଼ି ଆଗେଇ ଯିବା ପାଇଁ ବାଧ୍ୟ ହେଲେ । ଅସ୍ତାଚଳଗାମୀ ସୂର୍ଯ୍ୟଙ୍କ ବିଦାୟ ନେବା ସଙ୍ଗେ ସଙ୍ଗେ ଉଚ୍ଚ ତାଳବୃକ୍ଷ ଉପରୁ ଅନ୍ଧକାର ଓହ୍ଲାଇ ଆସିଲା । ସେହି ଜନବସତିହୀନ ବିପଜ୍ଜନକ ପ୍ରାନ୍ତରରେ ଶ୍ରୀମା' ଅତିଶୟ ଉତ୍କଣ୍ଠିତ ହୋଇ ଭାବୁଛନ୍ତି କଅଣ କରିବେ, ଏପରି ସମୟରେ ଦେଖିଲେ—ଏକ ଦୀର୍ଘକାୟ ମୂର୍ତ୍ତି ତାଙ୍କ ଆଡ଼କୁ ଅଗ୍ରସର ହେଉଛି । ନିକଟକୁ ଆସିଲାରୁ ଦେଖିଲେ ସେ ଘୋର କୃଷ୍ଣବର୍ଣ୍ଣ । କାନ୍ଧ ଉପରେ ଠେଙ୍ଗା, ଦୁଇହାତରେ ରୁପାର ବାଲା ଏବଂ ମସ୍ତକରେ ନିବିଡ଼ କେଶରାଶି । ଶ୍ରୀମା' ବୁଝିପାରିଲେ ଯେ ଜଣେ ଦସ୍ୟୁ; ତେଣୁ ଭୟରେ ଥମକି ଛିଡ଼ା ହେଲେ । ଲୋକଟି ତାହା ବୁଝିପାରି କର୍କଶ ସ୍ୱରରେ ପଚାରିଲା, "ତୁ କିଏ ? ଏପରି ସମୟରେ ଏଠାରେ ଛିଡ଼ା ହୋଇଛୁ ? କୁଆଡ଼େ ଯିବୁ ?" ଶ୍ରୀମା' କହିଲେ, "ପୂର୍ବ ଦିଗକୁ ।" ସେହି ବ୍ୟକ୍ତି ରୁକ୍ଷ ସ୍ୱରରେ କହିଲା, "ତାହା ଏହି ରାସ୍ତା ନୁହେଁ । ଅନ୍ୟ ରାସ୍ତାରେ ଯିବାକୁ ପଡ଼ିବ ।" ଶ୍ରୀମା' ସ୍ଥାଣୁବତ୍ ଅଚଳ ହୋଇଗଲେଣି । ଲୋକଟି ମଧ୍ୟ ଏକାବେଳକେ ସାମନାରେ ଆସି ପହଞ୍ଚିଛି । ମା'ଙ୍କ ଶ୍ରୀମୁଖ ଦେଖି ହଠାତ୍ ଯେପରି ସେହି ନରଘାତକର ମନରେ ପରିବର୍ତ୍ତନ ଆସିଲା । ସେ ସ୍ୱାଭାବିକ କଣ୍ଠରେ କହିଲା, "ଡର ନାହିଁ—ମୋ ସହିତ ସ୍ତ୍ରୀ-ଲୋକ ଅଛନ୍ତି ।" ଶ୍ରୀମା' ଦେଖିଲେ ପ୍ରକୃତରେ ଜଣେ ସ୍ତ୍ରୀ-ଲୋକ ଆସୁଛନ୍ତି । ସେତେବେଳେ ସେ ଆଶ୍ୱସ୍ତ

ହୋଇ କହିଲେ, ''ବାବା, ମୋ ସଙ୍ଗୀମାନେ ମତେ ଛାଡ଼ିଯାଇଛନ୍ତି, ମୁଁ ମଧ୍ୟ ଭୁଲ୍ ପଥରେ ଯାଉଛି । ତୁମେ ମୋତେ ସାଙ୍ଗରେ ଘେନି ସେମାନଙ୍କ ନିକଟକୁ ନେଇଯିବ ? ତୁମ ଜ୍ୱାଇଁ ଦକ୍ଷିଣେଶ୍ୱରରେ ରାସମଣିଙ୍କ କାଳୀ ମନ୍ଦିରରେ ରହନ୍ତି । ମୁଁ ତାଙ୍କ ନିକଟକୁ ଯାଉଛି । ତୁମେ ଯଦି ମୋତେ ସେଠାକୁ ନେଇଯାଅ, ସେ ତୁମକୁ ଭାରି ଆଦର ଯତ୍ନ କରିବେ ।'' ଏହି କଥା ଶେଷ ନ ହେଉଣୁ ସେହି ସ୍ତ୍ରୀ-ଲୋକଟି ଆସି ପହଞ୍ଚିଲେ । ଶ୍ରୀମା' ସ୍ନେହର ସହିତ ତାଙ୍କ ହାତ ଧରି କହିଲେ, ''ମା, ମୁଁ ତୁମର ଝିଅ ସାରଦା, ସଙ୍ଗୀମାନେ ମୋତେ ଛାଡ଼ିଯିବାରୁ ଭୀଷଣ ବିପଦରେ ପଡ଼ିଥିଲି । ମୋ ଭାଗ୍ୟବଳରୁ ତୁମେ ଓ ବାବା ଆସି ପହଞ୍ଚିଲ, ନ ହେଲେ କଅଣ ଯେ କରିଥାଆନ୍ତି ଭାବିପାରୁନି ।''

ସାରଦାମଣିଙ୍କର ଏପରି ନିଃସଙ୍କୋଚ ସରଳ ବ୍ୟବହାର, ଏକାନ୍ତ ବିଶ୍ୱାସ ଓ ମଧୁର କଥାରେ ଏହି ଦସ୍ୟୁଦମ୍ପତି ଅଭିଭୂତ ହେଲେ । ସେମାନେ ସାମାଜିକ ଆଚାର ଓ ଜାତିର ପାର୍ଥକ୍ୟ ଭୁଲି ତାଙ୍କୁ ନିଜର କନ୍ୟା ବୋଲି ମନେ କଲେ ଓ ସାନ୍ତ୍ୱନା ଦେବାକୁ ଲାଗିଲେ । କ୍ଳାନ୍ତ ଥିବା ଯୋଗୁଁ ତାଙ୍କୁ ନିକଟବର୍ତ୍ତୀ ଗ୍ରାମକୁ ନେଇଗଲେ । ସ୍ତ୍ରୀ-ଲୋକଟି ବିଛଣା ବିଛାଇ ଦେଇ ତାଙ୍କୁ ବିଶ୍ରାମ କରିବାକୁ କହିଲେ । ପୁରୁଷବ୍ୟକ୍ତି ଦୋକାନରୁ ମୁଢ଼ି ଇତ୍ୟାଦି କିଣି ଆଣି ତାଙ୍କୁ ଖାଇବାକୁ ଦେଲେ । ଶ୍ରୀମା' ଶୋଇପଡ଼ିଲେ, ସେହି ବ୍ୟକ୍ତି ସାରା ରାତି ଉଜାଗର ରହି ଘର ପହରା ଦେଲେ । ସକାଳୁ ଉଠି ଶ୍ରୀମା'ଙ୍କୁ ନେଇ ସେମାନେ ତାରକେଶ୍ୱର ଆଡ଼କୁ ଚାଲିଲେ । ଦସ୍ୟୁ-ରମଣୀ ବାଟରେ ଚାଲୁ ଚାଲୁ କ୍ଷେତରୁ ମଟରଛୁଇଁ ତୋଳି ଶ୍ରୀମା'ଙ୍କୁ ଖାଇବାକୁ ଦେଲେ । ସେମାନେ ଯେତେବେଳେ ତାରକେଶ୍ୱରରେ ପହଞ୍ଚିଲେ ସେତେବେଳେ ଅପରାହ୍ଣ ଚାରିଟା । ଗୋଟିଏ ଚଟିଘରେ ଆଶ୍ରୟ ନେଇ ସ୍ତ୍ରୀ-ଲୋକଟି ତାର ସ୍ୱାମୀଙ୍କୁ କହିଲା, ''ମୋ ଝିଅ କାଲିଠାରୁ କିଛି ଖାଇ ନାହିଁ । ବାବା ତାରକନାଥଙ୍କର ପୂଜା ଶୀଘ୍ର ଦେଇ ବଜାରରୁ ପନିପରିବା କିଣିଆଣ, ଆଜି ତାକୁ ଭଲ କରି ଖୁଆଇବା ।'' ଏହି ସମୟରେ ଶ୍ରୀମା'ଙ୍କ ସଙ୍ଗୀମାନେ ତାଙ୍କୁ ଖୋଜି ଖୋଜି ସେଠାରେ ଉପସ୍ଥିତ ହେଲେ । ଶ୍ରୀମା' ତାଙ୍କର ଆଶ୍ରୟଦାତା ଏହି ପିତାମାତାଙ୍କ ସହିତ ସେମାନଙ୍କର ପରିଚୟ କରାଇ ଦେଇ କହିଲେ, ''ଏମାନେ ମୋତେ ରକ୍ଷା ନ କରିଥିଲେ କାଲି ରାତିରେ କଅଣ ଯେ କରିଥାଆନ୍ତି କହିପାରୁନି ।'' ବିକାଶୋନ୍ମୁଖ ପବିତ୍ର ମାତୃଶକ୍ତି ଏବଂ ଦସ୍ୟୁର ନିଷ୍ଠୁରତା ଉପରେ ମାତୃତ୍ୱ କିପରି ଜୟଲାଭ କରିଥିଲା, ଆଲୋକ ଓ ଅନ୍ଧକାର ଭିତରେ ଆଲୋକ କିପରି ଜୟୀ ହୋଇଥିଲା, ତାହା ଅଶିକ୍ଷିତ ସଙ୍ଗୀମାନଙ୍କ ମନରେ ଉଦିତ ହୋଇଥିଲା କି ନାହିଁ ତାହା ଆମକୁ ଜଣା ନାହିଁ ।

ସେଦିନ ଦ୍ୱିପ୍ରହରରେ ସମସ୍ତେ ମିଳିମିଶି ରନ୍ଧନ ଓ ଭୋଜନାଦି ସମାପ୍ତ କଲେ । ଅଳ୍ପ ବିଶ୍ରାମ ପରେ ସମସ୍ତେ ବୈଦ୍ୟବାଟୀ ଅଭିମୁଖେ ଯାତ୍ରା କଲେ ।

ଏହି ଅଳ୍ପ ସମୟ ମଧ୍ୟରେ ଶ୍ରୀମା' ଓ ତାଙ୍କର ଡକାୟତ ପିତାମାତା ଏତେ ଘନିଷ୍ଠ ହୋଇ ଉଠିଥିଲେ ଯେ ବିଦାୟ କାଳରେ ତିନିହେଁ ଅଶ୍ରୁ ସମ୍ବରଣ କରିପାରି ନ ଥିଲେ । ଶ୍ରୀମା' ସେମାନଙ୍କୁ ଦକ୍ଷିଣେଶ୍ୱରକୁ ଆସିବା ପାଇଁ ଆମନ୍ତ୍ରଣ କରି ଅତି କଷ୍ଟରେ ସେମାନଙ୍କଠାରୁ ବିଦାୟ ନେଲେ । ଏହି ଅଙ୍ଗୀକାର, ଦସ୍ୟୁଦମ୍ପତି ରକ୍ଷା କରିଥିଲେ । ସେମାନେ ନାନା ଦ୍ରବ୍ୟ ନେଇ ଶ୍ରୀମା'ଙ୍କୁ ଦେଖିବା ପାଇଁ କେତେଥର ଦକ୍ଷିଣେଶ୍ୱରକୁ ଯାଇଥିଲେ । ଶ୍ରୀରାମକୃଷ୍ଣ ମଧ୍ୟ ସବୁ କଥା ଜାଣି ସେମାନଙ୍କ ସହିତ ଜାମାତାସଦୃଶ ବ୍ୟବହାର ଓ ଆଦର-ଆପ୍ୟାୟନ କରିଥିଲେ ।

ଡକାୟତଦମ୍ପତିଙ୍କ କଠୋର ମନ ଶ୍ରୀମା' କିପରି ଜୟ କରିଥିଲେ ତାହା ଆମ ପକ୍ଷରେ ନିର୍ଣ୍ଣୟ କରିବା ଅସମ୍ଭବ । ହୁଏତ ଏହି ଘଟଣାର ପଶ୍ଚାତ୍‌ରେ କୌଣସି ଦୈବୀ ଶକ୍ତିର ପ୍ରଭାବ ମଧ୍ୟ ଥିଲା । ଏହି କଳ୍ପନା ସମ୍ପୂର୍ଣ୍ଣ ଭିତ୍ତିହୀନ ନୁହେଁ । ଶ୍ରୀମା' ପରବର୍ତ୍ତୀ କାଳରେ ଭକ୍ତମାନଙ୍କୁ କହିଥଲେ, ''ମୁଁ ଥରେ ମୋ ଦସ୍ୟୁ ବାବା-ମା'ଙ୍କୁ ପଚାରିଥିଲି, 'ତୁମେ ମୋତେ ଏତେ ସ୍ନେହ କର କାହିଁକି ?' ସେମାନେ ଉତ୍ତର ଦେଲେ, 'ତୁମେ ତ ସାଧାରଣ ମଣିଷ ନୁହଁ, ଆମେ ତୁମକୁ କାଳୀରୂପେ ଦେଖିଛୁ । ମୁଁ ବାଧା ଦେଇ କହିଲି, 'ସେ କି କଥା ?' ସେମାନେ ନିରସ୍ତ ନ ହୋଇ କହିଲେ, 'ନା ନା, ଆମେ ପ୍ରକୃତରେ ଦେଖିଛୁ, ଆମେ ପାପୀ ବୋଲି ତୁମେ ତୁମର ସ୍ୱରୂପ ଗୋପନ କରୁଛ ।'' ଶ୍ରୀମା' ଉଦାସ ଭାବରେ କହିଲେ, ''କିଏ ଜାଣେ, ମୁଁ ତ କିଛି ଜାଣିନାହିଁ ।''

## ବିନ୍ଦୁବାସିନୀ

ଶ୍ରୀରାମକୃଷ୍ଣଙ୍କ ସହିତ ଶ୍ରୀମା'ଙ୍କର ସମ୍ପର୍କ ଯେତେ ନିବିଡ଼ ହେଲେ ମଧ୍ୟ ତାହାର ପ୍ରକାଶରେ ଗୋଟିଏ ଅସ୍ୱାଚ୍ଛନ୍ଦ୍ୟ ଥିଲା । କାରଣ ତାଙ୍କର ଗତିବିଧିକୁ ବିଭିନ୍ନ ଲୋକେ—ଯେପରିକି ତାଙ୍କର ଶାଶୁ, ଭୈରବୀ ବ୍ରାହ୍ମଣୀ, ହୃଦୟ ପ୍ରଭୃତି —କେତାକାଂଶରେ ନିୟନ୍ତ୍ରିତ କରୁଥିଲେ । କିନ୍ତୁ ବର୍ତ୍ତମାନ ଆମେ ସେହି ଦୈବ ସମ୍ପର୍କ ନିଃସଙ୍କୋଚ ଓ ସ୍ୱାଧୀନଭାବେ ଦେଖିବା । ଏହି ସ୍ୱାଧୀନତା ମଧ୍ୟରେ ବି ଲଜ୍ଜାପଟ୍ଟାବୃତା ପବିତ୍ରତା ସ୍ୱରୂପିଣୀ ଶ୍ରୀମା'ଙ୍କର କ୍ରିୟା ସମୂହ କିପରି ଅପୂର୍ବ ରୂପ ଧାରଣ କରିଥିଲା ତାହା ପ୍ରଣିଧାନଯୋଗ୍ୟ ।

ଦକ୍ଷିଣେଶ୍ୱରରେ ତାଙ୍କର ଅଧିକାଂଶ ସମୟ କଟିଥିଲା ସେହି ସ୍ୱଳ୍ପାୟତନ ନହବତ୍ ଘରେ । ଅପାତଦୃଷ୍ଟିରେ ତାହା ଅତି କଷ୍ଟମୟ ଜୀବନ । ମା' କହିଥିଲେ, ''ନହବତ୍ ଘରେ କେତେ ଜିନିଷପତ୍ର ଥିଲା । ମଝିରେ ମଝିରେ ପୁଣି ଗୋଲାପ, ଗୌରଦାସୀ, ଏମାନେ ସବୁ ଆସି ରହୁଥିଲେ । ଏତେ ଟିକିଏ ଘର, ତାହାରି ଭିତରେ ରୋଷେଇ, ରହିବା, ଖାଇବା, ପିଇବା ସବୁ । ଠାକୁର ଆମାଶୟ ରୋଗ ଭୋଗୁଥିଲେ । ତେଣୁ କାଳୀଙ୍କ ପ୍ରସାଦ ସେ ଖାଇପାରୁ ନ ଥିଲେ । ତାଙ୍କପାଇଁ ଭିନ୍ନ

ରୋଷେଇ ହେଉଥିଲା । ଅନ୍ୟ ସବୁ ଭକ୍ତମାନଙ୍କର ମଧ୍ୟ ରୋଷେଇ ହେଉଥିଲା । ଲାଟୁ, ରାମଦତ୍ତଙ୍କ ସହିତ କଳିକଜିଆ କରି ଚାଲିଆସିଲା । ଠାକୁର କହିଲେ, 'ଏଇ ପିଲାଟି ଭଲ । ଏ ତୁମର ସବୁ ଅଟା ଦଳିଦେବ ।' ଦିନରାତି ରୋଷେଇ ଚାଲିଥାଏ । ରାମ ଦତ୍ତ ଯେତେବେଳେ ଆସନ୍ତି, ଗାଡ଼ିରୁ ନ ଓହ୍ଲାଉଣୁ ପାଟିକରି କହିବେ, 'ମୁଁ ଆଜି ବୁଟ ଡାଲି ଓ ରୁଟି ଖାଇବି ।' ମୁଁ ତାହା ଶୁଣି ସାଙ୍ଗେ ସାଙ୍ଗେ ରୋଷେଇର ବନ୍ଦୋବସ୍ତ କରେ । ପ୍ରତିଦିନ ତିନି ଚାରି ସେର ଅଟାର ରୁଟି ହେଉଥିଲା । ସେତେବେଳେ ରାଖାଲ ମଧ୍ୟ ରହୁଥିଲା । ତା'ପାଇଁ ପ୍ରାୟ ପ୍ରତିଦିନ ଖେଚେଡ଼ି ହୁଏ । ସୁରେନ୍ ମିତ୍ର ପ୍ରତିମାସରେ ଭକ୍ତସେବା ପାଇଁ ଦଶଟଙ୍କା ଦେଉଥିଲେ । ବୁଢ଼ା ଗୋପାଳ ବଜାର ହାଟ କରୁଥିଲା । ...ଆଗେ ନହବତ୍ ଘରେ ପ୍ରବେଶ କଲାବେଳେ ଉପରେ ମୁଣ୍ଡ ବାଜୁଥିଲା । ଦିନେ ମୁଣ୍ଡରେ ସାମାନ୍ୟ ଆଘାତ ଲାଗିଲା । ପରେ ଅଭ୍ୟାସ ହୋଇଗଲା । କବାଟ ପାଖକୁ ଆସିଲେ ମୁଣ୍ଡ ଆପେ ଆପେ ନଇଁ ଯାଉଥିଲା; କଲିକତାରୁ ମୋଟାସୋଟା ସ୍ତ୍ରୀଲୋକମାନେ ଆସୁଥିଲେ । ସେମାନେ କବାଟ ଦୁଇ ପାଖରେ ହାତ ଦେଇ କହୁଥିଲେ, 'ଆହା କେତେ ଛୋଟ ଘରେ ଆମ ସତୀ ଲକ୍ଷ୍ମୀ ଅଛନ୍ତି—ଏହା ଯେପରି ଏକ ବନବାସ !' ରାତି ଚାରିଟାରେ ଗାଧୋଉଥିଲି । ଉପରବେଳା ସିଡ଼ିରେ ଟିକିଏ ଖରା ପଡୁଥିଲା, ସେତେବେଳେ କେଶ ଶୁଖାଉଥିଲି । ସେତେବେଳେ ମୁଣ୍ଡରେ ବହୁତ କେଶ ଥିଲା । ଛୋଟିଆ ବଖରାଟିଏ, ତା' ପୁଣି ଜିନିଷପତ୍ରରେ ଭର୍ତ୍ତି, ଉପରେ ଶିକା ଝୁଲୁଥାଏ । ...କେତେଜଣ କେଉଟୁଣୀ ମୋର ସଙ୍ଗୀ ଥିଲେ । ସେମାନେ ଗଙ୍ଗାରେ ଗାଧୋଇବା ପାଇଁ ଆସି ଏହି ବାରଣ୍ଡାରେ ପାଛିଆ ରଖି ମୋ ସହିତ କେତେ ଗପ କରୁଥିଲେ । ଗାଧୋଇ ସାରି ପାଛିଆ ନେଇ ଫେରିଯାଉଥିଲେ । ରାତିରେ କେଉଟମାନେ ମାଛ ଧରୁ ଧରୁ ଗୀତ ବୋଲୁଥିଲେ । ମୁଁ ଘରେ ବସି ସବୁ ଶୁଣୁଥିଲି ।''

ଶ୍ରୀମା' ଦିନବେଳେ ବାହାରକୁ ଆସୁ ନ ଥିଲେ । ଶ୍ରୀଯୁକ୍ତା ଯୋଗୀନ୍ ମା', ଶ୍ରୀମା'ଙ୍କର ଦୈନନ୍ଦିନ ଜୀବନଧାରା ବର୍ଣ୍ଣନା କରି କହିଛନ୍ତି, ''ଶ୍ରୀମା' ଭୋର ଚାରିଟାରୁ ଗାଧୁଆ ପାଧୁଆ ସାରି ଧ୍ୟାନ କରିବାକୁ ବସୁଥିଲେ—ଠାକୁରଙ୍କର ଏପରି ନିର୍ଦ୍ଦେଶ ଥିଲା । ତା'ପରେ ବାକି କାମ ସାରି ପୂଜାରେ ବସୁଥିଲେ । ପୂଜା, ଜପ, ଧ୍ୟାନ—ଏଥିରେ ଦେଢ଼ଘଣ୍ଟା କଟିଯାଉଥିଲା । ତା'ପରେ ସିଡ଼ି ତଳେ ରୋଷେଇ କରିବାକୁ ବସୁଥିଲେ । ରୋଷେଇ ସରିଲେ ଯେଉଁଦିନ ସୁଯୋଗ ହେଉଥିଲା, ସେଦିନ ମା' ଠାକୁରଙ୍କର ସେବା-ଯତ୍ନ କରୁଥିଲେ । ଠାକୁର ଗାଧୋଇବା ପାଇଁ ଗଲେ ଶ୍ରୀମା' ଠାକୁରଙ୍କର ପାନ ସଜାଇ ଲକ୍ଷ୍ୟ ରଖୁଥିଲେ ଠାକୁର କେତେବେଳେ ଫେରୁଛନ୍ତି । ସେ ଫେରିଲେ ମା' ଘରକୁ ଆସି ପାଣି ଓ ଆସନ ପାରିଦେଇ ଖାଇବା ଥାଳି ନେଇଆସୁଥିଲେ । ତାଙ୍କୁ ଖାଇବା ପାଇଁ

ବସାଇ ବିଭିନ୍ନ କଥାରେ ଭୁଲାଇ ରଖୁଥିଲେ, ଯେପରିକି ଖାଇବାବେଳେ ଭାବ-ସମାଧି ନ ହୁଏ । ଠାକୁରଙ୍କ ଖାଇବା ପରେ ମା' ନିଜେ ସାମାନ୍ୟ ଜଳଯୋଗ କରି ପାନ ଭାଙ୍ଗିବାକୁ ବସୁଥିଲେ । ତା'ପରେ ଅବସର ପାଇ ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲେ । ଦିନ ଗୋଟାଏ ବେଳେ କାରଖାନାର ସାଇରନ୍ ବାଜିଲେ ସେ ଖାଇବାକୁ ବସୁଥିଲେ । ଟିକିଏ ବିଶ୍ରାମ କରି ସିଡ଼ିରେ କେଶ ଶୁଖାଇବା ପାଇଁ ବସୁଥିଲେ । ସନ୍ଧ୍ୟା ହେଲେ ଲଣ୍ଠନବତୀ ସଜାଡ଼ି ରଖୁଥିଲେ । ତା'ପରେ ହାତ ମୁହଁ ଧୋଇ ସନ୍ଧ୍ୟା ପାଇଁ ପ୍ରସ୍ତୁତ ହେଉଥିଲେ । ଅନ୍ଧାର ହେଲେ ଆଲୁଅ ଜଳାଇ ଦେଇ ଦେବଗଣଙ୍କୁ ଝୁଣା ଦେଇସାରି ଶ୍ରୀମା' ଧ୍ୟାନରେ ବସୁଥିଲେ । ରାତିରେ ରୋଷେଇ ସାରି ସମସ୍ତେ ଖାଇବା ପରେ ମା' ନିଜେ ଖାଇବା ପାଇଁ ବସୁଥିଲେ । ତା'ପରେ ଟିକିଏ ବିଶ୍ରାମ କରି ଶୋଇ ପଡୁଥିଲେ ।''

ଦିନେ ଅନ୍ଧାର ଥାଉ ଥାଉ ଗାଧୋଇବା ପାଇଁ ଘାଟରୁ ଓହ୍ଲାଇବା ସମୟରେ ଗୋଟିଏ କୁମ୍ଭୀର ଉପରେ ପ୍ରାୟ ପାଦ ପକାଇ ଦେଇଥିଲେ । କୁମ୍ଭୀରଟା ପାହାଚ ଉପରେ ଶୋଇଥିଲା—ପାଦଶବ୍ଦ ଶୁଣି ପାଣିକୁ ଡ଼େଇଁପଡ଼ିଲା । ତା' ପରଠାରୁ ଆଲୁଅ ନ ଦେଇ ମା' କେବେ ଗାଧୋଇବାକୁ ଯାଉ ନ ଥିଲେ ।

ଶ୍ରୀମା'ଙ୍କର କିନ୍ତୁ ଏହିସବୁ ଅସୁବିଧା ପ୍ରତି ଭ୍ରୂକ୍ଷେପ ନ ଥିଲା । ପରବର୍ତ୍ତୀ କାଳରେ ଏହିସବୁ କଥା ଉଲ୍ଲେଖ କରି ସେ ଭକ୍ତମାନଙ୍କୁ କହିଥିଲେ, ''ସେତେବେଳେ ମୁଁ କୌଣସି ଅସୁବିଧା ବୋଧ କରିନାହିଁ । ଏକ ଦିବ୍ୟ ଆନନ୍ଦରେ ମୋର ଦିନ କଟି ଯାଉଥିଲା ।'' ଠାକୁରଙ୍କର ଏତେ ନିକଟରେ ରହି ସୁଦ୍ଧା ପତିଗତପ୍ରାଣା ଶ୍ରୀମା'ଙ୍କ ଭାଗ୍ୟରେ ଅନେକ ସମୟରେ ତାଙ୍କର ଦର୍ଶନ ପର୍ଯ୍ୟନ୍ତ ଜୁଟୁ ନ ଥିଲା । ସେ କହୁଥିଲେ, ''ସମୟ ସମୟରେ ଦୁଇମାସରେ ଥରେ ମଧ୍ୟ ଠାକୁରଙ୍କର ଦର୍ଶନ ମିଳୁ ନ ଥିଲା । ମୁଁ ମନକୁ ପ୍ରବୋଧ ଦେଉଥିଲି, 'ମନ ! ତୋର ଭାଗ୍ୟରେ ଏପରି କି ତପସ୍ୟା ଅଛି ଯେ ପ୍ରତିଦିନ ତାଙ୍କର ଦର୍ଶନ ପାଇବୁ ?' ତାଟିବାଡ଼ ଫାଙ୍କ ଦେଇ ଛିଡ଼ା ହୋଇ ରହି ଠାକୁରଙ୍କର ଦିବ୍ୟଲୀଳା ଦେଖୁଥିଲି ।'' ସେତେବେଳେ ଠାକୁରଙ୍କ ନିକଟକୁ କେତେ ଭକ୍ତ ଆସୁଥିଲେ । ଭଜନ-କୀର୍ତ୍ତନ, ଭାବ, ସମାଧି ଦିନରାତି ଚାଲିଥାଏ । ମା' ଏହିସବୁ ଦେଖି ଶୁଣି ଭାବୁଥିଲେ, ''ମୁଁ ଯଦି ଏହି ଭକ୍ତମାନଙ୍କ ମଧ୍ୟରୁ ଜଣେ ହୋଇଥାଆନ୍ତି, ତା' ହେଲେ ଠାକୁରଙ୍କ ନିକଟରୁ କେତେ କଥା ଶୁଣୁଥାଆନ୍ତି ।'' ଗୋଟିଏ ଦିଗରେ ସ୍ୱତନ୍ତ୍ର ଯୁଗାବତାର ଶ୍ରୀରାମକୃଷ୍ଣ, ଅନ୍ୟ ଦିଗରେ ସ୍ୱେଚ୍ଛାରେ ପିଞ୍ଜରାବଦ୍ଧ ଜଗନ୍ମାତା; ଗୋଟିଏ ଦିଗରେ ଲୀଳାବିଳାସ, ଅନ୍ୟ ଦିଗରେ ସତୃଷ୍ଣ ନିରୀକ୍ଷଣ—କି ଅପୂର୍ବ ଚିତ୍ର ! ଶ୍ରୀମା'ଙ୍କ ଅସୁବିଧା ପ୍ରତି ଠାକୁର ଉଦାସୀନ ନ ଥିଲେ । ନହବତ୍‌ର ଏହି ଛୋଟିଆ ଘରଟିକୁ ସେ ପିଞ୍ଜରା ବୋଲି କହୁଥିଲେ । ଝିଆରୀ ଲକ୍ଷ୍ମୀ ମଧ୍ୟ ସେଠାରେ ମଝିରେ ମଝିରେ ରହୁଥିଲେ । ଠାକୁର ରହସ୍ୟ କରି ସେମାନଙ୍କୁ ଶୁଆ ଓ ଶାରୀ ବୋଲି

କହୁଥିଲେ । ମା' କାଳୀଙ୍କ ପ୍ରସାଦ ଠାକୁରଙ୍କ ଘରକୁ ଆସିଲେ ସେ ରାମଲାଲକୁ କହୁଥିଲେ, ''ଆରେ, ପିଞ୍ଜରାରେ ଶୁଆଶାରୀ ଅଛନ୍ତି—ଫଳମୂଳ କିଛି ଦେଇ ଆସ ।'' ଅପରିଚିତ ଲୋକମାନେ ଭାବୁଥିଲେ ବୋଧହୁଏ ପ୍ରକୃତରେ ପକ୍ଷୀ ଅଛନ୍ତି । ଲକ୍ଷ୍ମୀଦେବୀଙ୍କ ଅନୁପସ୍ଥିତିରେ ଶ୍ରୀମା'ଙ୍କ ଗୋଡ଼ରେ ବାତ ଓ ତାଙ୍କର ନିଃସଙ୍ଗ ଜୀବନ ଠାକୁରଙ୍କୁ ଖୁବ୍ ଚିନ୍ତାନ୍ୱିତ କରିଥିଲା । ସେ ଶ୍ରୀମା'ଙ୍କୁ ପରାମର୍ଶ ଦେଇଥିଲେ, ''ବଣପକ୍ଷୀ ପିଞ୍ଜରାରେ ଦିନରାତି ରହିଲେ ବାତେଇ ଯାଏ; ତେଣୁ ମଝିରେ ମଝିରେ ସାଇପଡ଼ିଶା ବୁଲି ଆସିବ ।'' ଦ୍ୱିପ୍ରହର ଖାଇବା ପରେ ମନ୍ଦିର ଜନଶୂନ୍ୟ ହେଲେ ଶ୍ରୀଶ୍ରୀମା' କାଳୀବାଡ଼ିର ପଛ କବାଟ ଦେଇ ବାହାରକୁ ଯାଇ ପଡ଼ିଶା ଘରର ସ୍ତ୍ରୀ-ଲୋକଙ୍କ ସହିତ ଗପସପ ହୋଇ ଅନ୍ଧାର ହେଲେ ନହବତ୍‌କୁ ଫେରୁଥିଲେ ।

ଶ୍ରୀମା'ଙ୍କ ସହିତ ଠାକୁରଙ୍କ ସମ୍ପର୍କ କେତେ ଘନିଷ୍ଠ, ତାହା ଲୌକିକ ଆଚାର ମାଧ୍ୟମରେ ପ୍ରକାଶ କରିବା ପାଇଁ ଠାକୁରେ ବେଳେବେଳେ ରହସ୍ୟ କରୁଥିଲେ । ଥରେ ଶ୍ରୀରାମକୃଷ୍ଣ ଓ ଜଣେ ଭକ୍ତଙ୍କ ମଧ୍ୟରେ କାହାର ବର୍ଣ୍ଣ ବେଶୀ ଉଜ୍ଜ୍ୱଳ ଏହି ବିଷୟରେ ପ୍ରଶ୍ନ ଉଠିଲା ଏବଂ ଶ୍ରୀମା'ଙ୍କୁ ମଧ୍ୟସ୍ଥତା କରିବା ପାଇଁ କୁହାଗଲା । ଠିକ୍ ହେଲା, ପ୍ରତିଦ୍ୱନ୍ଦୀ ଦୁଇଜଣ ଠାକୁରଙ୍କ ଘରୁ ବାହାରି ପଞ୍ଚବଟୀ ଆଡ଼କୁ ଯିବେ । ଶ୍ରୀମା' ନହବତ୍ ଘରୁ ସେମାନଙ୍କୁ ଦେଖି ମୀମାଂସା କରିବେ । ଶ୍ରୀରାମକୃଷ୍ଣଙ୍କର ବର୍ଣ୍ଣ ସେତେବେଳେ ତପ୍ତ-କାଞ୍ଚନ ପରି ଥିଲା, ବାହୁର ସ୍ୱର୍ଣ୍ଣକବଚର ରଙ୍ଗ ସହିତ ମିଶି ଯାଉଥିଲା । କିନ୍ତୁ ଶ୍ରୀମା' ନିରପେକ୍ଷ ବିଚାର ଦେଲେ ଯେ, ଅପର ବ୍ୟକ୍ତି ଶ୍ରୀରାମକୃଷ୍ଣଙ୍କଠାରୁ ଅଳ୍ପ ଅଧିକ ଗୌରବର୍ଣ୍ଣ ।

ଶ୍ରୀମା'ଙ୍କ ଉପରେ କାର୍ଯ୍ୟଭାର ଯେପରି ବେଶୀ ନ ପଡ଼େ ସେଥିପ୍ରତି ଠାକୁରଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ଥରେ ଠାକୁର ସିନ୍ଥିରେ ବେଣିପାଳଙ୍କ ବଗିଚା ଦେଖିବା ପାଇଁ ଶ୍ରୀରାଖାଲଙ୍କୁ ନେଇ ଯାଇଥିଲେ । ସେଠାରେ ହଠାତ୍ ଠାକୁର କେତେକ ପ୍ରେତାତ୍ମାଙ୍କୁ ଦେଖିବାକୁ ପାଇଲେ । ଠାକୁରଙ୍କ ପବିତ୍ର ଉପସ୍ଥିତି ସେମାନଙ୍କ ପକ୍ଷରେ ଅସହ୍ୟ ହେବାରୁ ସେମାନେ ତାଙ୍କୁ ଉଦ୍ୟାନ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ଅନୁରୋଧ କଲେ । ଠାକୁରଙ୍କର ସେଠାରେ ରାତ୍ରି ଅତିବାହିତ କରିବାର ଥିଲା । କିନ୍ତୁ ପ୍ରେତାତ୍ମାମାନଙ୍କର ଆକୁଳତା ଦେଖି ସେହି ରାତିରେ କାଳୀବାଡ଼ି ଫେରି ଆସିଲେ ଓ ଫାଟକ ଖୋଲି ଭିତରେ ପ୍ରବେଶ କଲେ । ଶ୍ରୀମା' ଶବ୍ଦ ଶୁଣି ଉଠି ବସିଲେ ଏବଂ ଖାଇବାର କୌଣସି ବ୍ୟବସ୍ଥା ନ ଥିବାରୁ ଉତ୍କଣ୍ଠିତ ହୋଇ କହିଲେ, ''ହେ, ଯଦୁବୋଉ ! ଏବେ କଅଣ କରିବା ?'' ନହବତ୍‌ରେ ଏହି କଥାବାର୍ତ୍ତା ହେଉଥିଲା । କିନ୍ତୁ ଠାକୁର ଶୁଣିପାରି କହିଲେ, ''ତୁମେ ଚିନ୍ତିତ ହୁଅ ନାହିଁ—ଆମେ ଖାଇ ଆସିଛୁ ।''

ଠାକୁରଙ୍କ ପରେ ଶ୍ରୀମା'ଙ୍କର ଭରଣପୋଷଣ କିପରି ହେବ—ସେ ବିଷୟରେ ମଧ୍ୟ ଠାକୁରଙ୍କର ଚିନ୍ତା ଥିଲା । ଦିନେ ସେ ମା'ଙ୍କୁ ପଚାରିଲେ, ''ତୁମର ହାତଖର୍ଚ୍ଚ ପାଇଁ କେତେ ଟଙ୍କା ପ୍ରୟୋଜନ ହୁଏ ?'' ମା' କହିଲେ, ''ପାଞ୍ଚ ଛ' ଟଙ୍କା ।'' ତା'ପରେ ଠାକୁର ପ୍ରଶ୍ନ କଲେ, ''ରାତିରେ କେତେଟା ରୁଟି ଖାଅ ?'' ଖାଇବା କଥା କିପରି କହିବେ—ମା' ବଡ଼ ଲଜ୍ଜାରେ ପଡ଼ିଲେ । ଠାକୁର ମଧ୍ୟ ଛାଡ଼ିବାର ପାତ୍ର ନୁହନ୍ତି । ତେଣୁ ବାଧ୍ୟ ହୋଇ ମା' କହିଲେ, ''ପାଞ୍ଚ ଛ'ଟା ।'' ଠାକୁର ଖର୍ଚ୍ଚର ହିସାବ କରି କହିଲେ, ''ତାହା ହେଲେ ପାଞ୍ଚ ଛ' ଟଙ୍କାରେ ତୁମର ଭଲ ଭାବରେ ଚଳିଯିବ ।'' ପରେ ହିସାବ ଅନୁଯାୟୀ ବଳରାମ ବାବୁଙ୍କ ନିକଟରେ ଟଙ୍କା ଗଚ୍ଛିତ ରଖିଲେ । ବଳରାମ ବାବୁ ଏହି ଟଙ୍କାକୁ ଜମିଦାରୀରେ ଖଟାଇ ପ୍ରତି ଛ' ମାସରେ ତିରିଶି ଟଙ୍କା ସୁଧ ଶ୍ରୀମା'ଙ୍କ ପାଖକୁ ପଠାଉଥିଲେ ।

ଆତ୍ମଭାବରେ ବିଭୋର ଶ୍ରୀଶ୍ରୀଠାକୁରଙ୍କ ଦୃଷ୍ଟି କେତେ ସୁଦୂରପ୍ରସାରୀ ଥିଲା ତାହା ଭାବି ବିସ୍ମିତ ହେବାକୁ ପଡ଼େ । ସର୍ବଦା ଆଜ୍ଞା ବହନ କରିବା ପାଇଁ ତତ୍ପର ଭକ୍ତମାନଙ୍କଦ୍ୱାରା ପରିବେଷ୍ଟିତ ଥାଇ ସୁଦ୍ଧା ସେ ଅନ୍ୟମାନଙ୍କ ବ୍ୟକ୍ତିଗତ ସମ୍ମାନ ଓ ସ୍ୱାଧୀନତାକୁ ମର୍ଯ୍ୟାଦା ଦେଉଥିଲେ । ଶ୍ରୀମା' କହିଥିଲେ, ''ମୋ ସ୍ୱାମୀ ମୋତେ କେବେ 'ତୁ' ବୋଲି ସମ୍ବୋଧନ କରି ନାହାନ୍ତି । ଠାକୁର ଗୋଟିଏ ଫୁଲର ଆଘାତ ମଧ୍ୟ ମୋତେ ଦେଇ ନାହାନ୍ତି ।'' ଦକ୍ଷିଣେଶ୍ୱରରେ ଦିନେ ଶ୍ରୀମା' ଚକୁଳି ପିଠା, ସୁଜି ପାୟସ୍ ପ୍ରସ୍ତୁତ କରି ଠାକୁରଙ୍କ ଘରେ ଦେବାକୁ ଗଲେ । ଯଥାସ୍ଥାନରେ ତାହା ରଖି ସେ ଚାଲିଯାଉଛନ୍ତି, ଏହି ସମୟରେ ଠାକୁର ଲକ୍ଷ୍ମୀ ମନେ କରି କହିଲେ, ''ଦୁଆରଟା ବନ୍ଦ କରିଦେଇ ଯା ।'' ଶ୍ରୀମା' କହିଲେ, ''ହଁ, ବନ୍ଦ କରୁଛି ।'' ଠାକୁର ଶ୍ରୀମା'ଙ୍କ ସ୍ୱର ଶୁଣି ସଙ୍କୁଚିତ ହୋଇ କହିଲେ, ''ଆହା—ତୁମେ ! ମୁଁ ଭାବିଥିଲି ଲକ୍ଷ୍ମୀ, କିଛି ମନେ କରିବ ନାହିଁ ।'' ପରଦିନ ନହବତ୍‌କୁ ଯାଇ ଶ୍ରୀମା'ଙ୍କୁ କହିଲେ, ''ଦେଖ, ସାରାରାତି ମୋର ନିଦ ହୋଇନାହିଁ, କାହିଁକି ଏପରି କଟୁକଥା କହିଲି !'' ସ୍ତ୍ରୀ ଲୋକ ମାତ୍ରେ ଜଗଦମ୍ବାଙ୍କ ମୂର୍ତ୍ତି ଦର୍ଶନକାରୀ ଶ୍ରୀଶ୍ରୀଠାକୁର କେତେ ସମ୍ମାନର ଦୃଷ୍ଟିରେ ସେମାନଙ୍କୁ ଦେଖୁଥିଲେ, ତାହାର ଦୃଷ୍ଟାନ୍ତ ଆମେ ବହୁ ଛୋଟ ଛୋଟ ଘଟଣାରୁ ଦେଖିବାକୁ ପାଉ । ଶ୍ରୀମା' ତାଙ୍କର ଗୋଡ଼ ଘଷିବା ପରେ ପ୍ରତ୍ୟେକ ଥର ସେ ଶ୍ରୀମା'ଙ୍କୁ ନମସ୍କାର କରୁଥିଲେ । ।

ଶ୍ରୀମା'ଙ୍କୁ ସର୍ବଦା ସମ୍ମାନ ଦୃଷ୍ଟିରେ ଦେଖିଲେ ମଧ୍ୟ ଉଭୟଙ୍କ ମଧ୍ୟରେ ବୟସ ଓ ଅଭିଜ୍ଞତାର ବହୁ ପାର୍ଥକ୍ୟ ଥିଲା ବୋଲି ଠାକୁର ଜାଣିଥିଲେ । ଅତଏବ ଶ୍ରୀମା'ଙ୍କୁ ଲୋକ ବ୍ୟବହାର ଓ ସାଧନ-ଭଜନ ବିଷୟରେ ଶିକ୍ଷା ଦେବାର ଦାୟିତ୍ୱ ଠାକୁର ନିଜେ ଗ୍ରହଣ କରିଥିଲେ । ଥରେ ମା' ଯେତେବେଳେ ଗାଁକୁ ଯାଉଥିଲେ, ଠାକୁର ତାଙ୍କୁ କହିଲେ, ''ସାଇପଡ଼ିଶା ଲୋକଙ୍କ ସହିତ ଭଲ ସମ୍ପର୍କ ରଖିବ । କିଏ ଅସୁସ୍ଥ ହେଲେ ତାହାର ଖବର ନେବ ।'' ଆହୁରି ମଧ୍ୟ ସେ କହିଥିଲେ

ଯେ ସର୍ବଦା କର୍ମ କରିବା ଭଲ, ସ୍ତ୍ରୀ ଲୋକ ବସି ରହିବା ଉଚିତ୍ ନୁହେଁ । କାମ ନ ଥିଲେ ନାନା ରକମର ବାଜେ ଚିନ୍ତା ମନକୁ ଆସେ । ଗୋଟିଏ ଦିନର କଥା । ଶ୍ରୀମା' କହିଥିଲେ, ''ଠାକୁର ଝୋଟ କେରାଏ ଆଣି ମୋତେ ଦେଇ କହିଲେ, 'ଏହାକୁ ବଳି ଗୋଟିଏ ସିକା ତିଆରି କର । ସେଥିରେ ମୁଁ ପିଲାମାନଙ୍କ ପାଇଁ ଲୁଚି ଓ ସନ୍ଦେଶ ରଖିବି ।' ମୁଁ ସିକା ତିଆରି କରିଦେଲି ଏବଂ ବଳକା ଝୋଟ ଦେଇ ବ୍ୟବହାର ପାଇଁ ତକିଆ ତିଆରି କଲି । ଝୋଟ ଉପରେ ସପ ପକାଇ ଶୋଉଥିଲି ଏବଂ ସେହି ତକିଆ ମୁଣ୍ଡ ତଳେ ଦେଉଥିଲି । ସେଥିରେ ଶୋଇ ଯେପରି ନିଦ ହେଉଥିଲା, ଏବେ ଏହିସବୁ ଖଟପଲଙ୍କରେ ଶୋଇ ମଧ୍ୟ ସେପରି ନିଦ ହୁଏ, କୌଣସି ତଫାତ୍ ବୋଧ ହୁଏ ନାହିଁ ।''

ନିଜ ସ୍ୱଭାବ ଓ ଶ୍ରୀରାମକୃଷ୍ଣଙ୍କ ଶିକ୍ଷା ପ୍ରଭାବରୁ ଶ୍ରୀମା' ପ୍ରକୃତରେ, 'ଯେତେବେଳେ ଯେମିତି, ସେତେବେଳେ ସେମିତି, ଯେଉଁଠାରେ ଯେମିତି, ସେହିଠାରେ ସେମିତି, ଯାହାକୁ ଯେମିତି, ତାହାକୁ ସେମିତି'—ଏହି ଉକ୍ତିଟିକୁ ଜୀବନର ପ୍ରତିକାର୍ଯ୍ୟରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଠାକୁର ମଧ୍ୟ ଦିନେ ଆଶ୍ଚର୍ଯ୍ୟ ହୋଇ କହିଥିଲେ, ''ଆରେ ହୃଦୟ, ମୋର ଭାରୀ ଚିନ୍ତା ଥିଲା, ଗାଉଁଲୀ ଝିଅ, କିଏ ଜାଣିଛି—ଏଠାକୁ ଆସି କୁଆଡ଼େ ଯିବ, ଆଉ ଲୋକେ ନିନ୍ଦା କରିବେ ଓ ସେତେବେଳେ ଲଜ୍ଜାରେ ପଡ଼ିବାକୁ ହେବ । କିନ୍ତୁ ସେ ଏପରି ଯେ, କେତେବେଳେ କଅଣ କରେ କିଛି ଜାଣି ହୁଏ ନାହିଁ । ମୁଁ ମଧ୍ୟ ତାକୁ କେବେ ବାହାରକୁ ଯିବାର ଦେଖିନାହିଁ ।'' ଠାକୁର ଏପରି ପ୍ରଶଂସା କଲେ ସୁଦ୍ଧା ଏକଥା ଶୁଣି ଶ୍ରୀମା' ଖୁବ୍ ଚିନ୍ତାରେ ପଡ଼ିଲେ—'ଯେତେବେଳେ ଠାକୁର ଯାହା ଚାହାଁନ୍ତି ଜଗଦମ୍ବା ତାଙ୍କୁ ତାହା ଦେଖାଇଦିଅନ୍ତି; ତା'ହେଲେ ଏବେ ବାହାରକୁ ଗଲେ ତାଙ୍କ ଦୃଷ୍ଟିରେ ହୁଏତ ପଡ଼ିବି ।' ଅତଏବ ସେ ଜଗଦମ୍ବାଙ୍କୁ ପ୍ରାର୍ଥନା କଲେ, 'ମା, ମୋର ଲଜ୍ଜା ନିବାରଣ କର ।' ବୋଧହୁଏ ଜଗଦମ୍ବା ତାଙ୍କର ସେ ପ୍ରାର୍ଥନା ଶୁଣିଥିଲେ, କାରଣ ଦୀର୍ଘକାଳ ଦକ୍ଷିଣେଶ୍ୱରରେ ରହି ମଧ୍ୟ ସେ କେବେ କାହାର ଦୃଷ୍ଟିରେ ପଡ଼ିନାହାନ୍ତି । ମନ୍ଦିରର ଜଣେ କର୍ମଚାରୀ ଦିନେ ତାଙ୍କ ବିଷୟରେ କହିଥିଲେ, ''ସେ (ଶ୍ରୀମା') ଏଠାରେ ଅଛନ୍ତି ଶୁଣିଛି, କିନ୍ତୁ କେବେହେଲେ ତାଙ୍କୁ ଦେଖିନାହିଁ ।''

ଶ୍ରୀମା' ସ୍ୱଭାବତଃ ଲଜ୍ଜାଶୀଳା ଓ ଠାକୁରଙ୍କର ସମ୍ପୂର୍ଣ୍ଣ ଅଜ୍ଞାନୁବର୍ତ୍ତିନୀ ହେଲେ ମଧ୍ୟ ଗୋଟିଏ ବିଷୟରେ ସେ ତାଙ୍କର ସ୍ୱାଧୀନତା ଅକ୍ଷୁଣ୍ଣ ରଖିଥିଲେ—ତାହା ହେଉଛି ତାଙ୍କର ମାତୃଭାବ । ଏହି ବିଷୟରେ ଆମେ ବହୁ ଘଟଣା ସହିତ ପରିଚିତ ହେବୁ । ଦିନକର ଘଟଣା—ଶ୍ରୀମା'ଙ୍କର କୌଣସି ସଙ୍ଗିନୀ ସେତେବେଳେ ନ ଥିଲେ । ମଝିରେ ମଝିରେ କଲିକତାରୁ କେହି କେହି ଆସୁଥିଲେ । ଭକ୍ତସଂଖ୍ୟା ମଧ୍ୟ ବଡ଼ି ନ ଥିଲା । ଜଣେ ବୃଦ୍ଧା ଶ୍ରୀମା'ଙ୍କ ନିକଟକୁ ପ୍ରାୟ ଆସୁଥିଲା । ଯୌବନରେ ତାହାର ସ୍ୱଭାବ ଅନ୍ୟ ପ୍ରକାର ଥିଲା, କିନ୍ତୁ ଏବେ ତାହାର ସ୍ୱଭାବ

ପରିବର୍ତ୍ତନ ହୋଇଛି । ଠାକୁର ଦିନେ ମା'ଙ୍କୁ କହିଲେ, "ସେ ତୁମ ପାଖକୁ କାହିଁକି ଆସେ ?" ଶ୍ରୀମା' କହିଲେ, "ସେ ତ ଭଲ କଥା କୁହେ, ହରିକଥା କୁହେ । ଆସିଲେ ଦୋଷ କଅଣ ?" ଶ୍ରୀମା'ଙ୍କର ଚିନ୍ତାଧାରା ହେଉଛି— ମଣିଷର ମନୋଭାବ ସର୍ବଦା ଏକ ପ୍ରକାରର ରହେ ନାହିଁ; ମନ୍ଦ ବ୍ୟକ୍ତି ମଧ୍ୟ ପରେ ଉତ୍ତମ ହୋଇପାରେ । କିନ୍ତୁ ଶ୍ରୀରାମକୃଷ୍ଣ କର୍ତ୍ତବ୍ୟବୁଦ୍ଧି ଦୃଷ୍ଟିରୁ ଶ୍ରୀମା'ଙ୍କୁ ସେପରି କରିବାକୁ ନିଷିଦ୍ଧ କରିଥିଲେ; କାରଣ ମନ୍ଦ ଲୋକ ସହିତ ଅସତ୍ ଆଲୋଚନା ହେବାର ସମ୍ଭାବନା ଥାଏ; କେବଳ ସେତିକି ନୁହେଁ, ଏପରି ମିଳାମିଶା ଆଗନ୍ତୁକ ବ୍ୟକ୍ତିଙ୍କ ଦୃଷ୍ଟିରେ ବିଷସଦୃଶ ଦେଖାଯିବ । ଶ୍ରୀମା' ଠାକୁରଙ୍କର ସତର୍କ ବାଣୀ ସମ୍ପୂର୍ଣ୍ଣ ରୂପେ ଉପଲବ୍ଧି କରିଥିଲେ; କିନ୍ତୁ ସେ ନିରାଶ୍ରୟ ଓ ପାପୀତାପୀଙ୍କୁ ଆଶ୍ରୟ ନ ଦେଇ କେବଳ ଲୌକିକ ଆଚାର ଦୃଷ୍ଟିରୁ ତାଙ୍କୁ ନିଷେଧ କରିବେ କିପରି ? ତେଣୁ ଠାକୁରଙ୍କ ଆପତ୍ତି ସତ୍ତ୍ୱେ ପୂର୍ବଭଳି ବୃଦ୍ଧା ତାଙ୍କ ନିକଟକୁ ଯିବା ଆସିବା କରୁଥିଲା । ଶ୍ରୀଶ୍ରୀଠାକୁର ମା'ଙ୍କର ମନୋଭାବ ବୁଝିପାରି ଆପତ୍ତି କଲେ ନାହିଁ ।

ଆଉ ଗୋଟିଏ ଘଟଣା । ଭକ୍ତମାନଙ୍କ ଯିବା ଆସିବା ପୂର୍ବଠାରୁ ଅନେକ ବଢ଼ିଛି । ଠାକୁରଙ୍କ ପାଇଁ ଫଳ ଇତ୍ୟାଦି ଯଥେଷ୍ଟ ଆସେ ଏବଂ ସେ ତାହା ନହବତ୍‌କୁ ପଠାଇଦିଅନ୍ତି । ଶ୍ରୀମା' ସେଥିରୁ କିଛି ଅଂଶ ଠାକୁରଙ୍କ ପାଇଁ ରଖି ବାକି ସବୁ ଭକ୍ତ ଓ ସାଇପଡ଼ିଶାର ପିଲାମାନଙ୍କୁ ଦେଇଦିଅନ୍ତି । ଠାକୁରଙ୍କ ନିକଟକୁ ଆସୁଥିବା ଅନେକ ଭକ୍ତ, ବିଶେଷ କରି ସ୍ତ୍ରୀ ଭକ୍ତବୃନ୍ଦ ଶ୍ରୀମା' ସହିତ ଦେଖା କରୁଥିଲେ । ଶ୍ରୀମା' ସେମାନଙ୍କର ଆଦର ଯତ୍ନ କରୁଥିଲେ ଏବଂ ଫଳ ମିଠା କିଛି ନ ଖୁଆଇ ଛାଡୁ ନ ଥିଲେ । ଏ ବିଷୟରେ ସେ ମୁକ୍ତହସ୍ତ ଥିଲେ । ଦିନେ ଶ୍ରୀମା' ସବୁ ଜିନିଷ ବିତରଣ କରିଦେବାରୁ ସେଠାରେ ଉପସ୍ଥିତ ଗୋପାଳଙ୍କ ମା' କହିଲେ, "ବୋହୂ, ଗୋପାଳ (ରାମକୃଷ୍ଣ) ପାଇଁ କିଛି ରଖିଲୁ ନାହିଁ ?" ମା' ଲଜ୍ଜାରେ ପଡ଼ିଲେ । ଠିକ୍ ସେହି ସମୟରେ ନବଗୋପାଳ ବାବୁଙ୍କ ସ୍ତ୍ରୀ ବହୁତ ସନ୍ଦେଶ ଇତ୍ୟାଦି ନେଇ ପହଞ୍ଚିଲେ ଏବଂ ଶ୍ରୀମା'ଙ୍କ ହାତରେ ତାହାଦେଇ ଏହି ବିପଦରୁ ତାଙ୍କୁ ରକ୍ଷା କଲେ । କିନ୍ତୁ ଏ ବିଷୟରେ ତାଙ୍କ ସ୍ୱଭାବର ପରିବର୍ତ୍ତନ କରିବା ଅସମ୍ଭବ ଥିଲା । ଠାକୁର ମଧ୍ୟ ଶ୍ରୀମା'ଙ୍କର ଏହି ପ୍ରକୃତି ଜାଣିଥିଲେ । ତେଣୁ ଦିନେ ଶ୍ରୀମା'ଙ୍କୁ ଏକାକୀ ପାଇ କହିଲେ, "ଏତେ ଖର୍ଚ୍ଚ କଲେ କିପରି ଚଳିବ ?" ଶ୍ରୀମା' କୌଣସି ଉତ୍ତର ନ ଦେଇ ନହବତ୍‌କୁ ଫେରିଗଲେ । ସେତେବେଳେ ଅତି ବ୍ୟସ୍ତ ହୋଇ ପୁତୁରା ରାମଲାଲକୁ ଠାକୁର କହିଲେ, "ଆରେ ରାମଲାଲ, ଶୀଘ୍ର ଯାଇ ତୋ' ଖୁଡ଼ୀଙ୍କୁ ଶାନ୍ତ କର—ସେ ରାଗିଲେ (ନିଜକୁ ଦେଖାଇ) ଏହାର ସବୁ ନଷ୍ଟ ହୋଇଯିବ ।" ଶ୍ରୀମା'ଙ୍କ ମାତୃଶକ୍ତି ନିକଟରେ ଏହା ଠାକୁରଙ୍କର ସ୍ୱେଚ୍ଛାକୃତ ପରାଜୟ ।

ଶ୍ରୀମା' ଦିନେ ଯୋଗୀନ୍-ମା'ଙ୍କ ସହିତ ବିଗତଦିନର କଥା ହେଉଥିଲେ । ଯୋଗୀନ୍ ମା'ଜାଣିବାକୁ ଚାହିଁଲେ, ଠାକୁରଙ୍କର କୌଣସି କଥାକୁ ସେ ଅମାନ୍ୟ କରିଛନ୍ତି କି ନାହିଁ ? ମା' ଟିକିଏ ହସି କହିଲେ, "ସବୁ କଥା ମାନି ଚଳିବା କଅଣ ସମ୍ଭବ ?" ପରେ ଟିକିଏ ଚିନ୍ତା କରି କହିଲେ, "ଯାହା ହେଉନା କାହିଁକି, କିଏ 'ମା' ବୋଲି ଡାକିଲେ ମୁଁ ତାକୁ ଫିଙ୍ଗିଦେଇପାରିବି ନାହିଁ ।"

ଠାକୁରଙ୍କୁ ମଧ୍ଯ ଶ୍ରୀମା' ତାଙ୍କର ମନୋଭାବ ପରିଷ୍କାର ଜଣାଇ ଦେଇଥିଲେ । ଏହି ଘଟଣାଟି ନିଃସ୍ୱାର୍ଥ ସେବାର ଯେପରି ଏକ ଆଦର୍ଶ ସ୍ୱରୂପ, ସେପରି ଏହା ପ୍ରକାଶୋନ୍ମୁଖ ମାତୃସ୍ନେହର ପରିଚାୟକ । ସେତେବେଳେ ଠାକୁରଙ୍କ ଘର ଭକ୍ତମାନଙ୍କଦ୍ୱାରା ସର୍ବଦା ପରିପୂର୍ଣ୍ଣ । ଏତେ ଲୋକଙ୍କ ସମ୍ମୁଖକୁ ଲଜ୍ଜାଶୀଳା ମା'ଙ୍କ ପକ୍ଷରେ ଯିବା ସମ୍ଭବ ନୁହେଁ । ତେଣୁ ଠାକୁରଙ୍କ ଆହାର ସମୟରେ ଭକ୍ତମାନେ ବାହାରକୁ ଚାଲିଯାଉଥିଲେ । ଶ୍ରୀମା' ଆହାର ନେଇ ଆସୁଥିଲେ ଏବଂ ଖାଇବା ଶେଷ ନ ହେବାଯାଏ ବସି ରହୁଥିଲେ । ଦିନେ ଶ୍ରୀମା' ଅହାର ଥାଳି ନେଇ ଠାକୁରଙ୍କ ଘରେ ପ୍ରବେଶ କରୁଛନ୍ତି, ଏହି ସମୟରେ ଜଣେ ମହିଳା ଭକ୍ତ ଆସି କହିଲେ, "ଦିଅନ୍ତୁ ମା', ମୋତେ ଦିଅନ୍ତୁ !" —ଏହା କହି ମା'ଙ୍କ ହାତରୁ ଥାଳି ନେଇ ଠାକୁରଙ୍କ ସମ୍ମୁଖରେ ତାହା ରଖିଲେ ଓ କିଛି ସମୟ ପରେ ଚାଲିଗଲେ । ଠାକୁର କିନ୍ତୁ ସେ ଅନ୍ନ ସ୍ପର୍ଶ କରିପାରିଲେ ନାହିଁ । ଶ୍ରୀମା'ଙ୍କୁ କହିଲେ, "ତୁମେ କଅଣ କଲ ! ତା' ହାତରେ ଦେଲ କାହିଁକି ? ତା' ବିଷୟରେ ତୁମେ କ'ଣ କିଛି ଜାଣିନାହଁ ? ସେ ଦୁଷ୍ଟଚରିତ୍ରା, ସେ ଛୁଇଁଥିବା ଖାଦ୍ୟକୁ ମୁଁ ଗ୍ରହଣ କରିପାରିବି ନାହିଁ ।" ଶ୍ରୀମା' କହିଲେ, "ତାହା ମୁଁ ଜାଣିଛି, କିନ୍ତୁ ଆଜି ଦିନଟା ଖାଅ ।" ଠାକୁର କିନ୍ତୁ ତାହା ସ୍ପର୍ଶ କରିପାରିଲେ ନାହିଁ ।" ଶ୍ରୀମା'ଙ୍କୁ କହିଲେ, "ମୋତେ କଥା ଦିଅ, ଆଉ କେବେ କାହା ହାତରେ ଦେବ ନାହିଁ ।" ଶ୍ରୀମା' ହାତଯୋଡ଼ି ନିବେଦନ କଲେ, "ତାହା ମୁଁ କରିପାରିବି ନାହିଁ । ତୁମ ଖାଇବା ମୁଁ ନିଜେ ନେଇ ଆସିବି, କିନ୍ତୁ ମୋତେ କିଏ 'ମା' ବୋଲି କହିଲେ ମୁଁ ତାକୁ ନିଷେଧ କରିପାରିବି ନାହିଁ । ତୁମେ ତ କେବଳ ମୋର ଠାକୁର ନୁହଁ, ତୁମେ ସମସ୍ତଙ୍କର ।" ଏକଥା ଶୁଣି ଠାକୁର ଖୁସି ହୋଇ ଖାଇବାକୁ ସମ୍ମତ ହେଲେ ।

## ଦିବ୍ୟ ଆକର୍ଷଣ

ଦକ୍ଷିଣେଶ୍ୱରରେ ଶ୍ରୀମା'ଙ୍କର ରହିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଠାକୁରଙ୍କର ସେବା କରିବା । ସେହି ସେବା ମାଧ୍ୟମରେ ସେ ଯେଉଁ ଆତ୍ମତୃପ୍ତି ପାଉଥିଲେ, ତାହା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ଯଦି ତାହା ହୋଇଥା'ନ୍ତା, ତେବେ ନହବତ୍‌ର ସ୍ୱଳ୍ପପରିସର କୋଠରୀରେ ରହି ତାଙ୍କ ମନ ଦିନେ ନା ଦିନେ ବିଦ୍ରୋହୀ ହୋଇ ଉଠିଥାଆନ୍ତା । ଶ୍ରୀମା' ଦକ୍ଷିଣେଶ୍ୱରକୁ ଆସିବା ପୂର୍ବରୁ ଠାକୁରଙ୍କର ସେବାର ଭାର

ହୃଦୟଙ୍କ ଉପରେ ନ୍ୟସ୍ତ ଥିଲା । କିନ୍ତୁ ଦୈବବିଧାନରୁ ଶ୍ରୀମା'ଙ୍କର ଦକ୍ଷିଣେଶ୍ୱରକୁ ଆସିବା ଓ ହୃଦୟଙ୍କର ମନ୍ଦିରରୁ ବିତାଡ଼ନ ହେତୁ ଠାକୁରଙ୍କୁ ଅନେକାଂଶରେ ମା'ଙ୍କ ସେବା ଉପରେ ନିର୍ଭର କରିବାକୁ ପଡୁଥିଲା । ଦୀର୍ଘ ସାଧନା ଯୋଗୁଁ ଠାକୁରଙ୍କର ପରିପାକଶକ୍ତି ହ୍ରାସ ପାଇଥିଲା, କିନ୍ତୁ ଶ୍ରୀମା'ଙ୍କ ଆନ୍ତରିକ ସେବାଯତ୍ନ ହେତୁ ଠାକୁରଙ୍କର ଶାରୀରିକ ଉନ୍ନତି ହେବାକୁ ଲାଗିଲା । କୌଣସି କାରଣରୁ ଶ୍ରୀମା' ଅନ୍ୟତ୍ର ଗଲେ ବାଳକସ୍ୱଭାବ ଠାକୁର ନିଜକୁ ବିପନ୍ନ ମନେ କରୁଥିଲେ ଏବଂ ସେ କେବେ ଦକ୍ଷିଣେଶ୍ୱରକୁ ଫେରିବେ ବୋଲି ଚିନ୍ତା କରି ବ୍ୟସ୍ତ ହୋଇ ପଡୁଥିଲେ । ସମାଧିମଗ୍ନ ମହାମାନବ ମଧ୍ୟ ସେହି ଅନୁପମ ସେବାର ମର୍ଯ୍ୟାଦା ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ଶ୍ରୀମା' ନିଜର ସବୁ ସୁଖସ୍ୱାଚ୍ଛନ୍ଦ୍ୟ ଭୁଲି ସର୍ବତୋଭାବେ ଶ୍ରୀରାମକୃଷ୍ଣମୟ ହୋଇଯାଇଥିଲେ ।

ଥରେ ଶ୍ରୀଶ୍ରୀଠାକୁର ଅସୁସ୍ଥ ହେବାରୁ କୁମାରଟୁଲିର ଗଙ୍ଗାପ୍ରସାଦ ସେନ୍ ତାଙ୍କୁ ଚିକିତ୍ସା କରୁଥିଲେ । କବିରାଜ ପାଣି ପିଇବା ସମ୍ପୂର୍ଣ୍ଣ ନିଷିଦ୍ଧ କରିଦେଇଥିଲେ । ବାଳକସ୍ୱଭାବ ଠାକୁର ସମସ୍ତଙ୍କୁ ପଚାରିବାକୁ ଲାଗିଲେ, ''ଆଚ୍ଛା ! ପାଣି ନ ପିଇ ରହିପାରିବି ତ ?'' ଶ୍ରୀମା'ଙ୍କୁ ପଚାରିବାରୁ ସେ କହିଲେ, ''ନିଶ୍ଚୟ ପାରିବ ।'' ଅତଏବ ମନ ସ୍ଥିର କରି ଠାକୁର ପାଣି ପିଇବା ଛାଡ଼ି ଦେଇ ଔଷଧପତ୍ର ଖାଇବାକୁ ଆରମ୍ଭ କଲେ । ଶ୍ରୀମା' ତାଙ୍କୁ ପ୍ରତିଦିନ ତିନି ଚାରି ସେର—ଏପରିକି ପାଞ୍ଚ ସେର ପର୍ଯ୍ୟନ୍ତ ଦୁଧ ଖୁଆଉଥିଲେ । ଗଉଡ଼ ବେଶୀ ଦୁଧ ଦେଇ ଯାଉଥିଲା—କହୁଥିଲା, ''ମନ୍ଦିରରେ ଦେଲେ ପୂଜାରୀ ବ୍ରାହ୍ମଣମାନେ ଘରକୁ ନେଇଯିବେ, କାହାକୁ ଖୁଆଇବେ ଠିକ୍ ନାହିଁ । ଏଠି ଦେଲେ ବରଂ ଠାକୁର ନିଜେ ଖାଇବେ ।'' ଶ୍ରୀମା' ଏହି ପାଞ୍ଚ ଛଅ ସେର ଦୁଧକୁ ଫୁଟାଇ ସେରେ ଦେଢ଼ସେର କରି ଠାକୁରଙ୍କୁ ଦେଉଥିଲେ । ଠାକୁର ଯଦି ପଚାରନ୍ତି କେତେ ଦୁଧ, ତେବେ ଶ୍ରୀମା' କହନ୍ତି, ''କେତେ ଆଉ ! ସେରେ ପାଞ୍ଚପା' ହେବ ।'' ଏହିପରି ନାନାଭାବରେ ବୁଝାଇ ସବୁତକ ଦୁଧ ତାଙ୍କୁ ପିଆଉଥିଲେ । ଦିନେ ଗୋଲାପ-ମା'ଙ୍କୁ ଠାକୁର ପଚାରିଲେ, ''ଏହି ଦୁଧର ପରିମାଣ କେତେ ହେବ ?'' ଗୋଲାପ-ମା' କିଛି ନ ବୁଝି ଶୁଝି କହିଦେଲେ, ''ପାଞ୍ଚ ଛଅ ସେର ଦୁଧ !'' ଠାକୁର ଚମକି ଉଠି କହିଲେ, ''ଏଁ, ଏତେ ଦୁଧ ! ସେଥିପାଇଁ ତ ମୋ ପେଟ ଖରାପ ହେଉଛି, ଡାକ ଡାକ !'' ଶ୍ରୀମା' ଆସିବାରୁ ଠାକୁର ତାଙ୍କୁ ପଚାରିଲେ—''କେତେ ଦୁଧ ?'' ମା' ପୂର୍ବପରି ଉତ୍ତର ଦେଲେ, ''ପାଞ୍ଚ ପା' ହେବ, ଆଉ କେତେ ?'' ଠାକୁର କିନ୍ତୁ କହିଲେ, ''ତେବେ ଗୋଲାପ ଯେ କହେ ଏତେ ?'' ମା' କିଛି ନ ଜାଣିଲା ପରି କହିଲେ, ''ଗୋଲାପ ଏଠିକା ମାପ ବିଷୟରେ କ'ଣ ଜାଣେ, ସେ କିଛି ଜାଣେ ନାହିଁ ।'' ଏହି ଘଟଣାର ପୁନରାବୃତ୍ତି ଆଉ ଦିନେ ହେଲା । ଏଥର କିନ୍ତୁ ଠାକୁର ଶ୍ରୀମା'ଙ୍କ କଥାକୁ ବିଶ୍ୱାସ କଲେ ନାହିଁ । ସେ ଅନୁଯୋଗ କରି କହିଲେ, ''ଏତେ ଦୁଧ

କଅଣ ହଜମ ହେବ ? ସେଥିପାଇଁ ତ ପେଟ ଖରାପ ହେଉଛି ।'' ବାସ୍ତବିକ ସେଦିନ ପେଟ ଖରାପ ହେଲା । ଠାକୁର ଶ୍ରୀମା'ଙ୍କୁ କହିଲେ, ''ଆଜି ପନ୍ଦର ଥର ଶୌଚ ଯାଇଛି । ତୁମମାନଙ୍କର ଏପରି ସେବା ମୋର ଦରକାର ନାହିଁ ।'' ସେଦିନ ଉପରଓଳି କିଛି ଖାଇଲେ ନାହିଁ । ଭାତ ପଡ଼ିରହିଲା, ଶ୍ରୀମା' ଟିକିଏ ସାଗୁ କରିଦେଲେ । ସତ୍ୟରେ ପ୍ରତିଷ୍ଠିତ ଠାକୁରଙ୍କ ଶରୀର ଉପରେ ମନର କ୍ରିୟା ଦେଖି ଗୋଲାପ-ମା' ଅନୁତପ୍ତ ହେଲେ । ଶ୍ରୀମା' ତାଙ୍କୁ ବୁଝାଇ କହିଲେ, ''ଖୁଆଇବା ପାଇଁ ମିଛ କଥା କହିଲେ ଦୋଷ ନାହିଁ । ମୁଁ ଏହିଭାବେ ତାଙ୍କୁ ଭୁଲେଇ ଭାଲେଇ ଖୁଆଏ ।'' ଶ୍ରୀମା' ମନ ଭୁଲାଇବା କଥାର ସତ୍ୟତା ଉପରେ ଦୃଷ୍ଟି ନ ରଖି ସେବା ଉପରେ ରଖିଥିଲେ ।

ଏହି ବିଷୟରେ ଟିକିଏ ଚିନ୍ତା କରିବା ପ୍ରୟୋଜନ । ଶ୍ରୀମା' ଠାକୁରଙ୍କୁ ଦୁଧର ପରିମାଣ ବିଷୟରେ ହିସାବ କରିବା ପାଇଁ ନିଷେଧ କରିଥିଲେ । ସମ୍ଭବତଃ ଏହି ଯୁକ୍ତି ଶ୍ରୀଶ୍ରୀଠାକୁରଙ୍କର ଚିନ୍ତାଧାରାକୁ ଅନୁସରଣ କରି ଶ୍ରୀଶ୍ରୀମା' କରିଥିଲେ । ଥରେ କାଳୀବାଡ଼ିର କୋଷାଧ୍ୟକ୍ଷ ଠାକୁରଙ୍କ ମାସିକ ପାଉଣା ଦେବାରେ ଗୋଳମାଳ କରିଥିଲେ । ଶ୍ରୀମା' ଏହି ବିଷୟ ଜାଣି କୋଷାଧ୍ୟକ୍ଷଙ୍କୁ କହିବା ପାଇଁ ଠାକୁରଙ୍କୁ ପରାମର୍ଶ ଦେଲେ । କିନ୍ତୁ ଠାକୁର କହିଲେ, ''ଛି, ଛି, ହିସାବ କରିବି !'' ବର୍ତ୍ତମାନ କ୍ଷେତ୍ରରେ ଠାକୁରଙ୍କୁ ତାଙ୍କ ନିଜ ଯୁକ୍ତିରେ ମାଆ ପରାସ୍ତ କଲେ । ଦ୍ୱିତୀୟତଃ, ଏହି ଭାବରେ ବୁଝାଇସୁଝାଇ ଖୁଆଇବାକୁ ଆମେମାନେ, ମା' ତାର ଅବୋଧ ବାଳକ-ବାଳିକାମାନଙ୍କୁ ସ୍ନେହବଶତଃ ଭୁଲେଇ ଭାଲେଇ ଖୁଆଇବା ସହିତ ତୁଳନା କରିପାରୁ । ଏପରି ସ୍ଥଳରେ ମାତାଙ୍କୁ କେହି ମିଥ୍ୟାବାଦିନୀ ବୋଲି କହିବ ନାହିଁ । ଶ୍ରୀମା' କେବଳ ମନ ଭୁଲାଇବା କଥା କହି କ୍ଷାନ୍ତ ହେଉ ନ ଥିଲେ । ଠାକୁର ଯେହେତୁ ବେଶୀ ଭାତ ଖାଇବାକୁ ଇଚ୍ଛା କରୁ ନ ଥିଲେ, ତେଣୁ ମା' ଭାତ ବାଢ଼ିବା ସମୟରେ ଭାତକୁ ଚାପି ଚାପି କମ୍ କରି ଦେଉଥିଲେ । ଚନ୍ଦ୍ରାଦେବୀ ଯେତେଦିନ ଜୀବିତ ଥିଲେ ଠାକୁର ଦ୍ୱିପ୍ରହରର ଖାଇବା ପାଇଁ ନହବତ୍‌କୁ ଯାଉଥିଲେ । ପରେ ଶ୍ରୀମା' ଆହାରଥାଳି ସଜାଇ ଠାକୁରଙ୍କ ଘରକୁ ନେଇଯାଉଥିଲେ । କେବଳ ସେତିକି ନୁହେଁ, ଆହାର କଲାବେଳେ ମାଛିର ଉପଦ୍ରବ ପାଇଁ ପଙ୍ଖା କରୁଥିଲେ ଓ ବିଭିନ୍ନ କଥା କହି ଠାକୁରଙ୍କ ଊର୍ଦ୍ଧ୍ୱମୁଖୀ ମନକୁ ସ୍ୱାଭାବିକ ସ୍ତରରେ ରଖୁଥିଲେ ।

ଶ୍ରୀରାମକୃଷ୍ଣଙ୍କ ଭଳି ଦେବମାନବଙ୍କର ସେବା କରିବା ଯେ କେତେ କଷ୍ଟସାଧ୍ୟ, ତାହା ଗୋଟିଏ ଘଟଣାରୁ ଆମେ ପରିଷ୍କାର ବୁଝିପାରିବା । ଠାକୁର ଆହାର କରିବା ପରେ ପାନ ମସଲା ଖାଉଥିଲେ । ଦିନେ ବଟୁଆରେ ମସଲା ନାହିଁ ଦେଖି ମସଲା ଆଣିବା ପାଇଁ ସେ ନହବତ୍‌କୁ ଗଲେ । ଶ୍ରୀମା' ତାଙ୍କୁ ଅଳ୍ପ ଯୁଆଣି ପାନମଧୁରି ଖାଇବାକୁ ଦେଲେ ଓ ଆଉ ଅଳ୍ପ କିଛି କାଗଜରେ ବାନ୍ଧିଦେଲେ । କାଗଜପୁଡ଼ିଆ ଧରି ଠାକୁର ଘର ଆଡ଼କୁ ଚାଲିଲେ । କିନ୍ତୁ ଅଜ୍ଞାତ ଶକ୍ତିବଳରେ

ଅସଞ୍ଚୟୀ ପରମହଂସଦେବ ନିଜ ଘରକୁ ନ ଯାଇ ସିଧା ଦକ୍ଷିଣ ଦିଗରେ ଅବସ୍ଥିତ ନହବତ୍ ନିକଟବର୍ତ୍ତୀ ଗଙ୍ଗାନଦୀ ବନ୍ଧ ଉପରେ ଯାଇ ଛିଡ଼ା ହେଲେ, ଠାକୁର ସେତେବେଳେ ପ୍ରାୟ ବେହୋସ, ରାସ୍ତା ବି ଭଲଭାବରେ ଦେଖିପାରୁନାହାନ୍ତି । ଆଉ କହୁଛନ୍ତି "ମା' ବୁଡ଼ିଯିବି ? ମା ବୁଡ଼ିଯିବି ?" ସେତେବେଳେ ଶ୍ରୀମା' ଦକ୍ଷିଣେଶ୍ୱରକୁ ନୂଆ ଆସିଥାଆନ୍ତି । ସେ ସବୁ ଦେଖୁଥିଲେ; କିନ୍ତୁ ତାଙ୍କ ପକ୍ଷରେ ସମସ୍ତଙ୍କ ସମ୍ମୁଖରେ ଆଗେଇ ଯାଇ ଠାକୁରଙ୍କୁ ରକ୍ଷା କରିବା ସମ୍ଭବ ନୁହେଁ ଜାଣି ଯନ୍ତ୍ରଣାରେ ଛଟପଟ ହେଉଥିଲେ । ଏହି ସମୟରେ ଅକସ୍ମାତ୍ ଜଣେ ବ୍ରାହ୍ମଣଙ୍କୁ ନିକଟରେ ଦେଖି ମା' ତାଙ୍କଦ୍ୱାରା ହୃଦୟକୁ ଡକାଇ ପଠାଇଲେ ଏବଂ ଠାକୁରଙ୍କୁ ଏହି ବିପଦରୁ ରକ୍ଷା କଲେ । ମାନବକୁ ସେବା କରିବାର ଗୋଟାଏ ଧାରା ଅଛି; ଦେବତାଙ୍କ ପୂଜାରେ ମଧ ବିଧି ଅଛି । କିନ୍ତୁ ଦେବତା ଯେତେବେଳେ ମାନବ ଦେହ ଧରି ଆସନ୍ତି, ସେତେବେଳେ ବୋଧହୁଏ ମା'ଙ୍କ ଭଳି ଦେବୀ–ମାନବୀ ହିଁ କେବଳ ତାଙ୍କର ସବୁ ପ୍ରୟୋଜନ ଉପଲବ୍ଧି କରି ଅନୁରୂପ ବ୍ୟବସ୍ଥା କରିବାରେ ସମର୍ଥ ହୁଅନ୍ତି ।

ଠାକୁରଙ୍କର ସେବା ଜୀବନର ଏକମାତ୍ର କାମ୍ୟ ଜାଣି ସୁଦ୍ଧା ଶ୍ରୀମା' ଅନ୍ୟକୁ ସେଥିରେ ବଞ୍ଚିତ କରୁ ନ ଥିଲେ । ଠାକୁରଙ୍କ ଆହାର ହାତରେ ନେଇ ଶ୍ରୀମା' ପ୍ରତ୍ୟହ ତାଙ୍କ ଘରକୁ ଯାଉଥିଲେ । ଦିନେ ଠାକୁର ଅଶେଷ ଭକ୍ତିମତୀ ଶ୍ରୀଯୁକ୍ତା ଗୋଲାପ–ମା'ଙ୍କୁ ତାଙ୍କର ଖାଇବାଥାଳି ନେଇ ଆସିବାକୁ କହିଲେ । ସେହିଦିନଠାରୁ ଶ୍ରୀମା' ପ୍ରତ୍ୟହ ତାଙ୍କରି ହାତରେ ଖାଇବା ଥାଳି ପଠାଇ ଦେଉଥିଲେ । ଭାତଥାଳି ଦେବାକୁ ଯାଇ ଦିନରେ ଅନ୍ତତଃ ପକ୍ଷେ ଥରେ ଠାକୁରଙ୍କର ଦର୍ଶନ ଶ୍ରୀମା' ପାଉଥିଲେ । କିନ୍ତୁ ଏହି ନୂତନ ବ୍ୟବସ୍ଥା ଫଳରେ ତାହା ମଧ ବନ୍ଦ ହେଲା ।

ଶ୍ରୀମା'ଙ୍କର ଏହି ସଂସାରବନ୍ଧନଶୂନ୍ୟ ସେବାର ତାତ୍ପର୍ଯ୍ୟ ସମସ୍ତେ ବୁଝି ପାରୁ ନ ଥିଲେ । କେବଳ ସେତିକି ନୁହେଁ । ଏଥି ଯୋଗୁଁ ଅଶୁଦ୍ଧ ମନରେ ହିଂସାର ଉଦ୍ରେକ ମଧ ହେଉଥିଲା । ଦିନେ ଜଣେ ଭକ୍ତ ମହିଳା ସ୍ୱଷ୍ଟ ଶ୍ରୀମା'ଙ୍କୁ କହିଲେ, "ତୁମେ ଠାକୁରଙ୍କ ନିକଟକୁ ଯାଅ କାହିଁକି ?" ଶ୍ରୀମା' ବୁଝିପାରିଲେ ଯେ, ଠାକୁରଙ୍କର ସେବା କରିବାର ସୁଯୋଗ ନ ପାଇବାରୁ ଏହି ମହିଳାଙ୍କ ମନରେ ଦୁଃଖ ଅଛି । ଅନ୍ୟର ହିତ ପାଇଁ ତାଙ୍କୁ ଅନେକ ସ୍ଥଳରେ ଅସହ୍ୟ ଯନ୍ତ୍ରଣା ସହ୍ୟ କରିବାକୁ ହେଲେ ସୁଦ୍ଧା ଶ୍ରୀମା' ଏହି କଷ୍ଟ ସ୍ୱେଚ୍ଛାରେ ବରଣ କରିଥିଲେ । ଅତଏବ କିଛି ଦିନ ପାଇଁ ଶ୍ରୀମା' ଠାକୁରଙ୍କ ସେବାରୁ ବିରତ ହୋଇ ଏହି ମହିଳାଙ୍କୁ ସେବାର ସୁଯୋଗ ଦେଲେ । ତାହା ଅତି ଦୁଃଖର ସମୟ । ସଂଧ୍ୟାବେଳେ ଠାକୁର ଯେତେବେଳେ ଝାଉଁବଣକୁ ଯାଉଥିଲେ, ସେତେବେଳେ ଶ୍ରୀମା' ଦୂରରୁ ଥରୁଟିଏ ମାତ୍ର ତାଙ୍କର ଦର୍ଶନ ପାଉଥିଲେ । କେଉଁ କେଉଁ ଦିନ ହୁଏତ ତାହା ମଧ ଭାଗ୍ୟରେ ଜୁଟୁ ନ ଥିଲା ।

ସୁଖଦୁଃଖରେ ଦିନଗୁଡ଼ିକ ବେଶ୍ କଟିଯାଉଥିଲା । କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର । ୧୮୮୫ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ଶ୍ରୀଶ୍ରୀଠାକୁରଙ୍କ କଣ୍ଠରୋଗର ସୂତ୍ରପାତ ହେଲା । କଲିକତାରେ ନ ରହିଲେ ଉପଯୁକ୍ତ ଡାକ୍ତର କବିରାଜ ମିଳିବେ ନାହିଁ ଜାଣି ଭକ୍ତମାନେ ସ୍ଥିର କଲେ ଯେ, ଠାକୁରଙ୍କର କଲିକତାରେ ରହିବାର ବ୍ୟବସ୍ଥା ହେବା ଉଚିତ୍ । ଠାକୁର ଏ ବିଷୟରେ ରାଜି ହେଲେ । ବାଗ୍‌ବଜାର ଦୁର୍ଗାଚରଣ ମୁଖାର୍ଜୀ ଷ୍ଟ୍ରୀଟ୍‌ରେ ଗୋଟିଏ ଛୋଟିଆ ଘର ଭଡ଼ା ନେଇ ଠାକୁରଙ୍କର ସେଠାରେ ରହିବାର ବ୍ୟବସ୍ଥା ହେଲା; କିନ୍ତୁ ଦକ୍ଷିଣେଶ୍ୱର କାଳୀବାଡ଼ିର ପ୍ରଶସ୍ତ ଉଦ୍ୟାନରେ ରହିବାରେ ଅଭ୍ୟସ୍ତ ଠାକୁର ଏହି ଛୋଟିଆ ଘରେ ରହି ପାରିବେ ନାହିଁ ବୋଲି କହି ସେଠାରୁ ଚାଲି ଚାଲି ଭକ୍ତ ବଳରାମ ବସୁଙ୍କ ଘରେ ଉପସ୍ଥିତ ହେଲେ । ସପ୍ତାହକ ମଧ୍ୟରେ ଶ୍ୟାମପୁକୁର ଷ୍ଟ୍ରୀଟ୍‌ରେ ଗୋଟିଏ ଦୁଇତାଲା କୋଠା ତାଙ୍କ ରହିବା ପାଇଁ ଭଡ଼ା ନିଆଗଲା । ଅକ୍ଟୋବର ମାସ ପ୍ରଥମ ଭାଗରେ ଠାକୁର ଏଠାରେ ରହିବାକୁ ଆରମ୍ଭ କଲେ । ସୁପ୍ରସିଦ୍ଧ ଡାକ୍ତର ମହେନ୍ଦ୍ରଲାଲ ସରକାର ତାଙ୍କ ଚିକିତ୍ସାର ଭାର ଗ୍ରହଣ କଲେ ।

ଏଣେ ଦକ୍ଷିଣେଶ୍ୱରରେ ଶ୍ରୀମା' ତାଙ୍କର ଚରମ ଦୁଃଖର ଦିନଗୁଡ଼ିକ କଟାଉଥାଆନ୍ତି । ଶ୍ରୀରାମକୃଷ୍ଣଙ୍କ ସେବାଦ୍ୱାର ରୁଦ୍ଧ । କେବେଳ ସେତିକି ନୁହେଁ, ଠାକୁରଙ୍କର ଅଶୁଭ ଭବିଷ୍ୟତବାଣୀ ମନରେ ଉଦିତ ହୋଇ ତାଙ୍କୁ ବିଚଳିତ କରୁଥାଏ । ଚାରି ପାଞ୍ଚ ବର୍ଷ ପୂର୍ବେ ଠାକୁର ମା'ଙ୍କୁ କହିଥିଲେ, ''ଯେତେବେଳେ ଯାହାର ତାହାର ହାତରେ ଖାଇବି, କଲିକତାରେ ରାତି କଟାଇବି—ଆଉ ଖାଇବାର ଅଗ୍ରଭାଗ ଅନ୍ୟକୁ ଦେଇ କିୟଦଂଶ ନିଜେ ଖାଇବି, ସେତେବେଳେ ଜାଣିବ ଦେହରକ୍ଷା କରିବାର ସମୟ ନିକଟବର୍ତ୍ତୀ ।'' କଣ୍ଠରୋଗ ହେବାର କିଛି କାଳ ପୂର୍ବରୁ ବାସ୍ତବିକ ଏହିପରି ଘଟଣାସବୁ ଘଟିଯାଇଥିଲା । କଲିକତାରେ ବିଭିନ୍ନ ଲୋକଙ୍କ ଘରକୁ ନିମନ୍ତ୍ରିତ ହୋଇ ଠାକୁର ସେମାନଙ୍କର ଦତ୍ତ ଭୋଜ୍ୟ ପଦାର୍ଥ (ଅନ୍ନ ବ୍ୟତୀତ) ଗ୍ରହଣ କରୁଥିଲେ; କଲିକତାକୁ ଆସି ବଳରାମ ବାବୁଙ୍କ ଘରେ ରାତି କଟାଇଛନ୍ତି ଏବଂ ଅଜୀର୍ଣ୍ଣ ରୋଗରେ ଆକ୍ରାନ୍ତ ହୋଇ ନରେନ୍ଦ୍ର ଦୀର୍ଘଦିନ ଦକ୍ଷିଣେଶ୍ୱର ନ ଆସିବାରୁ ଦିନେ ସକାଳେ ନରେନ୍ଦ୍ରକୁ ଡକାଇ ଆଣି ନିଜ ପାଇଁ ପ୍ରସ୍ତୁତ ଝୋଳ ଭାତର ଅଗ୍ରଭାଗ ତାଙ୍କୁ ଭୋଜନ କରାଇ ଅବଶିଷ୍ଟ ନିଜେ ଗ୍ରହଣ କରିଥିଲେ । ଶ୍ରୀମା' ଏ ବିଷୟରେ ଆପତ୍ତି କରି ତାଙ୍କ ପାଇଁ ପୁନରାୟ ରନ୍ଧନ କରିବାର ଇଚ୍ଛା ପ୍ରକାଶ କରିବାରୁ ସେ କହିଥିଲେ ଯେ, ''ନରେନ୍ଦ୍ରକୁ ଅଗ୍ରଭାଗ ଦେଲେ ସେଥିରେ କୌଣସି ଦୋଷ ହେବ ନାହିଁ । ସୁତରାଂ ପୁନରାୟ ଖାଦ୍ୟ ପ୍ରସ୍ତୁତ କରିବାର ପ୍ରୟୋଜନ ନାହିଁ ।'' ସ୍ୱୟଂ ବିଧାତା ଯେତେବେଳ ଭାଗ୍ୟଚକ୍ର ଘୂରାଉଛନ୍ତି, ସେତେବେଳେ ନିବାରଣର ଉପାୟ ଜାଣି ମଧ୍ୟ ନିଜ ଅସହାୟ ଅବସ୍ଥା ପାଇଁ ଅଶ୍ରୁ ବିମୋଚନ ଛଡ଼ା ଆଉ ଗତି କଅଣ ହୋଇପାରେ ?

ଶ୍ୟାମପୁକୁରସ୍ଥିତ ଘରେ ଠାକୁରଙ୍କ ଆଗମନର କେତେଦିନ ମଧ୍ୟରେ ଭକ୍ତମାନେ ବୁଝିପାରିଲେ ଯେ ଏ ଚିକିତ୍ସା ସହିତ ଦିନରାତି ସେବା ଓ ପଥ୍ୟ ପ୍ରସ୍ତୁତ କରିବାର ବ୍ୟବସ୍ଥା ଅତ୍ୟନ୍ତ ଆବଶ୍ୟକ । ଯୁବକ ଭକ୍ତବୃନ୍ଦ ସେବାଭାର ଗ୍ରହଣ କଲେ । କିନ୍ତୁ ପଥ୍ୟ ପ୍ରସ୍ତୁତ କରିବା ପାଇଁ ଶ୍ରୀମା'ଙ୍କୁ ଏଠାକୁ ଆଣିବେ କିପରି ? ଏହି ଘରେ ସ୍ତ୍ରୀଲୋକମାନଙ୍କ ରହିବା ପାଇଁ ଅନ୍ଦର ମହଲ ନାହିଁ । ତେଣୁ ଶ୍ରୀମା' ଏଠାରେ ଏକାକିନୀ କିପରି ରହିବେ, ତାହା ଭକ୍ତମାନେ ସ୍ଥିର କରିପାରିଲେ ନାହିଁ । କିନ୍ତୁ ଅନ୍ୟ ଉପାୟ ନ ଥିବାରୁ ତାଙ୍କୁ ଆଣିବା ବିଷୟରେ ଠାକୁରଙ୍କ ମତାମତ ଲୋଡ଼ିଲେ । ଶ୍ରୀମା'ଙ୍କର ଲଜ୍ଜାଶୀଳତା କଥା ଚିନ୍ତା କରି ସେ କହିଲେ, ''ସେ କ'ଣ ଏଠାରେ ଆସି ରହିପାରିବ । ଯାହା ହେଉ ତାକୁ ପଚାରି ଦେଖ ! ସବୁ ଜାଣି ଶୁଣି ଯଦି ଏଠାରେ ରହିବାକୁ ଇଚ୍ଛା କରେ ତା'ହେଲେ ଆସୁ !'' ସ୍ଥାନ-କାଳ-ପାତ୍ର ଅନୁଯାୟୀ ନିଜ ଜୀବନ-ଧାରାକୁ ପରିଚାଳିତ କରିବାରେ ଶ୍ରୀମା'ଙ୍କର ଅପରିସୀମ କ୍ଷମତା ଥିଲା । ଶ୍ରୀରାମକୃଷ୍ଣଙ୍କ ସେବା ପାଇଁ ଯେ ସେ ସବୁ ପ୍ରକାର ସୁଖସୁବିଧା ଲଜ୍ଜାସଂକୋଚ ତ୍ୟାଗ କରିବେ, ଏଥିରେ ଆଶ୍ଚର୍ଯ୍ୟ ବା କଅଣ ? ତେଣୁ ପ୍ରସ୍ତାବ ଆସିବା ସଙ୍ଗେ ସଙ୍ଗେ ସେ ବିନ୍ଦୁମାତ୍ର ଇତସ୍ତତଃ ନ କରି ଶ୍ୟାମପୁକୁରକୁ ଆସି ନିଜ କର୍ତ୍ତବ୍ୟଭାର ଗ୍ରହଣ କଲେ । ଛାତକୁ ଯିବା କବାଟକୁ ଲାଗି ଚାରିହାତ ଅନ୍ଦାଜ ଗୋଟିଏ ଆଚ୍ଛାଦନଯୁକ୍ତ ଚତୁଷ୍କୋଣ କକ୍ଷ । ଏହି କକ୍ଷରେ ଶ୍ରୀମା' ସାରାଦିନ ରହୁଥିଲେ ଓ ଏହି ଘରେ ଠାକୁରଙ୍କର ପଥ୍ୟାଦି ରୋଷେଇ କରୁଥିଲେ । ଏହି ଘରଟିରେ ସ୍ନାନାଦି ପାଇଁ ଗୋଟିଏ ମାତ୍ର ସ୍ଥାନ ଥିବାରୁ ଶ୍ରୀମା' ଅନ୍ୟ ସମସ୍ତେ ଉଠିବା ପୂର୍ବରୁ ରାତି ତିନିଟାରୁ ଉଠି ସ୍ନାନାଦି ସାରି ତିନିତାଲା ଛାତକୁ ଲାଗିଥିବା ତାଙ୍କ ବଖରାକୁ ଚାଲିଯାଉଥିଲେ । ସେଠାରେ ପଥ୍ୟାଦି ପ୍ରସ୍ତୁତ ହେଲେ ବୃଦ୍ଧ ଗୋପାଳ ଦାଦା ବା ଲାଟୁଙ୍କ ଦ୍ୱାରା ସମ୍ବାଦ ପଠାଉଥିଲେ । ସୁବିଧା ହେଲେ, ଠାକୁରଙ୍କ ଘରୁ ଲୋକମାନେ ଚାଲିଗଲେ ଶ୍ରୀମା' ନିଜେ ପଥ୍ୟ ନେଇ ଆସୁଥିଲେ — ଅନ୍ୟଥା ସେବକମାନେ ତାଙ୍କ ନିକଟରୁ ତାହା ନେଇ ଆସୁଥିଲେ । ମଧ୍ୟାହ୍ନରେ ଶ୍ରୀମା' ଏହି କୋଠରୀରେ ବିଶ୍ରାମ କରୁଥିଲେ ଓ ରାତିରେ ଅନ୍ୟ ସମସ୍ତେ ଶୋଇଲେ ପ୍ରାୟ ଏଗାରଟା ସମୟରେ ଓହ୍ଲାଇ ଆସି ତାଙ୍କ ନିର୍ଦ୍ଦିଷ୍ଟ ବଖରାରେ ରାତି ଦୁଇଟା ଯାଏ ଶୋଉଥିଲେ । ଠାକୁରଙ୍କୁ ରୋଗମୁକ୍ତ କରିବା ଆଶାରେ ସେ ଅମ୍ଳାନ ବଦନରେ ଏହି କଠିନ ସେବାବ୍ରତ ପାଳନ କରିବାକୁ ଲାଗିଲେ । ସେବାର ପ୍ରଧାନ କାର୍ଯ୍ୟରେ ନିଯୁକ୍ତ ଥାଇ ସୁଦ୍ଧା ତାଙ୍କ କର୍ତ୍ତବ୍ୟ କର୍ମ ଲୋକଚକ୍ଷୁ ଅନ୍ତରାଳରେ ଏପରି ଭାବରେ ଅନୁଷ୍ଠିତ ହେଉଥିଲା ଯେ, ଯେଉଁମାନେ ପ୍ରତିଦିନ ସେଠାକୁ ଯାଉଥିଲେ ସେମାନେ ମଧ୍ୟ ତାଙ୍କର ଉପସ୍ଥିତ କଥା ଜାଣିପାରୁ ନ ଥିଲେ ।

ଶ୍ୟାମପୁକୁରରେ ଅଢ଼େଇମାସ କାଳ ଚିକିତ୍ସା ସତ୍ତ୍ୱେ ଠାକୁରଙ୍କ ରୋଗ ବଢ଼ିବାରେ ଲାଗିଛି ଦେଖି ଡାକ୍ତରମାନେ ସ୍ଥିର କଲେ ଯେ, ସହର ବାହାରେ ଖୋଲାମେଲା କୌଣସି ଉଦ୍ୟାନବାଟୀରେ ତାଙ୍କର ରହିବାର ବ୍ୟବସ୍ଥା ହେବା ଉଚିତ । ପରାମର୍ଶ ଅନୁଯାୟୀ ଭକ୍ତମାନେ କାଶୀପୁର ବଡ଼ରାସ୍ତା ସଂଲଗ୍ନ ଗୋପାଳଚନ୍ଦ୍ର ଘୋଷଙ୍କ ଉଦ୍ୟାନବାଟୀ (ବର୍ତ୍ତମାନ ୯୦ ନମ୍ବର କାଶୀପୁର ରୋଡ଼) ଭଡ଼ା ନେଲେ ଓ ଶୁକ୍ରବାର ୧୧ ଡିସେମ୍ବର ୧୮୮୫ ଖ୍ରୀଷ୍ଟାବ୍ଦରେ ଶ୍ରୀଶ୍ରୀମା' ଓ ସେବକ ଭକ୍ତମାନଙ୍କ ସହିତ ଠାକୁର ସେଠାରେ ପଦାର୍ପଣ କଲେ । ଏହି ପ୍ରଶସ୍ତ ଉଦ୍ୟାନବାଟୀରେ ଗୋଟିଏ ଦୁଇମହଲାର ରହିବା ଘର ଥିଲା । ତାହାର ତଳେ ଚାରିଟି ବଖରା ଓ ଉପରେ ଦୁଇଟି । ତଳେ ମଝି ବଖରାଟି ଗୋଟିଏ ହଲ୍ । ତାହାର ଉତ୍ତର ଦିଗକୁ ପାଖାପାଖି ଦୁଇଟା ଛୋଟିଆ ବଖରା । ପଶ୍ଚିମ ବଖରାରୁ ଉପରକୁ ଯିବା ପାଇଁ କାଠ ନିର୍ମିତ ଶିଡ଼ି ଥିଲା ଓ ପୂର୍ବ ବଖରାଟି ଶ୍ରୀଶ୍ରୀମା'ଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିଲା । ପୂର୍ବ ପଶ୍ଚିମକୁ ବିସ୍ତୃତ ଏହି ହଲ୍‌ଘର ଓ ତାହାର ଦକ୍ଷିଣରେ ଅବସ୍ଥିତ ବଖରାଟି ସେବକ ଓ ଭକ୍ତମାନଙ୍କ ରହିବା ପାଇଁ ବ୍ୟବହୃତ ହେଉଥିଲା । ତଳର ହଲ୍‌ଘର ଉପରେ ସମପରିସର ଗୋଟିଏ ଘର ଥିଲା ଯେଉଁଠାରେ ଠାକୁର ରହୁଥିଲେ । ଦକ୍ଷିଣକୁ ପାଚେରୀଘେରା ଛୋଟିଆ ଛାତଟିଏ । ଠାକୁର ବେଳେବେଳେ ସେଠାରେ ଚଲାବୁଲା କରୁଥିଲେ । ଉତ୍ତରରେ ଶିଡ଼ିଘରର ଉପର ଛାତ ଏବଂ ଶ୍ରୀମା'ଙ୍କ ନିର୍ଦ୍ଦିଷ୍ଟ ଘର ଉପରେ ଅବସ୍ଥିତ ସମପରିସର ଗୋଟିଏ କ୍ଷୁଦ୍ର ଘର, ଯାହା ଠାକୁରଙ୍କ ସ୍ନାନାଦି ଓ ଜଣେ ଦୁଇଜଣ ସେବକଙ୍କ ରାତ୍ରିବାସ ପାଇଁ ବ୍ୟବହୃତ ହେଉଥିଲା । ଏହି ଘରେ ପୂର୍ବପରି ସଙ୍କୁଚିତ ହୋଇ ରହିବାକୁ ହେବ ନାହିଁ ଜାଣି ମା' ନିଶ୍ଚିତ ହୋଇଥିଲେ । ଯୁବକ ଭକ୍ତମାନେ ପୂର୍ବପରି ସେବାରେ ନିଯୁକ୍ତ ରହିଲେ ଓ ସେମାନଙ୍କୁ ଦେଖି ଅନ୍ୟାନ୍ୟ ଯୁବକ ତ୍ୟାଗୀ ଭକ୍ତମାନେ ସେଠାରେ ସମବେତ ହେଲେ । ଏହି ଭାବରେ ଶ୍ରୀରାମକୃଷ୍ଣଙ୍କ କଣ୍ଠରୋଗକୁ ଅବଲମ୍ବନ କରି ଶ୍ରୀରାମକୃଷ୍ଣ-ସଂଘ ଗଠିତ ହେବାକୁ ଲାଗିଲା ଏବଂ ତାହାର କେନ୍ଦ୍ରସ୍ଥଳରେ ରହିଲେ ଶ୍ରୀଶ୍ରୀମାତାଠାକୁରାଣୀ ଏହାର ଅଧିଷ୍ଠାତ୍ରୀରୂପେ ।

ଏଠାରେ ମଧ୍ୟ ଶ୍ରୀମା'ଙ୍କର ଜୀବନ ଧାରା ପୂର୍ବ ପରି ଥିଲା । କୌଣସି ବିଶେଷ ପଥ୍ୟ ପ୍ରସ୍ତୁତ କରିବାକୁ ହେଲେ ଗୋପାଳଦାଦା ଇତ୍ୟାଦି ଦୁଇଚାରିଜଣ ଭକ୍ତ, ଯେଉଁମାନେ ମାଆଙ୍କ ସହିତ ଘନିଷ୍ଠ ଥିଲେ, ସେମାନେ ଚିକିତ୍ସକଙ୍କ ନିକଟରୁ ତାହା ବୁଝିନେଇ ମା'ଙ୍କୁ ସେ ବିଷୟରେ କହୁଥିଲେ । ମଧ୍ୟାହ୍ନର କିଛି ପୂର୍ବରୁ ଓ ସନ୍ଧ୍ୟାର କିଛି ପରେ ଶ୍ରୀମା' ଠାକୁରଙ୍କ ଭୋଜନ ବା ପାନୀୟ ନେଇ ତାଙ୍କ ଶୟନଗୃହକୁ ଯାଉଥିଲେ ଓ ଆହାର କରାଇ ନିଜ ପ୍ରକୋଷ୍ଠକୁ ଫେରି ଆସୁଥିଲେ । ତାଙ୍କୁ କାମରେ ସାହାଯ୍ୟ କରିବା ପାଇଁ ଓ ସଙ୍ଗିନୀର ଅଭାବ ଦୂର କରିବା ପାଇଁ ଲକ୍ଷ୍ମୀଦେବୀ ତାଙ୍କ ନିକଟରେ କିଛି କାଳ ଥିଲେ । କଲିକତାରୁ ଆସୁଥିବା

ଭକ୍ତମହିଳାମାନେ ମଧ୍ୟ କେତେକ ଘଣ୍ଟା ବା ଦିନେ ଦୁଇଦିନ ମାଆଙ୍କ ନିକଟରେ କଟାଇ ଯାଉଥିଲେ; କିନ୍ତୁ ଅଧିକାଂଶ ସମୟ ବୋଧହୁଏ ମାଆଙ୍କୁ ଏକାକୀ ରହିବାକୁ ପଡୁଥିଲା ।

ଉପରକୁ ଉଠିବା ପାଇଁ ଯେଉଁ କାଠର ଶିଡ଼ି ଥିଲା ତାହାର ପାହାଚ ଏତେ ଉଚ୍ଚ ଥିଲା ଯେ ସାଧାରଣ ଲୋକଙ୍କ ପକ୍ଷରେ ତାହା ଉଠିବା କଷ୍ଟସାଧ୍ୟ । ଦିନେ ଅଢ଼େଇ ସେର ଦୁଧ କଂସାରେ ନେଇ ଶ୍ରୀମା'ଉପରକୁ ଉଠିବା ବେଳେ ମୁଣ୍ଡ ବୁଲାଇ ପଡ଼ିଗଲେ । ଦୁଧ ତ ନଷ୍ଟ ହେଲା — ଉପରନ୍ତୁ ଗୋଇଠିର ହାଡ଼ ସ୍ଥାନଚ୍ୟୁତ ହେବାରୁ ମା' କେତେଦିନ ଚଲାବୁଲା କରିପାରିଲେ ନାହିଁ । ଠାକୁର ଏକଥା ଶୁଣି ଅତ୍ୟନ୍ତ ବ୍ୟଥିତ ହେଲେ । ମା'ଙ୍କ ସେବାରୁ ବଞ୍ଚିତ ହୋଇ ଠାକୁର ନିଜକୁ କିଛିଟା ନିଃସହାୟ ମଧ୍ୟ ବୋଧ କରିଥିବେ । କିନ୍ତୁ ସଦାନନ୍ଦମୟ ମହାମାନବଙ୍କ ଭାଷାରେ ଏହି ସମବେଦନା ଓ ନିର୍ଭରତା ଅଦ୍ଭୁତ ଭାବରେ ପ୍ରକାଶିତ ହୋଇ ସେହି ଦୁଃଖ ମଧ୍ୟରେ ବି ସମସ୍ତଙ୍କ ହୃଦୟରେ ଆନନ୍ଦର ହିଲ୍ଲୋଳ ସୃଷ୍ଟି କରିଥିଲା । ସେ ବାବୁରାମଙ୍କୁ ପଚାରିଲେ, ''ଏବେ କଅଣ ହେବ ? କିଏ ମୋତେ ଖୁଆଇବ ?'' ଠାକୁର ସେତେବେଳେ ମଣ୍ଡ ଖାଉଥିଲେ; ଶ୍ରୀମା' ତାହା ଉପରେ ପହଞ୍ଚାଇ ଦେଇ ଆସନ୍ତି । ଶ୍ରୀମା' ସେତେବେଳେ ନୋଥ ପିନ୍ଧୁଥିଲେ । ଠାକୁର ନାକରେ ହାତ ଦେଇ ନୋଥର ଆକାରରେ ଆଙ୍ଗୁଠି ବୁଲାଇ ଇଙ୍ଗିତ କରି ବାବୁରାମଙ୍କୁ ବୁଝାଇ କହିଲେ, ''ତାଙ୍କୁ ଝୁଡ଼ିରେ ବସେଇ, ମୁଣ୍ଡରେ ରଖି ଏଠାକୁ ନେଇ ଆସିପାରିବୁ ?'' ଏକଥା ଶୁଣି ନରେନ୍ଦ୍ର ଓ ବାବୁରାମ ହସି ହସି ଗଡ଼ିଗଲେ । ତିନିଦିନ ପରେ ଶ୍ରୀମା'ଙ୍କ ଗୋଡ଼ବ୍ୟଥା ଟିକିଏ ଉପଶମ ହେବାରୁ ବାଳକ ଭକ୍ତମାନେ ତାଙ୍କୁ ଧରାଧରି କରି ଉପରକୁ ନେଇ ଯାଇଥିଲେ ।

ଠାକୁରଙ୍କୁ ସେବା କରୁଥିବା ବାଳକ-ଭକ୍ତମାନେ ଦିନେ ସ୍ଥିର କଲେ ଯେ ଉଦ୍ୟାନରେ ଥିବା ଗୋଟିଏ ଖଜୁରୀ ଗଛର ରସ ଖାଇବେ । ଠାକୁର ସେତେବେଳେ ଶଯ୍ୟାଶାୟୀ — ସେ ଏ ବିଷୟରେ କିଛି ଜାଣି ନ ଥିଲେ । ସନ୍ଧ୍ୟାବେଳେ ନିରଞ୍ଜନ ଇତ୍ୟାଦି ଦଳବାନ୍ଧି ଖଜୁରୀ ଗଛ ଆଡ଼କୁ ଚାଲିଲେ । ଏହି ସମୟରେ ଶ୍ରୀମା' ହଠାତ୍ ଦେଖିଲେ, ଠାକୁର ତୀର ବେଗରେ ନିଜ ଘରୁ ଓହ୍ଲାଉଛନ୍ତି । ସେ ଚକିତ ହୋଇ ଭାବିଲେ, ''ଏହା କ'ଣ ସମ୍ଭବ ? ଯିଏ କଡ଼ ଲେଉଟାଇ ପାରୁନାହାନ୍ତି, ସିଏ ଏତେ ଶ୍ରୀଘ୍ର କିପରି ସିଡ଼ିରୁ ଓହ୍ଲାଇଲେ !'' ଠିକ୍ ଦେଖିଲେ କି ନାହିଁ ପରୀକ୍ଷା କରିବା ପାଇଁ ଉପର ମହଲାରେ ଠାକୁରଙ୍କ ଘରକୁ ଗଲେ । ଦେଖିଲେ ସେ ସେଠାରେ ନାହାନ୍ତି । ଘର ଶୂନ୍ୟ । ସେ ବିହ୍ୱଳ ହୋଇ ଇତସ୍ତତଃ ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ କେଉଁଠି ହେଲେ ତାଙ୍କୁ ପାଇଲେ ନାହିଁ । ଟିକିଏ ପରେ ଦେଖିଲେ ଯେ ଠାକୁର ପୂର୍ବ ପରି ତୀର ବେଗରେ ଶିଡ଼ିଦେଇ ଉଠୁଛନ୍ତି । ପରେ ଏକଥା ପଚାରିବାରୁ ଶ୍ରୀରାମକୃଷ୍ଣ କହିଲେ, ''ତୁମେ ତା' ହେଲେ ମୋର ଯିବା

ଆସିବା ଦେଖିଛ ?'' ତା'ପରେ କହିଲେ, ''ସେମାନେ ସମସ୍ତେ ପିଲାଲୋକ । ସେମାନେ ଆନନ୍ଦ କରି ଖଜୁରୀ ଗଛରୁ ରସ ଖାଇବା ପାଇଁ ଯାଉଥିଲେ । ମୁଁ ଦେଖିଲି ସେହି ଗଛତଳେ ଗୋଟିଏ ବିଷାକ୍ତ ସର୍ପ ଅଛି । ସେ ଭୀଷଣ ରାଗୀ । ପିଲାମାନେ ସେଠାକୁ ଗଲେ ସେ ସମସ୍ତଙ୍କୁ କାମୁଡ଼ିଥାଆନ୍ତା । ପିଲାମାନେ ତାହା ଜାଣି ନ ଥିଲେ । ତେଣୁ ଅନ୍ୟ ପଥ ଦେଇ ଯାଇ ସର୍ପଟିକୁ ବଗିଚାରୁ ତଡ଼ିଦେଲି ! କହିଲି, 'ଆଉ କେବେ ଏଠାକୁ ଆସିବୁ ନାହିଁ' ।'' ଏକଥା ଅନ୍ୟ କାହାକୁ କହିବା ପାଇଁ ସେ ନିଷେଧ କଲେ ।

ଶ୍ରୀମା'ଙ୍କୁ ବାଳକଭକ୍ତମାନେ କେଉଁ ଦୃଷ୍ଟିରେ ଦେଖୁଥିଲେ ତାହାର ନିଦର୍ଶନ ଗୋଟିଏ ଛୋଟିଆ ଘଟଣାରୁ ଆମେ ପାଇଥାଉ । ଶ୍ରୀରାମକୃଷ୍ଣ ଦିନେ ଏମାନଙ୍କୁ ପଚାରିଲେ, ତୁମେମାନେ କଅଣ ଭିକ୍ଷାର ଅନ୍ନ ଖାଇବାକୁ ଇଚ୍ଛା କର ? ଏହା ଶୁଣି ନରେନ୍ଦ୍ର ଓ ଅନ୍ୟାନ୍ୟ ଭକ୍ତମାନେ ଉଲ୍ଲସିତ ହୋଇ ଉଠିଲେ । ଭିକ୍ଷା ପାଇଁ ବାହାରିବା ପୂର୍ବରୁ ସେମାନେ ଠିକ୍ କଲେ ଯେ, ଶ୍ରୀମା'ଙ୍କ ନିକଟରୁ ପ୍ରଥମ ଭିକ୍ଷା ନେବେ । ଶ୍ରୀମା'ଙ୍କ ନିକଟରେ ଉପସ୍ଥିତ ହେବାରୁ ସେ ସେମାନଙ୍କ ପାତ୍ରରେ ଗୋଟିଏ ଟଙ୍କା ରଖିଦେଲେ । ଏହି ଭାବରେ ପ୍ରତ୍ୟେକ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ସେମାନେ ଶ୍ରୀମା'ଙ୍କ ଆଶୀର୍ବାଦ ଭିକ୍ଷା କରୁଥିଲେ ଏବଂ ସ୍ନେହମୟୀ ଜନନୀ ମଧ୍ୟ ତାହା ଅକାତରରେ ଦେଉଥିଲେ । ଠାକୁରଙ୍କ ଦେହ କ୍ରମଶଃ ଦୁର୍ବଳ ହୋଇଯାଉଛି ଦେଖି କିଏ ଦୁଃଖ କଲେ ଶ୍ରୀମା' ତାଙ୍କୁ ସାନ୍ତ୍ୱନା ଦେଉଥିଲେ ଏବଂ ସେବା ବିଷୟରେ କୌଣସି ସମସ୍ୟା ଉଠିଲେ ଶ୍ରୀମା' ତାହାର ସମାଧାନ ମଧ୍ୟ କରୁଥିଲେ । ବସ୍ତୁତଃ କାଶୀପୁରଠାରେ ପ୍ରତ୍ୟେକ କାର୍ଯ୍ୟର ପଶ୍ଚାତ୍‌ରେ ଶ୍ରୀମା'ଙ୍କ ଅଦୃଶ୍ୟ ମଙ୍ଗଳମୟହସ୍ତ ପ୍ରସାରିତ ରହି ସମସ୍ତଙ୍କ ପ୍ରାଣରେ ଆଶା ଓ ଆନନ୍ଦ ସଞ୍ଚାର କରୁଥିଲା ।

## ନୀରବ ସାଧନା

ପ୍ରୟୋଜନ ପଡ଼ିଲେ ଶ୍ରୀଶ୍ରୀମାତାଠାକୁରାଣୀ ପୂର୍ବ ସଂସ୍କାରରୁ ନିଜକୁ ମୁକ୍ତ କରି ଉଚିତ କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ଆମେ ଏହାର ବହୁ ଦୃଷ୍ଟାନ୍ତ ପାଇଛୁ । ଏପରି ବ୍ୟବସ୍ଥା ଅନେକ ସମୟରେ ଠାକୁରଙ୍କ ପରାମର୍ଶ ଅନୁଯାୟୀ ସେ କରୁଥିଲେ । ସ୍ଥଳ ବିଶେଷରେ ଶ୍ରୀମା' ନିଜେ ଅବସ୍ଥା ଅନୁଯାୟୀ ବ୍ୟବସ୍ଥା କରୁଥିଲେ । ଏସବୁ କଥା ସାଧାରଣ ଲୋକାଚାର ଇତ୍ୟାଦି କ୍ଷେତ୍ରରେ ସୀମିତ ଥିଲା । କିନ୍ତୁ ମୌଳିକ ଭାବରାଜ୍ୟରେ ଉଭୟଙ୍କର ଏତେ ଐକ୍ୟ ଥିଲା ଯେ ଠାକୁରଙ୍କୁ ସେ ବିଷୟରେ ତାଙ୍କୁ କିଛି ଶିଖାଇବାକୁ ପଡୁ ନ ଥିଲା । ଗୋଟିଏ ସ୍ୱରରେ ବନ୍ଧା ଦୁଇଟି ହୃଦୟ ଗୋଟିଏ ଛନ୍ଦରେ ସର୍ବଦା ବାଜୁଥିଲା ।

ଜ୍ୟେଷ୍ଠ ମାସ ଶୁକ୍ଳ ତ୍ରୟୋଦଶୀ ତିଥିରେ କଲିକତାଠୁ କେତେ ମାଇଲ ଉତ୍ତରରେ ଅବସ୍ଥିତ ପାନିହାଟିଠାରେ ପ୍ରତିବର୍ଷ ଚୂଡ଼ା ବା ଦଣ୍ଡ ମହୋତ୍ସବ ହୋଇଥାଏ । ଠାକୁର ପୂର୍ବରୁ ଏହି ଉତ୍ସବରେ ବହୁଥର ଯୋଗଦାନ କରିଥିଲେ । ୧୮୮୫ ଖ୍ରୀଷ୍ଟାବ୍ଦରେ ଏହି ତିଥି ଉପଲକ୍ଷେ ଠାକୁର ତାଙ୍କର ଇଂରାଜୀଶିକ୍ଷିତ ଭକ୍ତମାନଙ୍କୁ ସେହି ଉତ୍ସବରେ ଯୋଗଦାନ କରିବା ପାଇଁ ଉତ୍ସାହିତ କଲେ । ସେ କହିଲେ, ''ସେଠାରେ ଏହି ଦିନ ଆନନ୍ଦର ମେଳା ବସିବ । କେତେ ହରିନାମ ସଂକୀର୍ତ୍ତନ ହେବ । ଯାହା ତୁମେମାନେ ପୂର୍ବେ କେବେ ଦେଖିନାହଁ—ଚାଲ ଦେଖି ଆସିବ ।'' ପଚିଶ ଜଣ ଭକ୍ତ ସେହି ଉତ୍ସବ ଦିନ ନଅଟା ବେଳେ ଦୁଇଟି ଡଙ୍ଗା ଭଡ଼ା କରି ଦକ୍ଷିଣେଶ୍ୱରରେ ସମବେତ ହେଲେ । ଠାକୁରଙ୍କ ପାଇଁ ଗୋଟିଏ ଡଙ୍ଗା ପୂର୍ବରୁ ଘାଟରେ ବନ୍ଧା ଥିଲା । କେତେଜଣ ସ୍ତ୍ରୀ-ଭକ୍ତ ସକାଳୁ ଆସି ଶ୍ରୀମା'ଙ୍କୁ ରୋଷେଇ କରିବାରେ ସାହାଯ୍ୟ କରୁଥିଲେ । ଖାଇବା ପିଇବା ସାରି ଦିନ ଦଶଟାବେଳେ ସମସ୍ତେ ଯିବା ପାଇଁ ପ୍ରସ୍ତୁତ ହେଲେ । ଠାକୁର ଜଣେ ସ୍ତ୍ରୀ-ଭକ୍ତଙ୍କ ଦ୍ୱାରା ଶ୍ରୀମା'ଙ୍କୁ ପଚାରି ପଠାଇଲେ—ସିଏ ଯିବେ କି ନାହିଁ । ଶ୍ରୀମା' ସେଠାରେ ବହୁତ ଭିଡ଼ ହେବ ଇତ୍ୟାଦି କହି ଯିବା ପାଇଁ ଅନିଚ୍ଛା ପ୍ରକାଶ କଲେ । ସ୍ତ୍ରୀଭକ୍ତମାନେ ମାଆଙ୍କ ଅନୁମତି ନେଇ ଠାକୁରଙ୍କ ଡଙ୍ଗାରେ ଉଠି ଉତ୍ସବ ଦେଖିବା ପାଇଁ ଗଲେ । ଉତ୍ସବରେ ଯୋଗଦାନ କରି ରାତି ସାଢ଼େଆଠଟା ସମୟରେ ଠାକୁର ଭକ୍ତଙ୍କ ସହିତ ଦକ୍ଷିଣେଶ୍ୱର ଫେରିଆସିଲେ । ରାତିରେ ଖାଇବାକୁ ବସି ଠାକୁର ଜଣେ ସ୍ତ୍ରୀ ଭକ୍ତଙ୍କୁ କହିଲେ, ''ଏତେ ଭିଡ଼—ଭାବ ସମାଧି ପାଇଁ ସମସ୍ତେ ମୋତେ ଲକ୍ଷ୍ୟ କରୁଥିଲେ—ମୋ ସାଙ୍ଗରେ ନ ଯାଇ ସେ ଖୁବ୍ ଭଲ କରିଛି । ତାକୁ ମୋ ସହିତ ଦେଖିଲେ ଲୋକେ କହିଥା'ନ୍ତେ, 'ହଂସହଂସୀ ଆସିଛନ୍ତି !' ସେ ଖୁବ୍ ବୁଦ୍ଧିମତୀ ! ଶ୍ରୀମା' ଏହି କଥା ସ୍ତ୍ରୀ-ଭକ୍ତଙ୍କ ନିକଟରୁ ଶୁଣି କହିଲେ, ''ସକାଳେ ସେ ଯେଉଁଭାବରେ ଖବର ପଠାଇଥିଲେ ସେଥିରୁ ମୁଁ ବୁଝିପାରିଲି, ସେ ଏ ବିଷୟରେ ମୋତେ ସ୍ପଷ୍ଟଭାବରେ ଅନୁମତି ଦେଉନାହାନ୍ତି । ନ ହେଲେ କହିଥାଆନ୍ତେ ଯେ ହଁ, ସେ ନିଶ୍ଚୟ ଯିବ । ତାହା ନ କହି ଯେତେବେଳେ ମୀମାଂସାର ଭାର ମୋ ଉପରେ ନ୍ୟସ୍ତ କଲେ ସେତେବେଳେ ସ୍ଥିର କଲି ନ ଯିବା ହିଁ ଭଲ ।''

ଶ୍ରୀମା'ଙ୍କ ବୁଦ୍ଧିମତ୍ତା ବିଷୟରେ ଠାକୁର ସ୍ତ୍ରୀ-ଭକ୍ତମାନଙ୍କୁ କହିଥିଲେ, ''ମାରୁଆଡ଼ି ଭକ୍ତ ଲକ୍ଷ୍ମୀ ନାରାୟଣ ଯେତେବେଳେ ଦଶହଜାର ଟଙ୍କା ଦେବାକୁ ଚାହିଁଲା, ସେତେବେଳେ ମୋ ମୁଣ୍ଡ ଉପରେ ଯେପରି ବଜ୍ର ପଡ଼ିଲା । ମୁଁ ମା'ଙ୍କୁ କହିଲି, 'ମା', ଏତେଦିନ ପରେ ପୁଣି ମୋତେ ପ୍ରଲୋଭନ ଦେଖାଉଛୁ ?' ତାର (ଶ୍ରୀମା'ଙ୍କ) ମନ ବୁଝିବା ପାଇଁ ତାକୁ ଡକାଇ ଆଣି କହିଲି, 'ମୋତେ ସେ ଟଙ୍କା ଦେବାକୁ ଚାହୁଁଛି, ମୁଁ ନେଇ ପାରିବି ନାହିଁ କହିବାରୁ ସେ ତୁମକୁ ତାହା ଦେବାକୁ ଚାହୁଁଛି । ତୁମେ ତାହା ନେଉନା କାହିଁକି ? ତୁମର ମତ କ'ଣ ? ତାହା ଶୁଣି ସେ

କହିଲା, 'ତାହା କିପରି ହେବ, ମୋର ଟଙ୍କା ନେବା ହେବ ନାହିଁ । ମୁଁ ନେଲେ ତାହା ତୁମରି ନେବା ହେବ; କାରଣ ମୁଁ ରଖିଲେ ତାହା ତୁମର ସେବା ପାଇଁ ଖର୍ଚ୍ଚ କରିବି ।' ଏ କଥା ଶୁଣି ମୁଁ ନିଶ୍ଚିତ ହେଲି ।'' କେବଳ ଯେ ଲୌକିକ କ୍ଷେତ୍ରରେ ତାହା ନୁହେଁ, ଆଧ୍ୟାତ୍ମିକ ବିଷୟରେ ମଧ୍ୟ ଶ୍ରୀମା'ଙ୍କ ଚିନ୍ତାଧାରା ଠାକୁରଙ୍କ ଅନୁରୂପ ଥିଲା । ଷୋଡ଼ଶୀ-ପୂଜାରେ ଆମେ ସେମାନଙ୍କର ଏକାତ୍ମତାର ପ୍ରମାଣ ପାଇଛୁ । ନହବତ୍ ଘରେ ଓ ଶ୍ୟାମପୁକୁରରେ ପତିସେବା ପାଇଁ ଯେଉଁ କଷ୍ଟ ସ୍ୱୀକାର କରିଥିଲେ, ତାହା ଦେଖି ଆମେ ସ୍ତମ୍ଭିତ ହୋଇଛୁ । ସମସ୍ତ ଜୀବନକୁ ସେ ଏକ ଅବିରାମ ସାଧନାରେ ପରିଣତ କରିଥିଲେ । ଶ୍ରୀମା'ଙ୍କର କୌଣସି ପ୍ରଚେଷ୍ଟା ନିଷ୍ପ୍ରୟୋଜନ ନ ଥିଲା, ତାହା କେବଳ ବିଧିକୁ ଅନୁସରଣ କରି ନୁହେଁ—ବରଂ ଅନ୍ତରର ଆବେଗବଶତଃ ହୋଇଥାଏ । ତେଣୁ ସେମାନଙ୍କର ପ୍ରତ୍ୟେକ କର୍ମରେ ଗୋଟିଏ ଅଭିନବତ୍ୱ ଥିଲା । ତାଙ୍କର ଏହି ନୀରବ ସାଧନାରେ ଅନେକାଂଶ ଅଜ୍ଞାତ । ସମ୍ଭବତଃ ୧୮୮୩ ଖ୍ରୀଷ୍ଟାବ୍ଦରେ ଶ୍ରୀମା' ସାବିତ୍ରୀ-ବ୍ରତ ଅନୁଷ୍ଠାନ କରିଥିଲେ । ଏହି ବିଷୟରେ ଅଧିକ କିଛି ଆମକୁ ଜଣା ନାହିଁ ।

ଦକ୍ଷିଣେଶ୍ୱରରେ ଶ୍ରୀମା' ଅନେକ ଧର୍ମାତ୍ମାଙ୍କ ସଂସ୍ପର୍ଶରେ ଆସିଥିଲେ । ସେମାନଙ୍କ ନିକଟରୁ ବହୁ କଥା ଶିଖିଥିଲେ । ଭୈରବୀ ବ୍ରାହ୍ମଣୀ ଯୋଗେଶ୍ୱରୀଙ୍କ କଥା ପୂର୍ବରୁ କୁହାଯାଇଛି । ଆଉ ଜଣେ ଭୈରବୀଙ୍କ ବିଷୟରେ ଆମେ ମଧ୍ୟ ଜାଣୁ । ଦିନେ ଶ୍ରୀରାମକୃଷ୍ଣ ମା'ଙ୍କୁ କହିଲେ, ''ଆଜି ଜଣେ ଭୈରବୀ ଆସିବେ । ତାଙ୍କ ପାଇଁ ଗୋଟିଏ ଲୁଗା ରଙ୍ଗ କରି ରଖିବ । ସେ ଆସିଲେ ତାଙ୍କୁ ଦେବାକୁ ହେବ ।'' ଦିନ ଦ୍ୱିପ୍ରହରରେ ସେହି ଭୈରବୀ ଆସି ପହଞ୍ଚିଲେ ଓ ଠାକୁରଙ୍କ ସହିତ ବହୁ କଥାବାର୍ତ୍ତା କଲେ ଏବଂ କିଛି ଦିନ ଦକ୍ଷିଣେଶ୍ୱରରେ ରହିବେ ବୋଲି ମନସ୍ଥ କଲେ । ତାଙ୍କର ମୁଣ୍ଡ ଟିକିଏ ଗରମ ଥିଲା । ସେ ଶ୍ରୀମା'ଙ୍କର ରକ୍ଷଣାବେକ୍ଷଣ କରୁଥିଲେ ଓ ସମୟ ପଡ଼ିଲେ ତାଙ୍କୁ ଡରାଉଥିଲେ ମଧ୍ୟ । ଦିନେ କହିଲେ, ''ତୁ ମୋ ପାଇଁ ପଖାଳ ଭାତ ରଖିବୁ, ନ ରଖିଲେ ତୋତେ ତ୍ରିଶୂଳରେ ମାରିଦେବି ।'' ଏସବୁ କଥା ଶୁଣି ମା' ଟିକିଏ ଡରି ଯାଇଥିଲେ; ତେଣୁ ଶ୍ରୀରାମକୃଷ୍ଣ ତାଙ୍କୁ ବୁଝାଇ କହିଲେ, ''ଭୟର କୌଣସି କାରଣ ନାହିଁ । ସେ ପ୍ରକୃତରେ ଜଣେ ଭୈରବୀ—ତେଣୁ ମୁଣ୍ଡ ଟିକିଏ ଗରମ ।'' ଭୈରବୀ ଦିନେ ଦିନେ ଏତେ ଭିକ୍ଷା କରି ଆଣୁଥିଲେ ଯେ, ସେଥିରେ ସାତ ଆଠଦିନ ଚଳିଯାଉଥିଲା । କାଳୀବାଡ଼ିର କର୍ମଚାରୀମାନେ ତାଙ୍କୁ କହିଲେ, ''ମା' ତୁମେ ଭିକ୍ଷା ପାଇଁ ବାହାରକୁ ଯାଅ କାହିଁକି ? ଏଠି ତ ଭିକ୍ଷାର ବ୍ୟବସ୍ଥା ରହିଛି ।'' ଭୈରବୀ କହିଲେ, ''ତୁମ କଥାକୁ ମୁଁ ବିଶ୍ୱାସ କରେ ନାହିଁ ।''

ଦକ୍ଷିଣେଶ୍ୱରରେ ଯେତେବେଳେ ଶ୍ରୀମା' ଓ ଲକ୍ଷ୍ମୀଦେବୀ ଏକାଠି ରହୁଥିଲେ, ସେତେବେଳେ ଭୋର ତିନିଟାରେ ଠାକୁର ଶୌଚ ଯିବା ପାଇଁ

ବାହାରନ୍ତି । ନହବତ୍ ନିକଟକୁ ଆସି ସେ ଡାକୁଥିଲେ, ''ଆରେ ଲକ୍ଷ୍ମୀ, ଉଠ, ଉଠ । ତୋ ଖୁଡ଼ୀକୁ ଡାକ । ଆଉ କେତେ ଶୋଇବୁ ? ପାହାନ୍ତିଆ ହେଲାଣି । ଗଙ୍ଗାଜଳ ମୁହଁରେ ଦେଇ ମା'ଙ୍କର ନାମ କର । ଧ୍ୟାନ ଜପ ଆରମ୍ଭ କର ।'' ସେତେବେଳେ ଶ୍ରୀମା' ଓ ଲକ୍ଷ୍ମୀଦେବୀଙ୍କ ନିଦ ପତଳା ହୋଇ ଆସିଥାଏ । କିନ୍ତୁ ଶୀତଦିନେ ଠାକୁରଙ୍କ କଥା ଶୁଣି ମଧ୍ୟ ଲକ୍ଷ୍ମୀଦେବୀଙ୍କୁ ଆହୁରି ଶୋଇବା ପାଇଁ ସୁଯୋଗ ଦେବା ଲାଗି ଆସ୍ତେ ଆସ୍ତେ ମା' କହୁଥିଲେ, ''ତୁ ଚୁପ୍ କର । ତାଙ୍କ ଆଖିରେ ନିଦ ନାହିଁ । ଏବେ ଉଠିବା ସମୟ ହୋଇନି—କାଉ ଡାକିନି—ଉତ୍ତର ଦେ'ନା ।'' ଠାକୁର ସେମାନଙ୍କର ଉତ୍ତର ନ ପାଇ, ନିଦ ଭାଙ୍ଗିନାହିଁ ମନେ କରି କୌତୁକରେ କବାଟ ତଳେ ପାଣି ଢାଳି ଦେଉଥିଲେ । ସେତେବେଳେ ବିଛଣା ତିନ୍ତିଯିବା ଭୟରେ ସେମାନେ ସାଙ୍ଗେ ସାଙ୍ଗେ ଉଠିପଡୁଥିଲେ, ଦିନେ ଦିନେ ତିନ୍ତି ମଧ୍ୟ ଯାଉଥିଲା । ଏପରି କରିବା ଫଳରେ ଲକ୍ଷ୍ମୀଦେବୀଙ୍କର ଅତି ସକାଳୁ ଉଠିବା ଅଭ୍ୟାସ ହୋଇଯାଇଥିଲା । ଶ୍ରୀମା'ଙ୍କର ରାତି ଥାଉ ଥାଉ ଉଠିବା କଥା ଆମେ ପୂର୍ବରୁ ଆଲୋଚନା କରିଛୁ ।

ଦିନେ ଠାକୁର ଉଚ୍ଚଭାବାବସ୍ଥା ବିଷୟରେ ମା'ଙ୍କର ଧାରଣା ଶକ୍ତି ପରୀକ୍ଷା କରିଥିଲେ । ସେଦିନ ଶ୍ରୀମା'ଙ୍କୁ ବିଛଣାପତ୍ର ଝାଡ଼ି ଘର ପରିଷ୍କାର ରଖିବାକୁ କହି ଦେବୀ-ଦର୍ଶନ କରିବା ପାଇଁ ସେ କାଳୀମନ୍ଦିରକୁ ଗଲେ । ଶ୍ରୀମା' କ୍ଷିପ୍ରହସ୍ତରେ ଗୃହକର୍ମ ପ୍ରାୟ ଶେଷ କରିଛନ୍ତି । ଏପରି ସମୟରେ ଠାକୁର ମାତାଲଙ୍କ ପରି ଟଳିଟଳି ମା'ଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ, ଗୋଡ଼ ଠିକ୍ ଭାବରେ ପକାଇପାରୁ ନାହାନ୍ତି, କଥା ଅସ୍ପଷ୍ଟ । ଶ୍ରୀମା' ବୁଝିପାରି ନଥିଲେ ଯେ, ଠାକୁର ତାଙ୍କର ଏତେ ନିକଟରେ । ଅକସ୍ମାତ୍ ଠାକୁର ତାଙ୍କୁ ପଚାରିଲେ, ''ଆଚ୍ଛା, ମୁଁ କଅଣ ମଦ ଖାଇଛି ?'' ଶ୍ରୀମା' ବୁଲିପଡ଼ି ସ୍ତମ୍ଭିତ ହେଲେ, କିନ୍ତୁ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ନା, ନା, ମଦ ଖାଇବ କାହିଁକି ?'' ଠାକୁର ପଚାରିଲେ, ''ତେବେ ଟଳୁଛି କାହିଁକି ? କାହିଁକି କଥା କହିପାରୁ ନାହିଁ; ମୁଁ କଅଣ ମାତାଲ ?'' ଶ୍ରୀମା' ବ୍ୟସ୍ତ ହୋଇ ଶୀଘ୍ର ଉତ୍ତର ଦେଲେ, ''ନା, ନା, ତୁମେ ମଦ ଖାଇବ କାହିଁକି ? ତୁମେ ମା' କାଳୀଙ୍କ ଭାବାମୃତ ଖାଇଛ ।'' ଠାକୁର ଆଶ୍ୱସ୍ତ ହୋଇ କହିଲେ, 'ଠିକ୍ କହିଛ' ଏବଂ ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ ।

ଉଚ୍ଚ ଧର୍ମତତ୍ତ୍ୱ ସମ୍ବନ୍ଧରେ ଠାକୁର ଶ୍ରୀମା'ଙ୍କୁ ବିଭିନ୍ନଭାବରେ ଉପଦେଶ ଦେଉଥିଲେ । ଦିନେ ଶ୍ରୀମା' ଓ ଲକ୍ଷ୍ମୀଦେବୀଙ୍କ ନିକଟରେ ଶ୍ରୀକୃଷ୍ଣ-ଲୀଳା ବର୍ଣ୍ଣନା କରି ଲକ୍ଷ୍ମୀଦେବୀଙ୍କୁ କହିଲେ, ''ମୋ ପାଖରୁ ଯାହା ଶୁଣିଲ, ତୁମେ ଦୁଇଜଣ ଆଲୋଚନା କରିବ । ଗାଈମାନେ ଦିନସାରା ଯାହା ଖାଆନ୍ତି ରାତିରେ ତାକୁ ପାକୁଳି କରନ୍ତି । ତୁ ଓ ତୋର ଖୁଡ଼ୀ ଏ ବିଷୟରେ ଆଲୋଚନା କଲେ ଆଉ ଭୁଲିବ ନାହିଁ ।''

ଶ୍ରୀମା' ଭକ୍ତମାନଙ୍କ ସହିତ ତାଙ୍କର କୀର୍ତ୍ତନ ଦେଖିବାକୁ ଭଲପାଆନ୍ତି ସେକଥା ଠାକୁର ଜାଣିଥିଲେ । ତେଣୁ କୀର୍ତ୍ତନ ପୂର୍ବରୁ ରାମଲାଲଙ୍କୁ ଉତ୍ତର ପଟର କବାଟ ଖୋଲି ରଖିବାକୁ କହନ୍ତି, ଯେପରି କି ନହବତ୍‌ରୁ ଶ୍ରୀମା' ତାହା ଦେଖିପାରନ୍ତି । ଠାକୁର କହୁଥିଲେ, ''ଏଠାରେ କେତେ ଭାବଭକ୍ତି ହେବ, ସେମାନେ ତାହା ଦେଖିବେ ନାହିଁ ? ଶୁଣିବେ ନାହିଁ ? ତେବେ ଶିଖିବେ କେମିତି ?'' ତାଟି ମଧ୍ୟରେ ଥିବା କ୍ଷୁଦ୍ର ଛିଦ୍ର ଦେଇ ସେମାନେ କୀର୍ତ୍ତନାଦି ଦେଖୁଥିଲେ । ସେହି ଛିଦ୍ର ବଡ଼ ହୋଇଯାଇଛି ଦେଖି ଠାକୁର ହସି ହସି ରାମଲାଲଙ୍କୁ କହିଲେ, ''ତୋ ଖୁଡ଼ୀଙ୍କ ପରଦା ବେଶୀ ଫାଙ୍କ ହୋଇଗଲାଣି ଯେ !''

ମନକୁ ସମ୍ପୂର୍ଣ୍ଣରୂପେ ଅଧ୍ୟାତ୍ମକ୍ଷେତ୍ରରେ ନିବିଷ୍ଟ ରଖିବା ପାଇଁ ରୋଗନିବାରଣ କରିବାର ମନ୍ତ୍ର ଇଷ୍ଟଙ୍କ ପାଦପଦ୍ମରେ ଅର୍ପଣ କରିବା ପାଇଁ ଠାକୁର ଶ୍ରୀମା'ଙ୍କୁ କହିଥିଲେ । ଯୋଗୀନ୍ ମା' ଦିନେ ଠାକୁରଙ୍କୁ ଆହାର ଦେଇ ସାରିବା ପରେ ଠାକୁର ହଠାତ୍ କହିଲେ, ''ଆହେ ! ମୋ ତଣ୍ଟିରେ କଷ୍ଟ ହେଉଛି, ତୁମେ ଭଲ କରିବାର ଯେଉଁ ମନ୍ତ୍ରଟି ଜାଣ, ତାହା ଉଚ୍ଚାରଣ କରି ତଣ୍ଟିରେ ହାତ ବୁଲାଇଦିଅ ।'' ଯୋଗୀନ୍ ମା' ଠାକୁରଙ୍କର ଆଦେଶ ପାଳନ କଲେ । ମା'ଙ୍କ ନିକଟକୁ ଆସି ସେ କହିଲେ, ''ମୁଁ ଯେ ମନ୍ତ୍ର ଜାଣେ ଏକଥା ସେ କିପରି ଜାଣିଲେ ?'' ଶ୍ରୀମା' ହସି ହସି ଉତ୍ତର ଦେଲେ, ''ସେ ସବୁ କଥା ଜାଣିପାରନ୍ତି, ଅଥଚ ସତ୍ ଉଦ୍ଦେଶ୍ୟରେ ଯଦି କେହି କିଛି କରେ ସେ ସେଥିପାଇଁ ତାଙ୍କୁ ଘୃଣା କରନ୍ତି ନାହିଁ; ଭୟ କର ନାହିଁ । ମୁଁ ପୂର୍ବେ ଏହି ମନ୍ତ୍ର ପାଇଥିଲି । ଏଠାକୁ ଆସି ତାଙ୍କୁ ଏକଥା କହିବାରୁ ସେ କହିଲେ, ''ମନ୍ତ୍ର ନେଇଛ, ସେଥିରେ କ୍ଷତି ନାହିଁ— ବର୍ତ୍ତମାନ ତାହା ଇଷ୍ଟ-ପାଦପଦ୍ମରେ ସମର୍ପଣ କର ।''

ସେତେବେଳେ ପ୍ରଚଳିତ ଦେଶାଚାର ଓ ପାରିବାରିକ ରୀତି ଅନୁଯାୟୀ ଠାକୁର ଅନ୍ଦର ମହଲର ସଭ୍ୟତା ମାନି ଚଳୁଥିଲେ । ଶ୍ରୀମା'ଙ୍କ କଥୋପକଥନରୁ ଜଣାଯାଏ ଯେ ନହବତ୍‌ରେ ଥିଲାବେଳେ ଠାକୁର ତାଙ୍କ ନିକଟକୁ ପୁତୁରା ରାମଲାଲଙ୍କୁ ମଧ୍ୟ ଯିବାକୁ ନିଷେଧ କରୁଥିଲେ । ଦିନେ ସକାଳେ ଭବତାରିଣୀଙ୍କ ପ୍ରସାଦ ଦେବାପାଇଁ ଯାଇ ଶ୍ରୀମା' ଓ ଲକ୍ଷ୍ମୀଦେବୀଙ୍କ ସହିତ ଶ୍ରୀଯୁକ୍ତ ହୃଦୟ ଅନେକ ଗପ ଓ ଥଟ୍ଟା ତାମସା କରି ଫେରିଲେ । ସେଥିପାଇଁ ଠାକୁର ତାଙ୍କୁ ତୀବ୍ର ଭର୍ତ୍ସନା କରିଥିଲେ । ଲୋକାଚାର ମାନି ଚଳିଲେ ସୁଦ୍ଧା ଥରେ ଠାକୁର ଶ୍ରୀମା'ଙ୍କୁ ଦକ୍ଷିଣେଶ୍ୱରରୁ ଚାଲି ଚାଲି କଲିକତା ଯିବାକୁ କହିଥିଲେ ଏବଂ ଅନ୍ୟ ଜଣେ ସ୍ତ୍ରୀଲୋକଙ୍କ ଦ୍ୱାରା ଥରେ ଦକ୍ଷିଣେଶ୍ୱର ବଜାରରୁ ସଉଦା କରାଇଥିଲେ ।

ଶ୍ରୀମା' ଭଲ ଭଜନ ଗାଇ ପାରୁଥିଲେ । ଦିନେ ରାତିରେ ଲକ୍ଷ୍ମୀଦେବୀଙ୍କ ସହିତ ଶ୍ରୀମା' ଧୀର ଗଳାରେ ଭଜନ ଗାଉଥିଲେ । ସେହି ଗୀତଟି ବେଶ୍ ଜମି ଉଠିଥିଲା । ଠାକୁର ତାହା ଶୁଣିପାରିଥିଲେ ଓ ପରଦିନ ଶ୍ରୀମା'ଙ୍କୁ ସେ ବିଷୟରେ

ଉତ୍ସାହିତ କରିଥିଲେ । ଦିନେ ଶ୍ରୀମା' ଯୂଇ ଫୁଲର ଖୁବ୍ ସୁନ୍ଦର ଗଜରା ମାଳ ଗୁନ୍ଥି ପଥରବାଟିରେ ପାଣିରେ ବୁଡ଼ାଇ ରଖିଲେ । ପରଦିନ ସକାଳେ କଢ଼ଗୁଡ଼ିକ ଫୁଟିଯିବାରୁ ତାହାକୁ ମନ୍ଦିରକୁ ପଠାଇଦେଲେ । ଠାକୁର ମା'ଙ୍କୁ ଦର୍ଶନ କରିବାକୁ ଯାଇ ମାଳାପରିହିତା ଦେବୀଙ୍କୁ ଦର୍ଶନ କରି ଆନନ୍ଦରେ ବିଭୋର ହୋଇ ବାରମ୍ବାର କହିବାକୁ ଲାଗିଲେ, ''ଆହା ! ମା'ଙ୍କ ଦେହର ମାଳା କିପରି ଶୋଭା ପାଉଛି !'' ଯେତେବେଳେ ଜାଣିଲେ ଯେ ଶ୍ରୀମା' ଏହି ମାଳା ଗୁନ୍ଥିଛନ୍ତି ସେତେବେଳେ ମା'ଙ୍କ ନିକଟକୁ ଖବର ପଠାଇଲେ ଥରେ ଦେବୀଙ୍କୁ ଦର୍ଶନ କରିଯିବା ପାଇଁ ।

ଶ୍ରୀମା' ଓ ଲକ୍ଷ୍ମୀଦେବୀ ଉତ୍ତର-ପଶ୍ଚିମାଞ୍ଚଳର ଜଣେ ବୃଦ୍ଧ ସନ୍ନ୍ୟାସୀଙ୍କ ନିକଟରୁ ଶକ୍ତିମନ୍ତ୍ର ଦୀକ୍ଷା ନେଇଥିଲେ । ସନ୍ନ୍ୟାସୀ ସ୍ଥୂଳକାୟ-ଶରୀର, ଶାନ୍ତ ଓ ସୁପୁରୁଷ ଥିଲେ—ନାମ, ସ୍ୱାମୀ ପୂର୍ଣ୍ଣାନନ୍ଦ । ସେ ସେତେବେଳେ କାମାରପୁକୁରକୁ ଯାଇଥିଲେ । ଦକ୍ଷିଣେଶ୍ୱରରେ ଦିନେ ଠାକୁର ଶ୍ରୀମା'ଙ୍କ ଜିଭରେ କଅଣ ଲେଖିଦେଲେ । ଶ୍ରୀମା' ପରଦିନ ଲକ୍ଷ୍ମୀଦେବୀଙ୍କୁ କହିଲେ, ''କାଲି ସେ ମୋ ଜିଭରେ ମନ୍ତ୍ର ଲେଖିଦେଇଛନ୍ତି, ତୁ ମଧ୍ୟ ତାଙ୍କ ନିକଟକୁ ଯାଆ ।'' ଏହାର କିଛି ଦିନ ପରେ ଲକ୍ଷ୍ମୀଦେବୀଙ୍କ ଜିହ୍ୱାରେ ଠାକୁର ରାଧାକୃଷ୍ଣଙ୍କ ବୀଜମନ୍ତ୍ର ଓ ନାମ ଲେଖିଦେଲେ । ସେ ଶକ୍ତିମନ୍ତ୍ରରେ ଦୀକ୍ଷିତା ଜାଣି ସୁଦ୍ଧା କହିଥିଲେ— ''ତାହାହେଉ, ମୁଁ ଠିକ୍ ଦେଇଛି ।''

ପ୍ରତିଦିନ ରାତି ତିନିଟାରୁ ଉଠି ଶ୍ରୀମା' ନହବତ୍‌ରେ ପଶ୍ଚିମ ଦିଗର ବାରଣ୍ଡାରେ ଦକ୍ଷିଣ ଦିଗକୁ ମୁହଁ କରି ଧ୍ୟାନ କରୁଥିଲେ । ଏହାର କୌଣସି ବ୍ୟତିକ୍ରମ ହେଉ ନ ଥିଲା । ଦିନେ ଦେହ ଭଲ ନ ଥିବାରୁ ଧ୍ୟାନରେ ବସିବାରେ ଟିକିଏ ଡେରି ହେଲା । ତା'ପରେ କେତେଦିନ ଆଳସ୍ୟ ଯୋଗୁଁ ଧ୍ୟାନ କରିବାର ସମୟ କ୍ରମେ ପଛାଇ ଯିବାକୁ ଲାଗିଲା । ଏହା ଲକ୍ଷ୍ୟ କରି ଶ୍ରୀମା' ବୁଝିଲେ ସତ୍‌କର୍ମ କରିବା ପାଇଁ ଆନ୍ତରିକ ଯତ୍ନ ଓ ନିଷ୍ଠାର ପ୍ରୟୋଜନ । ସେ ଏ ବିଷୟରେ ସତର୍କ ହୋଇଗଲେ । ସେ ଖୁବ୍ ଅଧିକ ସଂଖ୍ୟକ ଜପ କରୁଥିଲେ । ପରବର୍ତ୍ତୀ କାଳରେ ସେ ଜଣେ ଭକ୍ତଙ୍କୁ କହିଥିଲେ, ''ତୁମମାନଙ୍କ ବୟସରେ ମୁଁ କେତେକାମ କରିଛି ! ଏତେ କରି ମଧ୍ୟ ପ୍ରତିଦିନ ଲକ୍ଷେ ଜପ କରୁଥିଲି ।'' ଏହି ଧ୍ୟାନଜପ ସହିତ ସେ ଅବିରାମ ପ୍ରାର୍ଥନା କରୁଥିଲେ । ରାତିରେ ଜହ୍ନ ଉଠିଲେ ଗଙ୍ଗାନଦୀରେ ତା'ର ପ୍ରତିଛବି ଦେଖି ସେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିଲେ, ''ଜହ୍ନର ବି କଳଙ୍କ ଅଛି, ମୋ ମନରେ ଯେପରି କୌଣସି କଳଙ୍କ ନ ରହେ ।''

ଧ୍ୟାନାଭ୍ୟାସ ଯୋଗୁଁ ଶ୍ରୀମା'ଙ୍କ ଅନ୍ତର୍ମୁଖୀ ମନ ସମ୍ପୂର୍ଣ୍ଣ ତନ୍ମୟ ହୋଇଯାଉଥିଲା । ସେ କହିଛନ୍ତି—''ପରିଶ୍ରମ କରିବାକୁ ହୁଏ; ପରିଶ୍ରମ ନ କଲେ କ'ଣ କିଛି ମିଳେ ? ସଂସାରରେ କର୍ମବ୍ୟସ୍ତତା ମଧ୍ୟରେ ବି ନିର୍ଦ୍ଦିଷ୍ଟ ସମୟ କରିନେବାକୁ ପଡ଼େ । ମୁଁ ସେତେବେଳେ ରାତି ତିନିଟା ସମୟରୁ ଉଠି ଜପରେ

ବସୁଥିଲି; କୌଣସି ହୋସ୍ ରହୁ ନ ଥିଲା । ଦିନେ ଜ୍ୟୋସ୍ନା ରାତିରେ ଶିଡ଼ି ପାଖରେ ବସି ଜପ କରୁଛି । ଚାରିଦିଗ ନିସ୍ତବ୍‌ଧ । ଠାକୁର କେତେବେଳେ ଝାଉଁବଣକୁ ଗଲେ କିଛି ଜାଣିପାରିଲି ନାହିଁ । ଅନ୍ୟ ଦିନ ଜୋତାର ଶବ୍ଦ ଶୁଣାଯାଏ । ଆହା, ସେତେବେଳେ ମୋ ମନ କିପରି ଥିଲା ! ବୃନ୍ଦେ ଦିନେ ମୋ ସାମ୍ନାରେ ଗୋଟିଏ କଂସା ଗଡ଼ାଇ ଦେଲା । ମୋର ମନେ ହେଲା — ଯେପରିକି ତାହା ମୋ ହୃଦୟରେ ଆସି ଲାଗିଲା ।'' ଶ୍ରୀମା' ସେତେବେଳେ ଗଭୀର ଧ୍ୟାନମଗ୍ନ ଥିଲେ । ତେଣୁ ଏହି ବିକଟ ଶବ୍ଦ ସହି ନ ପାରି କାନ୍ଦି ପକାଇଲେ ।

ଠାକୁରଙ୍କ ଭକ୍ତମାନଙ୍କ ମଧ୍ୟରେ ବିଭିନ୍ନ ଆଧ୍ୟାତ୍ମିକଭାବର ବିକାଶ ଦେଖି ନିଜ ଜୀବନରେ ମଧ୍ୟ ତାହା ଲାଭ କରିବା ପାଇଁ ତାଙ୍କର ଆଗ୍ରହ ବଢ଼ିଉଠିଲା । ଗୌରୀମା'ଙ୍କ ଭାବ ଓ ପ୍ରେମ ଦେଖି ସେ ମୁଗ୍‌ଧ ହୋଇଥିଲେ । ଦିନେ ଲକ୍ଷ୍ମୀଦେବୀଙ୍କ ଦ୍ୱାରା ସେ ଠାକୁରଙ୍କୁ ଅନୁରୋଧ କଲେ, ଯେପରି ତାଙ୍କର ମଧ୍ୟ ଗୌରୀମା'ଙ୍କ ପରି ଭାବ ହୁଏ । କିନ୍ତୁ ଠାକୁର କହିଲେ, ''ସେ (ଗୌରୀମା') କାଳୀ ଘାଟର ଝିଅ । ସେ ସେହିସବୁ ଭାବ ସହ୍ୟ କରିପାରିବ । କିନ୍ତୁ ତାଙ୍କ ପକ୍ଷରେ ଭାବ ଗୋପନ କରି ରଖିବା ଭଲ । ସ୍ତ୍ରୀ-ଲୋକ ଧୀର ନମ୍ର ଭାବରେ ରହିବେ — ଲଜ୍ଜା ସେମାନଙ୍କର ଧର୍ମ । ତା' ନ ହେଲେ ଲୋକମାନେ ତାଙ୍କୁ ନିନ୍ଦା କରିବେ ।''

ତାଙ୍କର ଏହି ଅନୁରୋଧରୁ ମନେହୁଏ, ଭାବ ହେଲେ ବି ତାହା ତାଙ୍କ ଅଜ୍ଞାତରେ ହେଉଥିଲା, କିମ୍ବା ତାହା ଗୌରୀମା' ପ୍ରଭୃତିଙ୍କ ପରି ଉଦ୍‌ବେଳନମୟ ନ ଥିଲା । କିନ୍ତୁ ଭବିଷ୍ୟତରେ ଯେ ବହୁ ଲୋକଙ୍କର ପଥପ୍ରଦର୍ଶିକା ହେବେ, ସେହି ମାତୃ-ଗୁରୁ-ଦେବୀ-ଶକ୍ତି ସମ୍ମିଳିତ ପ୍ରତିମାରେ ଅତି ନିଭୃତରେ ହେଲେ ମଧ୍ୟ ଶୁଦ୍ଧ ସାତ୍ତ୍ୱିକ ବିକାର-ପ୍ରକାଶର ପ୍ରୟୋଜନ ରହିଛି । ତେଣୁ ଶ୍ରୀମା'ଙ୍କ ମନରେ ସେହି ସ୍ପୃହା ଶାନ୍ତ ନ ରହି ପୁଣି ଜାଗରିତ ହେଲା । ସେ ଯୋଗୀନ୍-ମା'ଙ୍କ ଦ୍ୱାରା ଠାକୁରଙ୍କୁ ପୁନରାୟ ଜଣାଇଲେ, ''ତାଙ୍କୁ କୁହ, ମୋର ଯେପରି ଟିକିଏ ଭାବ ହୁଏ । ସର୍ବଦା ଲୋକେ ତାଙ୍କ ଘରେ ଥିବାରୁ ମୁଁ ତାଙ୍କୁ ଏ କଥା କହିପାରୁ ନାହିଁ ।'' ପରଦିନ ସକାଳେ ଠାକୁର ଏକା ଛୋଟ ଖଟ ଉପରେ ବସିଛନ୍ତି ଦେଖି ଯୋଗୀନ ମା' ପ୍ରଣାମ କରି ମା'ଙ୍କ କଥା ଜଣାଇଲେ । ଠାକୁର ଶୁଣିଲେ କିନ୍ତୁ ଉତ୍ତର ନ ଦେଇ ଗମ୍ଭୀର ହୋଇଗଲେ । ତାଙ୍କର ଏପରି ଅବସ୍ଥାରେ କେହି କଥା କହିବାକୁ ସାହସ କରୁ ନ ଥିଲେ । ତେଣୁ ଯୋଗୀନ୍-ମା' ଅଧିକ କିଛି ନ କହି ପ୍ରଣାମ କରି ଫେରିଆସିଲେ । ସେ ଯେତେବେଳେ ଆସିଲେ ସେତେବେଳେ ଶ୍ରୀମା' ପୂଜା କରୁଥିଲେ । କବାଟ ଟିକିଏ ଖୋଲା ଥିଲା, ସେହି ଫାଙ୍କ ଦେଇ ସେ ଦେଖିଲେ — ମା' ଖୁବ୍ ହସୁଛନ୍ତି — ହସୁଛନ୍ତି ପୁଣି କାନ୍ଦୁଛନ୍ତି । ଦୁଇ ଆଖିରୁ ଅଶ୍ରୁଧାରା ବୋହି ଯାଉଛି । କିଛି ସମୟ ଏହି ଅବସ୍ଥାରେ ରହି ପୁଣି ସ୍ଥିର ହୋଇଗଲେ — ସମ୍ପୂର୍ଣ୍ଣ

ସମାଧିସ୍ଥ । କେତେ ସମୟ ପରେ ଜ୍ଞାନ ଫେରିବାରୁ ଶ୍ରୀମା' ପଚାରିଲେ, ''ବର୍ତ୍ତମାନ (ଠାକୁରଙ୍କ ନିକଟରୁ) ଆସୁଛ ?'' ଯୋଗୀନ୍-ମା' ସୁଯୋଗ ପାଇ କହିଲେ, ''ତେବେ ତୁମର ଭାବ ହୁଏ ନାହିଁ ବୋଲି କିପରି କୁହ ?''

ଯୋଗୀନ୍-ମା' ବେଳେବେଳେ ଦକ୍ଷିଣେଶ୍ୱରରେ ରାତ୍ରିଯାପନ କରୁଥିଲେ । ସେ ପୃଥକ୍ ଶୋଇବାକୁ ଚାହିଁଲେ ବି ଶ୍ରୀମା' ତାଙ୍କୁ ନିକଟରେ ଶୋଇବାକୁ କହୁଥିଲେ । ଦିନେ ରାତିରେ କିଏ ବଂଶୀ ବଜାଉଥିଲେ । ବଂଶୀର ସ୍ୱର ଶୁଣି ଶ୍ରୀମା' ଭାବସ୍ଥ ହେଲେ—ସେ ରହି ରହି ହସିବାକୁ ଲାଗିଲେ । ଯୋଗୀନ୍-ମା' ସଙ୍କୁଚିତ ହୋଇ ବିଛଣାରେ ଗୋଟିଏ କୋଣରେ ବସି ରହିଲେ—ଭାବିଲେ, ମୁଁ ସଂସାରୀ ଲୋକ, ତାଙ୍କୁ ଏହି ସମୟରେ ଛୁଇଁବି ନାହିଁ । ଅନେକ ସମୟ ପରେ ମା'ଙ୍କ ଭାବର ଉପଶମ ହେଲା । ଶ୍ରୀମା' ନିଜେ କହିଥିଲେ, ''ସେତେବେଳେ ମୋର ମନ ଏପରି ଥିଲା—ଦକ୍ଷିଣେଶ୍ୱରରେ ରାତିରେ କିଏ ବଂଶୀ ବଜାଉଥିଲା । ତାହା ଶୁଣି ମନ ବ୍ୟାକୁଳ ହୋଇ ଉଠୁଥିଲା । ମନେ ହେଉଥିଲା, ଯେପରି କି ସାକ୍ଷାତ୍ ଭଗବାନ ନିଜେ ବଂଶୀ ବଜାଉଛନ୍ତି । ମୁଁ ସମାଧିସ୍ଥ ହୋଇଯାଉଥିଲି ।''

## ଭାରସମର୍ପଣ

ଦକ୍ଷିଣେଶ୍ୱରକୁ ଶ୍ରୀମା' ଆସିବା ପରଠାରୁ ଶ୍ରୀରାମକୃଷ୍ଣ ତାଙ୍କୁ ଶିକ୍ଷା, ଦୀକ୍ଷା, ଉଦ୍ଦୀପନା, ଇତ୍ୟାଦି ଅବଲମ୍ବନରେ କ୍ରମେ ନିଜ ଭାବଧାରାର ପରିପୁଷ୍ଟି ପାଇଁ ଉପଯୁକ୍ତ ଆଧାରରେ ପରିଣତ କରୁଥିଲେ । ଷୋଡ଼ଶୀପୂଜା ଉପଲକ୍ଷେ ଆମେ ଦେବୀଙ୍କ ଆବାହନ ଦେଖିଛୁ । ଶ୍ରୀମା' ନିଜ ସ୍ୱରୂପ ସମ୍ବନ୍ଧରେ ସଚେତନ ହୋଇ ସୁଦ୍ଧା ନିଜ ଶକ୍ତିକୁ ଯୁଗୋପଯୋଗୀ ଓ ସକ୍ରିୟ କରିବାର ସଂକଳ୍ପ ଗ୍ରହଣ କରି ନ ଥିଲେ । ସେ ପୂଜା ହୋଇଥିଲା ନିଭୃତରେ, ନିଶିଥରେ । ଲୋକେ ସେ ବିଷୟରେ ଶୁଣିଥିଲେ, କିନ୍ତୁ ତାହାର ମର୍ମ ଉପଲବ୍ଧି କରିପାରି ନ ଥିଲେ । ତେଣୁ ଶ୍ରୀରାମକୃଷ୍ଣ ତାଙ୍କ ଲୀଳା-ଅବସାନର କେତେବର୍ଷ ପୂର୍ବରୁ ଗୋଟିଏ ସୁପରିକଳ୍ପିତ ଧାରାରେ ଏହାକୁ ରୂପାୟିତ କରିବା ପାଇଁ ଚେଷ୍ଟା କରିଥିଲେ । ଠାକୁର ତାଙ୍କୁ ପୂଜା କରି, ବିଭିନ୍ନ ଭାବରେ ସମ୍ମାନ ପ୍ରଦର୍ଶନ କରି, କଥା ପ୍ରସଙ୍ଗରେ ତାଙ୍କ ଦେବୀତ୍ୱ ବିଷୟରେ ଉଲ୍ଲେଖ କରି ତାଙ୍କର ଅବଚେତନକୁ ଏ ବିଷୟରେ ଜାଗ୍ରତ କରୁଥିଲେ । ନିଜ ସାଧନାଦ୍ୱାରା ଉଜ୍ଜୀବିତ, ଅନନ୍ତଶକ୍ତିପୂର୍ଣ୍ଣ ବହୁ ମନ୍ତ୍ର ଶ୍ରୀମା'ଙ୍କୁ ଶିଖାଇ ଏବଂ କିପରି ଅଧିକାରୀଙ୍କୁ କେଉଁ ମନ୍ତ୍ର ଦେବାକୁ ହେବ କହି ତାଙ୍କ ଗୁରୁଶକ୍ତିକୁ ପ୍ରକାଶିତ କରୁଥିଲେ ଏବଂ ବାଳକ ଓ ମହିଳା ଭକ୍ତମାନଙ୍କୁ ଶ୍ରୀମା'ଙ୍କ ନିକଟକୁ ପଠାଇ ଓ ତାଙ୍କୁ ନାନା ଉପଦେଶ ଦେଇ ତାଙ୍କ ମାତୃଭାବକୁ ପ୍ରସାରିତ କରୁଥିଲେ । କେବଳ ସେତିକି ନୁହେଁ, ସେ ତାଙ୍କୁ ନିଜ ଭାର ଗ୍ରହଣ କରିବା ପାଇଁ ଆହ୍ୱାନ କରୁଥିଲେ ଓ

ଭକ୍ତମାନଙ୍କୁ ଏହି ପରିଣତି ପାଇଁ ପ୍ରସ୍ତୁତ ରହିବାକୁ କହୁଥିଲେ । ଆମେ ବର୍ତ୍ତମାନ ଏ ବିଷୟରେ ଆଲୋଚନାରେ ପ୍ରବୃତ୍ତ ହେବା ।

ଗୋଟିଏ ବିଷୟରେ ଆମକୁ ସାବଧାନ ରହିବାକୁ ପଡ଼ିବ । ଆମେ ଯେପରି ଏହି ମହାଭ୍ରମରେ ନ ପଡୁ ଯେ କେବଳ ଶ୍ରୀରାମକୃଷ୍ଣଙ୍କ ଶିକ୍ଷା ଯୋଗୁଁ ଶ୍ରୀମା' ଜଗତ୍‌ବରେଣ୍ୟା ହୋଇଛନ୍ତି । ଏହା ଏକ ମୌଳିକ କଥା ଯେ ଶିଷ୍ୟର ଶୁଭ ସଂସ୍କାର ନ ଥିଲେ ଗୁରୁଙ୍କ ଶତ ଚେଷ୍ଟା ସତ୍ତ୍ୱେ ଶିଷ୍ୟର ଅନ୍ତର୍ନିହିତ ଶକ୍ତି ଜାଗରିତ ହୁଏ ନାହିଁ । ପୁଣି ସେହି ଶୁଭ ସଂସ୍କାର ସହିତ ପ୍ରୟୋଜନ ହୁଏ ଶିଷ୍ୟର ସ୍ୱତଃପ୍ରବୃତ୍ତ ସହଯୋଗିତା । ଶ୍ରୀରାମକୃଷ୍ଣ ଶ୍ରୀମା'ଙ୍କ ବିକାଶୋନ୍ମୁଖୀ ଅସୀମ ଶକ୍ତି ସହିତ ପରିଚିତ ଥିବାରୁ ନିଜର କାର୍ଯ୍ୟଭାର ତାଙ୍କ ହସ୍ତରେ ଅର୍ପଣ କରିବା ପାଇଁ ବ୍ୟଗ୍ର ଥିଲେ । ଗୋଲାପ-ମା'ଙ୍କୁ ଠାକୁର ଦିନେ କହିଥିଲେ, ''ସେ (ଶ୍ରୀମା') ସାରଦା, ସରସ୍ୱତୀ; ଜ୍ଞାନଦେବାକୁ ଆସିଛି । ରୂପ ଥଲେ ଅଶୁଦ୍ଧ ମନରେ ଦେଖି ଲୋକଙ୍କର ଅକଲ୍ୟାଣ ହେବ, ତେଣୁ ଏଥର ରୂପ ଲୁଚାଇ ଆସିଛି ।'' ଅନ୍ୟ ଏକ ସମୟରେ କହିଥିଲେ, ''ସେ ଜ୍ଞାନଦାୟିନୀ, ମହାବୁଦ୍ଧିମତୀ । ସେ କ'ଣ ଯିଏ ସିଏ ! ସେ ମୋର ଶକ୍ତି !'' ହୃଦୟଙ୍କୁ କହିଥିଲେ, ''ଆରେ ତା'ର ନାମ ସାରଦା—ସେ ସରସ୍ୱତୀ । ତେଣୁ ସାଜିବାକୁ ଭଲ ପାଏ ।'' ପାଠକମାନଙ୍କର ହୁଏତ ସ୍ମରଣ ଅଛି ଯେ ବିବାହ ପରେ ଦିନେ ବାଳିକା-ବଧୂଙ୍କ ଅଙ୍ଗରୁ ଅଳଙ୍କାର କାଢ଼ିନେବା ପରେ ଚନ୍ଦ୍ରମଣିଦେବୀ ସାରଦାଙ୍କୁ କୋଳରେ ଉଠାଇ ନେଇ ସଜଳନୟନରେ କହିଥିଲେ ଯେ, ଗଦାଇ ତାଙ୍କୁ ବିଭିନ୍ନ ଅଳଙ୍କାରରେ ସଜାଇବ । ଜନନୀଙ୍କର ସେହି ପ୍ରତିଶ୍ରୁତି ସ୍ମରଣ କରି ଦେବୀଙ୍କ ସ୍ୱରୂପ ହୃଦୟରେ ଧାରଣ କରି ଶ୍ରୀରାମକୃଷ୍ଣ ହୃଦୟକୁ ଦିନେ କହିଥିଲେ—''ତୋ ସିନ୍ଦୁକରେ କେତେ ଟଙ୍କା ଅଛି ଦେ । ତା' ପାଇଁ (ଶ୍ରୀମା'ଙ୍କ ପାଇଁ) ଦୁଇଯୋଡ଼ା ଭଲ ଖଡୁ ଗଢ଼ିଦିଅ ।'' ସେତେବେଳେ ଶ୍ରୀରାମକୃଷ୍ଣ ଅସୁସ୍ଥ, କିନ୍ତୁ ହୃଦୟକୁ ଖଡୁ ଗଢ଼ାଇବା ପାଇଁ ତିନିଶହ ଟଙ୍କା ଦେଇଥିଲେ । କିନ୍ତୁ ଏଥିପାଇଁ ଦୁଇଶହ ଟଙ୍କା ଖର୍ଚ୍ଚ ହୋଇଥିବାରୁ ଏକଶହ ଟଙ୍କା ମା'ଙ୍କ ବ୍ୟବହାର ପାଇଁ ସଞ୍ଚିତ ରହିଥିଲା ।

ଯୋଗୀନ୍-ମା' କହିଥିଲେ, ''ମା' ସେତେବେଳେ ନହବତ୍ ଘରେ ସୀତାଙ୍କ ପରି ରହୁଥିଲେ—ଚଉଡ଼ା ନାଲିଧଡ଼ିର ଶାଢ଼ୀ, ମଥାରେ ସିନ୍ଦୂର, ଆଜାନୁଲମ୍ବୀ ଘନକୃଷ୍ଣ କେଶପାଶ, ବେକରେ ସୁନାର ହାର, ନାକରେ ଗୋଟିଏ ବଡ଼ ନୋଥ, କାନରେ ନୋଳୀ, ହାତରେ ଚୂଡ଼ି (ଯେଉଁ ଚୂଡ଼ି ମଥୁରବାବୁ ଠାକୁରଙ୍କୁ ମଧୁରଭାବ ସାଧନ କଲାବେଳେ ଦେଇଥିଲେ) ।''

ସରଳା, ଆଧୁନିକ-ଶିକ୍ଷାବିହୀନା ଓ ଆଭିଜାତ୍ୟ ଶୂନ୍ୟ ଶ୍ରୀମା'ଙ୍କୁ ଚିହ୍ନିବା ସହଜ ନୁହେଁ, ତେଣୁ ଶ୍ରୀରାମକୃଷ୍ଣ ନିଜେ ତାଙ୍କର ସ୍ୱରୂପ ପ୍ରକଟିତ କରିବା ଦିଗରେ ଅଗ୍ରସର ହୋଇଥିଲେ । ସେ ଜାଣିଥିଲେ ଯେ ଭୋଗୈଶ୍ୱର୍ଯ୍ୟପୂର୍ଣ୍ଣ ବର୍ତ୍ତମାନ

ଯୁଗରେ ପବିତ୍ରତା ପରିପୂର୍ଣ୍ଣ ଏହି ଚରିତ୍ରକୁ ବୁଝିବା ଆମ ବୋଧଶକ୍ତିର ବାହାରେ; ତେଣୁ ଶ୍ରୀମା'ଙ୍କ ସମ୍ବନ୍ଧରେ ସେ କହୁଥିଲେ, ''ପାଉଁଶବୋଳା ବିରାଡ଼ି ।'' ଭସ୍ମାବୃତ ମାର୍ଜାରର ବର୍ଣ୍ଣ ଯେପରି ବୁଝିହୁଏ ନାହିଁ, ଠିକ୍ ସେହିପରି ଶ୍ରୀମା'ଙ୍କ ଅନ୍ତରର ସୌନ୍ଦର୍ଯ୍ୟ ମଧ୍ୟ ସାଧାରଣଙ୍କୁ ଅଜ୍ଞାତ । ପୂଜ୍ୟପାଦ ସ୍ୱାମୀ ପ୍ରେମାନନ୍ଦ ଗୋଟିଏ ପତ୍ରରେ ଲେଖିଥିଲେ, ''ଶ୍ରୀଶ୍ରୀମା'ଙ୍କୁ କିଏ ବୁଝିଛି ? ଐଶ୍ୱର୍ଯ୍ୟର ଲେଶ ନାହିଁ । ଠାକୁରଙ୍କର ବିଦ୍ୟାର ଐଶ୍ୱର୍ଯ୍ୟ ଥିଲା । କିନ୍ତୁ ମା'ଙ୍କର ତାହା ମଧ୍ୟ ଲୁପ୍ତ । କି ମହାଶକ୍ତି ! ଜୟ ମା' ! ଜୟ ଶକ୍ତିମୟୀ ମା' ! ଯେଉଁ ବିଷକୁ ଆମେ ହଜମ କରିପାରୁନାହୁଁ, ସେସବୁ ମା'ଙ୍କ ନିକଟକୁ ପଠାଇ ଦେଉଛୁ । ମା' ସବୁ ଗ୍ରହଣ କରୁଛନ୍ତି ।'' ବିଶ୍ୱବିଜୟୀ ଆଚାର୍ଯ୍ୟ ସ୍ୱାମୀ ବିବେକାନନ୍ଦ ଲେଖିଥିଲେ, ''ଭାଇ, ଜୀବନ୍ତ ଦୁର୍ଗାପୂଜା କରି ଦେଖାଇବି । ତେବେ ଯାଇ ମୋର ନାମ ସାର୍ଥକ... । ମା'ଙ୍କ କଥା ମନେ ପଡ଼ିଲେ ଭାବେ 'କୋ ରାମଃ ?' ଏହା ହିଁ ମୋର କୁସଂସ୍କାର । ରାମକୃଷ୍ଣ ପରମହଂସ ଈଶ୍ୱର ଥିଲେ କି ମନୁଷ୍ୟ ଥିଲେ, ଯାହା ହୁଅନ୍ତୁ ନା କାହିଁକି, ଯାହାର ମା'ଙ୍କ ଉପରେ ଭକ୍ତି ନାହିଁ, ତାକୁ ଧିକ୍କାର କର ।''

କାମାରପୁକୁରରେ ବହୁ ପୂର୍ବରୁ ଠାକୁର ଏହି ଦେବୀତ୍ୱର ଇଙ୍ଗିତ ଦେଇଥିଲେ । କିନ୍ତୁ ଅମାର୍ଜିତବୁଦ୍ଧି ଗ୍ରାମବାସୀଙ୍କ ପକ୍ଷରେ ତାହା ଧାରଣା କରିବା ସମ୍ଭବ ହୋଇନାହିଁ । ଶ୍ରୀମା'ଙ୍କ ବୟସ ସେତେବେଳେ ଚଉଦ ବର୍ଷ । ଠାକୁର ଯେତେବେଳେ ପଲ୍ଲୀରମଣୀମାନଙ୍କୁ ଉପଦେଶ ଦେଉଥିଲେ, ଶ୍ରୀମା' ସେତେବେଳେ ସେହି କଥା ଶୁଣୁ ଶୁଣୁ ଶୋଇ ପଡୁଥିଲେ । ଅନ୍ୟାନ୍ୟ ସ୍ତ୍ରୀ-ଲୋକମାନେ ସେତେବେଳେ ତାଙ୍କୁ ଠେଲି ଉଠାଇବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଠାକୁର କହୁଥିଲେ, ''ତାକୁ ଉଠାଅ ନାହିଁ । ସିଏ ଏକଥା ଶୁଣିଲେ ଆଉ ଏଠାରେ ରହିବ ନାହିଁ—ସିଧା ପଳାଇବ ।''

ବିଭିନ୍ନ ଭାବରେ ତାଙ୍କର ଦେବୀତ୍ୱ ପ୍ରକଟିତ ହୋଇଥିଲେ ସୁଦ୍ଧା ଗୋଟିଏ ବିଶେଷ କ୍ଷେତ୍ରରେ ଏହାର ପରିପୂର୍ତ୍ତି ହୋଇଥିଲା । ଏହି କ୍ଷେତ୍ରଟି ହେଉଛି ତାଙ୍କର ଜନନୀରୂପ । ଭାରତର ଧର୍ମ-ଇତିହାସରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । 'ଶ୍ରୀରାମପୂର୍ବତାପିନୀ' ଉପନିଷଦ୍‌ରେ ଉକ୍ତ ହୋଇଛି, ଉପାସକାନାଂ କାର୍ଯ୍ୟାର୍ଥଂ ବ୍ରହ୍ମଣୋ ରୂପକଳ୍ପନା''—ଉପାସକମାନଙ୍କ ପ୍ରୟୋଜନ-ସିଦ୍ଧି ପାଇଁ ନିର୍ଗୁଣ ନିରାକାର ବ୍ରହ୍ମ ରୂପ-ପରିଗ୍ରହ କରନ୍ତି । ଗୀତାରେ ଅଛି—''ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍''—ଯେଉଁ ଭକ୍ତ ଯେଉଁ ଭାବରେ ମୋର ଶରଣ ନିଏ, ସେହି ଭାବ ଅବଲମ୍ବନ କରି ମୁଁ ତା'ର ଅଭୀଷ୍ଟ ପୂରଣ କରେ । ଶ୍ରୀଚଣ୍ଡୀରେ (୧୨/୩୫) ଋଷି କହୁଛନ୍ତି—

ଏବଂ ଭଗବତୀ ଦେବୀ ସା ନିତ୍ୟାଽପି ପୁନଃପୁନଃ ।
ସଂଭୂୟ କୁରୁତେ ଭୂପ ଜଗତଃ ପରିପାଲନମ୍ ॥

—''ହେ ରାଜନ୍, ସେହି ଭଗବତୀ ଜନ୍ମାଦିଶୂନ୍ୟା ହେଲେ ସୁଦ୍ଧା ପୁନଃ ପୁନଃ ଏହି ଭାବରେ ଆବିର୍ଭୂତା ହୋଇ ଜଗତର ପରିପାଳନ କରନ୍ତି ।'' ତେଣୁ ଅତି ପ୍ରାଚୀନ କାଳରୁ ଏଦେଶରେ ଦେବୀଙ୍କର ବିଭିନ୍ନ ବିଗ୍ରହ ବା ପ୍ରତୀକ ପ୍ରଚଳିତ ଅଛି ବା ପୂଜିତ ହେଉଛି । ଚଣ୍ଡୀରେ ଦେବୀଙ୍କୁ ବିଦ୍ୟାରୂପିଣୀ ଓ ନାରୀରୂପିଣୀ କୁହାଯାଇଛି । ତୁଷ୍ଟ ହେଲେ ସେ ଭକ୍ତି, ମୁକ୍ତି ପ୍ରଦାନ କରନ୍ତି । ପୁଣି ରୁଷ୍ଟ ହେଲେ ସେ ଅଧାର୍ମିକ ଅନାଚାରୀଙ୍କୁ ଦଣ୍ଡବିଧାନ କରନ୍ତି । ନାରୀରୂପେ, ଶକ୍ତିରୂପେ, ଦେବୀରୂପେ, ମାତୃରୂପେ ଆମେ ଅନାଦି କାଳରୁ ତାଙ୍କୁ ପୂଜା କରି ଆସୁଛୁ । ରାମପ୍ରସାଦ, କମଳାକାନ୍ତ ଓ ରାଜା ରାମକୃଷ୍ଣ ପ୍ରଭୃତିଙ୍କ ଭକ୍ତିରେ ମୁଗ୍ଧ ହୋଇ ସେ ସ୍ୱର୍ଗର ଐଶ୍ୱର୍ଯ୍ୟ ଛାଡ଼ି ମର୍ତ୍ତ୍ୟଧାମରେ ପଦାର୍ପଣ କରନ୍ତି । କନ୍ୟାବେଶ, ଜନନୀବେଶ ଧରି ସେ ଦୁଃଖ ଶୋକରେ ସାନ୍ତ୍ୱନା ଦିଅନ୍ତି । କିନ୍ତୁ ଦେବୀ ତଥାପି ଦେବୀ ହୋଇ ରହନ୍ତି । ମନୁଷ୍ୟ-ଶରୀର ଧାରଣ କରି ମନୁଷ୍ୟ ପରି ବ୍ୟବହାର କରନ୍ତି ନାହିଁ । ଶ୍ରୀମା'ଙ୍କ ଜୀବନରେ ଆମେ ଦେବୀଙ୍କର ଏହି ଅବତରଣଧାରାର ଚରମ ପରିଣତି ଦେଖିବାକୁ ପାଉ । ଦେବୀ ଏଠାରେ ସାକ୍ଷାତ୍, ସଚଳା, ରକ୍ତମାଂସଦେହବିଶିଷ୍ଟ—ଶ୍ରୀରାମକୃଷ୍ଣଙ୍କ ପୂଜିତା ଭବତାରିଣୀ ଓ ତାଙ୍କ ଗର୍ଭଧାରିଣୀଙ୍କ ସହିତ ଅଭିନ୍ନା—ଶ୍ରୀମା' ।

ମନୁଷ୍ୟ ଦେବୀଙ୍କୁ ମାନବୀରୂପେ କାହିଁକି ଚାହେଁ—ଆଉ ଭଗବତୀ କାହିଁକି ସେ ଅଭିଳାଷ ପୂର୍ଣ୍ଣ କରନ୍ତି ? ଏହି ମାତୃମୂର୍ତ୍ତିରେ ଆବିର୍ଭାବ ନ ହେଲେ ଆଧ୍ୟାତ୍ମିକ ଜଗତରେ ଗୋଟିଏ ଅପୂରଣୀୟ ଅଭାବ ରହିଯିବ । ପୂର୍ବଜ୍ଞାତ ବସ୍ତୁ, ଭାଷା ଓ ଭାବ ସାହାଯ୍ୟରେ ମନୁଷ୍ୟ ଉଚ୍ଚତର ସତ୍ୟର ସନ୍ଧାନ ପାଏ । ମା' ସନ୍ତାନକୁ ଗର୍ଭରେ ଧାରଣ କରନ୍ତି ଏବଂ ପ୍ରସବାନ୍ତେ କ୍ରୋଡ଼କୁ ନେଇ ସ୍ତନ୍ୟପାନ କରାନ୍ତି । ଶିଶୁ ଚକ୍ଷୁ ଖୋଲି ମା'ଙ୍କୁ ପାଏ—ସ୍ନେହ, ପୁଷ୍ଟି, ତୁଷ୍ଟି, ସୌନ୍ଦର୍ଯ୍ୟ ପ୍ରଭୃତି ଗୁଣରାଶିର ଏକମାତ୍ର ଆକରରୂପେ । ତେଣୁ ସାଧନା-କ୍ଷେତ୍ରରେ ମଧ୍ୟ ସାଧକ ଜଗଦମ୍ବାଙ୍କୁ ଦେଖିବାକୁ ଚାହେଁ ଏହି ରୂପେ । ଶ୍ରୀରାମକୃଷ୍ଣ କହିଛନ୍ତି, ''ମାତୃଭାବ ସାଧନାର ଶେଷ କଥା ।'' ସ୍ୱାମୀ ବିବେକାନନ୍ଦ ମଧ୍ୟ କର୍ମଯୋଗରେ କହିଛନ୍ତି, ''ଜଗତରେ ମା'ଙ୍କ ସ୍ଥାନ ସମସ୍ତଙ୍କ ଉପରେ; କାରଣ କେବଳ ଏହି ଅବସ୍ଥାରେ ମନୁଷ୍ୟ ଚରମ ନିଃସ୍ୱାର୍ଥପରତା ଆୟତ୍ତ କରେ ଓ କାର୍ଯ୍ୟରେ ପ୍ରକାଶ କରେ ।'' 'ମୁଁ' , 'ମୋର' ବୁଦ୍ଧିକୁ ଇଷ୍ଟଙ୍କଠାରେ ବିଲୀନ କରି ଏକାନ୍ତ ବିଶ୍ୱାସ ଓ ତାଙ୍କୁ ଆଶ୍ରୟ କରି ମଧୁର ଭଗବତ୍-ପ୍ରେମ ଆସ୍ୱାଦନ କରିବା ଯଦି ସାଧକର କାମ୍ୟହୁଏ, ତା'ହେଲେ ଈଶ୍ୱରଙ୍କର ମାତୃଭାବରେ ସେହି ଅଭୀଷ୍ଟ ପ୍ରଦାନ କରିବାର ଅମୋଘ ଶକ୍ତି ରହିଛି । ଶାନ୍ତ, ଦାସ୍ୟ, ବାତ୍ସଲ୍ୟ ଆଦି ଭାବରେ ଯଥାକ୍ରମେ ଅଧିକାଧିକ ଆତ୍ମୀୟତାବୋଧର ବିକାଶ ହୋଇଥାଏ ସତ; କିନ୍ତୁ ବକ୍ଷାଶ୍ରିତ ଏକାନ୍ତ ନିର୍ଭର ଶିଶୁର ତନ୍ମୟତ୍ୱ ବୋଧ ଏହିସବୁ ଭାବକୁ ଅତିକ୍ରମ କରିଥାଏ ।

ପୁଣି ସାଧକ ଚାହେଁ, ତା'ର ଇଷ୍ଟ କୃପାପରବଶ ହୋଇ ଏବଂ ତାହାର ସମସ୍ତ ଦୁର୍ବଳତା ଓ ସବୁ ଅକ୍ଷମତା ଭୁଲି ପରିପୂର୍ଣ୍ଣ ସ୍ନେହରେ ତାକୁ କୋଳକୁ ଟାଣିନେବେ । ଧ୍ୟେୟ ଇଷ୍ଟମୂର୍ତ୍ତିଙ୍କ ଶ୍ରୀମୁଖରେ ସେ ଏହି ବିଚାରଶୂନ୍ୟ ସ୍ନେହପୂର୍ଣ୍ଣ ହାସ୍ୟ ଦେଖି ନିଜ ଭବିଷ୍ୟତ ସମ୍ବନ୍ଧରେ ନିଶ୍ଚିନ୍ତ ହେବାକୁ ଚାହେଁ । ଶୈଶବଠାରୁ ମା'ଙ୍କ ମୁହଁରେ ସେ ଏହି ଭାବ ଦେଖିବାରେ ଅଭ୍ୟସ୍ତ; ସାଧନା-କ୍ଷେତ୍ରରେ ମଧ୍ୟ ସେ ବଞ୍ଚିତ ହେବ କାହିଁକି ? କୃପାମୟୀ ମା' ସନ୍ତାନକୁ ସ୍ନେହରେ ଅଭିଭୂତ କରି ତାହାର ଦୁଃଖମୟ ଅତୀତକୁ ଭୁଲାଇ ଦିଅନ୍ତି ଏବଂ ଏକ ଅନିର୍ବଚନୀୟ ଆନନ୍ଦସାଗର ଦିଗକୁ ତାକୁ ଆକର୍ଷିତ କରନ୍ତି । ଏହି ପବିତ୍ର ଭାବରେ ଆବିଳତାର କୌଣସି ପ୍ରଶ୍ନ ନାହିଁ । ସାଧକ ମା'ଙ୍କୁ ଆଶ୍ରୟ କରି ମା'ଙ୍କ କୋଳରେ ନିର୍ଭୟରେ ବସି ସଂସାର ସାଗର ଅତିକ୍ରମ କରିଥାଏ । ଭୋଗଲୋଲୁପ ଓ ଇହଲୋକସର୍ବସ୍ୱ ଦେହାତ୍ମବାଦୀ ମାନବ ସମାଜକୁ ଉଚ୍ଚତର ଅନୁଭୂତି-ରାଜ୍ୟରେ ଉଦ୍‌ବୁଦ୍ଧ କରିବା ପାଇଁ ଭଗବତୀଙ୍କର ଏହି ଯୁଗରେ ମାତୃମୂର୍ତ୍ତିରେ ଅବତୀର୍ଣ୍ଣ ହେବାର ଏକାନ୍ତ ପ୍ରୟୋଜନ ଥିଲା ।

ଶ୍ରୀମା'ଙ୍କ ଜୀବନର ଏହି ମର୍ମାର୍ଥ ଠାକୁର ଜାଣିଥିଲେ ଏବଂ ଶ୍ରୀମା'ଙ୍କର ନିକଟରେ ମଧ୍ୟ ସେ ତାହା ପ୍ରକାଶ କରିଥିଲେ । ପରବର୍ତ୍ତୀ କାଳରେ ଜଣେ ଉତ୍ସୁକ ଭକ୍ତ ଦିନେ ଶ୍ରୀମା'ଙ୍କୁ ପଚାରିଲେ, "ମା', ଅନ୍ୟାନ୍ୟ ଅବତାରମାନେ ନିଜ ଶକ୍ତିଙ୍କ ପରେ ଦେହରକ୍ଷା କରିଛନ୍ତି; କିନ୍ତୁ ଏଥର ଆପଣଙ୍କୁ ରଖି ଠାକୁର ପୂର୍ବରୁ ଚାଲିଗଲେ କାହିଁକି ?" ଉତ୍ତରରେ ଶ୍ରୀମା' କହିଲେ, "ବାବା, ଠାକୁରଙ୍କର ଜଗତରେ ସମସ୍ତଙ୍କ ଉପରେ ମାତୃଭାବ ଥିଲା । ସେହି ମାତୃଭାବକୁ ଜଗତରେ ବିକଶିତ କରିବା ପାଇଁ ଠାକୁର ମୋତେ ରଖିଯାଇଛନ୍ତି ।" ଅନ୍ୟ ଏକ ସମୟରେ ଶ୍ରୀମା' କହିଥିଲେ, "ଯେତେବେଳେ ଠାକୁର ଚାଲିଗଲେ, ମୋର ଇଚ୍ଛା ହେଲା ମୁଁ ବି ଚାଲିଯିବି । ସେ ଦେଖାଦେଇ କହିଲେ, 'ନା, ତୁମେ ରୁହ; ଅନେକ କାମ ବାକି ରହିଛି ।' ଶେଷରେ ଦେଖିଲି ପ୍ରକୃତରେ ଅନେକ କାମ ବାକି ଅଛି ।"

କାଶୀପୁରରେ ଦିନେ ଠାକୁର ମା'ଙ୍କ ଆଡ଼କୁ ଅନାଇଁ ରହିବାର ଦେଖି ମା' ପଚାରିଲେ, "କଅଣ କହିବ, କୁହନା ?" ଅନୁଯୋଗ ସ୍ୱରରେ ଠାକୁର କହିଲେ, "ଆଚ୍ଛା, ତୁମେ କ'ଣ କିଛି କରିବ ନାହିଁ ? (ନିଜକୁ ଦେଖାଇ)ଇଏ କ'ଣ ସବୁ କରିପାରିବ ?" ଶ୍ରୀମା' ନିଜର ଅସହାୟ ଅବସ୍ଥା ଚିନ୍ତା କରି କହିଲେ, "ମୁଁ ସ୍ତ୍ରୀ-ଲୋକ, ମୁଁ କ'ଣ କରିପାରିବି ?" ଠାକୁର ତତ୍‌କ୍ଷଣାତ୍ ଉତ୍ତର ଦେଲେ, "ନା, ନା, ତୁମକୁ ଅନେକ କିଛି କରିବାକୁ ପଡ଼ିବ ।" ଶିଡ଼ିରୁ ପଡ଼ିଯାଇ ଗୋଡ଼ରେ ପୀଡ଼ା ହେବାର ତିନିଦିନ ପରେ କିଞ୍ଚିତ୍ ସୁସ୍ଥ ହୋଇ ଠାକୁରଙ୍କର ଖାଇବା ନେଇ ଶ୍ରୀମା' ଉପରକୁ ଉଠିଲେ ଓ ଦେଖିଲେ ଠାକୁର ଆଖି ବୁଜି ଶୋଇଛନ୍ତି । ମା' ଡାକିଲେ, "ଏବେ ଖାଇବ ଯେ, ଉଠ ।" ଠାକୁର ଯେପରି କୌଣସି ଦୂର

ଦେଶରୁ ଫେରିଆସିଲେ ! ଗଭୀର ଆବେଗ ସହକାରେ କହିଲେ—"ଦେଖ ! କଲିକତାର ଲୋକମାନେ ଅନ୍ଧାରରେ ପୋକ ପରି କଲବଲ ହେଉଛନ୍ତି । ତୁମେ ସେମାନଙ୍କୁ ଦେଖିବ ।" ମା' ଅନୁଯୋଗ କରି କହିଲେ, "ମୁଁ ସ୍ତ୍ରୀ-ଲୋକ । ତା' କିପରି ହେବ ?" ଠାକୁର କହିବାକୁ ଲାଗିଲେ, "ଇଏ(ନିଜକୁ ଦେଖାଇ) ଆଉ କଅଣ କରିଛି ? ତୁମକୁ ଏହାଠାରୁ ଅନେକ ବେଶୀ କରିବାକୁ ପଡ଼ିବ ।" ମା' ସେହି ପ୍ରସଙ୍ଗ ବନ୍ଦ କରିବା ପାଇଁ ଟିକିଏ ଜୋର୍ ଦେଇ କହିଲେ, "ତା ଯେତେବେଳେ ହେବ, ସେତେବେଳେ ହେବ । ତୁମେ ଏବେ ଖାଅ ତ ।" ଠାକୁର ଉଠି ବସିଲେ ।

କେବଳ ସ୍ୱରୂପ ସ୍ମରଣ କରାଇ ବା ବାକ୍ୟଦ୍ୱାରା ଭାର ଅର୍ପଣ କରାଇ ଠାକୁର ନିରସ୍ତ ହୋଇ ନ ଥିଲେ । ସେ ଭକ୍ତମାନଙ୍କୁ ମା'ଙ୍କ ନିକଟକୁ ପଠାଇ ତାଙ୍କର ଶକ୍ତି-ବିକାଶ ଦିଗରେ ସାହାଯ୍ୟ କରୁଥିଲେ । ଶ୍ରୀଯୁକ୍ତ ସାରଦାପ୍ରସନ୍ନ (ସ୍ୱାମୀ ତ୍ରିଗୁଣାତୀତାନନ୍ଦଜୀ)ଙ୍କୁ ମନ୍ତ୍ର ନେବା ପାଇଁ ଠାକୁର ଶ୍ରୀମା'ଙ୍କ ନିକଟକୁ ପଠାଇଥିଲେ । ଠାକୁରଙ୍କର ଆଉ ଜଣେ ସନ୍ନ୍ୟାସୀ ଶିଷ୍ୟ ସ୍ୱାମୀ ଯୋଗାନନ୍ଦ ମଧ୍ୟ ଠାକୁରଙ୍କର ପରାମର୍ଶ ଅନୁଯାୟୀ ମା'ଙ୍କ ନିକଟରୁ ଦୀକ୍ଷା ନେଇଥିଲେ । ଶ୍ରୀଶ୍ରୀଠାକୁରଙ୍କ ମାନସପୁତ୍ର ଶ୍ରୀଯୁକ୍ତ ରାଖାଲ (ସ୍ୱାମୀ ବ୍ରହ୍ମାନନ୍ଦ) ଯେତେବେଳେ ଦକ୍ଷିଣେଶ୍ୱରକୁ ଆସିଲେ, ଠାକୁର ତାଙ୍କୁ ଶ୍ରୀମା'ଙ୍କ ନିକଟକୁ ନେଇଯାଇଥିଲେ । ଠାକୁରଙ୍କ ନିର୍ଦ୍ଦେଶ ଅନୁଯାୟୀ ଲାଟୁ (ସ୍ୱାମୀ ଅଦ୍ଭୁତାନନ୍ଦ) ଶ୍ରୀମା'ଙ୍କୁ ରୋଷେଇ କରିବାରେ ସାହାଯ୍ୟ କରୁଥିଲେ । ଗୋପାଳଦାଦା (ସ୍ୱାମୀ ଅଦ୍ୱୈତାନନ୍ଦ) ମଧ୍ୟ ଠାକୁରଙ୍କର ନିର୍ଦ୍ଦେଶରେ ମା'ଙ୍କ ପାଇଁ ବଜାର ହାଟ କରୁଥିଲେ ଏବଂ ଯୋଗେନ୍ (ସ୍ୱାମୀ ଯୋଗାନନ୍ଦ) ନାନା କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରୁଥିଲେ । ଶ୍ରୀଯୁକ୍ତ ପୂର୍ଣ୍ଣ ଦକ୍ଷିଣେଶ୍ୱରକୁ ଆସିଲେ, ଠାକୁର ତାଙ୍କୁ ନହବତ୍‌କୁ ପଠାଇଥିଲେ । ଠାକୁରଙ୍କ ଅଭିପ୍ରାୟ ବୁଝି ଶ୍ରୀମା' ପୂର୍ଣ୍ଣଙ୍କୁ ମାଲ୍ୟଚନ୍ଦନରେ ଭୂଷିତ କରି ଆସନରେ ବସାଇ ବିବିଧ ବ୍ୟଞ୍ଜନାଦି ଭୋଜନ କରାଇଲେ ଏବଂ ଭୋଜନ ପରେ ହାତ ଧୋଇବା ପାଇଁ ପାଣି ଢାଳି ଦେଲେ । ଠାକୁର ନିକଟକୁ ଆସି କେଉଁ ଭାବେ କଅଣ କରିବାକୁ ହେବ କହିଦେଇ ଯାଉଥିଲେ । ତୃପ୍ତ ନ ହୋଇ ଘରକୁ ଯାଉଯାଉ ପୁଣି ଫେରିଆସି ନୂଆ ନୂଆ ନିର୍ଦ୍ଦେଶ ଦେଉଥିଲେ । ଶ୍ରୀମା' ସେଦିନ ମାତୃତ୍ୱର ପରିପୂର୍ତ୍ତି ସହ ବାଳକ-ନାରାୟଣଙ୍କୁ ପୂଜା କରିବା ଶିଖିଥିଲେ ।

ଭକ୍ତମାନଙ୍କ ସହିତ ଶ୍ରୀମା'ଙ୍କ-ଆତ୍ମୀୟତାବୋଧ ବଢ଼ାଇବା ପାଇଁ ଠାକୁର ବହୁଭାବରେ ଚେଷ୍ଟା କରୁଥିଲେ । ଶ୍ରୀ ବଳରାମ ବସୁଙ୍କ ସହଧର୍ମିଣୀ ଯେତେବେଳେ ଖୁବ୍ ଅସୁସ୍ଥ, ସେତେବେଳେ ଠାକୁର ଶ୍ରୀମା'ଙ୍କୁ ଯାନବାହନର ସୁବିଧା ନ ଥିବାରୁ ଚାଲି ଚାଲି ତାଙ୍କ ଘରକୁ ଯିବାକୁ କହିଥିଲେ । ଭବ୍ୟତା ଓ ମର୍ଯ୍ୟାଦା ଦୃଷ୍ଟିରୁ ସହର ଭିତର ଦେଇ ଯିବାରେ ମା' ଇତସ୍ତତଃ ହେବାରୁ ଠାକୁର କହିଲେ, "ମୋ

ବଳରାମର ସଂସାର ଭାସିଯାଉଛି, ଆଉ ତୁମେ ଯିବ ନାହିଁ ! ଚାଲି ଚାଲି ଯାଅ ।'' ରସିକ ଠାକୁର କି ଭାବରେ ନିଜ କାର୍ଯ୍ୟ ସାଧନ କରୁଥିଲେ, ତାହାର ଦୃଷ୍ଟାନ୍ତ ଅତି ଉପଭୋଗ୍ୟ । ଶିଷ୍ୟା ଗୌରୀ-ମା' ଦକ୍ଷିଣେଶ୍ୱରକୁ ମଝିରେ ମଝିରେ ଆସୁଥିଲେ ଓ ମା'ଙ୍କ ସହିତ ନହବତ୍‌ରେ ରହୁଥିଲେ । ଦିନେ ଠାକୁର ସେଠାରେ ଉପସ୍ଥିତ ହୋଇ ଗୌରୀ-ମା'ଙ୍କୁ କୌତୁକରେ ପଚାରିଲେ, ''କହ ତ ଗୌରୀ, ତୁ କାହାକୁ ବେଶୀ ଭଲପାଉ ?'' ରଙ୍ଗମୟୀ ଗୌରୀ-ମା' ସହଜ କଥାରେ ଉତ୍ତର ନ ଦେଇ ଗୀତ ମାଧ୍ୟମରେ ଜଣାଇଲେ, ''ହେ ବଂଶୀଧାରୀ, ତୁମେ ରାଧାଙ୍କଠାରୁ ବଡ଼ ନୁହଁ । ବିପଦ ପଡ଼ିଲେ ଲୋକେ ମଧୁସୂଦନ ବୋଲି ତୁମକୁ ଡାକନ୍ତି, କିନ୍ତୁ ତୁମର ବିପଦ ପଡ଼ିଲେ ତୁମେ ବଂଶୀରେ କୁହ, ହେ ରାଧା !'' ଶ୍ରୀମା' ଲଜ୍ଜାରେ ଗୌରୀ-ମା'ଙ୍କ ହାତ ଚାପି ଧରିଲେ । ଠାକୁର ହାର୍ ମାନି ହସି ହସି ଚାଲିଗଲେ ।

ଆଉ ଗୋଟିଏ ଦୃଷ୍ଟାନ୍ତ ଆମେ ପାଉ 'ଶ୍ରୀଶ୍ରୀରାମକୃଷ୍ଣ ପୋଥି'ରେ । ଦିନେ ଶ୍ରୀ କାଳୀପଦ ଘୋଷଙ୍କ ପତ୍ନୀ ଅତି ଆକୁଳ ହୃଦୟରେ ଠାକୁରଙ୍କ ନିକଟକୁ ଆସି ନିବେଦନ କଲେ ଯେ ତାଙ୍କ ସ୍ୱାମୀ ଅସତ୍‌ସଙ୍ଗରେ ପଡ଼ି ପାରିବାରିକ ଜୀବନ ବିଷାକ୍ତ କରି ପକାଇଛନ୍ତି । ଅତଏବ ଠାକୁର ଯଦି ଦୟା କରି ଏହାର ପ୍ରତିକାର ପାଇଁ କୌଣସି ଔଷଧ ଦିଅନ୍ତି, ତେବେ ସେ କୃତାର୍ଥ ହେବେ । ଠାକୁରଙ୍କୁ କେବଳ ମାତ୍ର ଏକ ଉଚ୍ଚ ଶକ୍ତିସମ୍ପନ୍ନ ସାଧୁ ଭାବି ଘୋଷ ପତ୍ନୀ ତାଙ୍କ ନିକଟରୁ ଔଷଧ ମାଗିଥିଲେ । ଏପରି ଅନୁରୋଧ ଠାକୁରଙ୍କ ଦୃଷ୍ଟିରେ ବିଷଦୃଶ ହେଲେ ମଧ୍ୟ ଘୋଷ ପତ୍ନୀଙ୍କ ଦୁଃଖରେ ବିଚଳିତ ହୋଇ ସେ ତାଙ୍କୁ ନହବତ୍‌କୁ ପଠାଇଲେ ଏବଂ ରହସ୍ୟ କରି କହିଲେ, ''ସେଠାରେ ଜଣେ ସ୍ତ୍ରୀ-ଲୋକ ଅଛନ୍ତି, ସେ ତୁମକୁ ଠିକ୍ ଔଷଧ ଦେବେ । ତାଙ୍କୁ ଏସବୁ ମନ୍ତ୍ର ଔଷଧ ଜଣାଅଛି । ଏ ବିଷୟରେ ତାଙ୍କ ଶକ୍ତି ମୋଠାରୁ ବେଶୀ ।'' ଶ୍ରୀମା' ସେତେବେଳେ ପୂଜାରେ ବସିଥିଲେ । ଘୋଷ ପତ୍ନୀଙ୍କଠାରୁ ସବୁ କଥା ଶୁଣି ଠାକୁର ଯେ ରହସ୍ୟ କରୁଛନ୍ତି ଏକଥା ବୁଝିପାରିଲେ । କିନ୍ତୁ ଏହି ଆର୍ତ୍ତ ହୃଦୟକୁ ନିରାଶ ନ କରି କହିଲେ, ''ଝିଅ, ମୁଁ ଆଉ କଅଣ ଜାଣେ ? ଏହାର ଔଷଧ ସେ ଜାଣନ୍ତି । ତୁମେ ତାଙ୍କ ନିକଟକୁ ଯାଅ ।'' ତାଙ୍କୁ ଫେରି ଆସିବା ଦେଖି ଠାକୁର ତାଙ୍କୁ ପୁନର୍ବାର ନହବତ୍‌କୁ ପଠାଇଲେ । ଏଥର କିନ୍ତୁ ମା'ଙ୍କ ହୃଦୟରେ କରୁଣା ବିଗଳିତ ହେଲା । ସେ ଘୋଷ ପତ୍ନୀଙ୍କୁ ଆଶ୍ୱସ୍ତ କଲେ ଏବଂ ପୂଜାର ଗୋଟିଏ ବେଲପତ୍ର ଦେଇ ସସ୍ନେହରେ କହିଲେ, ''ଏଇଟିକୁ ନେଇଯାଅ, ତୁମର ବାସନା ପୂର୍ଣ୍ଣ ହେବ ।'' ଯଥାକାଳରେ ମା'ଙ୍କ ଆଶୀର୍ବାଦ ସଫଳ ହେଲା । ତାଙ୍କ ସ୍ୱାମୀ ଠାକୁରଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଏହି ଘଟଣାଟି ଆଲୋଚନା କଲେ ଆମେ ଦେଖିବା ଯେ, ଶ୍ରୀରାମକୃଷ୍ଣଙ୍କର ଯୁଗଧର୍ମସ୍ଥାପନର ପ୍ରଚେଷ୍ଟା ସହିତ ଶ୍ରୀମା' ଜ୍ଞାତସାରରେ ବା ଅଜ୍ଞାତସାରରେ କ୍ରମେ ଅଧିକତର ସଂଶ୍ଳିଷ୍ଟ ହେଉଛନ୍ତି ଏବଂ ଏହି ଶକ୍ତିବିକାଶର ଧାରା ସ୍ୱଭାବତଃ

ହିଁ ତାଙ୍କ ମାତୃସ୍ନେହ ସହିତ ଅବିଚ୍ଛେଦ୍ୟ ଭାବରେ ମିଳିତ ହୋଇ ପରିପୁଷ୍ଟ ଲାଭ କରିଛି । ମାତୃସ୍ନେହର ଆକର ଶ୍ରୀଶ୍ରୀମା' ନିଜର ଅନନ୍ତ ଶକ୍ତିକୁ ଶ୍ରୀରାମକୃଷ୍ଣଙ୍କ କାର୍ଯ୍ୟରେ ଉତ୍ସର୍ଗ କରିଥିଲେ ।

ନାରୀ-ହୃଦୟରେ ମାତୃତ୍ୱର ଆକାଙ୍କ୍ଷା ଅତି ସ୍ୱାଭାବିକ । କିନ୍ତୁ ସେହି ମାତୃତ୍ୱ ସର୍ବଦା ଏକ ରୂପରେ ପ୍ରକଟିତ ହୁଏ ନାହିଁ । ସ୍ଥଳ ବିଶେଷରେ ତାହା କେବଳ ନିଜ ସନ୍ତାନ ମଧ୍ୟରେ ଆବଦ୍ଧ ଥାଏ । ଅନ୍ୟ କ୍ଷେତ୍ରରେ ତାହା ନିଜ ସନ୍ତାନ ସହିତ ଅନ୍ୟାନ୍ୟ ଅନେକଙ୍କୁ ଅନ୍ତର୍ଭୁକ୍ତ କରେ । ଖୁବ୍ ବିରଳ କ୍ଷେତ୍ରରେ ତାହା ଦେହସମ୍ବନ୍ଧଶୂନ୍ୟ ଅସୀମ ସ୍ନେହରୂପେ ପ୍ରତ୍ୟେକ ଜୀବ ମଧ୍ୟରେ ପରିବ୍ୟାପ୍ତ ହୋଇ ମାତାଙ୍କୁ ଏକ ଉଚ୍ଚ-ଅଧ୍ୟାତ୍ମ ଭୂମିକୁ ଉନ୍ନୀତ କରିଥାଏ ଏବଂ ତା' ଅପେକ୍ଷା ମଧ୍ୟ ବିରଳ କ୍ଷେତ୍ରରେ ଏହି ମାତୃତ୍ୱ ସ୍ୱାର୍ଥଲେଶଶୂନ୍ୟ, ସଂସାରସମ୍ପର୍କଶୂନ୍ୟ, ଦେବୀବିଶେଷଙ୍କ ନିକଟରୁ ଗୁରୁଶକ୍ତିରୂପେ ପ୍ରବାହିତ ହୋଇ ସନ୍ତାନଙ୍କୁ ବିଶୁଦ୍ଧ ଐଶ୍ୱରିକ ରସସ୍ୱାଦରେ ପରିତୃପ୍ତ କରେ । ଶ୍ରୀମା'ଙ୍କ ଜୀବନରେ ଆମେ ଯେଉଁ ମାତୃତ୍ୱର ପରିଚୟ ପାଉ, ତାହା ଆହୁରି ଉଚ୍ଚସ୍ତରର—ତାହା ଚିନ୍ତାରାଜ୍ୟର ଅତୀତ ଭଗବତ୍-ସତ୍ତାର ବିକାଶ, କିନ୍ତୁ ଜାଗତିକ ଦୃଷ୍ଟିରେ ସେହି ବିକାଶର ଗୋଟିଏ ସ୍ତର-ବିଭାଗ ଅଛି ।

ଏହି ଭୋଗସ୍ପୃହାମୁକ୍ତ-ମାତୃତ୍ୱ ସମ୍ବନ୍ଧରେ ଅବିହିତ ହେବା ପୂର୍ବରୁ ସେ ମାତୃତ୍ୱରେ ଅଧିରୂଢ଼ ହୋଇଥିଲେ । ମନରାଜ୍ୟର ଏହା ହିଁ ସ୍ୱାଭାବିକ ଗତି । ଶିଶୁ ଅବସ୍ଥାରେ ଓ ପରେ ଦକ୍ଷିଣେଶ୍ୱରରେ ଭକ୍ତମାନଙ୍କ ସହିତ ବ୍ୟବହାର ମଧ୍ୟରେ ଏହାର ବିଶେଷତ୍ୱ ଆମେ ଲକ୍ଷ୍ୟ କରିଛୁ; କିନ୍ତୁ ବର୍ତ୍ତମାନ ଆମେ ଏହି ଆକାଙ୍କ୍ଷାର ଉଦୟ ଓ ତଦନୁଯାୟୀ ଆଚରଣର କଥା ଆଲୋଚନା କରିବା ।

ଗ୍ରାମରେ ଥିବା ସମୟରେ ସହାନୁଭୂତିସଂପନ୍ନା ପ୍ରତିବେଶୀମାନେ ତାଙ୍କୁ ଦୁଃଖ କରି କହୁଥିଲେ ଯେ, ବିବାହିତ ଜୀବନରେ ସନ୍ତାନହୀନ ରହିବା ଏକ ଦୁର୍ଭାଗ୍ୟ ଓ ଅଲକ୍ଷଣର କଥା । ଏପରିକି ଶ୍ରୀମା'ଙ୍କ ଗର୍ଭଧାରିଣୀ ମଧ୍ୟ ଅନୁଶୋଚନା କରୁଥିଲେ, ''ଏପରି ଏକ ପାଗଳ ଜ୍ୱାଇଁ ସହିତ ମୋର ସାରଦାକୁ ବିବାହ କରାଇଲି ! ଆହା ! ଘର-ସଂସାର କରିପାରିଲା ନାହିଁ, ପିଲାପିଲି ବି ହେଲେ ନାହିଁ, ମା' ବୋଲି ଡାକିବା ମଧ୍ୟ ଶୁଣିଲା ନାହିଁ ।'' ଠାକୁର ଦିନେ ଏକଥା ଶୁଣି କହିଲେ, ''ସେଥିପାଇଁ ଆପଣ ଦୁଃଖ କରିବେ ନାହିଁ । ଆପଣଙ୍କ ଝିଅର ଏତେ ପିଲାପିଲି ହେବେ ଯେ, ଶେଷରେ ଆପଣ ଦେଖିବେ, ସେ ମା'-ଡାକରେ ଅସ୍ଥିର ହୋଇ ଉଠିବ ।''

ଏକଥା ଶୁଣି ମା'ଙ୍କ ମନରେ କି ଭାବରେ ସନ୍ତାନଲାଭର ସ୍ପୃହା ଜାଗରିତ ହୋଇଥିଲା, ତାହା ସେ ନିଜେ କହିଛନ୍ତି—''ସଙ୍ଗିନୀମାନେ କହୁଥିବା ଶୁଣୁଥିଲି ଯେ, ପିଲାପିଲି ନ ହେଲେ ସେ ସ୍ତ୍ରୀ-ଲୋକ କୌଣସି ଶୁଭ କର୍ମ କରିପାରେ

ନାହିଁ । ମୋର ସେତେବେଳେ ଅଳ୍ପ ବୟସ । ଏସବୁ କଥା ଶୁଣି ମୋ ମନରେ ଭାରି ଦୁଃଖ ହେଉଥିଲା—ମୋର ତା'ହେଲେ କଅଣ କୌଣସି ପିଲାପିଲି ହେବ ନାହିଁ ? ଦକ୍ଷିଣେଶ୍ୱର ଯାଇ ସେଠାରେ ମଧ୍ୟ ଏହି କଥା ଦିନେ ମୋର ମନେ ପଡ଼ିଲା । ଯେଉଁଦିନ ଏପରି ମନେ ହେଲା, ଠାକୁର ଆପଣା ଛାଏଁ କହିଲେ, "ତୁମର କେଉଁଥିପାଇଁ ଏତେ ଚିନ୍ତା ? ତୁମକୁ ଏପରି ସବୁ ରତ୍ନ ଦେଇଯିବି ଯେ, ମୁଣ୍ଡ କାଟି ତପସ୍ୟା କଲେ ମଧ୍ୟ ମଣିଷ ଏପରି ସନ୍ତାନ ପାଏ ନାହିଁ । ପରେ ଦେଖିବ—ଏତେ ପିଲା ତୁମକୁ ମା' ବୋଲି ଡାକିବେ ଯେ, ତୁମେ ତାଙ୍କୁ ସମ୍ଭାଳିପାରିବ ନାହିଁ ।"

ଅନାଦି କାଳରୁ ମଣିଷ-ମନରେ ଏହି ସନ୍ତାନଲାଭର ଆକାଙ୍କ୍ଷା ରହିଛି । ଠାକୁରଙ୍କ ଦେହତ୍ୟାଗ ପୂର୍ବରୁ ଶ୍ରୀମା' ଏହି ମା' ଡାକ ଶୁଣିବାର ଆସ୍ୱାଦ କିଛି କିଛି ପାଇଥିଲେ ସତ୍ୟ, କିନ୍ତୁ ସେଥିରେ ତାଙ୍କର ତୃପ୍ତି ହୋଇ ନ ଥିଲା । ସେ ନିଜେ କହିଛନ୍ତି, "ଯେତେବେଳେ ଠାକୁର ଚାଲିଗଲେ, ଏକା ଏକା ବସି ଭାବୁଥିଲି, ପିଲା ନାହାନ୍ତି, କିଛି ନାହିଁ, କ'ଣ କରିବି ?" ଦିନେ ଠାକୁର ଦର୍ଶନ ଦେଇ କହିଲେ, "ତୁମେ ଭାବୁଛ କାହିଁକି ? ତୁମେ ଗୋଟିଏ ପିଲା ଚାହୁଁଛ—କିନ୍ତୁ ମୁଁ ତୁମକୁ ଏତେସବୁ ସନ୍ତାନ-ରତ୍ନ ଦେଇଗଲି । ସମୟ ହେଲେ କେତେ ଲୋକ ତୁମକୁ ମା' ମା' ବୋଲି ଡାକିବେ ।"

ଦକ୍ଷିଣେଶ୍ୱରକୁ ଆଗତ ଅଳ୍ପବୟସ୍କ ଭକ୍ତମାନଙ୍କୁ ଶ୍ରୀମା' ନିଜ ସନ୍ତାନ ପରି ଦେଖୁଥିଲେ । କେତେକ କ୍ଷେତ୍ରରେ ନିଜ ମା' ଅପେକ୍ଷା ଆହୁରି ଅଧିକ ଯତ୍ନ ଓ ଆପଣାବୋଧ କରି ସେମାନଙ୍କର ରକ୍ଷଣାବେକ୍ଷଣ କରୁଥିଲେ । ଠାକୁରଙ୍କ ନିକଟକୁ ଗୋଟିଏ ପାଗଳୀ ଯିବା ଆସିବା କରୁଥିଲା । ତାକୁ ଅପ୍ରକୃତିସ୍ଥ ଜାଣି ଶ୍ରୀରାମକୃଷ୍ଣ ଓ ଅନ୍ୟାନ୍ୟ ସମସ୍ତେ ତାହା ପ୍ରତି ସହାନୁଭୂତି ପ୍ରଦର୍ଶନ କରୁଥିଲେ । ଶ୍ରୀରାମକୃଷ୍ଣ ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରତି ମାତୃଭାବାପନ୍ନ । ପାଗଳୀ ଏତେ କଥା ଚିନ୍ତା ନ କରି ତାହାର ଅନ୍ତରର କଥା ଠାକୁରଙ୍କୁ ପ୍ରକାଶ କରି କହିଲା ଯେ, ସେ ମଧୁରଭାବର ସାଧିକା । ଠାକୁରଙ୍କର ଶିଶୁମନ ଏହି ବିଜାତୀୟ ଭାବର ଆଘାତ ପାଇ ବିଦ୍ରୋହୀ ହୋଇଉଠିଲା । ସେ ତତ୍‌କ୍ଷଣାତ୍ ଉଠି ଛିଡ଼ା ହେଲେ ଏବଂ ଏହି ବିପରୀତ ଭାବର ତୀବ୍ର ନିନ୍ଦା କରିବାକୁ ଲାଗିଲେ । ଶ୍ରୀମା' ନହବତ୍‌ରୁ ସବୁ ଶୁଣୁଥିଲେ । ଝିଅର ଅପମାନ ଦେଖି ସେ ଅତି ଲଜ୍ଜିତ ବୋଧ କଲେ ଓ ପାଗଳୀକୁ ନିଜ ପାଖକୁ ଡକାଇ ପଠାଇଲେ ଓ ତାକୁ ସାନ୍ତ୍ୱନା ଦେଇ କହିଲେ, "ସେ ଯଦି ତୁମକୁ ଦେଖି ଏପରି ବିରକ୍ତି ହୁଅନ୍ତି, ସେତେବେଳେ ତାଙ୍କ ପାଖକୁ ନ ଯାଇ ମୋ ପାଖକୁ ଆସୁନାହଁ କାହିଁକି ?

ସେତେବେଳେ ବହୁ ବାଳକ-ଭକ୍ତ ଦକ୍ଷିଣେଶ୍ୱରରେ ରାତ୍ରିଯାପନ କରୁଥିଲେ ଓ ଠାକୁରଙ୍କ ନିର୍ଦ୍ଦେଶ ଅନୁଯାୟୀ ସାଧନ-ଭଜନ କରୁଥିଲେ । ଅଧିକ ଆହାର

କଲେ ଧ୍ୟାନ କରିବାରେ ବ୍ୟାଘାତ ହେବ ଜାଣି ଠାକୁର ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ଶ୍ରୀମା'ଙ୍କୁ କହି ରଖିଥିଲେ, ରାଖାଲଙ୍କୁ ଛଅଟି, ଲାଟୁଙ୍କୁ ପାଞ୍ଚଟି ଓ ବୁଢ଼ାଗୋପାଳ, ବାବୁରାମଙ୍କୁ ଚାରୋଟି କରି ରୁଟି ଦେବ । ମାତୃତ୍ୱ ଉପରେ ଏପରି କଡ଼ା ଶାସନ ଶ୍ରୀମା' ସହିପାରୁ ନ ଥିଲେ । ତେଣୁ ସେ ବାଳକ-ଭକ୍ତମାନଙ୍କୁ ଠାକୁରଙ୍କ ନିର୍ଦ୍ଧାରିତ ପରିମାଣ ଅପେକ୍ଷା ଅଧିକ ଦେଉଥିଲେ । ଶ୍ରୀରାମକୃଷ୍ଣ ଦିନେ ବାବୁରାମଙ୍କୁ ପଚାରି ଜାଣିଲେ ଯେ, ସେ ରାତିରେ ପାଞ୍ଚ ଛ'ଟି ରୁଟି ଖାଆନ୍ତି ଏବଂ ଏଥିପାଇଁ ଶ୍ରୀମା' ସ୍ୱୟଂ ଦାୟୀ । ସୁତରାଂ ସେ ଶ୍ରୀମା'ଙ୍କୁ ଅନୁଯୋଗ କରି କହିଲେ, ''ତୁମେ ବିବେଚନା ଶୂନ୍ୟ ହୋଇ ପିଲାମାନଙ୍କର ଭବିଷ୍ୟତ କାହିଁକି ନଷ୍ଟ କରୁଛ ?'' ଶ୍ରୀମା' ପ୍ରତିବାଦ କରି କହିଲେ, ''ସେ ଦୁଇଟି ରୁଟି ବେଶୀ ଖାଉଛି ବୋଲି ତୁମେ ଚିନ୍ତା କରୁଛ କାହିଁକି । ସେମାନଙ୍କର ଭବିଷ୍ୟତ ମୁଁ ଦେଖିବି, ତୁମେ ସେମାନଙ୍କର ଖାଇବା ପିଇବା ବିଷୟରେ କୌଣସି ମନ୍ତବ୍ୟ କର ନାହିଁ ।'' ଶ୍ରୀରାମକୃଷ୍ଣ ଆଉ ବାକ୍ୟବ୍ୟୟ ନ କରି ମାତୃଶକ୍ତି ନିକଟରେ ପରାଜୟ ସ୍ୱୀକାର କଲେ । ଶ୍ରୀମା' ସ୍ୱେଚ୍ଛାରେ ନିଜ କର୍ମକ୍ଷେତ୍ରକୁ ପ୍ରବେଶ କରୁଛନ୍ତି ଦେଖି ଠାକୁର ଆନନ୍ଦିତ ହୋଇଥିଲେ ।

ଦକ୍ଷିଣେଶ୍ୱରକୁ ଆସୁଥିବା ସ୍ତ୍ରୀ-ଭକ୍ତମାନଙ୍କୁ ଶ୍ରୀମା' ଅତି ଆପଣାର ବୋଲି ଭାବୁଥିଲେ ଓ ସେମାନଙ୍କ ସହିତ ସେହି ଭାବରେ ବ୍ୟବହାର କରୁଥିଲେ । ଭକ୍ତିମତୀ ଯୋଗୀନ୍-ମା' ଯେଉଁଦିନ ପ୍ରଥମେ ଦକ୍ଷିଣେଶ୍ୱରକୁ ଗଲେ ସେଦିନ ସେ ଖାଇ ଆସିନାହାନ୍ତି ଶୁଣି ଠାକୁର ତାହାଙ୍କୁ ନହବତ୍‌କୁ ପଠାଇଲେ । ଶ୍ରୀମା' ଭାତ, ଲୁଚି, ତରକାରୀ ପ୍ରଭୃତି ଯାହା ଥିଲା, ତାହା କ୍ଷିପ୍ର ହସ୍ତରେ ଯତ୍ନ କରି ତାଙ୍କୁ ଖୁଆଇଲେ । ସେହି ପ୍ରଥମ ଦର୍ଶନରେ ହିଁ ସେ ଶ୍ରୀମା'ଙ୍କର ଅତି ଘନିଷ୍ଠ ହୋଇଉଠିଲେ । କିଛିଦିନ ପରେ ଶ୍ରୀମା' ଯେତେବେଳେ ଗାଁକୁ ଯିବା ପାଇଁ ଡଙ୍ଗାରେ ବସିଲେ, ସେତେବେଳେ ଯୋଗୀନ୍-ମା'ଙ୍କ ହୃଦୟ ଦୁଃଖରେ ଭାରାକ୍ରାନ୍ତ ହେଲା । ନୌକା ଅଦୃଶ୍ୟ ହେବାରୁ ସେ ଶିଶୁଙ୍କ ପରି କାନ୍ଦିବାକୁ ଲାଗିଲେ । ଯୋଗୀନ୍-ମା'ଙ୍କ ଉପରେ ମା'ଙ୍କର ଏତେ ବିଶ୍ୱାସ ଓ ସ୍ନେହ ଥିଲା ଯେ, ପ୍ରତ୍ୟେକ ବିଷୟରେ ସେ ତାଙ୍କର ପରାମର୍ଶ ନେଉଥିଲେ ।

ଯୋଗୀନ୍-ମା' ଦିନେ ଦେଖିଲେ ଶ୍ରୀମା' କେତେଗୁଡ଼ିଏ ପାନ କେବଳ ଚୂନ ଗୁଆଦେଇ ଭାଙ୍ଗିଲେ ଏବଂ ଅନ୍ୟ କେତେଗୁଡ଼ିଏ ମସଲା ଅଳାଇଚ ଇତ୍ୟାଦି ଦେଇ ଖୁବ୍ ଭଲ ଭାବରେ ଭାଙ୍ଗିଲେ । ଏପରି କରିବାର କାରଣ ପଚାରିବାରୁ ଶ୍ରୀମା' ଉତ୍ତର ଦେଲେ, ''ଏଗୁଡ଼ିକ (ଭଲଗୁଡ଼ିକ) ଭକ୍ତମାନଙ୍କ ପାଇଁ— ସେମାନଙ୍କୁ ଆଦର ଯତ୍ନ କରି ଆପଣାର କରିନେବାକୁ ହେବ ଏବଂ ସେଗୁଡ଼ିକ ତାଙ୍କ ପାଇଁ (ଠାକୁରଙ୍କ ପାଇଁ) ସେ ତ ଆପଣାର ଲୋକ !''

ସେତେବେଳେ ବହୁ ଭକ୍ତଙ୍କର ଦକ୍ଷିଣେଶ୍ୱରରେ ସମାଗମ ହେଉଥିଲା । ଠାକୁର କିଛି କହି ପଠାଇବା ପୂର୍ବରୁ ଶ୍ରୀମା' ଯେପରି ସବୁ ଜାଣିପାରୁଥିଲେ ଏବଂ ସେହି ଅନୁଯାୟୀ ସବୁ ବ୍ୟବସ୍ଥା କରୁଥିଲେ । ସାରଦା ଇତ୍ୟାଦି କେତେକ ବାଳକ-ଭକ୍ତଙ୍କର ଅଭିଭାବକମାନଙ୍କ ବିରୋଧ ହେତୁ ଦକ୍ଷିଣେଶ୍ୱରରୁ ଘରକୁ ଫେରିବା ପାଇଁ ଗାଡ଼ିଭଡ଼ା ନ ଥାଏ; ତେଣୁ ଠାକୁର ସେମାନଙ୍କୁ ମା'ଙ୍କ ନିକଟରୁ ପଇସା ନେବା ପାଇଁ କହୁଥିଲେ । ଦକ୍ଷିଣେଶ୍ୱରରେ ସାରଦା ଆସି ପହଞ୍ଚିଲେ ଶ୍ରୀମା' ସେ ଯିବାପୂର୍ବରୁ ଚାରୋଟି ପଇସା ନହବତ୍ ଘର ଦୁଆରବନ୍ଧ ଉପରେ ରଖିଦେଉଥିଲେ । ତେଣୁ ଠାକୁରଙ୍କ ନିର୍ଦ୍ଦେଶ ଅନୁଯାୟୀ ସାରଦା ସେଠାକୁ ଯାଇ କିଛି ନ ମାଗି ଗାଡ଼ିଭଡ଼ାର ପଇସା ପାଉଥିଲେ । ନରେନ୍ଦ୍ର ଆସିଲେ ଠାକୁର ଯଦି କହନ୍ତି, ତୁ ଆଜି ଏଠାରେ ରହିବୁ, ତେବେ କୌଣସି ନିର୍ଦ୍ଦେଶ ଆସିବା ପୂର୍ବରୁ ଶ୍ରୀମା' ବୁଟଡାଲି ଚୁଲିରେ ବସାଇଦେଇ ରୁଟି ବେଲିବାରେ ଲାଗୁଥିଲେ । ନରେନ୍ଦ୍ର ମୋଟା ରୁଟି, ବୁଟଡ଼ାଲି ଖାଇବା ପାଇଁ ଭଲ ପାଉଥିଲେ । ଠାକୁର ନରେନ୍ଦ୍ର ପାଇଁ ରୋଷେଇ କରିବା କଥା କହିବାକୁ ଆସି ଦେଖନ୍ତି ସବୁ ଆୟୋଜନ ସମ୍ପୂର୍ଣ୍ଣ । ମହିଳା ଭକ୍ତମାନେ ସନ୍ଧ୍ୟାବେଳେ ଆସିଲେ ସେମାନଙ୍କ ପାଇଁ ରହିବାର ବ୍ୟବସ୍ଥା ଗୋଟିଏ ସମସ୍ୟା ଥିଲା । ନହବତ୍‌ର ଛୋଟିଆ ଘରେ ସ୍ଥାନାଭାବ ଯୋଗୁଁ ଠାକୁରଙ୍କ ଆପତ୍ତି ସତ୍ତ୍ୱେ ଶ୍ରୀମା' ରାତିରେ ସେମାନଙ୍କର ସେଠାରେ ଶୋଇବାର ବ୍ୟବସ୍ଥା କରୁଥିଲେ ।

ଏହି ଭାବରେ ଠାକୁରଙ୍କ ଯୁଗଧର୍ମ-ପ୍ରଚାରର ଉପଯୁକ୍ତ ପରିବେଶ ସୃଷ୍ଟି କରିବାର ପ୍ରଚେଷ୍ଟା ଓ ଅନ୍ୟ ଦିଗରେ ଶ୍ରୀମା'ଙ୍କର ସନ୍ତାନ-ବାତ୍ସଲ୍ୟ ଉଭୟ ମିଶି ଶ୍ରୀମା'ଙ୍କୁ କ୍ରମେ ତାଙ୍କ ପୂର୍ବନିର୍ଦ୍ଦିଷ୍ଟ କର୍ମକ୍ଷେତ୍ରକୁ ଟାଣି ଆଣୁଥିଲା । ଏହି ସମ୍ମିଳିତ ଉଦ୍ୟମ ହେତୁ ଏହି ସମୟରେ ଶ୍ରୀମା'ଙ୍କର ଅନ୍ତରଙ୍ଗ ଭକ୍ତମାନେ ମନୋନୀତ ହୋଇଥିଲେ । ଶ୍ରୀମା'ଙ୍କ ଭାବୀ ସହଚରୀ ଯୋଗୀନ୍-ମା' ଓ ଗୋଲାପ-ମା'ଙ୍କ ବିଷୟ ଆମେ ଉଲ୍ଲେଖ କରିଛୁ । ଏହି ମାତୃଲୀଳାରେ ସେମାନେ ଜୟା ଓ ବିଜୟାଙ୍କ ସ୍ଥାନ ଗ୍ରହଣ କରିଥିଲେ ।

ବ୍ରାହ୍ମଣକନ୍ୟା ଗୋଲାପ-ମା' ଯେଉଁଦିନ ପ୍ରଥମେ ଦକ୍ଷିଣେଶ୍ୱରକୁ ଆସିଲେ, ସେତେବେଳେ ସେ ଏକମାତ୍ର କନ୍ୟାର ମୃତ୍ୟୁରେ ମୁହ୍ୟମାନା । ଠାକୁର ତାଙ୍କୁ ଆଦର ସହକାରେ ଗ୍ରହଣ କରିଥିଲେ ଓ ଶ୍ରୀମା'ଙ୍କୁ ତାଙ୍କ ବିଷୟରେ କହିଥିଲେ, ''ତାଙ୍କୁ ତୁମେ ପେଟପୂରା ଖାଇବାକୁ ଦେବ । ପେଟରେ ଅନ୍ନ ପଡ଼ିଲେ ଶୋକ କମିବ ।'' ଆଉଦିନେ ଠାକୁର ଶ୍ରୀମା'ଙ୍କୁ କହିଥିଲେ, ''ତୁମେ ଏହି ଝିଅଟିର ଯତ୍ନ କରିବ; ଏ ବରାବର ତୁମ ସାଥିରେ ରହିବ ।'' ଶ୍ରୀମା' ମଧ୍ୟ ତାଙ୍କୁ ଆନ୍ତରିକ ଭାବେ ଗ୍ରହଣ କରିଥିଲେ ଏବଂ ଗୋଲାପ-ମା' ପ୍ରଥମ ଅବସ୍ଥାରୁ ଶ୍ରୀମା'ଙ୍କ ସେବାରେ ଆତ୍ମୋତ୍ସର୍ଗ କରିଥିଲେ ।

# ଚିରସୀମନ୍ତିନୀ

ଠାକୁର ତାଙ୍କ ମହାସମାଧିର ପାଞ୍ଚବର୍ଷ ପୂର୍ବରୁ ତାଙ୍କ ପ୍ରସ୍ଥାନର କେତେଗୁଡ଼ିଏ ଇଙ୍ଗିତ ଦେଇଥିଲେ — ସେ ବାଛବିଚାର ନ କରି ସମସ୍ତଙ୍କ ହାତରୁ ଖାଇବେ, କଲିକତାରେ ରାତିରେ ରହିବେ ଏବଂ ନିଜ ଖାଇବାର ଅଗ୍ରଭାଗ ଅନ୍ୟକୁ ଦେଇ ପରେ ନିଜେ ଖାଇବେ । ଦକ୍ଷିଣେଶ୍ୱର ଛାଡ଼ିବା ପୂର୍ବରୁ ଏହି ଲକ୍ଷଣଗୁଡ଼ିକ ଦେଖା ଦେଇଥିଲା । ୧୮୮୫ ଖ୍ରୀଷ୍ଟାବ୍ଦ ରଥଯାତ୍ରା ଉପଲକ୍ଷେ ଠାକୁର ବଳରାମ ଭବନରେ ଅବସ୍ଥାନ କରି ଦକ୍ଷିଣେଶ୍ୱରକୁ ଫେରିଲେ ଓ ଶ୍ରୀମା'ଙ୍କୁ ଆଉ ଗୋଟିଏ ଲକ୍ଷଣ କଥା କହିଲେ — "ଯେତେବେଳେ ଦେଖିବ, ବହୁ ଲୋକ ଏହାକୁ ଦେବତା ବୋଲି ମାନିବେ — ଶ୍ରଦ୍ଧାଭକ୍ତି କରିବେ, ସେତେବେଳେ ଜାଣିବ ଏହାର ଅନ୍ତର୍ଦ୍ଧାନର ସମୟ ଆସିଯାଇଛି ।" କାଶୀପୁରରେ ଅବସ୍ଥାନ କାଳରେ ଶ୍ରୀମା' ଏହି କଥାର ସତ୍ୟତା ବିଷୟରେ ଆହୁରି ନିଦର୍ଶନ ପାଇଲେ । ଥରେ କେତେଜଣ ଭକ୍ତ ମିଷ୍ଟାନ୍ନାଦି ନେଇ ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ଯେତେବେଳେ ସେମାନେ ଜାଣିଲେ ଯେ, ଠାକୁର କାଶୀପୁରରେ ଅବସ୍ଥାନ କରୁଛନ୍ତି, ସେତେବେଳେ ଠାକୁର ଛବି ସମ୍ମୁଖରେ ଭୋଗ ନିବେଦନ କରି ପ୍ରସାଦ ଗ୍ରହଣ କଲେ । ଏହି ସମ୍ବାଦ ପାଇ ଠାକୁର କହିଲେ, "ସେମାନେ କାଳୀଙ୍କୁ ଭୋଗ ନ ଦେଇ ଛବିକୁ କାହିଁକି ଦେଲେ ?" ଅକଲ୍ୟାଣ ହେବ ବୋଲି ସମସ୍ତେ ଭୀତ ହେଲେ । ଠାକୁର କିନ୍ତୁ କହିଲେ, "ତୁମେମାନେ ବ୍ୟସ୍ତ ହୁଅ ନାହିଁ, ଘରେ ଘରେ ଏହାର ପୂଜା ହେବ ।" ସୁତରାଂ ଶ୍ରୀମା' ପରିଷ୍କାର ବୁଝିପାରିଲେ ଯେ, ଠାକୁର ବର୍ତ୍ତମାନ ଲୀଳା ସମ୍ବରଣ କରିବାକୁ ପ୍ରସ୍ତୁତ ।

ଶ୍ରୀଶ୍ରୀମା' ଓ ତ୍ୟାଗୀ ସନ୍ତାନମାନଙ୍କ ହାତରେ ଯୁଗଧର୍ମ ପ୍ରବର୍ତ୍ତନର ଗୁରୁ ଦାୟିତ୍ୱ ଅର୍ପଣ କରି କାଶୀପୁର ଉଦ୍ୟାନବାଟୀରେ ଶ୍ରୀରାମକୃଷ୍ଣଙ୍କର ମାନବଲୀଳାର ଶେଷ ପର୍ଯ୍ୟାୟ । ରୋଗଜୀର୍ଣ୍ଣ ଦେହ ଶୀର୍ଣ୍ଣତର ହେଉଛି ଏବଂ ଜୀବନୀଶକ୍ତି ଦ୍ରୁତ ହ୍ରାସ ପାଉଛି ଦେଖି ଶ୍ରୀମା' ସ୍ଥିର ରହିପାରିଲେ ନାହିଁ । ସେ ନିଜ ଜୀବନରେ ସିଂହବାହିନୀ ଦେବୀଙ୍କର କରୁଣା ଉପଲବ୍ଧି କରିଛନ୍ତି । ଜଗଦ୍ଧାତ୍ରୀଦେବୀଙ୍କ କୃପାରେ ପିତୃକୁଳରେ ସୁଦିନ ଫେରିଆସିଛି । ଆଜି କଅଣ ସେହି ଅନାଥନାଥ ଏହି ସଂକଟ ମୁହୂର୍ତ୍ତରେ ସାହାଯ୍ୟ କରିବେ ନାହିଁ ? ଅନେକ ଭାବି ଚିନ୍ତି ଶ୍ରୀମା' ସ୍ଥିର କଲେ ଯେ, ସର୍ବପ୍ରକାର କାମନା ପୂରଣକାରୀ ତାରକେଶ୍ୱର ମହାଦେବଙ୍କ ସମ୍ମୁଖରେ ଅଧିଆ ପଡ଼ିବେ । ଅନ୍ତତଃ ଥରେ ଚେଷ୍ଟା କରି ଦେଖିବେ, ନିୟତି-ଚକ୍ରର ଗତି ପରିବର୍ତ୍ତିତ ହୁଏ କି ନାହିଁ — ଈଶ୍ୱରଙ୍କ ସଂକଳ୍ପ ଆର୍ତ୍ତର କ୍ରନ୍ଦନରେ ବିଚଳିତ ହୁଏ କି ନାହିଁ ।

ଶ୍ରୀମା' ତାରକେଶ୍ୱର ଗଲେ । ଠାକୁର କୌଣସି ଆପତ୍ତି କଲେ ନାହିଁ । ସାଙ୍ଗରେ ହୁଏତ ଲକ୍ଷ୍ମୀଦେବୀ ଏବଂ ଆଉ ଜଣେ ଦୁଇଜଣ ଥିଲେ । ସେଠାରେ ଶ୍ରୀମା' ଦୁଇଦିନ ନିର୍ଜଳା ଉପବାସ କଲେ । କିନ୍ତୁ ଦେବତାଙ୍କ କୃପାର କୌଣସି

ଆଭାସ ମିଳିଲା ନାହିଁ । ରାତିରେ ଶ୍ରୀମା' ଠିକ୍ ଏହି ଭାବରେ ପଡ଼ିରହିଛନ୍ତି, ଏପରି ସମୟରେ ଗୋଟିଏ ଶବ୍ଦ ଶୁଣିବାକୁ ପାଇଲେ । ଯଦି ଅନେକ ଗୁଡ଼ିଏ ହାଣ୍ଡି ଗୋଟିଏ ଉପରେ ଗୋଟିଏ କରି ସଜା ହୋଇଥାଏ, ତେବେ ଗୋଟିଏକୁ ଆଘାତ କରି ଭାଙ୍ଗିଦେଲେ ଯେପରି ଶବ୍ଦ ହେବ, ସେପରି ଏକ ଶବ୍ଦ ଶ୍ରୀମା' ଶୁଣିବାକୁ ପାଇଲେ । ଏହି ଶବ୍ଦରେ ଜାଗିଉଠି ଶ୍ରୀମା'ଙ୍କ ମନରେ ପ୍ରଶ୍ନ ଉଠିଲା, ''ଏହି ଜଗତରେ କିଏ କାହାର ସ୍ୱାମୀ, ଏହି ସଂସାରରେ କିଏ କାହାର ? କାହାପାଇଁ ମୁଁ ଏଠାରେ ଅଧିଆ ପଡ଼ିଛି ?'' ମୁହୂର୍ତ୍ତକ ମଧ୍ୟରେ ମନରୁ ମାୟା ଅପସୃତ ହୋଇ ସେଠାରେ ଅସୀମ ବୈରାଗ୍ୟଦୀପ୍ତି ଫୁଟି ଉଠିଲା । ଶ୍ରୀମା' ଶଯ୍ୟାରୁ ଉଠି ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ମନ୍ଦିର ପଛରେ ଥିବା ସ୍ନାନକୁଣ୍ଡରୁ ଚଳୁଏ ପାଣି ନେଇ ଶୁଷ୍କକଣ୍ଠ ସିକ୍ତ କଲେ । ଭଗ୍ନ ମନୋରଥ ହୋଇ ପରଦିନ ତାରକେଶ୍ୱର ଛାଡ଼ିଲେ । କୌଣସି ବିଶେଷ ସମୟରେ ଅଚିନ୍ତନୀୟ ପ୍ରେରଣାରୁ ମାନବ ଜାଗତିକ ସୀମା ଲଘଂନ କରି ବିରାଟ ମନ ସହିତ ଏକୀଭୂତ ହୁଏ ଏବଂ ଏକ ଅଖଣ୍ଡ ଦୃଷ୍ଟିଭଙ୍ଗୀ ପ୍ରାପ୍ତ ହୁଏ, ଯାହାର ପ୍ରଭାବରେ ସେ ମର-ଜଗତର ସମସ୍ତ ସମ୍ବନ୍ଧ ସ୍ୱେଚ୍ଛାରେ ବର୍ଜନ କରେ । ସମଷ୍ଟି ମଧ୍ୟରେ ବ୍ୟଷ୍ଟିର ଏହି ନିମଜ୍ଜନକୁ ଆମେ ବୈରାଗ୍ୟ କହୁ । ସେହି ବୈରାଗ୍ୟ ପ୍ରଭାବରୁ ସଙ୍କଳ୍ପଚ୍ୟୁତା ଶ୍ରୀମା' କାଶୀପୁର ଫେରି ଆସିଲେ । ଠାକୁର ରହସ୍ୟ କରି କହିଲେ, ''କିଗୋ ! କିଛି ହେଲା ? କିଛି ନାହିଁ !'' ଠାକୁରଙ୍କ ତିରୋଧାନର ଆଭାସ ଶ୍ରୀମା' ଅନ୍ୟ ଭାବରେ ମଧ୍ୟ ପାଇଥିଲେ । ସେ କହିଥିଲେ, ''ଠାକୁର ସ୍ୱପ୍ନ ଦେଖିଲେ, ଔଷଧ ଆଣିବା ପାଇଁ ହାତୀ ଗଲା । ହାତୀ ମାଟି ଖୋଳୁଛି ଔଷଧ ପାଇଁ । ଏପରି ସମୟରେ ଗୋପାଳ ଆସି ସ୍ୱପ୍ନ ଭାଙ୍ଗିଦେଲା । ମୋତେ ପଚାରିଲେ, 'ତୁମେ ସ୍ୱପ୍ନ ଦେଖ ?' ଦେଖିଲି, ମା' କାଳୀ ମୁଣ୍ଡ ବଙ୍କା କରି ବସିଛନ୍ତି । ପଚାରିଲି, 'ମା, ତୁମେ କାହିଁକି ଏପରି ବସିଅଛ ?' ମା' କାଳୀ କହିଲେ, 'ତା'ର ଏଇଟା ପାଇଁ (ଠାକୁରଙ୍କ ଗଳାରୋଗ ଦେଖାଇ) ମୋର ବି ହୋଇଛି' ।'' ଶ୍ରୀମା' ବୁଝିଲେ ଯେ, ସ୍ୱୟଂ ମା' କାଳୀ ଯଦି ଠାକୁରଙ୍କ ରୋଗରେ ବ୍ୟଥିତ ହୋଇ ସୁଦ୍ଧା ତାଙ୍କୁ ନିରାମୟ କରି ନ ପାରନ୍ତି ବା ନ ଚାହାଁନ୍ତି ତେବେ ମଣିଷର କ'ଣ ସାଧ୍ୟ ? କେବଳ ସେତିକି ନୁହେଁ, ଠାକୁର ତାଙ୍କ ରୋଗର ଗୋଟିଏ ଗଭୀର ତାତ୍ପର୍ଯ୍ୟ ଦେଖାଇ ଶ୍ରୀମା'ଙ୍କ ମନକୁ ଶୋକ-ଦୁଃଖର ଅତୀତ ଏକ ଦିବ୍ୟଭୂମିକୁ ନେଇଗଲେ । ଠାକୁର କହିଲେ, ''ଯାହା କଷ୍ଟଭୋଗ ମୋ ଉପର ଦେଇ ହୋଇଗଲା । ତୁମମାନଙ୍କୁ ଆଉ କାହାରିକୁ କଷ୍ଟ ଭୋଗ କରିବାକୁ ହେବ ନାହିଁ । ଜଗତରେ ସମସ୍ତଙ୍କ ପାଇଁ ମୁଁ କଷ୍ଟ କରିଯାଉଛି ।'' ଶ୍ରୀମା' ଉପଲବ୍ଧି କଲେ ଯେ, ଜଗତର କଲ୍ୟାଣ ପାଇଁ ଅବତୀର୍ଣ୍ଣ ଠାକୁରଙ୍କର ଏହି ବ୍ୟାଧିର ଏହା ହିଁ ପ୍ରକୃତ ବ୍ୟାଖ୍ୟା—ନତୁବା ତାଦୃଶ ଅପାପବିଦ୍ଧ ଦେହରେ ଏପରି ଯନ୍ତ୍ରଣାର ଆଉ କ'ଣ କାରଣ ହୋଇପାରେ !

କ୍ରମେ ୧୮୮୬ ଖ୍ରୀଷ୍ଟାବ୍ଦର ଶ୍ରାବଣ ମାସ ଶେଷ ହୋଇ ଆସିଲା । ନାନା ଇଙ୍ଗିତଦ୍ୱାରା ଠାକୁର ଅନ୍ତରଙ୍ଗ ଭକ୍ତମାନଙ୍କୁ ଜଣାଇଲେ ଯେ, ନିତ୍ୟଧାମକୁ ପ୍ରୟାଣର ସମୟ ଆଗତ; କିନ୍ତୁ ଭକ୍ତମାନେ ତାହା ବୁଝି ମଧ୍ୟ ବୁଝିଲେ ନାହିଁ । ଶ୍ରୀଭଗବାନ ସେହି କଠୋର ସତ୍ୟର ଆବରଣ କ୍ଷଣକ ପାଇଁ ଉନ୍ମୋଚନ କରି ପୁଣି ପରମୁହୂର୍ତ୍ତରେ ସମସ୍ତଙ୍କୁ ମାୟାରେ ଭୁଲାଇଦେଲେ । ଦିନେ ସେ ଶ୍ରୀଯୁକ୍ତ ଶଶୀଙ୍କ ଦ୍ୱାରା ମା'ଙ୍କୁ ଡକାଇ ପଠାଇଲେ । କାରଣ ସେ ଖୁବ୍ ବୁଦ୍ଧିମତୀ— ସେ ଆସିଲେ ସେତେବେଳର ପ୍ରକୃତ ଅବସ୍ଥା ସଠିକ୍ ବୁଝିପାରିବେ । ଶ୍ରୀମା' ଉପସ୍ଥିତ ହେଲେ । ଠାକୁର କହିଲେ, ''ଦେଖ ଗୋ, ମୋ ମନରେ କାହିଁକି ସର୍ବଦା ବ୍ରହ୍ମ-ଭାବର ଉଦ୍ଦୀପନ ହେଉଛି ।'' ମା' ସବୁକଥା ବୁଝିପାରି ବ୍ୟଥିତ-ହୃଦୟରେ ଗୋଟିଏ ପ୍ରବୋଧ-ବାକ୍ୟ କହି ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

ମହାପ୍ରୟାଣ ଦିନ ତକିଆରେ ଭରାଦେଇ ଠାକୁର ବସିଛନ୍ତି । ଆଶାର ଆଲୋକ ନିର୍ବାପିତ । ଚାରିଆଡ଼େ ଗଭୀର ବିଷାଦର ଛାୟା । ସମସ୍ତଙ୍କ ଧାରଣା, କଥା କହିବା ଶକ୍ତି ଲୋପ ପାଇଯାଇଛି; କିନ୍ତୁ ଶ୍ରୀମା' ଓ ଲକ୍ଷ୍ମୀଦେବୀଙ୍କୁ ଦେଖି ସେ କହିଲେ, ''ଆସିଛ ? ଦେଖ, ମୁଁ ଯେପରି କୁଆଡ଼େ ଚାଲିଯାଉଛି— ପାଣି ଉପରେ ଦେଇ ଅନେକ ଦୂରକୁ ।'' ଶ୍ରୀମା' କାନ୍ଦିବାକୁ ଲାଗିଲେ; ଠାକୁର କହିଲେ, ''ତୁମମାନଙ୍କର ଭାବନା କ'ଣ ? ଯେପରି ଥିଲ ସେପରି ରହିବ । ଆଉ ଏମାନେ (ନରେନ୍ଦ୍ର ଇତ୍ୟାଦି) ମୋର ଯେମିତି କରିଛନ୍ତି ତୁମର ମଧ୍ୟ କରିବେ । ଲକ୍ଷ୍ମୀକୁ ଦେଖିବ, ପାଖରେ ରଖିବ ।'' ଶ୍ରୀମା'ଙ୍କ ଅବଚେତନ ମନ ପୂର୍ବରୁ ସେହି ଆଶୁ ବିପଦର ଛାୟା ଦେଖି ତ୍ରସ୍ତ ହୋଇଉଠିଥିଲା । ଏବେ ଯେପରି ସବୁଆଡ଼େ ଗୋଟାଏ ବିପର୍ଯ୍ୟୟର ଭାବ । ସେ ସେବକମାନଙ୍କ ପାଇଁ ଖେଚୁଡ଼ି ରାନ୍ଧୁଥିଲେ, ତା'ର ତଳ ଅଂଶ ପୋଡ଼ିଗଲା । ସେବକମାନଙ୍କୁ ଉପରର ଅଂଶ ଦେଲେ ଓ ତଳର ଅଂଶ ନିଜେ ଗ୍ରହଣ କଲେ । ତାଙ୍କର ଗୋଟିଏ ଶାଢ଼ୀ ଛାତ ଉପରେ ଶୁଖୁଥିଲା, ତାହା କୁଆଡ଼େ ହଜିଗଲା । ଗୋଟିଏ ପାଣି-ମାଠିଆ ଉଠାଇବା ସମୟରେ ପଡ଼ି ଚୁରମାର ହୋଇଗଲା । କ୍ରମେ ୩୧ ଶ୍ରାବଣର ମହାନିଶା ଆସିଲା । ମଧ୍ୟରାତ୍ରୀ ଅତୀତ ହୋଇ ରାତି ୧ ଘଣ୍ଟା ୨ ମିନିଟ୍ ହେଲା । ସେହି ବୃହତ୍ ଉଦ୍ୟାନବାଟୀ ସେତେବେଳେ ସମ୍ପୂର୍ଣ୍ଣ ନୀରବ—କେବଳ ବିନିଦ୍ର ଭକ୍ତବୃନ୍ଦ ପ୍ରଭୁଙ୍କ ଶଯ୍ୟା ପାର୍ଶ୍ୱରେ ସମବେତ ହୋଇଛନ୍ତି । ଠାକୁର ଗଭୀର ସମାଧିମଗ୍ନ । ସେ ସମାଧି ଆଉ ଭାଙ୍ଗିଲା ନାହିଁ—ତାହା ମହାସମାଧିରେ ପରିଣତ ହେଲା । ଚିକିତ୍ସକମାନେ ଆସି ଜଣାଇଲେ ଆଉ ଆଶା ନାହିଁ । ପରଦିନ ଠାକୁରଙ୍କ ପୂତଦେହ କାଶୀପୁର ଶ୍ମଶାନରେ ଚିତାଗ୍ନିରେ ଆହୁତ ହେଲା । ଚିତା ନିର୍ବାପିତ ହେବାରୁ ପବିତ୍ର ଭସ୍ମାସ୍ଥି ଗୋଟିଏ ପାତ୍ରରେ କାଶୀପୁର ଉଦ୍ୟାନବାଟୀକୁ ଅଣାଗଲା ଓ ଶ୍ରୀରାମକୃଷ୍ଣଙ୍କ ଶଯ୍ୟା ଉପରେ ସ୍ଥାପିତ ହେଲା ।

ସନ୍ଧ୍ୟାବେଳେ ଶ୍ରୀମା' ଦେହରୁ ଗୋଟିଏ ଗୋଟିଏ କରି ଅଳଙ୍କାର କାଢ଼ିଦେଲେ । କିନ୍ତୁ ଶେଷରେ ଯେତେବେଳେ ସୁନାର ଖଡ଼ୁ ଖୋଲିବାକୁ ଯାଉଛନ୍ତି, ସେତେବେଳେ ଅକସ୍ମାତ୍ ଠାକୁର ପୂର୍ବର ସୁସ୍ଥ ମୂର୍ତ୍ତିରେ ଆବିର୍ଭୂତ ହୋଇ, ତାଙ୍କ ହାତ ଚାପିଧରି କହିଲେ, "ମୁଁ କଅଣ ମରିଯାଇଛି ଯେ ତୁମେ ଇତର ସ୍ତ୍ରୀଲୋକମାନଙ୍କ ପରି ହାତରୁ ଅଳଙ୍କାର ସବୁ ଖୋଲି ଦେଉଛ ?" ଶ୍ରୀମା' ଆଉ ଖଡ଼ୁ ଖୋଲିଲେ ନାହିଁ । ଏଣେ ବଳରାମବାବୁ ତାଙ୍କ ପାଇଁ ସାଧାଲୁଗା କିଣି ଆଣିଥିଲେ । ତାହା ଶ୍ରୀମା'ଙ୍କୁ ଦେବାପାଇଁ ଗୋଲାପ-ମା'ଙ୍କୁ କହିବାରୁ ସେ ଆତଙ୍କରେ ଶିହରି ଉଠି କହିଲେ, "ବାପରେ ! ଏ ଧଳା ଲୁଗା ତାଙ୍କ ହାତରେ କିଏ ଦେବ ?" ପରେ ଶ୍ରୀମା'ଙ୍କ ନିକଟକୁ ଯାଇ ଦେଖିଲେ ସେ ନିଜେ ଲୁଗାଗୁଡ଼ିକର ଧଡ଼ି ଛିଣ୍ଡାଇ ସରୁ କରିଦେଇଥିଲେ । ସେହିଦିନଠାରୁ ସେ ସରୁ ନାଲିଧଡ଼ିର ଲୁଗା ପିନ୍ଧୁଥିଲେ । ଠାକୁରଙ୍କର ନିତ୍ୟଲୀଳାର ବିରାମ ନାହିଁ ।

ତୃତୀୟ ଦିନ ମଧ୍ୟାହ୍ନରେ ଶ୍ରୀଶ୍ରୀଠାକୁରଙ୍କର ପବିତ୍ର ଅସ୍ଥିପୂର୍ଣ୍ଣ କଳସ ସମ୍ମୁଖରେ ଭୋଗ ନିବେଦିତ ହେଲା । ପ୍ରବୀଣ ଭକ୍ତମାନେ ସ୍ଥିର କଲେ ଯେ, ଏବେ ଆଉ ଉଦ୍ୟାନବାଟୀ ରଖିବାର କୌଣସି ପ୍ରୟୋଜନ ନାହିଁ । କିନ୍ତୁ ନରେନ୍ଦ୍ର ଓ ଅନ୍ୟାନ୍ୟ ଯୁବକ-ଭକ୍ତମାନେ ଠାକୁରଙ୍କ ଅସ୍ଥିସଂରକ୍ଷଣ ଏବଂ ଶ୍ରୀମା'ଙ୍କ ଶୋକହ୍ରାସ ପାଇଁ ଆହୁରି କିଛିଦିନ ଘରଟି ରଖିବା ପାଇଁ ଚାହୁଁଥିଲେ । ଶେଷରେ ଠିକ୍ ହେଲା ଯେ ଘରଭଡ଼ାର ନିର୍ଦ୍ଧାରିତ ସମୟ ଶେଷ ହେଲେ ତାହା ଛାଡ଼ି ଦିଆଯିବ ଏବଂ ତା' ପୂର୍ବରୁ ଶ୍ରୀରାମଚନ୍ଦ୍ର ଦତ୍ତ ମହାଶୟଙ୍କ କାଁକୁଡ଼ଗାଛିସ୍ଥ 'ଯୋଗୋଦ୍ୟାନ' ନାମକ ପ୍ରସିଦ୍ଧ ଭୂମିରେ ଅସ୍ଥି ସମାହିତ କରାଯିବ ଏବଂ ଶ୍ରୀମା' ଅନ୍ୟତ୍ର ଚାଲିଯିବେ । କିନ୍ତୁ ଯେହେତୁ ଠାକୁରଙ୍କ ସନ୍ନ୍ୟାସୀ ଓ ଗୃହସ୍ଥ ଭକ୍ତମାନେ ପ୍ରଥମେ ମିଳିତ ହୋଇ ସ୍ଥିର କରିଥିଲେ ଯେ ଗଙ୍ଗାକୂଳରେ ଖଣ୍ଡିଏ ଜମି କିଣା ହୋଇ ସେଠାରେ ଏହି ତାମ୍ରକଳସ ନିୟମାନୁଯାୟୀ ସମାହିତ କରାଯିବ, ତେଣୁ ଏହି ମତଦ୍ୱୈଧ ଯୋଗୁଁ କଳସସ୍ଥିତ ଅସ୍ଥି ଓ ଭସ୍ମାବଶେଷ ଭାଗ ଭାଗ ହୋଇ ଦୁଇଟି ପାତ୍ରରେ ରଖାଗଲା । ପ୍ରଥମଟି ଜନ୍ମାଷ୍ଟମୀ ଦିବସରେ (୨୩ ଅଗଷ୍ଟ ୧୮୮୬ ଖ୍ରୀଷ୍ଟାବ୍ଦ) କାଁକୁଡ଼ଗାଛିକୁ ନେଇ ଯଥାବିଧି ସେଠାରେ ସମାହିତ ହେଲା । ଦ୍ୱିତୀୟ କଳସଟି ଶ୍ରୀବଳରାମ ବସୁ ମହାଶୟଙ୍କ ଭବନକୁ ନିତ୍ୟପୂଜା ପାଇଁ ପ୍ରେରିତ ହେଲା । ପରେ ଗଙ୍ଗାତୀରରେ ସ୍ଥାୟୀ ମଠ ସ୍ଥାପିତ ହେବାରୁ କଳସ ସେଠାକୁ ଅଣାଗଲା ।

ଶ୍ରୀମା' କାଶୀପୁର ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହେଲେ । ଭକ୍ତ ବଳରାମ ବାବୁଙ୍କ ସାଦର ଆହ୍ୱାନରେ ସେ ଭାଦ୍ର ୬ ତାରିଖ ଅପରାହ୍ନରେ ତାଙ୍କ ଗୃହକୁ ଗମନ କଲେ । ଠାକୁରଙ୍କ ଅଦର୍ଶନ ହେତୁ ସେ ସେତେବେଳେ ଅତ୍ୟନ୍ତ କାତର । କ୍ରମେ ଠାକୁରଙ୍କ ଶାଶ୍ୱତ ଚିନ୍ମୟ ବିଗ୍ରହ ଦର୍ଶନ କରି ଏବଂ ସନ୍ତାନମାନଙ୍କ ମୁହଁରୁ 'ମା' ଡାକ ଶୁଣି କିଞ୍ଚିତ୍ ସାନ୍ତ୍ୱନା ପାଇଥିଲେ । ମା'ଙ୍କ ଏହି ବିରହ ଦୁଃଖ କଥା

ଭାବି ଭକ୍ତମାନେ ସ୍ଥିର କଲେ ଯେ, ଶ୍ରୀମା' କିଛିଦିନ ପାଇଁ କୌଣସି ତୀର୍ଥ ସ୍ଥାନରେ ଅବସ୍ଥାନ କରିବେ । ସେପରି ପବିତ୍ର ତୀର୍ଥରେ ଭଗବାନଙ୍କ ନିତ୍ୟ ଆବିର୍ଭାବର ନିଦର୍ଶନ ପାଇଲେ ଏବଂ ଠାକୁରଙ୍କ ସହିତ ଘନିଷ୍ଠଭାବେ ଜଡ଼ିତ ସ୍ଥାନଗୁଡ଼ିକରୁ କିଛିଦିନ ଦୂରେଇ ରହିଲେ ସେହି ଚରମ ଦୁଃଖରେ କିଞ୍ଚିତ୍ ଉପଶମ ହେବ । ବଳରାମ-ଭବନରେ ଆଠଦିନ ରହି ଶ୍ରୀମା' ଭାଦ୍ରମାସ ୧୫ ତାରିଖ ଦିନ ଶ୍ରୀବୃନ୍ଦାବନ ଦର୍ଶନ ପାଇଁ ବାହାରିଲେ । ସାଥିରେ ଗଲେ ଗୋଲାପ-ମା, ଲକ୍ଷ୍ମୀଦେବୀ, ମାଷ୍ଟର ମହାଶୟଙ୍କ ସ୍ତ୍ରୀ, ପୂଜନୀୟ ଯୋଗୀନ୍ ମହାରାଜ, କାଳୀ ମହାରାଜ ଓ ଲାଟୁ ମହାରାଜ ।

ପ୍ରଥମେ ଓହ୍ଲାଇଲେ ବୈଦ୍ୟନାଥ ଧାମରେ (ଦେଓଘର) । ବୈଦ୍ୟନାଥ-ଦର୍ଶନ କରି କାଶୀ ପାଇଁ ଗାଡ଼ି ଧରିଲେ । ସେଠାରେ ଆଠ ଦଶଦିନ ରହି ବିଶ୍ୱନାଥ, ଅନ୍ନପୂର୍ଣ୍ଣା ଓ ଅନ୍ୟାନ୍ୟ ପ୍ରସିଦ୍ଧ ଦେବଦେବୀଙ୍କୁ ଦର୍ଶନ କଲେ । ଶ୍ରୀମା' ବେଣୀମାଧବଙ୍କ ଧ୍ୱଜା ଉପରକୁ ଆରୋହଣ କରି ବିଶ୍ୱନାଥଙ୍କ ସ୍ୱର୍ଣ୍ଣପୁରୀ ଦେଖିଲେ । ବିଶ୍ୱନାଥଙ୍କର ଆଳତି ଦେଖି ତାଙ୍କର ଭାବାବେଶ ହେଲା । ଆଉଦିନେ ମହିଳାଭକ୍ତମାନଙ୍କ ସହିତ ସ୍ୱାମୀ ଭାସ୍କରାନନ୍ଦଜୀଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ । ସେଠାକୁ ଯାଇ ଦେଖିଲେ, ସାଧୁ ଉଲଗ୍ନ । ସେମାନଙ୍କୁ ଲକ୍ଷ୍ୟକରି ସ୍ୱାମୀଜୀ କହିଲେ, ''ଶଙ୍କା ମତ୍ କରୋ ମାଈ, ତୁମ୍ ସବ୍ ଜଗଦମ୍ବା ହୋ, ଶରମ୍ କ୍ୟା ?'' ଶ୍ରୀମା' ପରେ ତାଙ୍କ ସମ୍ବନ୍ଧରେ କହିଥିଲେ, ''ଆହା, କି ନିର୍ବିକାର ମହାପୁରୁଷ !''

କାଶୀରୁ ବାହାରି ସମସ୍ତେ ଅଯୋଧ୍ୟାରେ ପହଞ୍ଚିଲେ ଏବଂ ସେଠାରେ ଗୋଟିଏ ଦିନ ରହି ଶ୍ରୀରାମଚନ୍ଦ୍ରଙ୍କ ଲୀଳାଭୂମି ଦର୍ଶନ କଲେ । ଅଯୋଧ୍ୟାରୁ ବୃନ୍ଦାବନ ଯିବା ପଥରେ ଶ୍ରୀମା' ଠାକୁରଙ୍କର ଅକସ୍ମାତ୍ ଦର୍ଶନ ପାଇଲେ । ଶ୍ରୀମା'ଙ୍କ ବାହୁରେ ଠାକୁରଙ୍କର ସୁନାର ଇଷ୍ଟ କବଚ ଥିଲା । ମା' ଏହା ସଯତ୍ନରେ ରଖିଥିଲେ ଓ ନିତ୍ୟପୂଜା କରୁଥିଲେ । ରେଳଗାଡ଼ିର ଝରକା ଉପରେ ହାତ ରଖି ମା' ଶୋଇଥିଲେ । ଠାକୁରେ ଦର୍ଶନ ଦେଇ କହିଲେ, ସାଙ୍ଗରେ ଯେଉଁ କବଚଟି ଅଛି, ଦେଖିବ ତାହା ଯେପରି ନ ହଜେ । ମା' ତତ୍କ୍ଷଣାତ୍ ତାହା ଖୋଲି ଠାକୁରଙ୍କ ଫଟୋ ସହିତ ବାକ୍ସରେ ରଖିଦେଲେ ।

ବୃନ୍ଦାବନରେ ବଳରାମବାବୁଙ୍କର ଠାକୁରବାଡ଼ି 'କାଲାବାବୁଙ୍କ କୁଞ୍ଜ'ରେ ରହିଲେ । ସେତେବେଳେ ଭାଦ୍ରବ ମାସ । ବୃନ୍ଦାବନର ପ୍ରତ୍ୟେକ ବୃକ୍ଷରେ ଶ୍ୟାମଳ ଶୋଭା । ଭୂମି ସବୁଜ ତୃଣରେ ଆଚ୍ଛାଦିତ । ପବନରେ ବିଭିନ୍ନ ଫୁଲର ସୁବାସ, ମୟୂରର ଡାକ, ଗାଈ ଓ ହରିଣ ଚାରିଆଡ଼େ ଚରି ବୁଲୁଛନ୍ତି, ପୂର୍ଣ୍ଣସଲିଳା କାଳିନ୍ଦୀ (ଯମୁନା) କଳକଳ ଶବ୍ଦ କରି ପ୍ରବହମାନା । ସେହି ବୃନ୍ଦାବନର ଶୋଭା, ସେହି ନିକୁଞ୍ଜ କାନନ, ସେହି ଶ୍ରୀରାଧିକା ବିରହ-ଅଶ୍ରୁସିକ୍ତ ଧୂଳିକଣା, ସେହି ବ୍ରଜ-

ଗୋପୀମାନଙ୍କ ସତୃଷ୍ଣ ଦୃଷ୍ଟିନିସ୍ନାତ ବ୍ରଜଭୂମି—ସବୁ ରହିଛି, ସର୍ବତ୍ର ବ୍ରଜରାଜଙ୍କ ସ୍ମୃତି ଜାଗ୍ରତ ରହିଛି, କିନ୍ତୁ କେବଳ ସେ ନାହାନ୍ତି ! ବୃନ୍ଦାବନରେ ଶ୍ରୀମା'ଙ୍କ ମନରେ ଗଭୀର ବିରହ-ବେଦନା ଜାଗ୍ରତ ହେଲା । ଶ୍ରୀମା' ଅବିରାମ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଅବଶେଷରେ ଦିନେ ରାତିରେ ଶ୍ରୀରାମକୃଷ୍ଣ ଦର୍ଶନ ଦେଇ କହିଲେ, "ତୁମେମାନେ ଏତେ କାନ୍ଦୁଛ କାହିଁକି ? ମୁଁ ତ ଏଇଠି ଅଛି, କେଉଁଠି ଯାଇଛି ? ଯେପରି ଏ ଘର ଆଉ ସେ ଘର ।"

ଏହି ଦର୍ଶନ ପରେ ଶ୍ରୀମା'ଙ୍କ ମନ କିଞ୍ଚିତ୍ ଶାନ୍ତ ହୋଇଥିଲା । ଶ୍ରୀମା'ଙ୍କ ଦେହ ଓ ମନରେ ଗୋପୀମାନଙ୍କ ପରି ତନ୍ମୟତା ପ୍ରକାଶ ପାଇଥିଲା । ସେ ଆତ୍ମହରା ହୋଇ ଏକାକୀ ବିସ୍ତୃତ ତୀରଭୂମି ଅତିକ୍ରମ କରି ଯମୁନା କୂଳରେ ଉପସ୍ଥିତ ହେଉଥିଲେ । ସଙ୍ଗୀ ଓ ସଙ୍ଗିନୀମାନେ ଅନୁସନ୍ଧାନ କରି ତାଙ୍କୁ ଫେରାଇ ଆଣୁଥିଲେ । ଶୁଣାଯାଏ, ଥରେ ସେ ଭକ୍ତଙ୍କ ପ୍ରଶ୍ନର ଉତ୍ତରରେ କହିଥିଲେ, "ମୁଁ ରାଧା ।" କାଲାବାବୁଙ୍କ କୁଞ୍ଜରେ ଦିନେ ଧ୍ୟାନ କରୁ କରୁ ସେ ଗଭୀର ସମାଧିରେ ନିମଗ୍ନ ହେଲେ—ସମାଧି ଆଉ ଭାଙ୍ଗିଲା ନାହିଁ । ଯୋଗୀନ୍ ମା' ଅନେକ ସମୟ ଧରି ନାମ ଶୁଣାଇଲେ, କିନ୍ତୁ କୌଣସି ଫଳ ହେଲା ନାହିଁ । ଯୋଗେନ୍ ମହାରାଜ ଆସି ଦୀର୍ଘକାଳ କାନରେ ମନ୍ତ୍ର ଉଚ୍ଚାରଣ କରିବାରୁ ମନ ଟିକିଏ ସ୍ୱାଭାବିକ ଭୂମିକୁ ଆସିଲା । ସମାଧିଭଙ୍ଗ ହେଲେ ଠାକୁର ଯେପରି କହୁଥିଲେ, ଶ୍ରୀମା' ମଧ୍ୟ ସେହିପରି କହିଲେ, "ଖାଇବି ।" କିଛି ଖାଦ୍ୟ, ପାନୀୟ ଓ ପାନ ସମ୍ମୁଖରେ ରଖିବାରୁ ସେ ଠାକୁରଙ୍କ ଭଳି ଅଳ୍ପ ଅଳ୍ପ ନେଇ ଖାଇଲେ । ସେହି ଅବସ୍ଥାରେ ଯୋଗୀନ୍ ମହାରାଜ କେତୋଟି ପ୍ରଶ୍ନ କରିବାରୁ ସେ ଠିକ୍ ଠାକୁରଙ୍କ ଭଳି ଉତ୍ତର ଦେଲେ । ଏହି ସମୟରେ ତାଙ୍କର ହାବଭାବ ଠିକ୍ ଠାକୁରଙ୍କ ପରି ହୋଇଯାଇଥିଲା ।

ତାଙ୍କର ଆଚାର ବ୍ୟବହାର ଦେଖି ମନେ ହେଉଥିଲା ସେ ଯେପରି ଗୋଟିଏ ସରଳା ବାଳିକା ମାତ୍ର । ଦିନେ ପତ୍ରପୁଷ୍ପସଜ୍ଜିତ ଗୋଟିଏ ଶବ ଦେହକୁ ଦେଖି ସେ କହିଥିଲେ, "ଦେଖ ଦେଖ, ମଣିଷଟି କିପରି ବୃନ୍ଦାବନପ୍ରାପ୍ତ ହୋଇଛି । ଆମେମାନେ ଏଠାକୁ ସେଇଥିପାଇଁ ଆସିଥିଲୁ, କିନ୍ତୁ ଟିକିଏ ଜ୍ୱର ବି ହେଲା ନାହିଁ । ଦେଖ କେତେ ବୟସ ହୋଇଗଲା—ଆମେ ଆମ ବାପାଙ୍କୁ ଦେଖିଛୁ, ଦେଢ଼ଶୁରକୁ ଦେଖିଛୁ !" ଯୋଗୀନ୍-ମା' ସେକଥା ଶୁଣି ହସି ହସି କହିଲେ, "କଅଣ କହୁଛ, ମା' ବାପାଙ୍କୁ ଦେଖିଛ—ବାପାଙ୍କୁ ପୁଣି କିଏ ନ ଦେଖିଛି ?" ବୃନ୍ଦାବନରେ ଶ୍ରୀମା' ବର୍ଷେ କାଳ ଅତିବାହିତ କଲେ । ଦୀର୍ଘକାଳ ତୀର୍ଥବାସ ଯୋଗୁଁ ମା'ଙ୍କ ମନ ଅନେକାଂଶରେ ସ୍ୱାଭାବିକ ହୋଇଆସିଲା ଏବଂ ତାଙ୍କ ମନ ଆନନ୍ଦରେ ଭରପୂର ହୋଇଉଠିଲା । ସେ ପ୍ରତିଦିନ ବିଭିନ୍ନ ମନ୍ଦିରକୁ ଯାଇ ବିଗ୍ରହଦର୍ଶନ କରୁଥିଲେ ଓ ସେଠାରେ ଧ୍ୟାନଜପ କରୁଥିଲେ । ମା' ସଙ୍ଗିନୀମାନଙ୍କ ସହିତ ଥରେ ବୃନ୍ଦାବନ

ପରିକ୍ରମା କରିଥିଲେ । ଏଥିପାଇଁ ପ୍ରାୟ ପନ୍ଦର ଦିନ ସମୟ ଲାଗିଥିଲା । ଚାଲୁ ଚାଲୁ ସେ ହଠାତ୍ ରହିଯାଉଥିଲେ, ବୋଧ ହେଉଥିଲା ସେ ଯେପରି ଗୋଟାଏ ଭାବାବେଶରେ ଚାଲିଛନ୍ତି ଏବଂ ଦର୍ଶନାଦି ପାଉଛନ୍ତି । ପଚାରିଲେ କୌଣସି ଉତ୍ତର ଦେଉ ନ ଥିଲେ ।

ବୃନ୍ଦାବନରେ ଶ୍ରୀଶ୍ରୀଠାକୁର ମା'ଙ୍କଦ୍ୱାରା ତାଙ୍କର ଗୋଟାଏ ଅସମାପ୍ତ କାର୍ଯ୍ୟ ପୂରଣ କରିଥିଲେ — ମା'ଙ୍କ ଜୀବନରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ହେଲା । ସେ ମା'ଙ୍କୁ ଦିନେ ଦର୍ଶନ ଦେଇ କହିଲେ, ''ତୁମେ ଯୋଗେନ୍‌କୁ (ଯୋଗାନନ୍ଦ) ଏହି ମନ୍ତ୍ର ଦିଅ ।'' ପ୍ରଥମ ଦିନ ତାହା ମନର ଖିଆଲ ଭାବି ମା' ସେକଥାରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ଦ୍ୱିତୀୟ ଦିନ ମଧ୍ୟ ଏପରି ଆଦେଶ ପାଇ ପୂର୍ବବତ୍ ରହିଲେ । ତୃତୀୟ ଦିନ ସେ ଠାକୁରଙ୍କୁ କହିଲେ, ''ମୁଁ ତା' ସହିତ କଥା ପର୍ଯ୍ୟନ୍ତ କହେ ନାହିଁ, ମନ୍ତ୍ର ପୁଣି କିପରି ଦେବି ?'' ଠାକୁର ପରାମର୍ଶ ଦେଲେ, ''ତୁମେ ଯୋଗୀନ୍-ମା'ଙ୍କୁ ପାଖରେ ରଖିବ ।'' ଶ୍ରୀମା' ଯୋଗୀନ୍-ମା'ଙ୍କ ଦ୍ୱାରା ଯୋଗାନନ୍ଦଜୀଙ୍କୁ ପଚାରିଲେ — ତାଙ୍କର ମନ୍ତ୍ରଦୀକ୍ଷା ହୋଇଛି କି ନାହିଁ । ସେ ଉତ୍ତର ଦେଲେ, ''ନା ମା', କୌଣସି ବିଷୟରେ ଇଷ୍ଟମନ୍ତ୍ର ଠାକୁର ମୋତେ ଦେଇନାହାନ୍ତି ।'' ଯୋଗେନ୍ ମହାରାଜ ଏହା ମଧ୍ୟ ଜଣାଇଲେ, ଯେ, ତାଙ୍କୁ ମଧ୍ୟ ଠାକୁର ମା'ଙ୍କ ଠାରୁ ମନ୍ତ୍ର ନେବା ପାଇଁ ଆଦେଶ ଦେଇଛନ୍ତି । ଶେଷରେ ମା' ତାଙ୍କୁ ମନ୍ତ୍ର ଦେବାକୁ ସମ୍ମତ ହେଲେ । ଦୀକ୍ଷା ସମୟରେ ଠାକୁରଙ୍କ ଛବି ଓ ଅସ୍ଥିପୂର୍ଣ୍ଣ ପାତ୍ର ସମ୍ମୁଖରେ ରଖି ଶ୍ରୀମା' ପୂଜା କଲେ । ଭାବାବସ୍ଥାରେ ସେ ଯୋଗେନ୍ ମହାରାଜଙ୍କୁ ଡକାଇ ସମ୍ମୁଖରେ ବସାଇଲେ ଏବଂ ଏହି ଭାବାବସ୍ଥାରେ ହିଁ ମନ୍ତ୍ରଦାନ କଲେ । ମନ୍ତ୍ର ଏତେ ଜୋର୍‌ରେ ଉଚ୍ଚାରଣ କଲେ ଯେ ପାଖ ଘରୁ ଯୋଗୀନ୍-ମା' ମଧ୍ୟ ତାହା ଶୁଣିଲେ । ଯୋଗେନ୍ ମହାରାଜ ମା'ଙ୍କର ପ୍ରଥମ ମନ୍ତ୍ରଶିଷ୍ୟ ।

ସାଙ୍ଗରେ ଯୋଗେନ୍ ମହାରାଜ, ଯୋଗୀନ୍-ମା' ଆଦିଙ୍କୁ ନେଇ ଶ୍ରୀମା' ହରିଦ୍ୱାର ଦର୍ଶନ ପାଇଁ ଗଲେ । ରେଳଗାଡ଼ିରେ ଯାଉ ଯାଉ ଯୋଗେନ୍ ମହାରାଜଙ୍କୁ ଭୀଷଣ ଜ୍ୱର ହେଲା । ତାଙ୍କର ସେହି ଅବସ୍ଥାରେ ଯେତେବେଳେ ଯୋଗୀନ୍-ମା' ବେଦନାରସ ଖୁଆଉଥିଲେ, ସେତେବେଳେ ଶ୍ରୀମା' ପ୍ରତ୍ୟକ୍ଷ ଦେଖିଲେ ଯେପରିକି ଠାକୁରଙ୍କୁ ହିଁ ତାହା ନିବେଦନ କରାହେଉଛି । ସେହି ଅଚେତ୍ ଅବସ୍ଥାରେ ଯୋଗେନ୍ ମହାରାଜ ଦେଖିଲେ — ଗୋଟିଏ ଭୀଷଣ ମୂର୍ତ୍ତି ସମ୍ମୁଖକୁ ଆସି କହିଲା, ''ତୋତେ ଦେଖିନେଇଥାଆନ୍ତି, କିନ୍ତୁ ପରମହଂସଦେବଙ୍କ ଆଦେଶରେ ମୋତେ ବର୍ତ୍ତମାନ ଚାଲିଯିବାକୁ ହେବ ।'' ଯିବା ସମୟରେ ଏହି ମୂର୍ତ୍ତି ରକ୍ତବସ୍ତ୍ର ପରିହିତା ଏକ ଦେବୀଙ୍କୁ ଦେଖାଇ ତାଙ୍କୁ କିଛି ମିଷ୍ଟାନ୍ନ ନିବେଦନ କରିବାକୁ ନିର୍ଦ୍ଦେଶ କରିଗଲେ । ଏହି ଦର୍ଶନ ପରେ ଜ୍ୱର ଭଲ ହୋଇଗଲା ।

ପରେ ଜୟପୁର (ରାଜସ୍ଥାନ) ରେ ଗୋବିନ୍ଦଜୀଙ୍କୁ ଦର୍ଶନ କରି ଅନ୍ୟାନ୍ୟ ବିଗ୍ରହ ଦେଖୁ ଦେଖୁ ଯୋଗେନ୍ ମହାରାଜ ଏହି ଦେବୀଙ୍କୁ ଦେଖିଥିଲେ ଏବଂ ତାଙ୍କୁ (ଶୀତଳାଦେବୀଙ୍କୁ) ମିଷ୍ଟାନ୍ନଭୋଗ ଦିଆହେଲା ।

ହରିଦ୍ୱାରରେ ଶ୍ରୀମା' ଯଥାରୀତି ବ୍ରହ୍ମକୁଣ୍ଡରେ ସ୍ନାନ ସାରି ମନ୍ଦିରାଦି ଦର୍ଶନ କଲେ । ସେ ତୀର୍ଥଜଳରେ ବିସର୍ଜନ ପାଇଁ ଶ୍ରୀଶ୍ରୀଠାକୁରଙ୍କ କେଶ ଓ ନଖ ଆଣିଥିଲେ । ବ୍ରହ୍ମକୁଣ୍ଡରେ ତାହାର କିଛି ଅଂଶ ବିସର୍ଜନ ଦେଲେ ଏବଂ ପରେ ଭାଗୀରଥୀ ଅତିକ୍ରମ କରି ପର୍ବତ ଆରୋହଣ କଲେ ଓ ଚଣ୍ଡୀଙ୍କୁ ଦର୍ଶନ କଲେ । ମା' ହରିଦ୍ୱାରରୁ ଜୟପୁରକୁ ଆସିଲେ । ଜୟପୁରରେ ଦର୍ଶନାଦି କରି ପୁଷ୍କରତୀର୍ଥକୁ ଯାଇଥିଲେ । ସେଠାରେ ଶ୍ରୀମା' ସାବିତ୍ରୀ ପାହାଡ଼ ଆରୋହଣ କରିଥିଲେ । ଗୋଡ଼ରେ ବାତ ଥିଲେ ସୁଦ୍ଧା ସେତେବେଳେ ମା' ବେଶ୍ ଚଲାବୁଲା କରିପାରୁଥିଲେ । କଲିକତାକୁ ଫେରିବା ପଥରେ ଶେଷ ତୀର୍ଥ ପ୍ରୟାଗ । ପ୍ରୟାଗରେ ଗଙ୍ଗା ଯମୁନାର ସଙ୍ଗମସ୍ଥଳରେ ଶ୍ରୀମା' ଠାକୁରଙ୍କର ଅବଶିଷ୍ଟ କେଶ ବିସର୍ଜନ କଲେ । ଏହି ଦିନର ଘଟଣା ସମ୍ପର୍କରେ ସେ ପରେ କହିଥିଲେ, ''ଠାକୁରଙ୍କ କେଶ କଅଣ କମ୍ ଜିନିଷ ! ତାଙ୍କ ଶରୀର ତ୍ୟାଗ ବେଳେ ଯେତେବେଳେ ପ୍ରୟାଗକୁ ଯାଇଥିଲି, ସେତେବେଳେ ତାଙ୍କ କେଶ ତୀର୍ଥରେ ବିସର୍ଜନ ପାଇଁ ନେଇଯାଇଥିଲି । ଗଙ୍ଗା-ଯମୁନା-ସଙ୍ଗମର ସ୍ଥିର ଜଳ ଉପରେ ଏହି କେଶ ହାତରେ ନେଇ ବିସର୍ଜନ ଦେବି ବୋଲି ଭାବୁଛି, ଏପରି ସମୟରେ ହଠାତ୍ ଗୋଟିଏ ଢେଉ ଆସି ମୋ ହାତରୁ ତାହା ନେଇ ପାଣିରେ ମିଶିଗଲା ।'' ଲକ୍ଷ୍ମୀଦେବୀ ଏଠାରେ ମସ୍ତକ ମୁଣ୍ଡନ କରିଥିଲେ, କିନ୍ତୁ ଶ୍ରୀମା' କଲେ ନାହିଁ । ଅଳଙ୍କାର ତ୍ୟାଗ କରିବା ଯେପରି ସମ୍ଭବ ହୋଇ ନ ଥିଲା, ସେପରି କେଶତ୍ୟାଗ ମଧ୍ୟ ସମ୍ଭବ ହେଲା ନାହିଁ । ତୀର୍ଥଦର୍ଶନର ଆନନ୍ଦ ହୃଦୟରେ ଧରି ସେ କଲିକତାକୁ ଫେରିଆସିଲେ ।

## କାମାରପୁକୁରରେ

କଲିକତାରେ ପ୍ରାୟ ପନ୍ଦର ଦିନ ବଳରାମବାବୁଙ୍କ ଗୃହରେ ରହି ଶ୍ରୀମା' କାମାରପୁକୁର ଯିବାକୁ ମନସ୍ଥ କଲେ । ଯାତ୍ରା କରିବା ପୂର୍ବରୁ ଦକ୍ଷିଣେଶ୍ୱର ଯାଇ ସବୁ ଦେବଦେବୀଙ୍କୁ ପ୍ରଣାମ କଲେ ଓ ଶ୍ରୀରାମକୃଷ୍ଣଙ୍କର ସ୍ମୃତିଚିହ୍ନଗୁଡ଼ିକୁ ଆଉଥରେ ପ୍ରାଣଭରି ଦେଖିନେଇ ବିଦାୟ ନେଲେ । ସ୍ୱାମୀ ଯୋଗାନନ୍ଦ, ଗୋଲାପ-ମା' ପ୍ରଭୃତି ଶ୍ରୀମା'ଙ୍କୁ କାମାରପୁକୁର ପର୍ଯ୍ୟନ୍ତ ପହଞ୍ଚାଇ ଦେବା ପାଇଁ ସାଥୀ ହେଲେ । ବର୍ଦ୍ଧମାନ ପର୍ଯ୍ୟନ୍ତ ରେଳଗାଡ଼ିରେ ଯାଇ ସେଠାରୁ ଉଚାଲନ୍ ପର୍ଯ୍ୟନ୍ତ ଆଠକୋଶ ରାସ୍ତା ଚାଲି ଚାଲି ଗଲେ । ଶ୍ରୀମା' ବହୁତ କ୍ଳାନ୍ତ ହୋଇପଡ଼ିଥିଲେ । ଗୋଲାପ-ମା'ଙ୍କ ରନ୍ଧା ଖେଚୁଡ଼ି କ୍ଷୁଧାର୍ତ୍ତ ପଥିକମାନଙ୍କୁ ଅମୃତ ପରି ଲାଗିଥିଲା । କାମାରପୁକୁରରେ ପହଞ୍ଚି ସେଠାରୁ କେତେଦିନ ପରେ ଯୋଗାନନ୍ଦ ଇତ୍ୟାଦି

ଅନ୍ୟତ୍ର ଚାଲିଗଲେ ଓ ଶ୍ରୀଶ୍ରୀମା'ଙ୍କର ଅତି ଦୁଃଖମୟ କାମାରପୁକୁର-ଜୀବନ ଆରମ୍ଭ ହେଲା । ଅଧିକାଂଶ ସମୟ ସେ ଏକାକିନୀ ଥିଲେ । କେବଳ ଦୁଇ ଚାରିଜଣ ପୂର୍ବପରିଚିତ ଗ୍ରାମବାସୀଙ୍କ ଛଡ଼ା ତାଙ୍କ ଦୁଃଖର ସମ୍ବାଦ ନେବା ପାଇଁ ବା ସହାନୁଭୂତି ଦେଖାଇବା ପାଇଁ କେହି ନ ଥିଲେ ।

ଶ୍ରୀରାମକୃଷ୍ଣ ଯେତେବେଳେ କାଶୀପୁରରେ ଥିଲେ, ସେତେବେଳେ ଦକ୍ଷିଣଶ୍ୱରରୁ ପୁତୁରା ରାମଲାଲ ଦିନେ ତାଙ୍କ ସହିତ ଦେଖା କରିବାକୁ ଆସିବାରୁ ଠାକୁର କହିଥିଲେ, ''ତୁ ଭବତାରିଣୀଙ୍କ ସେବା କରିବୁ, ତା'ହେଲେ ତୋର ଅଭାବ ରହିବ ନାହିଁ !'' ଏକଥା କହି ଶ୍ରୀମା'ଙ୍କୁ ଲକ୍ଷ୍ୟ କରି ସେ କହିଲେ, ''ତୁମେ କାମାରପୁକୁରରେ ରହିବ ଏବଂ ଲକ୍ଷ୍ମୀ ପ୍ରତି ନଜର ରଖିବ । ସେ ଯେପରି ଘରୁ ଅନ୍ୟତ୍ର ନ ଯାଏ । ମୋତେ ଭକ୍ତମାନେ ଯେପରି ଭକ୍ତି କରନ୍ତି, ତୁମକୁ ମଧ କରିବେ ।'' ରାମଲାଲଙ୍କୁ ପୁଣି ଥରେ କହିଲେ, ''ତୋ ଖୁଡ଼ୀ ଯେପରି କାମାରପୁକୁରରେ ରହନ୍ତି ।'' ରାମଲାଲ ଉତ୍ତର ଦେଲେ, ''ତାଙ୍କର ଯେଉଁଠାରେ ଇଚ୍ଛା ସେଠାରେ ରହିବେ ।'' ଏହି କଥାର ତାତ୍ପର୍ଯ୍ୟ ବୁଝି ଠାକୁର ତାଙ୍କୁ ତୀବ୍ର ଭାଷାରେ କହିଲେ, ''ସେ କି କଥା ? ତୁ ତାହାହେଲେ ପୁରୁଷ ହୋଇ ଜନ୍ମ ହୋଇଛୁ କାହିଁକି ?'' ଲକ୍ଷ୍ମୀଦେବୀ ମା'ଙ୍କ ସହିତ ବୃନ୍ଦାବନ ଯାଇଥିଲେ, କିନ୍ତୁ କାମାରପୁକୁର ଗଲେ ନାହିଁ । ରାମଲାଲ ଶ୍ରୀମା'ଙ୍କ ଖର୍ଚ୍ଚର କୌଣସି ଦାୟିତ୍ୱ ବହନ କଲେ ନାହିଁ । କେବଳ ସେତିକି ନୁହେଁ, ସେ ଏକ ଘୋର ବାଧା ମଧ୍ୟ ସୃଷ୍ଟି କରିଥିଲେ । ରାଣୀ ରାସମଣିଙ୍କ ନାତି ତ୍ରୈଲୋକ୍ୟନାଥ ବିଶ୍ୱାସ ଶ୍ରୀମା'ଙ୍କୁ ମାସିକ ସାତଟଙ୍କା ଦେଉଥିଲେ । ଶ୍ରୀମା' ବୃନ୍ଦାବନରେ ଥିବା ସମୟରେ ରାମଲାଲ ଦାଦା କାଳୀବାଡ଼ିର କୋଷାଧକ୍ଷଙ୍କୁ ବୁଝାଇଲେ ଯେ, ମା' ଭକ୍ତମାନଙ୍କ ନିକଟରୁ ଯଥେଷ୍ଟ ସାହାଯ୍ୟ ପାଆନ୍ତି, ଯାହା ତାଙ୍କ ପକ୍ଷରେ ଯଥେଷ୍ଟ । ସୁତରାଂ କାଳୀବାଡ଼ିର ଟଙ୍କା ମଧ୍ୟ ବନ୍ଦ ହୋଇଗଲା । ନରେନ୍ଦ୍ର (ସ୍ୱାମୀ ବିବେକାନନ୍ଦ) ଏହି ଟଙ୍କା ବନ୍ଦ ନ କରିବାକୁ ଅନୁରୋଧ କରିଥିଲେ; କିନ୍ତୁ କୌଣସି ଫଳ ହେଲା ନାହିଁ । ଶ୍ରୀମା' ସମ୍ବାଦ ପାଇ କହିଲେ, ''ବନ୍ଦ କରିଛି, କରୁ । ଠାକୁର ନିଜେ ଚାଲିଗଲେ— ଟଙ୍କା ନେଇ ମୁଁ କଅଣ କରିବି ?'' ଏଣେ ଭକ୍ତମାନେ ସ୍ଥିର କଲେ ଯେ, ମା'ଙ୍କୁ ମାସିକ ଦଶଟଙ୍କା କରି ଦେବେ । କିନ୍ତୁ କୌଣସି କାରଣରୁ ତାହା ମଧ୍ୟ ସମ୍ଭବ ହେଲା ନାହିଁ ।

ଅତଏବ ଶ୍ରୀମା'ଙ୍କ କାମାରପୁକୁର ଜୀବନ କେବଳ ନିଃସଙ୍ଗ ନୁହେଁ, ନିଃସମ୍ବଳ ମଧ୍ୟ । ଶ୍ରୀରାମକୃଷ୍ଣ ଥରେ ତାଙ୍କୁ କହିଥିଲେ, ''ତୁମେ କାମାରପୁକୁରରେ ରହିବ; ଶାଗ ବୁଣିବ—ଶାଗଭାତ ଖାଇବ, ଆଉ ହରିନାମ କରିବ ।'' ଏହା ଆଦେଶ ନ ହେଲେ ମଧ୍ୟ ଯୁଗାବତାଙ୍କର ଇଚ୍ଛା ଏବଂ ଶ୍ରୀମା'ଙ୍କ ଜୀବନଧାରଣର ଗୋଟିଏ ଉପାୟ ନିର୍ଦ୍ଦେଶ । ଶ୍ରୀମା'ଙ୍କୁ ବୋଧହୁଏ ଏହି ନିର୍ଦ୍ଦେଶ ସଫଳ କରିବା

ପାଇଁ ସେହି ଭାବରେ ଦିନ କଟାଇବାକୁ ପଡ଼ିଥିଲା । ଏପରି ଦିନ ଯାଇଛି, ଯେତେବେଳେ ଭାତ ସଙ୍ଗରେ ଲୁଣ ପର୍ଯ୍ୟନ୍ତ ଜୁଟି ନାହିଁ । ଦୀର୍ଘକାଳ ପରେ ବିଭିନ୍ନ ସୂତ୍ରରୁ ଏହି ସମ୍ବାଦ ପାଇ ଭକ୍ତମାନେ ଶ୍ରୀମା'ଙ୍କୁ କଲିକତା ନେଇଗଲେ, କିନ୍ତୁ ତାହା ବହୁ ପରର କଥା । ଶ୍ରୀମା' ଅଶେଷ କଷ୍ଟ ସହି ମଧ୍ୟ ସ୍ୱାମୀଙ୍କ ଭିଟାରେ ପଡ଼ିରହିଲେ; ନିଜ ଦୁଃଖର କଥା କାହାକୁ ଜଣାଇଲେ ନାହିଁ; କାରଣ ସେତେବେଳେ ତାଙ୍କ କାନରେ ଠାକୁରଙ୍କ ଶେଷ ଆଦେଶ ଧ୍ୱନିତ ହେଉଥିଲା, "ଦେଖ, କାହାରି ନିକଟରେ ଗୋଟିଏ ପଇସା ପାଇଁ ହାତ ପାତିବ ନାହିଁ । ତୁମର ମୋଟା ଲୁଗା ଓ ଭାତର ଅଭାବ ହେବ ନାହିଁ । ଗୋଟିଏ ପଇସା ଯଦି କାହାରି ନିକଟରେ ହାତ ପାତିବ, ତେବେ ତୁମ ମୁଣ୍ଡ ତା' ପାଖରେ ବିକା ହୋଇ ରହିବ ।...ତୁମକୁ ଭକ୍ତମାନେ ନିଜ ଘରେ ଯେତେ ଆଦର କରି ରଖନ୍ତୁନା କାହିଁକି, କାମାରପୁକୁର ନିଜ ଘର, ତାହାକୁ ନଷ୍ଟ କରିବ ନାହିଁ ।"

ଆମେ ବର୍ତ୍ତମାନ ସେତେବେଳକାର କାମାରପୁକୁର ପ୍ରତି ଦୃଷ୍ଟି ନିକ୍ଷେପ କରିବା । ସେତେବେଳେ ଶ୍ରୀରାମକୃଷ୍ଣଙ୍କ ପୂର୍ବର କାମାରପୁକୁର ପରିବର୍ତ୍ତିତ ହୋଇଥିଲେ ମଧ୍ୟ, ମ୍ୟାଲେରିଆ ବୃଦ୍ଧିଯୋଗୁଁ ଓ ସହରର ଆକର୍ଷଣରେ ପଲ୍ଲୀବାସୀଙ୍କ ସଂଖ୍ୟା କ୍ରମେ ହ୍ରାସ ପାଉଥିବା ସତ୍ତ୍ୱେ ଶ୍ରୀମା'ଙ୍କ ଦୃଷ୍ଟିରେ ତାହା ନୂତନ ବୋଧ ହେଲା ନାହିଁ । ଠାକୁରଙ୍କ ଗୃହର ଦକ୍ଷିଣରେ ସୁଖଲାଲ ଗୋସ୍ୱାମୀଙ୍କ ପକ୍କା ଘର । ଗ୍ରାମବାସୀଙ୍କ ନିକଟରେ ତାହା 'ଗୋସାଇଁ ମହଲ' ବୋଲି ପରିଚିତ । ତାହାର ଦକ୍ଷିଣରେ କ୍ଷୁଦ୍ର ପୁଷ୍କରିଣୀ — ଆହୁରି ଦକ୍ଷିଣରେ ଲାହାବାବୁଙ୍କ ଅତିଥିଶାଳା, ତା'ର ପୂର୍ବଦିଗକୁ 'କାମାର-ପୁକୁର' ନାମକ ବୃହତ୍ ଜଳାଶୟ । ଏହି ପୁଷ୍କରିଣୀର ଦକ୍ଷିଣ ପଶ୍ଚିମ ତୀରରେ ଏବେ ସୁଦ୍ଧା କମାରମାନଙ୍କର ବାସଗୃହ ରହିଛି । ଠାକୁରଙ୍କର ଗୃହର ଉତ୍ତରରେ ଅତି ବୃହତ୍ ହାଲଦାର ପୋଖରୀ । ଯେଉଁ ହାଲଦାରମାନଙ୍କର ସ୍ମୃତି ଏହି ପୁଷ୍କରିଣୀ ବହନ କରୁଛି, ସେମାନେ ବର୍ତ୍ତମାନ ଗ୍ରାମ ଛାଡ଼ି ଚାଲିଯାଇଛନ୍ତି । ଠାକୁରଙ୍କ ଗୃହ ନିକଟରେ ବହୁ ଗୁଡ଼ିଆ ଘର ଥିଲା ଏବଂ ବଡ଼ ରାସ୍ତାର ଦୁଇକଡ଼ରେ ସେମାନଙ୍କର ବହୁ ଦୋକାନ ମଧ୍ୟ ଥିଲା । ଉତ୍ତର-ପଶ୍ଚିମ ଦିଗକୁ ରାସ୍ତାକଡ଼ରେ ଡମପଲ୍ଲୀ । ଯୋଗୀବଂଶୀୟ ଲୋକମାନେ ଘରେ ରହି ମନ୍ଦିରରେ ଶିବପୂଜା ଚଳାଉଥିଲେ । ମାଣିକରାଜାଙ୍କ ଆମ୍ରକାନନ ପୂର୍ବଭଳି ଥିଲା ।

ଗୃହର ଉତ୍ତରଭାଗରେ ବଡ଼ ରାସ୍ତା ଉପରେ ତିନୋଟି ଦକ୍ଷିଣଦ୍ୱାରୀ ଘର ଥିଲା (ଏବେ ମଧ୍ୟ ରହିଛି) । ପାଚେରୀ ବାହାରେ ପୂର୍ବଦିଗକୁ ବୈଠକଖାନା ଘର । ଭିତରେ ଦୁଇଟି ବଖରା । ବଡ଼ ବଖରାରେ ରାମଲାଲଙ୍କ ପିତା ରାମେଶ୍ୱର ବାସ କରୁଥିଲେ (ବର୍ତ୍ତମାନ ଏହା ଦୁଇମହଲା ହୋଇଛି ଓ ମନ୍ଦିରର ଭଣ୍ଡାରରେ ପରିଣତ ହୋଇଛି) । ତାହାର ପଶ୍ଚିମକୁ ଓ ରଘୁବୀରଙ୍କ ମନ୍ଦିରର ଉତ୍ତରକୁ

ଛୋଟ ବଖରାଟିରେ ଠାକୁର ରହୁଥିଲେ । ଶ୍ରୀମା'ଙ୍କ କାମାରପୁକୁର ଜୀବନ ଏହି ଛୋଟ ବଖରାରେ ଯାପିତ ହୋଇଥିଲା । ଏହି ଦୁଇଟି ବଖରାର ମଧ୍ୟସ୍ଥଳ ଦେଇ ଉତ୍ତରର ବଡ଼ ରାସ୍ତାକୁ ଯିବାର ଝିଡ଼ିକି-ଦରଜା । ପ୍ରାଚୀନ ରନ୍ଧନଶାଳା ଦକ୍ଷିଣର ପାଚେରିକୁ ଲାଗିଥିଲା । ପଶ୍ଚିମ ଦିଗର ପାଚେରିକୁ ଲାଗି ରଘୁବୀରଙ୍କ ମନ୍ଦିର । ପୂର୍ବ ପାଚେରୀର ମଧ୍ୟସ୍ଥଳରେ ଗୃହର ପ୍ରବେଶ ଦ୍ୱାର । ଏହି ଦ୍ୱାର ଏବଂ ରନ୍ଧନଶାଳା ମଝିରେ ଢେଙ୍କିଶାଳ—ଯେଉଁଠାରେ ଠାକୁରଙ୍କର ଜନ୍ମ ହୋଇଥିଲା । ରଘୁବୀରଙ୍କ ମନ୍ଦିରରେ ଦେବତାମାନଙ୍କ ପାଇଁ ଯେଉଁ ବେଦୀ ନିର୍ମିତ ହୋଇଥିଲା, ତାହାର ମାଟି ଶ୍ରୀଯୁକ୍ତ କ୍ଷୁଦିରାମ ନିଜେ ମସ୍ତକରେ ବହନ କରି ଆଣି ସ୍ୱହସ୍ତରେ ତିଆରି କରିଥିଲେ । ଏହି ବେଦୀ ଉପରେ ଚାରୋଟି ଦେବଦେବୀ ସ୍ଥାପିତ ଅଛନ୍ତି । ଗୋପାଳମୂର୍ତ୍ତି ଲକ୍ଷ୍ମୀଦେବୀ ସ୍ଥାପନ କରିଛନ୍ତି । ଶ୍ରୀଯୁକ୍ତ କ୍ଷୁଦିରାମ ରାମେଶ୍ୱର ତୀର୍ଥରୁ ଶ୍ୱେତପଥରର ରାମେଶ୍ୱର ଶିବ ଆଣିଥିଲେ । ରଘୁବୀରଙ୍କୁ ସେ ସ୍ୱପ୍ନରେ ପାଇଥିଲେ । ଶୀତଳାଦେବୀଙ୍କ ପ୍ରତୀକ ଆମ୍ରପଲ୍ଲବଯୁକ୍ତ ସିନ୍ଦୂରଲିପ୍ତ ଘଟ । ଶ୍ରୀମା' କହିଥିଲେ, ''ଶୀତଳାଦେବୀ ଆମର ଆଦି ଗୃହ ଦେବତା । ମୋ ଶ୍ୱଶୁର ଦିନେ ଦିବ୍ୟ ଦୃଷ୍ଟିରେ ଦେଖିଲେ ଯେ—ମହାମାୟା ଶୀତଳାମୂର୍ତ୍ତି ଧରି—ଅଳ୍ପବୟସର ଝିଅଟିଏ, ନାଲି ସିନ୍ଦୁର ରଙ୍ଗର ଶାଢ଼ୀ ପିନ୍ଧି—ହାତରେ ଝାଡୁ ନେଇ ସବୁ ଅମଙ୍ଗଳ, ଆବର୍ଜନା ପରିଷ୍କାର କରୁଛନ୍ତି । ଆଉ କଳସୀରୁ ଅମୃତବାରି ଆମ୍ରପଲ୍ଲବରେ ଚାରିଆଡ଼େ ଛିଞ୍ଚୁଛନ୍ତି ଓ ସବୁ ପ୍ରାଣୀଙ୍କୁ ଶାନ୍ତି ଦେଉଛନ୍ତି, ଶୀତଳ କରୁଛନ୍ତି ।'' ଶ୍ରୀମା' ଆହୁରି ମଧ୍ୟ କହିଥିଲେ, ''ରଘୁବୀର ଅର୍ଥାତ୍ ରାମଚନ୍ଦ୍ର ଉତ୍ତର-ପଶ୍ଚିମାଞ୍ଚଳରେ ଜନ୍ମଗ୍ରହଣ କରିଥିଲେ; ତେଣୁ ଠାକୁରଙ୍କ ପିତା ତାଙ୍କୁ ମଝିରେ ମଝିରେ ଖେଚୁଡ଼ି ଭୋଗ ଦେଉଥିଲେ ।''

କାମାରପୁକୁର ସେତେବେଳେ ସମୃଦ୍ଧ, ଜନବହୁଳ ଓ କୋଳାହଳପୂର୍ଣ୍ଣ ଥିବାରୁ ଲଜ୍ଜାଶୀଳା ମା'ଙ୍କ ନିକଟରେ ତାହା ଭୀତିପ୍ରଦ । ଗାଁର ଅଶିକ୍ଷିତ, ଅନୁଦାର ଓ ସହାନୁଭୂତିହୀନ ପଲ୍ଲୀବାସୀ ଏହି ଅସହାୟା ନାରୀଙ୍କ ଦାରିଦ୍ର୍ୟ ସମ୍ବନ୍ଧରେ ଅବିଚଳିତ । ତାଙ୍କର ଭଳଭାବ ସମ୍ବନ୍ଧରେ ମଧ୍ୟ ଅନୁସନ୍ଧିତ୍ସାଶୂନ୍ୟ । ଏହି ଅବସ୍ଥାରେ ତାଙ୍କ ଜୀବନରେ ବହୁ ସମସ୍ୟା ଦେଖାଦେଲା । ଠାକୁରଙ୍କ ଦେହତ୍ୟାଗ ପରେ ଖଡୁ ଖୋଲିବାକୁ ଉଦ୍ୟତ ହୋଇଥିଲେ; କିନ୍ତୁ ଠାକୁର ଦର୍ଶନ ଦେଇ ସେପରି କରିବାକୁ ବାରଣ କଲେ । ଚିରସିମନ୍ତିନୀ ଶ୍ରୀମା'ଙ୍କ ବସନ-ଭୂଷଣରେ ବୈଧବ୍ୟର ଚିହ୍ନ ନାହିଁ ଦେଖି ପଲ୍ଲୀର ସମାଲୋଚନା ତୀବ୍ରତର ହୋଇଉଠିଲା । ତେଣୁ ସେ ହାତରୁ ଖଡୁ ଖୋଲି ପକାଇଲେ । ତାଙ୍କର ଦ୍ୱିତୀୟ ସମସ୍ୟା ହେଲା—ଏହି ଗଙ୍ଗାହୀନ ଦେଶରେ ସେ ବାସ କରିବେ କିପରି ? ମା'ଙ୍କର ଗଙ୍ଗାଙ୍କ ପ୍ରତି ବିଶେଷ ଆକର୍ଷଣ । ଏହିସବୁ କଥା ଭାବି ମା'ଙ୍କ ମନ ଚଞ୍ଚଳ ହୋଇଉଠିଥିଲା । ଏପରିକି ସେ ଥରେ ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ ଯିବା ପାଇଁ ସ୍ଥିର କଲେ । ଏପରି

ସମୟରେ ଦିନେ ଦେଖିଲେ, ସମ୍ମୁଖସ୍ଥ ରାସ୍ତା ଦେଇ ଠାକୁର ଆସୁଛନ୍ତି—ଆଉ ତାଙ୍କ ପଶ୍ଚାତ୍‌ରେ ଅଛନ୍ତି ନରେନ୍ଦ୍ର, ବାବୁରାମ, ରାଖାଲ ଇତ୍ୟାଦି । ଶ୍ରୀମା' ଆହୁରି ଦେଖିଲେ ଯେ, ଠାକୁରଙ୍କ ପାଦପଦ୍ମରୁ ଜଳର ଉତ୍ସ ନିର୍ଗତ ହୋଇ ତରଙ୍ଗାକାରରେ ସବେଗରେ ପ୍ରବାହିତ ହେଉଛି । ମା' ଭାବିଲେ, ''ଦେଖୁଛି, ଏହି ତ ସବୁ, ଏହାଙ୍କ ପାଦପଦ୍ମରୁ ଗଙ୍ଗା ବାହାରିଛନ୍ତି !'' ତେଣୁ ଶୀଘ୍ର ନିକଟରୁ ମନ୍ଦାରଫୁଲ ତୋଳିଆଣି ସେହି ଗଙ୍ଗାରେ ପୁଷ୍ପାଞ୍ଜଳି ଦେଲେ । ଠାକୁର ତାଙ୍କୁ କହିଲେ, ''ତୁମେ ହାତରୁ ଖଡୁ ଖୋଲ ନାହିଁ । ବୈଷ୍ଣବତନ୍ତ୍ର ଜାଣିଛ ତ ?'' ଶ୍ରୀମା' କହିଲେ, ''ବୈଷ୍ଣବତନ୍ତ୍ର କଅଣ ମୁଁ ତ ଜାଣି ନାହିଁ ।'' ଠାକୁର କହିଲେ, ''ଆଜି ଉପରଓଳି ଗୌରମଣି ଆସିବ, ସେ ସବୁ କହିବ ।'' ଅପରାହ୍ନରେ ଗୌରୀମା' ଆସିଲେ । ବୈଷ୍ଣବଶାସ୍ତ୍ର ଅନୁଯାୟୀ ସେ ମା'ଙ୍କୁ ବୁଝାଇଲେ ଯେ, ତାଙ୍କର ସ୍ୱାମୀ ଚିନ୍ମୟ, ତେଣୁ ତାଙ୍କର ବୈଧବ୍ୟ ଅସମ୍ଭବ; ଅଧିକନ୍ତୁ ସେ ଲକ୍ଷ୍ମୀ—ସେ ଭୂଷଣ ତ୍ୟାଗ କଲେ ଜଗତ୍ ଶ୍ରୀହୀନ ହେବ । କିଛିଦିନ ପରେ ଯୋଗୀନ୍-ମା' କାମାରପୁକୁରକୁ ଆସିଲେ । ଏହି ଘଟଣା ବିଷୟରେ ଶ୍ରୀମା' କହିଥିଲେ, ''ଏହି ଅଶ୍ୱତ୍ଥ ଗଛମୂଳରେ ଠାକୁର ଛିଡ଼ା ହୋଇଥିଲେ । ଶେଷରେ ଦେଖିଲି—ଠାକୁର ନରେନ୍ଦ୍ରର ଦେହରେ ମିଶିଗଲେ ।...ଏହି ଧୂଳି ନିଅ, ପ୍ରଣାମ କର ।'' ପରେ ସ୍ୱାମୀ ବିବେକାନନ୍ଦ ଏହି କଥା ଶୁଣି କହିଥିଲେ ଯେ, ତାଙ୍କ ଦେହରେ ଠାକୁରଙ୍କ ପ୍ରବେଶ କଥା ତାଙ୍କୁ ନ କହିଥିଲେ ଭଲ ହୋଇଥାଆନ୍ତା । ଯାହା ହେଉ, ଏହି ଦର୍ଶନଦ୍ୱାରା ଶ୍ରୀମା'ଙ୍କ ମନରେ ଶ୍ରୀରାମକୃଷ୍ଣ-ସଂଘ ଓ କାମାରପୁକୁରର ପ୍ରକୃତ ସ୍ୱରୂପ ସମ୍ବନ୍ଧରେ ଦୃଢ଼ ଧାରଣା ହୋଇଥିଲା । ମନରୁ ଲୋକନିନ୍ଦାର ଭୟ ଚାଲିଗଲା । ସେ ପୁନର୍ବାର ଖଡୁ ଓ ସରୁ ନାଲିଧଡ଼ିଯୁକ୍ତ ଶାଢ଼ୀ ପିନ୍ଧିବାକୁ ଆରମ୍ଭ କଲେ । ଶେଷ ପର୍ଯ୍ୟନ୍ତ ଶ୍ରୀମା' ତାହା ତ୍ୟାଗ କରିନାହାନ୍ତି ।

ଦୈବ-ବିଧାନରେ ପଲ୍ଲୀସଭାମାନଙ୍କର ସମାଲୋଚନା ମଧ୍ୟ ବନ୍ଦ ହୋଇଗଲା । ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଏହିସବୁ ବିଷୟ ଅଧିକ ଆଲୋଚିତ ହୋଇଥାଏ । ଏହି ଆଲୋଚନା ଶ୍ରୀଧର୍ମଦାସ ଲାହାଙ୍କ ପୂତଚରିତ୍ରା, ସର୍ବଜନମାନିତା ପ୍ରସନ୍ନମୟୀ ଶୁଣି ଯୋଡ଼ହାତ ମୁଣ୍ଡରେ ଲଗାଇ କହିଲେ, ''ଗଦାଇ, ଗଦାଇର ସ୍ତ୍ରୀ—ଏମାନେ ଦେବାଂଶୀ ।'' ସେହିଦିନଠାରୁ ଏହି ବିଷୟରେ ଆଲୋଚନା ଶେଷ ହୋଇଗଲା ।

ଗ୍ରାମକୁ ଆସି ଶ୍ରୀମା' ପୂର୍ବପରିଚିତା ପ୍ରସନ୍ନମୟୀ ଓ ଠାକୁରଙ୍କ ଧାଈ'ମା ଧନୀ କମାରୁଣୀଙ୍କ ଆଶ୍ରୟ ନେଇଥିଲେ । ପ୍ରସନ୍ନମୟୀ ତାଙ୍କୁ ଭରସା ଦେଇ କହିଥିଲେ, ''ବୋହୂ, ତୁମେ ଚିନ୍ତା କର ନାହିଁ, ରାତିରେ ତୁମ ନିକଟରେ ଶୋଇବା ପାଇଁ ଜଣଙ୍କୁ ପଠାଇଦେବି ?'' ଶ୍ରୀମା' ଏକୁଟିଆ ଥିବାରୁ ଧନୀ କମାରୁଣୀଙ୍କ ଭଉଣୀ ଶଙ୍କରୀ ମଧ୍ୟ କେବେ କେବେ ମା'ଙ୍କ ଘରେ ରାତିରେ ଶୋଇବା ପାଇଁ

ଆସୁଥିଲେ ଏବଂ ତାଙ୍କ ଭାଇ ମା'ଙ୍କୁ ବିଭିନ୍ନ କାମରେ ସାହାଯ୍ୟ କରୁଥିଲେ । ପ୍ରସନ୍ନମୟୀ ସର୍ବଦା ମା'ଙ୍କ ଖବର ନେଉଥିଲେ । ମା'ମଧ୍ୟ ସବୁ ବିଷୟରେ ତାଙ୍କର ପରାମର୍ଶ ନେଉଥିଲେ । ପ୍ରସନ୍ନମୟୀ ଖୁବ୍ ବୁଦ୍ଧିମତୀ ଓ ଦେବଦ୍ୱିଜ-ଅତିଥି-ପରାୟଣା ଥିଲେ, ସୁତରାଂ ଦୁଇଜଣଙ୍କ ମଧ୍ୟରେ ଖୁବ୍ ଆଳାପ ହେଉଥିଲା ।

ଦୁଇଚାରିଜଣଙ୍କ ଆନ୍ତରିକ ସହାନୁଭୂତି ଓ ସାମୟିକ ସାହାଯ୍ୟ ସତ୍ତ୍ୱେ ଶ୍ରୀମା' ନିଜକୁ ଅତି ବିପନ୍ନା ମନେ କରୁଥିଲେ । ଶତଛିନ୍ନ ବସ୍ତ୍ରରେ ଗଣ୍ଠି ବାନ୍ଧି ଏବଂ କୋଦାଳରେ ମାଟି ହାଣି ଶାଗ ବୁଣି ସେ କାଳାତିପାତ କରିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ଭବିଷ୍ୟତର ଅନିଶ୍ଚୟତା, ପାରିବାରିକ ଅନୈକ୍ୟ ଏବଂ ସାମାଜିକ ଔଦାସୀନ୍ୟ ବା ଉତ୍ପୀଡ଼ନ ଉପରେ ତାଙ୍କର କୌଣସି ହାତ ନ ଥିଲା । ଯାହା ହେଉ, ଠାକୁରଙ୍କ ଦିବ୍ୟଦର୍ଶନ ପାଇ ସେ ଏ ବିଷୟରେ ସମ୍ୟକ୍ ନିଶ୍ଚିନ୍ତ ହୋଇଥିଲେ । ଶ୍ରୀମା' କହିଛନ୍ତି, ''ତା'ପରେ ଠାକୁରଙ୍କ ଦର୍ଶନ ପାଇବାକୁ ଲାଗିଲି, କ୍ରମେ ସବୁ ଭୟ ଚାଲିଗଲା ।'' ଦିନେ ଠାକୁର ଦର୍ଶନ ଦେଇ କହିଲେ, '' ମୁଁ ଖେଚୁଡ଼ି ଖାଇବି ।'' ମା ଭାବିଲେ ରଘୁବୀର ସ୍ୱୟଂ ଶ୍ରୀରାମକୃଷ୍ଣ ରୂପ ଧରିଛନ୍ତି, ତେଣୁ ଖେଚୁଡ଼ି ରାନ୍ଧି ରଘୁବୀରଙ୍କୁ ଭୋଗ ଦେଲେ ।

ମନରେ ଶାନ୍ତି ଆସିଲେ ମଧ୍ୟ ପାରିପାର୍ଶ୍ୱିକ ପ୍ରତିକୂଳ ଅବସ୍ଥାର ପରିବର୍ତ୍ତନ ହେଲା ନାହିଁ । ବର୍ତ୍ତମାନ ପ୍ରଶ୍ନ ଉଠିବ ଯେ, ଶ୍ରୀମା' ଯେତେବେଳେ ଏପରି ଅପ୍ରୀତିକର ଆବେଷ୍ଟନୀ ମଧ୍ୟରେ କାଳଯାପନ କରୁଥିଲେ, ସେତେବେଳେ ତାଙ୍କର ପିତୃକୂଳ କଅଣ ଏ ବିଷୟରେ କିଛି ଜାଣି ନ ଥିଲେ ? ଆମେ ଜାଣୁ, ସେମାନଙ୍କର ଅବସ୍ଥା ସ୍ୱଚ୍ଛଳ ନ ଥିଲା । ତାଙ୍କର ଜନନୀ ଶ୍ୟାମାସୁନ୍ଦରୀ ଅତି ଦୁଃଖରେ ଦିନ କଟାଉଥିଲେ । କନ୍ୟାଙ୍କ ଅବସ୍ଥା ଚିନ୍ତା କରି ସେ ମଧ୍ୟମ ପୁତ୍ର କାଳୀକୁମାରଙ୍କୁ କାମାରପୁକୁର ପଠାଇଲେ । କିନ୍ତୁ ଶ୍ରୀମା' ପିତୃଗୃହକୁ ଗଲେ ନାହିଁ । କିଛିଦିନ ପରେ ମା' ନିଜେ ଜୟରାମବାଟୀକୁ ଯାଇ ତିନି ଚାରିଦିନ ରହିଥିଲେ । ସେତେବେଳେ କନ୍ୟାଙ୍କ ଭିକାରୁଣୀ ବେଶ ଦେଖି ଶ୍ୟାମାସୁନ୍ଦରୀ ଅଶ୍ରୁସମ୍ବରଣ କରିପାରି ନ ଥିଲେ । ଏହା ସମ୍ଭବତଃ ଜଗଦ୍ଧାତ୍ରୀ-ପୂଜା ସମୟର ଘଟଣା । ଶ୍ୟାମାସୁନ୍ଦରୀ କନ୍ୟାକୁ ଘରେ ରଖିବା ପାଇଁ ଇଚ୍ଛା କରିଥିଲେ; କିନ୍ତୁ ଶ୍ରୀମା' ସେଥିରେ ରାଜି ହେଲେ ନାହିଁ । ରାମେଶ୍ୱରଙ୍କ ଦୁଇ ପୁଅ ରାମଲାଲ ଓ ଶିବରାମ ଏବଂ ଝିଅ ଲକ୍ଷ୍ମୀ ସାଧାରଣତଃ ଦକ୍ଷିଣେଶ୍ୱରରେ ରହୁଥିଲେ ସୁଦ୍ଧା ମଝିରେ ମଝିରେ ଗାଁକୁ ଆସୁଥିଲେ । ରାମଲାଲ ମା'ଙ୍କ ବିଷୟରେ ଉଦାସୀନ ଥିଲେ । କିନ୍ତୁ ଶିବରାମଙ୍କର ମା'ଙ୍କ ପ୍ରତି ଗଭୀର ଭକ୍ତି ଓ ଶ୍ରଦ୍ଧା ଥିଲା । ଶ୍ରୀମା' ତାଙ୍କର ଭିକ୍ଷାମାତା; ଶ୍ରୀମା' ମଧ୍ୟ ତାଙ୍କୁ ପୁତ୍ର ପରି ଭଲ ପାଉଥିଲେ । ଅନେକ ଦିନ ପରେ ଶ୍ରୀମା' ଯେତେବେଳେ ଜୟରାମବାଟୀରେ ଅବସ୍ଥାନ କରୁଥିଲେ, ସେତେବେଳେ ଦିନେ କାମାରପୁକୁରରେ ଆହାରରେ ବସି ଅର୍ଦ୍ଧେକ ଭୋଜନ

ପରେ ଶିବୁଦାଦାଙ୍କର ଇଚ୍ଛା ହେଲା ଜୟରାମବାଟୀକୁ ଯାଇ ଭିକ୍ଷାମାତାଙ୍କ ହାତର ରାନ୍ଧଣା ଖାଇବେ । ତେଣୁ ଆହାର ମଝିରୁ ଉଠିଯାଇ ସେ ଜୟରାମବାଟୀକୁ ଗଲେ ଏବଂ ପୁନର୍ବାର ଆହାର କରି ପାନ ଚୋବାଇ ଚୋବାଇ କାମାରପୁକୁରକୁ ଫେରିଆସିଲେ ।

ଶ୍ରୀମା' କାମାରପୁକୁରରେ ଥିବା ସମୟରେ ଲକ୍ଷ୍ମୀଦେବୀ ଓ ଅନ୍ୟାନ୍ୟ ପରିଜନମାନେ ଏଠାକୁ ଆସୁଥିଲେ । ସେମାନେ ଏକାନ୍ନବର୍ତ୍ତୀ ଥିଲେ । କିନ୍ତୁ ଘଟଣାଚକ୍ରରେ ସେହି ଐକ୍ୟ ଆଉ ରକ୍ଷା କରିହେଲା ନାହିଁ । ଶ୍ରୀମା'ଙ୍କ ସହିତ ଅନ୍ୟମାନଙ୍କର ମତ ପାର୍ଥକ୍ୟ, ଦୈନନ୍ଦିନ କଥାବାର୍ତ୍ତା ଓ ବ୍ୟବହାରରେ ଭାବଗତ ବୈଷମ୍ୟ କ୍ରମେ ପରିସ୍ଫୁଟ ହେବାକୁ ଲାଗିଲା । ଶ୍ରୀମା'ଙ୍କ ଇଚ୍ଛା, ନିର୍ବିବାଦରେ ଠାକୁରଙ୍କ ଚିନ୍ତା ନେଇ ଦିନ କଟାଇବେ; କିନ୍ତୁ ଅନ୍ୟମାନଙ୍କର ସାଂସାରିକ ମନୋଭାବ ଶ୍ରୀମା'ଙ୍କୁ ନିଜ ଆବର୍ତ୍ତରେ ଟାଣିନେବାକୁ ଲାଗିଲା । ସର୍ବଂସହା ଶ୍ରୀମା' ସବୁ ସହ୍ୟ କରିଯାଉଥିଲେ । କିନ୍ତୁ ଗୋଟିଏ ଅଂଶରେ କ୍ରିୟା ଓ ଅନ୍ୟ ଅଂଶରେ ନିଷ୍କ୍ରିୟତା ଥିଲେ ସୁଦ୍ଧା ପରିବାର ବିଭକ୍ତ ହେଲା । ଥରେ ଜୟରାମବାଟୀରୁ ଫେରିଆସି ଶ୍ରୀମା' ଦେଖିଲେ ଯେ, ରାମଲାଲ ଘରର ଇଚ୍ଛାନୁରୂପ ବ୍ୟବସ୍ଥା କରି ଦକ୍ଷିଣେଶ୍ୱରକୁ ଚାଲିଯାଇଛନ୍ତି । ଠାକୁରଙ୍କ ବଖରାଟି ଶ୍ରୀମା'ଙ୍କ ଭାଗରେ ପଡ଼ିଥିଲା ।

ବୃନ୍ଦାବନରୁ ଫେରି ପ୍ରାୟ ନଅମାସ କାଳ ଶ୍ରୀମା' କାମାରପୁକୁରରେ ଅବସ୍ଥାନ କରିଥିଲେ—୧୮୮୭ ଖ୍ରୀ: ଅଗଷ୍ଟରୁ ୧୮୮୮ର ଏପ୍ରିଲ ଯାଏ । ୧୮୮୮ ଖ୍ରୀ:ର ମଧ୍ୟଭାଗରେ ଭକ୍ତମାନେ ଶ୍ରୀମା'ଙ୍କୁ କଲିକତାକୁ ନେଇଗଲେ । ୧୮୮୯ ଖ୍ରୀ: ଫେବୃୟାରୀ ମାସରେ ସେ ପୁନର୍ବାର କାମାରପୁକୁରକୁ ଯାଇ ପୂର୍ବଥର ପରି ଦୀର୍ଘକାଳ ସେଠାରେ ରହିଥିଲେ । ସେ ଯଦିଓ କାମାରପୁକୁରକୁ ଆହୁରି ଅନେକଥର ଯାଇଛନ୍ତି, ତେବେ ଏତେ ଅଧିକ କାଳ ସେଠାରେ କେବେ ରହି ନାହାନ୍ତି । ଏହି ବିଭିନ୍ନ ସମୟରେ ଘଟିଥିବା ବହୁ ଘଟଣାର କାଳ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ଆମେ ସେଥିରୁ କେତୋଟି ଏଠାରେ ଉପସ୍ଥାପିତ କରିବା ।

ଶ୍ରୀମା' କାମାରପୁକୁରରେ ରହୁଥିବା ବେଳେ କଦାଚିତ୍ କୌଣସି କୌଣସି ପୁରୁଷ ବା ସ୍ତ୍ରୀ-ଭକ୍ତ ସେଠାରେ ଆସି ଉପସ୍ଥିତ ହେଉଥିଲେ । ପରିଚିତ ଓ ଏକଭାବାପନ୍ନ ଭକ୍ତମାନଙ୍କୁ ପାଇ ଶ୍ରୀମା' ଖୁବ୍ ଆନନ୍ଦିତ ହେଉଥିଲେ । ମା'ଙ୍କର ବୈଚିତ୍ର୍ୟହୀନ ଜୀବନରେ ଏହା ଏକ ବିଚିତ୍ରତା ଆନୟନ କରୁଥିଲା । କିନ୍ତୁ କେବେ କେବେ ଭକ୍ତମାନଙ୍କର ଅବସ୍ଥାନ ଅବାଞ୍ଛନୀୟ ମଧ୍ୟ ହୋଇଉଠୁଥିଲା ।

ଶ୍ରୀରାମକୃଷ୍ଣଙ୍କ ଭକ୍ତ ହରିଶ ସାଧୁମାନଙ୍କ ନିକଟକୁ ଯାଏ ଆସେ ଦେଖି ତାଙ୍କର ସ୍ତ୍ରୀ ହରିଶଙ୍କୁ ବଶୀଭୂତ କରିବା ପାଇଁ ଔଷଧ ପ୍ରୟୋଗ କଲେ—ଯାହା ଫଳରେ ହରିଶଙ୍କ ମସ୍ତିଷ୍କ ବିକୃତି ହେଲା । ସେହି ଅବସ୍ଥାରେ ସେ କାମାରପୁକୁରରେ

ଉପସ୍ଥିତ ହେଲେ । ଶ୍ରୀମା' ତାଙ୍କ ଅବସ୍ଥା ଦେଖି ଚିନ୍ତିତ ହେଲେ ଏବଂ ଏହାର ପ୍ରତିକାର ପାଇଁ ମଠକୁ ଚିଠି ପଠାଇଲେ । ମଠରୁ ସ୍ୱାମୀ ସାରଦାନନ୍ଦ ଓ ସ୍ୱାମୀ ନିରଞ୍ଜନାନନ୍ଦ ଆସି ପହଞ୍ଚିବା ପୂର୍ବରୁ କାମାରପୁକୁରରେ ଦିନକର ଘଟଣା ଶ୍ରୀମା' ଏହି ଭାବରେ କହିଛନ୍ତି—"ହରିଶ ଏହି ସମୟରେ କାମାରପୁକୁରକୁ ଆସି କିଛିଦିନ ଥିଲା । ଦିନେ ମୁଁ ପାଖ ଘରୁ ଆସୁଛି । ଘର ଭିତରକୁ ଯେତେବେଳେ ପଶିଲି, ହରିଶ ହଠାତ୍ ମୋ' ପଛଆଡୁ ଦଉଡ଼ି ଆସିଲା । ହରିଶ ସେତେବେଳେ ପାଗଳ—ତା' ସ୍ତ୍ରୀ ତାକୁ ପାଗଳ କରିଦେଇଥିଲା । ସେତେବେଳେ ଘରେ ଆଉ କେହି ନ ଥିଲେ—ମୁଁ କୁଆଡ଼େ ଯିବି ? ଧାନର ଅମାର ଚାରିପଟେ ଦଉଡ଼ିବାକୁ ଲାଗିଲି । ସେ ମଧ୍ୟ ପଛେ ପଛେ ଦଉଡୁଥାଏ । ସାତଥର ଦଉଡ଼ି ମୁଁ ଥକିଗଲି । ସେତେବେଳେ ମୁଁ ନିଜ ମୂର୍ତ୍ତି ଧରି ଛିଡ଼ା ହେଲି । ତା'ପରେ ତାର ଛାତିରେ ଆଣ୍ଠୁ ଦେଇ ତା'ଜିଭ ଟାଣି ଧରିଲି, ଗାଲରେ ଏପରି ଚଟକଣା ମାରିବାକୁ ଲାଗିଲି ଯେ, ସେ ଅଣନିଃଶ୍ୱାସୀ ହୋଇଗଲା । ମୋ ହାତ ନାଲି ପଡ଼ିଗଲା ।"

ମା' ନିଜ ମୂର୍ତ୍ତି ଧରିବାର କଅଣ ଯେ ଅର୍ଥ, ତାହା ବୁଝିବା ସମ୍ଭବ ନୁହେଁ । କେହି କେହି ମନେ କରନ୍ତି, ଶ୍ରୀମା' ଜଗଦମ୍ବାଙ୍କ ଅସୁରନାଶିନୀ ବଗଳାମୂର୍ତ୍ତି ଧରି ହରିଶର କୁପ୍ରବୃତ୍ତିକୁ କଠୋର ହସ୍ତରେ ଦମନ କରିଥିଲେ । ଲଜ୍ଜା, ବିନୟ, କରୁଣା ଇତ୍ୟାଦି ସ୍ତ୍ରୀ-ଜନୋଚିତ ଗୁଣର ପ୍ରତିମୂର୍ତ୍ତି ଶ୍ରୀମା' ଯେ କିପରି ଭାବରେ କଠୋର ହୋଇପାରନ୍ତି—ତାହା ହୃଦୟଙ୍ଗମ କରିବା ଖୁବ୍ ସହଜସାଧ୍ୟ ନୁହେଁ । ଏହି ଘଟଣା ଆଲୋଚନା କଲେ ମନେହୁଏ, ଶ୍ରୀଶ୍ରୀଚଣ୍ଡୀରେ ଯେ "ଚିତ୍ତେ କୃପା ସମରେ ନିଷ୍ଠୁରତା ଚ ଦୃଷ୍ଟା, ତ୍ୱୟୈବ ଦେବି ଭୁବନତ୍ରୟେଽପି" ଇତ୍ୟାଦି ଶ୍ଳୋକ ରଚନା କରିଛନ୍ତି, ସେ ଯଥାର୍ଥରେ ସତ୍ୟଦ୍ରଷ୍ଟା ଋଷି । ଏହି ଶାସନ ଫଳରେ ହରିଶ ଯେ କେବଳ ସେହିଦିନ ପାଇଁ ଶାନ୍ତ ହେଲା ତା ନୁହେଁ, ବରଂ ସ୍ୱାମୀ ନିରଞ୍ଜନାନନ୍ଦ ଆସୁଛନ୍ତି ଜାଣି ସେ ଭୟରେ ବୃନ୍ଦାବନକୁ ପଳାଇ ଯାଇଥିଲା ଏବଂ ସେଠାରେ କ୍ରମେ ପ୍ରକୃତିସ୍ଥ ହୋଇଉଠିଥିଲା ।

୧୮୮୮ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଆଁଟପୁର ଗ୍ରାମରୁ ଶ୍ରୀଶ୍ରୀଠାକୁରଙ୍କ ଏକାନ୍ତ ଅନୁଗତ ଭକ୍ତ ବଳରାମବାବୁଙ୍କ ଗୃହିଣୀ ଶ୍ରୀମତୀ କୃଷ୍ଣଭାବିନୀ ଓ ଶାଶୁ ଶ୍ରୀମତୀ ମାତଙ୍ଗିନୀ ଦେବୀ ଦିନେ ହଠାତ୍ ଦୁଇଜଣଙ୍କୁ ସାଙ୍ଗରେ ନେଇ କାମାରପୁକୁରରେ ପହଞ୍ଚିଲେ । ପ୍ରଥମତଃ ବ୍ରାହ୍ମଣଗୃହ ପୁଣି ପ୍ରଭୁଙ୍କ ବାଲ୍ୟଲୀଳାସ୍ଥଳ, ତେଣୁ ଏଠାକାର ଅନ୍ନ ଅବ୍ରାହ୍ମଣଙ୍କ ପକ୍ଷେ ଗ୍ରହଣ କରିବା ଅବିଧେୟ ଜାଣି ବସୁ-ଗୃହିଣୀ ସେଠାରେ ପହଞ୍ଚି ଗୃହଦେବତାଙ୍କ ଭୋଗ ପାଇଁ ଶ୍ରୀମା'ଙ୍କ ହସ୍ତରେ ପ୍ରଚୁର ଅର୍ଥ ଦେଲେ । ଶ୍ରୀମା' ତିନିଦିନ ଯଥାସାଧ୍ୟ ଭକ୍ତସେବା କରି ଚତୁର୍ଥ ଦିନ ସକାଳେ ତାଙ୍କୁ ଜୟରାମବାଟୀକୁ ନେଇଗଲେ । ସେଠାରେ ମଧ୍ୟ ତିନିରାତି କଟାଇ ଭକ୍ତମାନେ କାମାରପୁକୁର ଦେଇ କଲିକତାକୁ ଫେରିଗଲେ । ଆମର ଅନୁମାନ, ଶ୍ରୀମା'

ଯଦିଓ ନିଜର ଅଭାବ କଥା ଏମାନଙ୍କ ଆଖିରୁ ଲୁଚାଇ ରଖିବା ପାଇଁ ଚେଷ୍ଟା କରିଥିଲେ, ତଥାପି ସେଥିରେ ସେ ସମ୍ପୂର୍ଣ୍ଣ ସକ୍ଷମ ହୋଇ ନ ଥିଲେ । ଏମାନେ କଲିକତାକୁ ଫେରି ଭକ୍ତମାନଙ୍କ ନିକଟରେ ସବୁ ପ୍ରକାଶ କରିଦେଇଥିଲେ, ଯାହା ଶୁଣି ସେମାନେ ଶ୍ରୀମା'ଙ୍କୁ କଲିକତାକୁ ନେଇ ଆସିବାର ବ୍ୟବସ୍ଥା କରିଥିଲେ । ଶ୍ରୀମତୀ କୃଷ୍ଣଭାବିନୀ କଲିକତାକୁ ଫେରିବାର କିଛିଦିନ ପରେ ଶ୍ରୀମା' କଲିକତାକୁ ଆସିଲେ । ଆଉ ଗୋଟିଏ ମତ ଅନୁଯାୟୀ ଶ୍ରୀମା'ଙ୍କ ଭାଇ ପ୍ରସନ୍ନ କଲିକତାରେ ରହୁଥିଲେ । ସେ ଭକ୍ତମାନଙ୍କ ନିକଟରେ ମା'ଙ୍କ ଅବସ୍ଥା ଜଣାଇବାରୁ ଏବଂ ଗୋଲାପ-ମା'ଙ୍କ ଆନ୍ତରିକ ଚେଷ୍ଟା ଯୋଗୁଁ ଶ୍ରୀମା'ଙ୍କୁ କଲିକତା ଆଣିବାର ବ୍ୟବସ୍ଥା କରାଗଲା ।

କାମାରପୁକୁର-ଜୀବନରେ ଦୁଃଖ-ଦାରିଦ୍ର୍ୟ, ଆପଦ-ବିପଦ ସତ୍ତ୍ୱେ ଶ୍ରୀମା' ତାଙ୍କର ଆଧ୍ୟାତ୍ମିକ ଚେତନା ପୂର୍ଣ୍ଣରୂପେ ପ୍ରଜ୍ଜ୍ୱଳିତ ରଖିଥିଲେ । ସମ୍ଭବତଃ ଦ୍ୱିତୀୟଥର ସେଠାରେ ରହିଥିବା ସମୟରେ ଓଡ଼ିଶାରୁ ଆଗତ ଜଣେ ସାଧୁ ଗ୍ରାମରେ ବାସ କରୁଥିଲେ । ଧର୍ମଦାସ ଲାହାଙ୍କ ଭକ୍ତିମତୀ କନ୍ୟା ପ୍ରସନ୍ନମୟୀଙ୍କ ବ୍ୟବସ୍ଥାରୁ ତାଙ୍କ ଘର ପାଚେରି ବାହାର ଆଡ଼କୁ ଗୋଟିଏ ଚାଳଘରେ ଏହି ସାଧୁ ରହୁଥିଲେ । କିନ୍ତୁ କେତେଜଣ ଅହଂକାରୀ ଯୁବକଙ୍କ ଚାପରେ ପଡ଼ି ସାଧୁ କାମାରପୁକୁର ଛାଡ଼ିଯିବାକୁ ମନସ୍ଥ କଲେ । ସାଧକଙ୍କୁ ଗ୍ରାମବାସୀମାନେ ଶ୍ରଦ୍ଧା କରୁଥିଲେ । ଶ୍ରୀମା' ମଧ୍ୟ ତାଙ୍କୁ ଭକ୍ତି କରୁଥିଲେ । ଅତଏବ ସେ ଅନ୍ୟମାନଙ୍କ ସାହାଯ୍ୟରେ ହାଲଦାର ପୁକୁରର ଦକ୍ଷିଣ-ପଶ୍ଚିମ କୋଣରେ ତାଙ୍କ ପାଇଁ ଗୋଟିଏ କୁଟୀର ନିର୍ମାଣ କରାଇଦେଲେ । ସେତେବେଳେ ବର୍ଷାକାଳ । ଶ୍ରୀମା' କାତର ହୋଇ ପ୍ରାର୍ଥନା କଲେ, ''ଠାକୁର ରକ୍ଷା କର; ତାଙ୍କ ଚାଳଘରଟି ସମ୍ପୂର୍ଣ୍ଣ ହୋଇଯାଉ; ତା'ପରେ ଯେତେ ପାରିବ ବର୍ଷା ଢାଳ ।'' ଘରଟି ନିର୍ମିତ ହେଲା । ନିଜର ବହୁ ଅଭାବ ସତ୍ତ୍ୱେ ତାଙ୍କୁ ଭୋଜ୍ୟ ସାମଗ୍ରୀ ଶ୍ରୀମା' ଯୋଗାଉଥିଲେ ଏବଂ ପ୍ରତିଦିନ ଦୁଇଓଳି ସାଧୁଙ୍କୁ କୁଶଳ ପ୍ରଶ୍ନ କରୁଥିଲେ । ସାଧୁ କିନ୍ତୁ ସେଠାରେ ବେଶୀଦିନ ବାସ କଲେ ନାହିଁ, ଭଗବତ୍-ଇଚ୍ଛାରେ କିଛିଦିନ ପରେ ସେ ଏହି କୁଟୀରରେ ଦେହତ୍ୟାଗ କଲେ ।

ପ୍ରଥମ ଅବସ୍ଥାରେ ମା'ଙ୍କ ଜୀବନ ଅତି ଅଭାବଗ୍ରସ୍ତ ଥିଲା । କିନ୍ତୁ ପରେ ଅବସ୍ଥାର ଉନ୍ନତି ହୋଇଥିଲା । ଭକ୍ତମାନେ ତାଙ୍କ ଅଭାବ କଥା ଜାଣିପାରି ତାଙ୍କ ପାଇଁ ଅର୍ଥାଦିର ବ୍ୟବସ୍ଥା କରିଥିଲେ । ଏହା ଛଡ଼ା ଠାକୁରଙ୍କ ସଂଗୃହୀତ ଶିହଡ଼ରେ ଦେବୋତ୍ତର ଜମି ଓ ଲକ୍ଷ୍ମୀଜଳାର ଜମିରୁ ଶ୍ରୀମା' ଯେଉଁ ଧାନ ପାଉଥିଲେ, ତାହା ତାଙ୍କ ପକ୍ଷରେ ଯଥେଷ୍ଟ ହେଉଥିଲା । ସେଥିରୁ ସେ କିଛି ଦାନ ମଧ୍ୟ କରିପାରୁଥିଲେ । ଏହି ସମୟରେ ସାଗର-ମା ନାମକ ଜଣେ ସ୍ତ୍ରୀ-ଲୋକ ମା'ଙ୍କ ଘରେ କାମ କରୁଥିଲା । ସେହି ସ୍ତ୍ରୀ-ଲୋକଟି ମା'ଙ୍କ ହାଟବଜାର

କରିଦେଉଥିଲା । ଶ୍ରୀମା' ପ୍ରତ୍ୟେକ ଦିନ ଯାହା ରାନ୍ଧୁଥିଲେ ତାହାର କିଛି ଅଂଶ ଗୋଟିଏ ବାଟିରେ ଘୋଡ଼ାଇ ରଖୁଥିଲେ; ଉପରଓଳି ସାଗର-ମା ଆସିଲେ ତାକୁ ସସ୍ନେହରେ ତାହା ଦେଇ କହୁଥିଲେ, ''ଆଗେ ଏତକ ମୁହଁରେ ଦେଇ ଟିକେ ପାଣି ପିଇ କାମରେ ଲାଗ ।'' ଆଶ୍ୱିନ ମାସ ମହାନବମୀ ତିଥିରେ ମା' ଶୀତଳାଙ୍କ ଷୋଡ଼ଶୋପଚାର ପୂଜା, ଭୋଗ ଏବଂ ବ୍ରାହ୍ମଣଭୋଜନ ହେଉଥିଲା । ଶ୍ରୀମା' ପୂର୍ବରୁ ଚାଉଳ ଇତ୍ୟାଦି ପ୍ରସ୍ତୁତ କରି ରଖୁଥିଲେ ଓ ଅନ୍ୟାନ୍ୟ ଦ୍ରବ୍ୟ ସଂଗ୍ରହ କରୁଥିଲେ । ପୂଜାଦିନ ନିଜେ ରନ୍ଧନ କରି ବ୍ରାହ୍ମଣଭୋଜନରେ ପରିବେଷଣ ମଧ୍ୟ କରୁଥିଲେ । ଶିବରାମଙ୍କୁ ମା' କହୁଥିଲେ, ''ଶିବୁ, ତୁ ପତର ପକାଇ ପାଣି ଲୁଣ ଦେ, ମୁଁ ବ୍ରାହ୍ମଣମାନଙ୍କ ପତରରେ ଭାତ ଦେଉଛି ।'' ସାଗର-ମା କହୁଥିଲା, ''ତାଙ୍କର ଥିଲା ଯେପରି ଲକ୍ଷ୍ମୀଙ୍କ ଭଣ୍ଡାର, କୌଣସି ଜିନିଷ କମ୍ ପଡୁ ନ ଥିଲା । ଯାହା ବଳୁଥିଲା ତାହା ଯତ୍ନ କରି ରଖି ଦେଉଥିଲେ । ପରଦିନ ଆମମାନଙ୍କୁ ଡାକି ଆଦର କରି ଖୁଆଉଥିଲେ । ଏହିସବୁ ଉତ୍ସବ ବ୍ୟତୀତ ପ୍ରତିଦିନ ଅତିଥିସେବା ମଧ୍ୟ କରୁଥିଲେ—ଅଭ୍ୟାଗତ କାହାକୁ ହେଲେ ଫେରାଇ ଦେଉ ନ ଥିଲେ ।

ଶ୍ରୀମା'ଙ୍କ କର୍ମକୁଶଳତା ଆମେ ପୂର୍ବରୁ ଦେଖିଛୁ । କାମାରପୁକୁରରେ ମଧ୍ୟ ଏହାର ବ୍ୟତିକ୍ରମ ହୋଇନାହିଁ । ସେ ନିଜେ ସବୁ ଯୋଗାଡ଼ କରି ଓ ନିଜ ହାତରେ ରାନ୍ଧି ରଘୁବୀରଙ୍କୁ ଭୋଗ ଦେଉଥିଲେ । ଶିବରାମ କାମାରପୁକୁରରେ ଥିବା ସମୟରେ ପୂଜା କରୁଥିଲେ । ତାହା ପୂର୍ବରୁ ଶ୍ରୀମା' ହାଲଦାର୍ ପୋଖରୀରେ ଗାଧୋଇ ପାଧୋଇ ରୋଷେଇ ବସାଇ ଦେଉଥିଲେ ।

ଶ୍ରୀରାମକୃଷ୍ଣଙ୍କ ନିର୍ଦ୍ଦେଶ ପାଳନ ପାଇଁ ଶ୍ରୀମା' ଯଥାସାଧ୍ୟ ଚେଷ୍ଟା କରୁଥିଲେ; ସେ କାମାରପୁକୁରରେ ଅନଶନ, ଅର୍ଦ୍ଧାଶନ, କାୟକ୍ଲେଶ, ରୁଗ୍ଣ ଦେହ ନେଇ ବାକି ଜୀବନ କଟାଇ ଦେବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ମାନବର ଦେହ ଓ ମନର ସହିବାର ତ ଗୋଟିଏ ସୀମା ଅଛି, ଅବସ୍ଥା ଯେଉଁଠି ସମ୍ପୂର୍ଣ୍ଣ ପ୍ରତିକୂଳ, ସେଠାରେ ମଣିଷ ନିଜର ମାନସଂଭ୍ରମ ବଜାୟ ରଖି, ସାଧନଭଜନରେ ଦୀର୍ଘକାଳ କଟାଇପାରେ ନାହିଁ । ଠିକ୍ ଏହି ସମୟରେ କଲିକତାରୁ ଭକ୍ତମାନଙ୍କର ସାଦର ଆହ୍ୱାନ ବାରମ୍ବାର ଆସିବାକୁ ଲାଗିଲା । ସେହି 'ମା' ଡାକରେ ଜନନୀଙ୍କ ହୃଦୟ ବିଗଳିତ ହେଲା । ଶେଷରେ ସେ କାମାରପୁକୁରର ମମତା ତ୍ୟାଗ କରି କଲିକତାରେ ରହିବାକୁ ସ୍ଥିର କଲେ । କିନ୍ତୁ ତା' ବୋଲି ସେ ଆଉ କାମାରପୁକୁରକୁ ଆସି ନାହାନ୍ତି କିମ୍ବା ସ୍ୱାମୀଙ୍କ ଭିଟାର ମର୍ଯ୍ୟାଦା ରକ୍ଷା କରି ନାହାନ୍ତି, ତାହା ନୁହେଁ; ଠାକୁରଙ୍କର ବଖରାଟିକୁ ସେ ଅର୍ଥାଦି ବ୍ୟୟ କରି ଯତ୍ନରେ ରଖିଥିଲେ । କୌଣସି ଭକ୍ତ ସେହି ଅଞ୍ଚଳକୁ ଗଲେ, ଶ୍ରୀମା' ଠାକୁରଙ୍କ ଏହି ବଖରାଟିର ମହତ୍ତ୍ୱ ତାକୁ ବୁଝାଇ ସେଠାରେ କିଛିଦିନ ଅତିବାହିତ କରିବାକୁ ଉପଦେଶ ଦେଉଥିଲେ ।

ରାମଲାଲ ତାଙ୍କ ଘରଟି ଦୋମହଲା କଲାବେଳେ ଶ୍ରୀମା' ଅର୍ଥ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ରଘୁବୀରଙ୍କ ସେବା ପାଇଁ ମଧ୍ୟ ସବୁପ୍ରକାର ବ୍ୟବସ୍ଥା କରିଥିଲେ ।

ଉତ୍ତର କାଳରେ ଭକ୍ତମାନେ ମା'ଙ୍କୁ କାମାରପୁକୁର ଛାଡ଼ିବା ବିଷୟରେ ବିଭିନ୍ନ ପ୍ରଶ୍ନ କରିଥିଲେ । ଥରେ ଜଣେ ଭକ୍ତ ପଚାରିଲେ, ''ମା, ଆପଣ ତ ଠାକୁରଙ୍କ ଘରକୁ କେବେ ଯାଆନ୍ତି ନାହିଁ; କଲିକତାରୁ ଗାଁକୁ ଗଲେ ପିତୃଗୃହରେ ରହନ୍ତି !'' ମା' ହସି ହସି ଉତ୍ତର ଦେଲେ, ''ମୁଁ କଅଣ ଠାକୁରଙ୍କ ଘର ଭୁଲିପାରିବି ? ଶିବରାମ ମୋ ଭିକ୍ଷାପୁତ୍ର । ତେବେ ଠାକୁର ବର୍ତ୍ତମାନ ସ୍ଥୂଳ ଦେହ ତ୍ୟାଗ କରିଛନ୍ତି । ସେଠାକୁ ଗଲେ ଭାରୀ କଷ୍ଟ ହୁଏ । ତେଣୁ ଯାଏ ନାହିଁ ।'' ସେହି କଷ୍ଟବୋଧ ସହିତ ବାହାରର ବିରୁଦ୍ଧ ଭାବ ମଧ୍ୟ ମିଶ୍ରିତ ଥିଲା । କିନ୍ତୁ ଆତ୍ମୀୟସ୍ୱଜନଙ୍କ ଦୋଷତ୍ରୁଟି ସେ ସମସ୍ତଙ୍କ ଆଗରେ ପ୍ରକାଶ କରୁ ନ ଥିଲେ । ଜଣେ ସେବକଙ୍କୁ ସେ କହିଥିଲେ, ''ଠାକୁରଙ୍କ ଶରୀର ତ୍ୟାଗ ପରେ କିଛିଦିନ ତୀର୍ଥଯାତ୍ରା କରି କାମାରପୁକୁରକୁ ଯେତେବେଳେ ଆସିଲି, ଆତ୍ମୀୟମାନେ ଉପେକ୍ଷା କରିବାକୁ ଲାଗିଲେ । ମୋ ମା' ଏକଥା ଜାଣିପାରି ମୋତେ ଜୟରାମବାଟୀକୁ ନେଇଗଲେ । ସେହିଦିନଠାରୁ ଭାଇମାନଙ୍କ ସଂସାରରେ ଏମାନଙ୍କ ସୁଖ-ଦୁଃଖ ନେଇ ଏତେ ଦିନ ପଡ଼ି ରହିଛି । କିନ୍ତୁ ବର୍ତ୍ତମାନ ପୁଣି ସେମାନେ (କାମାରପୁକୁରରେ) କହୁଛନ୍ତି, 'ସେ ଆମର ଖବର ଆଉ ନିଅନ୍ତି ନାହିଁ ।' ମଣିଷର ମନ ଏହିଭଳି ।''

## ଭକ୍ତମାନଙ୍କ ସହିତ

ଶ୍ରୀମା' କାମାରପୁକୁରରେ ଅତି ଦୁଃଖରେ ଜୀବନ କଟାଉଛନ୍ତି—ଏହି ସମ୍ବାଦ କଲିକତାରେ ଭକ୍ତମାନଙ୍କ ନିକଟରେ ପହଞ୍ଚିବାକୁ ଦୀର୍ଘ ସମୟ ଲାଗିଥିଲା । ଯୁବକ ଭକ୍ତମାନେ ବୈରାଗ୍ୟ ଅବଲମ୍ବନ କରି ତପସ୍ୟା ଉଦ୍ଦେଶ୍ୟରେ ଭ୍ରମଣ କରୁଥିଲେ । ସେମାନେ ମା'ଙ୍କ ଅସୁବିଧା ବିଷୟରେ କିଛି ଜାଣି ନ ଥିଲେ । ସ୍ୱାମୀ ସାରଦାନନ୍ଦଜୀ ପରେ କହିଥିଲେ, ''ମା'ଙ୍କର ଆହାରରେ ଲୁଣ ମଧ୍ୟ ଜୁଟେ ନାହିଁ, ତା' ଆମର କଳ୍ପନାରେ ବି ନ ଥିଲା ।'' ଆଠ ନଅ ମାସ ପରେ ଭକ୍ତମାନେ ଯେତେବେଳେ ସବୁ କଥା ଜାଣିଲେ, ସେତେବେଳେ ମା'ଙ୍କୁ କଲିକତା ଆଣିବା ସିଦ୍ଧାନ୍ତ ହେଲା । ଶ୍ରୀମା' ଭକ୍ତମାନଙ୍କ ଆନ୍ତରିକତା ଜାଣିଥିଲେ ଏବଂ ସେହି ଆନ୍ତରିକତାକୁ ଉପେକ୍ଷା କରି କାମାରପୁକୁରରେ ପଡ଼ିରହିବାର କୌଣସି ସାର୍ଥକତା ମଧ୍ୟ ନ ଥିଲା । କିନ୍ତୁ ଗୋଟିଏ ଯୋଡ଼ିଏ କଥା ବିଶେଷ ଭାବରେ ଚିନ୍ତା ନ କରି ସେ କୌଣସି ସିଦ୍ଧାନ୍ତ ଗ୍ରହଣ କରିପାରିଲେ ନାହିଁ ।

ଠାକୁର ତାଙ୍କୁ ବାରମ୍ବାର କହିଥିଲେ ଲଜ୍ଜା ହିଁ ନାରୀର ଭୂଷଣ । ସହରରେ ଭକ୍ତମାନଙ୍କ ଗୃହରେ ରହିଲେ ସେହି ଲଜ୍ଜା ଅକ୍ଷୁଣ୍ଣ ରହିବ ତ ? ଦ୍ୱିତୀୟ ପ୍ରଶ୍ନ ଆହୁରି ଗୁରୁତର । ଶ୍ରୀରାମକୃଷ୍ଣ ଯେତେଦିନ ଦକ୍ଷିଣେଶ୍ୱରରେ ଥିଲେ, ସେତେଦିନ

ଶ୍ରୀମା'ଙ୍କର ସେଠାକୁ ଯିବା ପ୍ରଚଳିତ ସାମାଜିକ ନିୟମ ଅନୁଯାୟୀ ଚାଲିଥିଲା । କିନ୍ତୁ ତାଙ୍କ ଅବର୍ତ୍ତମାନରେ ଶ୍ରୀମା' ଅଶିକ୍ଷିତ ପଲ୍ଲୀ-ସମାଜର ବିରୁଦ୍ଧ ଆଲୋଚନା ଅଗ୍ରାହ୍ୟ କରି ସେଠାକୁ ଯିବେ କିପରି ? ଶ୍ରୀମା' ସ୍ୱୟଂ କହିଛନ୍ତି, ''ଠାକୁରଙ୍କ ଅବର୍ତ୍ତମାନରେ ମୋର ଯେତେବେଳେ ଏଠାକୁ (କଲିକତାକୁ) ଆସିବା କଥା ହେଲା, ସେତେବେଳେ ମୁଁ କାମାରପୁକୁରରେ । ଗାଁର ବହୁତ ଲୋକ କହିବାକୁ ଲାଗିଲେ, 'ଓ ମା, ସେମାନେ ସବୁ ଅଳ୍ପ ବୟସର ପିଲା, ସେମାନଙ୍କ ମଧ୍ୟରେ କିପରି ରହିବ ? ମୁଁ ଠିକ୍ କରିଥିଲି ଏଠାରେ ରହିବି । ତଥାପି ସମାଜ କ'ଣ କହେ, ଥରେ ଶୁଣିବା ପାଇଁ କେତେକ ଲୋକଙ୍କୁ ପଚାରିଲି । କେହି କେହି ମତ ଦେଲେ, 'ନିଶ୍ଚୟ ଯିବ, ସେମାନେ ତ ସବୁ ତୁମର ଶିଷ୍ୟ ।' ମୁଁ ସବୁ କଥା ଶୁଣିଯାଏ । ପରେ ଆମ ଗାଁର ଜଣେ ବୃଦ୍ଧ ମହିଳା (ଧର୍ମଦାସ ଲାହାଙ୍କ କନ୍ୟା ପ୍ରସନ୍ନମୟୀ) ଯେକି ଖୁବ୍ ଧାର୍ମିକ ଓ ବୁଦ୍ଧିମତୀ ବୋଲି ସମସ୍ତେ ମାନନ୍ତି ତାଙ୍କୁ ମୁଁ ଯାଇ ପଚାରିଲି । ସେ କହିଲେ, 'ସେ କି କଥା ? ତୁମେ ନିଶ୍ଚୟ ଯିବ । ସେମାନେ ସବୁ ଶିଷ୍ୟ । ତୁମର ପୁଅ ଭଳି ।' ତାଙ୍କ କଥା ଶୁଣି ବହୁଲୋକ ଏ ବିଷୟରେ ଏକମତ ହେଲେ । ସେତେବେଳେ ଯାଇ ଆସିଲି ।''

ସମ୍ଭବତଃ ୧୮୮୮ ଖ୍ରୀଷ୍ଟାବ୍ଦ ମେ' ମାସରେ ଭକ୍ତମାନଙ୍କ ଆହ୍ୱାନ ପାଇ ଶ୍ରୀମା' କଲିକତାକୁ ଆସି ବଳରାମ ବାବୁଙ୍କ ଘରେ ରହିଲେ । ଏହି ସମୟରେ ଶ୍ରୀମା'ଙ୍କର ଧ୍ୟାନତନ୍ମୟତା ଓ ସମାଧିର ପ୍ରକୃଷ୍ଟ ପରିଚୟ ଗୋଟିଏ ଘଟଣାରୁ ପରିସ୍ଫୁଟ ହୁଏ । ଦିନେ ବଳରାମ ବାବୁଙ୍କ ଘର ଛାତରେ ଧ୍ୟାନ କରୁ କରୁ ସେ ସମାଧିସ୍ଥ ହେଲେ ଏବଂ ପରେ ଏ ବିଷୟରେ ଯୋଗୀନ୍-ମା'ଙ୍କୁ କହିଥିଲେ, ''ଦେଖିଲି, କୁଆଡ଼େ ଚାଲିଯାଇଛି । ...ଠାକୁର ସେଠାରେ ରହିଛନ୍ତି । ସେଠାରେ ସମସ୍ତେ ମୋତେ ଆଦର କରି ତାଙ୍କ ପାଖରେ ବସାଇଲେ । ସେ ଯେ କିଭଳି ଆନନ୍ଦ କହିପାରିବି ନାହିଁ । ଟିକିଏ ଚେତା ହେବାରୁ ଦେଖିଲି ଦେହଟା ପଡ଼ି ରହିଛି, ଭାବିଲି କିପରି ଏହି ଅସୁନ୍ଦର ଦେହଟା ଭିତରେ ପଶିବି ! ସେଥିରେ ପ୍ରବେଶ କରିବା ପାଇଁ ଆଦୌ ଇଚ୍ଛା ନ ଥିଲା । ଅନେକ କଷ୍ଟରେ ସେଥିରେ ପ୍ରବେଶ କଲି ଓ ଦେହକୁ ଚେତା ଆସିଲା ।'' ଏହି ଘଟଣାରୁ ଆମେ ବୁଝିପାରିବା ଯେ, ଶ୍ରୀମା' ଯଦିଓ ନିଜ ଦେବୀତ୍ୱ ବିଷୟରେ ସଚେତନ ଥିଲେ, ତଥାପି ଜାଣିଥିଲେ ଯେ ଦୈବ ନିର୍ଦ୍ଦେଶରେ ତାଙ୍କୁ ପ୍ରତିକୂଳ ଅବସ୍ଥା ଭିତର ଦେଇ ଲୋକକଲ୍ୟାଣ ସାଧନ କରିବାକୁ ହେବ ।

କିଛିଦିନ ମଧ୍ୟରେ ଭକ୍ତମାନେ ବେଲୁଡ଼ ଗ୍ରାମସ୍ଥ ନୀଳାମ୍ବର ବାବୁଙ୍କ ଘର ଭଡ଼ାରେ ଠିକ୍ କରି ଶ୍ରୀମା'ଙ୍କୁ ସେଠାକୁ ନେଇଗଲେ । ଏହି ଘରେ ଶ୍ରୀମା' ଛ'ମାସ କାଳ ଥିଲେ । ଯୋଗୀନ୍ ମା' ଓ ଗୋଲାପ-ମା' ତାଙ୍କ ସହିତ ରହୁଥିଲେ । ତ୍ୟାଗୀ ଭକ୍ତମାନେ ତାଙ୍କ ସେବାରେ ନିଯୁକ୍ତ ଥିଲେ । ଦିନେ ସନ୍ଧ୍ୟାପରେ ଶ୍ରୀମା' ଦୁଇ

ସହଚରୀଙ୍କ ସହିତ ବସି ଧ୍ୟାନ କରୁଥିଲେ । ଯୋଗୀନ୍-ମା'ଙ୍କ ଧ୍ୟାନ ଭାଙ୍ଗିବାରୁ ସେ ଦେଖିଲେ, ଶ୍ରୀମା' ସେତେବେଳେ ବି ଧ୍ୟାନରେ ବସିଛନ୍ତି—ସ୍ପନ୍ଦନହୀନ; ସମାଧିସ୍ଥ । ଅନେକ ସମୟ ପରେ ଅର୍ଦ୍ଧବାହ୍ୟଦଶାରେ ସେ କହିଲେ, ''ହେ ଯୋଗୀନ୍, ମୋ ହାତ କାହିଁ, ଗୋଡ଼ କାହିଁ !'' ସହଚରୀମାନେ ହାତ ଗୋଡ଼ ଚିପି ଦେଖାଇବାକୁ ଲାଗିଲେ, ''ଏହି ଯେ ଗୋଡ଼, ଏହି ଯେ ହାତ ।'' ତଥାପି ତାଙ୍କ ଦେହ ବୋଧ ଆସିବାକୁ ବହୁତ ବିଳମ୍ବ ହୋଇଥିଲା ।

କାର୍ତ୍ତିକମାସରେ ଶ୍ରୀମା' ବଳରାମବାବୁଙ୍କ ଭବନକୁ ଫେରିଗଲେ ଓ ସେଠାରେ ଦିନେ ଦୁଇଦିନ ରହି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କଲେ । ଶ୍ରୀମା' ନୀଳାଚଳ ଯାଉଛନ୍ତି ଜାଣି ପୂଜ୍ୟପାଦ ସ୍ୱାମୀ ବ୍ରହ୍ମାନନ୍ଦ, ଯୋଗାନନ୍ଦ, ସାରଦାନନ୍ଦ, ଶ୍ରୀଯୁକ୍ତା ଯୋଗୀନ୍-ମା', ଯୋଗୀନ୍-ମା'ଙ୍କ ଜନନୀ, ଗୋଲାପ-ମା' ଓ ଲକ୍ଷ୍ମୀଦେବୀ ତାଙ୍କ ସହିତ ବାହାରିଲେ । ସେତେବେଳେ ରେଲ୍‌ଲାଇନ୍ ନ ଥିବାରୁ କଲିକତାରୁ ବଡ଼ ଜାହାଜରେ ଚାନ୍ଦବାଲିକୁ ଆସିଲେ (୭ ନଭେମ୍ବର ୧୮୮୮) । ସେଠାରୁ କେନାଲ ଲଞ୍ଚରେ କଟକ ପର୍ଯ୍ୟନ୍ତ ଆସିଲେ ଏବଂ କଟକରୁ ଶ୍ରୀକ୍ଷେତ୍ରକୁ ବଳଦଗାଡ଼ିରେ ଗଲେ । ପୁରୀଧାମରେ ସକାଳେ ପହଞ୍ଚି ସେମାନେ ପ୍ରଥମେ ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ଗଲେ; କାରଣ ସେଦିନ ଦର୍ଶନ ନ ହେଲେ ବାରବେଳା ପଡ଼ିଯିବ । ଶ୍ରୀମା' ଓ ମହିଳାବୃନ୍ଦ ବଳରାମବାବୁଙ୍କ 'କ୍ଷେତ୍ରବାସୀଙ୍କ ମଠ'ରେ ଆଶ୍ରୟ ନେଲେ । ତ୍ୟାଗୀ ଭକ୍ତମାନେ ଅନ୍ୟତ୍ର ରହିଲେ । ଶ୍ରୀମା' ଏହି ଭବନରେ ଦୁଇମାସ କାଳ ଅବସ୍ଥାନ କରିଥିଲେ । ଏଠାରେ ଘଟିଥିବା କେତୋଟି ଘଟଣା ଉଲ୍ଲେଖଯୋଗ୍ୟ ।

ଶ୍ରୀଠାକୁର କେବେ ଶ୍ରୀକ୍ଷେତ୍ରକୁ ଯାଇନାହାନ୍ତି । ତେଣୁ ଶ୍ରୀମା' ତାଙ୍କର ଛବି ନେଇ ଜଗନ୍ନାଥ ଦର୍ଶନ କରାଇଥିଲେ । ଶ୍ରୀମା'ଙ୍କର ବିଶ୍ୱାସ, ''ଛାୟା କାୟା ସମାନ ।'' ଜଗନ୍ନାଥଙ୍କୁ ଦର୍ଶନ କରି ସେ କହିଥିଲେ, ''ଜଗନ୍ନାଥଙ୍କୁ ଦେଖିଲି—ଯେପରି ପୁରୁଷସିଂହ, ରତ୍ନବେଦୀ ଉପରେ ବସିଛନ୍ତି ଏବଂ ମୁଁ ଦାସୀ ହୋଇ ତାଙ୍କର ସେବା କରୁଛି ।'' ଅନ୍ୟ ଏକ ସମୟରେ କହିଥିଲେ ଯେ, ଥରେ ସ୍ୱପ୍ନରେ ସେ ପୁରୁଷୋତ୍ତମଙ୍କୁ ଶିବରୂପେ ଦର୍ଶନ କରିଥିଲେ । ଜଗନ୍ନାଥ ଦର୍ଶନ କରିବା ସମୟରେ ସହସ୍ର ସହସ୍ର ନରନାରୀଙ୍କୁ ସେଠାରେ ସମବେତ ଦେଖି ତାଙ୍କର ଚକ୍ଷୁ ଅନନ୍ଦାଶ୍ରୁରେ ଭରିଗଲା । ସେ ଭାବିଲେ ଜଗନ୍ନାଥଙ୍କୁ ଯେତେ ଲୋକ ଦେଖୁଛନ୍ତି, ସେମାନେ ସମସ୍ତେ ମୁକ୍ତ ହେବେ । କିନ୍ତୁ ପରମୁହୂର୍ତ୍ତରେ ତାଙ୍କ ମନରେ ଏହି ସତ୍ୟ ଉଦ୍ଭାସିତ ହେଲା—''ନା, ଯେଉଁମାନେ ବାସନାଶୂନ୍ୟ, ସେହି ଜଣେ ଦୁଇଜଣ କେବଳ ମୁକ୍ତ ହେବେ ।'' ଯୋଗୀନ୍ ମା' ଏକଥା ଶୁଣି ଏହାର ସମର୍ଥନ କଲେ । ପୁରୀରେ ଶ୍ରୀମା'ଙ୍କ ବିନୟ ବିଶେଷ ଲକ୍ଷ୍ୟ କରିବାର ବିଷୟ । ବଳରାମବାବୁଙ୍କ ପଣ୍ଡା ଗୋବିନ୍ଦ ଶିଙ୍ଗାରୀ ତାଙ୍କ ଗୁରୁପତ୍ନୀଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରି

ଜଗନ୍ନାଥ ମନ୍ଦିରକୁ ଯିବା ନିମିତ୍ତ ଗୋଟିଏ ସବାରୀର ବ୍ୟବସ୍ଥା କରିଥିଲେ । କିନ୍ତୁ ଶ୍ରୀମା' ପଣ୍ଡାଙ୍କୁ କହିଲେ, ''ଗୋବିନ୍ଦ, ତୁମେ ସମ୍ମୁଖରେ ରହି ପଥ ଦେଖାଇ ନେଇଯିବ । ମୁଁ ଦୀନ, ହୀନ, କାଙ୍ଗାଳିନୀଙ୍କ ପରି ତୁମ ପଛେ ପଛେ ଜଗନ୍ନାଥ ଦର୍ଶନ ପାଇଁ ଯିବି ।'' ଜଗନ୍ନାଥ ଦର୍ଶନ ପାଇଁ ଗଲେ ଶ୍ରୀମା' ପ୍ରତିଥର ଲକ୍ଷ୍ମୀମନ୍ଦିରରେ ଦୀର୍ଘକାଳ ବସି ଧ୍ୟାନ କରୁଥିଲେ ।

ପୁରୁଷୋତ୍ତମ କ୍ଷେତ୍ରରୁ ୧୮୮୯ ଖ୍ରୀ: ୧୨ ଜାନୁଆରୀ ଦିନ କଲିକତାକୁ ଫେରି ଶ୍ରୀମା' 'ନଗା' ନାମକ ଜଣେ ଭକ୍ତଙ୍କ ଘରେ ରହିଥିଲେ । ତା'ପରଦିନ ଗଙ୍ଗାସ୍ନାନ କରିବାକୁ ଯାଇଥିଲେ । ଜାନୁଆରୀ ୨୨ ତାରିଖ ଦିନ କାଳୀଘାଟରେ କାଳୀଙ୍କୁ ଦର୍ଶନ କଲେ । ଫେବୃଆରୀ ୫ ତାରିଖ ଦିନ ସ୍ୱାମୀ ବିବେକାନନ୍ଦ, ସାରଦାନନ୍ଦ, ଯୋଗାନନ୍ଦ, ପ୍ରେମାନନ୍ଦ, ମାଷ୍ଟର ମହାଶୟ, ସାନ୍ୟାଲ୍ ମହାଶୟ ପ୍ରଭୃତି ଅନେକ ଭକ୍ତଙ୍କ ସହିତ ସେ ପ୍ରେମାନନ୍ଦଙ୍କ ଜନ୍ମଭୂମି ଆଁଟପୁରକୁ ଗଲେ । ସେଠାରେ ସପ୍ତାହ କାଳ ରହି କେତେଜଣ ଭକ୍ତଙ୍କ ସହିତ ଶଗଡ଼ଗାଡ଼ିରେ ଶ୍ରୀମା' ତାରକେଶ୍ୱର ଦେଇ କାମାରପୁକୁରକୁ ଗଲେ । ଏଥର ମଧ୍ୟ ପୂର୍ବଭଳି କାମାରପୁକୁରରେ ଦୀର୍ଘକାଳ କଟାଇ ସେ କଲିକତାକୁ ଫେରିଲେ ଏବଂ ଭକ୍ତମାନଙ୍କ ବ୍ୟବସ୍ଥାନୁଯାୟୀ ବେଲୁଡ଼ ଗ୍ରାମରେ ଗଙ୍ଗାତୀରରେ ରାଜୁ ଗୁମାସ୍ତାଙ୍କର ଭଡ଼ା ଘରେ କିଛି କାଳ ବାସ କଲେ । ସେଠାରୁ ୧୮୯୦ ଖ୍ରୀ: ମାର୍ଚ୍ଚ ମାସ ୪ ତାରିଖ ଦିନ କମ୍ବୁଲିଆଟୋଲାସ୍ଥିତ ମାଷ୍ଟର ମହାଶୟଙ୍କ ଘରକୁ ଗମନ କଲେ ଏବଂ ସେଠାରୁ ମାର୍ଚ୍ଚ ୨୫ ତାରିଖ ଦିନ ସ୍ୱାମୀ ଅଦ୍ୱୈତାନନ୍ଦଜୀଙ୍କ ସହିତ ଗୟା ଅଭିମୁଖେ ଯାତ୍ରା କଲେ । ଜନନୀ ଚନ୍ଦ୍ରମଣିଙ୍କ ଦେହାନ୍ତ ପରେ ଠାକୁର ଶ୍ରୀମା'ଙ୍କୁ ଗୟାଧାମକୁ ଯାଇ ବିଷ୍ଣୁ-ପାଦପଦ୍ମରେ ବୃଦ୍ଧାଙ୍କ ପିଣ୍ଡଦାନ କରିବାକୁ କହିଥିଲେ । ଶ୍ରୀମା' ସେହି ଆଦେଶ ପରେ ରକ୍ଷା କରିଥିଲେ । ଯିବା ପଥରେ ମା' ବୈଦ୍ୟନାଥଧାମ ଦର୍ଶନ କଲେ ଏବଂ ଗୟାରୁ ବୁଦ୍ଧଗୟାକୁ ମଧ୍ୟ ଯାଇଥିଲେ । ତୀର୍ଥଦର୍ଶନ କରି ଏପ୍ରିଲ ୨ ତାରିଖରେ କଲିକତାକୁ ଫେରିଲେ । ସେତେବେଳେ ଶ୍ରୀବଳରାମ ବସୁଙ୍କର ଶେଷ ଅବସ୍ଥା । ତାଙ୍କ ପ୍ରତି ଠାକୁରଙ୍କର ଅସୀମ କରୁଣାର କଥା ସ୍ମରଣ କରି ଶ୍ରୀମା' ତାଙ୍କ ଘରକୁ ଆସିଲେ । ଏପ୍ରିଲ ୧୩ ତାରିଖ ଦିନ ବଳରାମବାବୁ ବାଞ୍ଛିତ ଲୋକ ପ୍ରାପ୍ତ ହେଲେ ।

ଜ୍ୟେଷ୍ଠ ମାସରେ ଶ୍ରୀମା'ଙ୍କ ରହିବା ପାଇଁ ବେଲୁଡ଼ ନିକଟବର୍ତ୍ତୀ ଘୁଷୁଡ଼ି ଅଞ୍ଚଳରେ ଗୋଟିଏ ଭଡ଼ାଘର ଠିକ୍ କରାଗଲା । ଏହି ସମୟରେ ଶ୍ରୀମତ୍ ସ୍ୱାମୀ ବିବେକାନନ୍ଦ ଜ୍ଞାନର ଅନ୍ୱେଷଣରେ ମଠ ଛାଡ଼ି ବାହାରକୁ ଯିବାକୁ ମନସ୍ଥ କଲେ । ଏଥିପାଇଁ ଶ୍ରୀମା'ଙ୍କ ଆଶୀର୍ବାଦ ଏକାନ୍ତ ପ୍ରୟୋଜନ ଜାଣି ସ୍ୱାମୀଜୀ ଶ୍ରୀମା'ଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କ ହୃଦୟର ନିବେଦନ ଜଣାଇଲେ । ଶ୍ରୀମା'ଙ୍କ ତୃପ୍ତିବିଧାନ ପାଇଁ ଭକ୍ତିରସାପ୍ଲୁତ ସଙ୍ଗୀତ ଶ୍ରବଣ କରାଇଲେ । ଅତଃପର ଅନ୍ତରର

ମିନତି ଜଣାଇ କହିଲେ, ''ମା', ଯଦି ମଣିଷ ହୋଇପାରିବି ତେବେ ଆସିବି । ନ ହେଲେ ଏହା ହିଁ ଶେଷ ଦେଖା ।'' ଶ୍ରୀମା' ଆଶ୍ଚର୍ଯ୍ୟ ପ୍ରକାଶ କରିବାରୁ ସ୍ୱାମୀଜୀ କହିଲେ, ''ନା, ଆପଣଙ୍କ ଆଶୀର୍ବାଦରୁ ଶୀଘ୍ର ଫେରି ଆସିବି ।'' ମା' ସନ୍ତାନର ଆଗ୍ରହ ବୁଝିପାରିଲେ ଏବଂ ଦିବ୍ୟଦୃଷ୍ଟିରେ ଦେଖିଲେ ଯେ, ତାଙ୍କର ଭବିଷ୍ୟତ ଅତି ଉଜ୍ଜ୍ୱଳ । ଅତଏବ ପ୍ରାଣ ଖୋଲି ଆଶୀର୍ବାଦ କଲେ ଏବଂ କାର୍ଯ୍ୟସିଦ୍ଧି ପରେ ଫେରି ଆସିବାକୁ କହିଲେ । ସେହି ଶୁଭାଶୀର୍ବାଦ ମସ୍ତକରେ ଧାରଣ କରି ସ୍ୱାମୀଜୀ ତୀର୍ଥ-ଦର୍ଶନ ଉଦ୍ଦେଶ୍ୟରେ ପରିବ୍ରାଜକ ବେଶରେ ବାହାରିଲେ ।

ଶ୍ରୀମା' ଭାଦ୍ରବମାସଟି ଏହି ଗୃହରେ କଟାଇଲେ । ଏଠାରେ ରକ୍ତ-ଆମାଶୟ ହେବାରୁ ତାଙ୍କୁ ଗଙ୍ଗା ଆରପାରି ବରାହନଗରସ୍ଥ ସୌରୀନ୍ଦ୍ରମୋହନ ଠାକୁରଙ୍କ ଭଡ଼ାଘରେ ରଖି ଚିକିତ୍ସାର ବ୍ୟବସ୍ଥା କରାହେଲା । ସେତେବେଳେ ଶ୍ରୀରାମକୃଷ୍ଣ ମଠ ବରାହନଗରରେ ଅବସ୍ଥିତ । ରୋଗ ଉପଶମ ହେବାରୁ ଶ୍ରୀମା' ବଳରାମ-ଭବନକୁ ଆସିଲେ ଏବଂ କାର୍ତ୍ତିକ ମାସରେ ଜୟରାମବାଟିକୁ ଗମନ କଲେ । ୧୮୯୧ ଖ୍ରୀ: ନଭେମ୍ବର ୧୦ ତାରିଖ ଦିନ ଜୟରାମବାଟୀରେ ଶ୍ରୀମା' ଜଗଦ୍ଧାତ୍ରୀ-ପୂଜାର ବ୍ୟବସ୍ଥା କଲେ । ଏହି ସମ୍ବାଦ ପାଇ କଲିକତାରୁ ସ୍ୱାମୀ ସାରଦାନନ୍ଦ ପୂଜାର ଉପକରଣ ନେଇ ଜୟରାମବାଟୀକୁ ଯାତ୍ରା କଲେ । ତାଙ୍କ ସହିତ ଥିଲେ କାଳୀକୃଷ୍ଣ (ସ୍ୱାମୀ ବିରଜାନନ୍ଦ), ଗୋଲାପ-ମା', ଯୋଗୀନ୍-ମା' ଓ ଅନ୍ୟାନ୍ୟ ଭକ୍ତମାନେ । ବର୍ଦ୍ଧମାନ ଦେଇ ଶଗଡ଼ ଗାଡ଼ିରେ ସେମାନେ କାମାରପୁକୁରକୁ ଆସିଲେ ଏବଂ ଦର୍ଶନାଦି କରି ପଦବ୍ରଜରେ ଜୟରାମବାଟୀକୁ ଗଲେ । ସେମାନଙ୍କୁ ଦେଖି ମା' ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । କିପରି ସେମାନଙ୍କର ଆଦର ଯତ୍ନ କରିବେ ଠିକ୍ କରିପାରିଲେ ନାହିଁ । ପ୍ରତିଦିନ ନିଜ ହାତରେ ପରିବା କାଟି ରନ୍ଧାବଢ଼ା କରି ସମସ୍ତଙ୍କୁ ଯତ୍ନ କରି ଖୁଆଉଥିଲେ । ତାଙ୍କର ଅପରୀସୀମ ସ୍ନେହ ସମସ୍ତଙ୍କୁ ମୁଗଧ୍ କରିଥିଲା । ଦଳର ସର୍ବକନିଷ୍ଠ କାଳୀକୃଷ୍ଣଙ୍କୁ ସେ ପୁତ୍ର ରୂପେ ଗ୍ରହଣ କଲେ । କାଳୀକୃଷ୍ଣଙ୍କର ସର୍ବତ୍ର ଅବାଧ ଗତି ଥିଲା । ସେ ବୟସ୍କମାନଙ୍କର ସେବାରେ ସର୍ବଦା ତତ୍ପର ଥିଲେ । ଥରେ କାଳୀକୃଷ୍ଣ ସାରଦାନନ୍ଦଜୀଙ୍କ ତମାଖୁ ସେବନ ପାଇଁ ନିଆଁ ଆଣିବାକୁ ଭିତରକୁ ଗଲେ କିନ୍ତୁ ପୁଅ ହାତକୁ ନିଆଁ ଦିଅନ୍ତି ନାହିଁ ବୋଲି ଶ୍ରୀମା' ନିଆଁ ତଳେ ଥୋଇଦେଲେ ।

ଶ୍ୟାମାସୁନ୍ଦରୀ ଦେବୀଙ୍କ ଜୀବନ ଅତି ସରଳ ଓ ନିରଳସ; ତାଙ୍କ କାମର ବିରାମ ନ ଥିଲା କିନ୍ତୁ ମୁଖମଣ୍ଡଳ ସର୍ବଦା ପ୍ରଫୁଲ୍ଲ, ବିରକ୍ତି ବା କ୍ରୋଧର କୌଣସି ଚିହ୍ନ ନାହିଁ । ଭକ୍ତମାନଙ୍କୁ ସେ ନିଜ ନାତି ବୋଲି ଗ୍ରହଣ କରୁଥିଲେ ଏବଂ ସେମାନେ ତାଙ୍କୁ ଆଈମା' ବୋଲି ଡାକିଲେ ସେ ଖୁବ୍ ଖୁସି ହେଉଥିଲେ । ସାରା ବର୍ଷ ଭକ୍ତମାନଙ୍କ ପାଇଁ ଆବଶ୍ୟକ ଦ୍ରବ୍ୟ ଯୋଗାଡ଼ କରି ରଖୁଥିଲେ ଓ କହୁଥିଲେ, ''ମୋର ଭକ୍ତ-ଭଗବାନଙ୍କ ସଂସାର ।''

ଆଇମା' ଏଥର ଆସିଥିବା ଭକ୍ତମାନଙ୍କୁ ଶ୍ରୀଶ୍ରୀଠାକୁରଙ୍କର ବହୁ ସ୍ମୃତିକଥା କହିଥିଲେ । ଦିନେ ଜଣେ ବାବାଜୀ ଆସି ବେହେଲା ବଜାଇ ଗୀତ ଗାଇବାକୁ ଲାଗିଲେ । ଗୀତର ତାତ୍ପର୍ଯ୍ୟ, ଉମାଙ୍କ ବିବାହ ପରେ ଶିବଙ୍କୁ ଲୋକେ ପାଗଳ ବୋଲି ନିନ୍ଦା କରୁଥିଲେ । ସେ ଶ୍ମଶାନରେ ରହୁଥିଲେ ଓ ଭିକ୍ଷା କରି ସେମାନଙ୍କର ଦିନ କଟୁଥିଲା । ଏବେ କିନ୍ତୁ ଶିବ କାଶୀଶ୍ୱର, କୁବେରଙ୍କ ଧନରେ କାଶୀଧାମ ନିର୍ମିତ ହୋଇଛି, ଇତ୍ୟାଦି । ଗୀତଟି ଯେପରି ଶ୍ରୀଶ୍ରୀମା'ଙ୍କ ଜୀବନର ଅବିକଳ ଛବି । ସମସ୍ତେ ମୁଗ୍ଧଚିତ୍ତରେ ଏହା ଶୁଣିଲେ । ପଇସା ଓ ଭିକ୍ଷା ନେଇ ବାବାଜୀ ଚାଲିଗଲେ । ଆଇମା' କହିଲେ, ''ହଁ ଗୋ ! ସେତେବେଳେ ସମସ୍ତେ ମୋ ଜ୍ୱାଇଁକୁ ପାଗଳ ବୋଲି କହୁଥିଲେ, ସାରଦାର ଅଦୃଷ୍ଟକୁ କେତେ ଧିକ୍କାର କରୁଥିଲେ, ମୋତେ କେତେ କଥା ଶୁଣାଉଥିଲେ ଓ ମୁଁ ଦୁଃଖରେ ମରିଯାଉଥିଲି । କିନ୍ତୁ ଆଜି ଦେଖ, କେଡ଼େ ବଡ଼ ଘରର ପୁଅ ଝିଅମାନେ ସାରଦାକୁ ଦେବୀ ଜ୍ଞାନରେ ପୂଜା କରୁଛନ୍ତି ।''

ଶ୍ରୀମା'ଙ୍କ ପିତୃଗୃହରେ ପ୍ରଥାନୁଯାୟୀ ଜଗଦ୍ଧାତ୍ରୀ-ପୂଜା ତିନିଦିନ ଧରି ମହା-ସମାରୋହରେ ସମ୍ପନ୍ନ ହେଲା । ରନ୍ଧନାଦି କର୍ମରେ ମା' ସର୍ବଦା ବ୍ୟସ୍ତ । କେବଳ ପ୍ରଧାନ ପୂଜା ଓ ସନ୍ଧ୍ୟା ଆଳତି ସମୟରେ ଶ୍ରୀମା' ଜଗଦମ୍ବାଙ୍କୁ ଦର୍ଶନ କରୁଥିଲେ ଅଥବା ଚାମର ବ୍ୟଜନ କରୁଥିଲେ । ଦୂରଦୂରାନ୍ତରୁ ଆସିଥିବା ସବୁ ଶ୍ରେଣୀର ଲୋକେ ପ୍ରତିଦିନ ପ୍ରସାଦ ପାଉଥିଲେ । ସେଠାକାର ରୀତି ଅନୁଯାୟୀ ଭାତ, ବିରି ଡାଲି, ପୋସ୍ତ ତରକାରୀ, ବିବିଧ ବ୍ୟଞ୍ଜନ, ଦହି ଓ ମିଷ୍ଟାନ୍ନ ସମସ୍ତେ ତୃପ୍ତି ସହକାରେ ଗ୍ରହଣ କରିଥିଲେ । ଦୁଇଦିନ ରାତିରେ ଯାତ୍ରା ମଧ୍ୟ ହେଲା ।

ପୂଜାର ତିନିଦିନ ପରେ ସାରଦାନନ୍ଦଜୀ ଓ ଅନ୍ୟାନ୍ୟ ଭକ୍ତମାନେ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହେଲେ । ଶ୍ରୀମା'ଙ୍କ ଚିନ୍ତାର ଶେଷ ନାହିଁ— କେବଳ କହନ୍ତି, ''ମାଗୋ, କଅଣ ହେବ ? ପିଲାମାନେ ସମସ୍ତେ ଜ୍ୱରରେ ପଡ଼ିଛନ୍ତି ।'' ଯଥାସାଧ୍ୟ ସେବାରେ ମା' ଲାଗିପଡ଼ିଲେ । ଗ୍ରାମରେ ଦୁଧ ଦୁଷ୍ପ୍ରାପ୍ୟ; ତଥାପି ଘର ଘର ବୁଲି ପାଏ ଦୁଧ ସଂଗ୍ରହ କରି ଆଣନ୍ତି ଏବଂ ପଥ୍ୟର ବ୍ୟବସ୍ଥା କରନ୍ତି । ଟିକିଏ ଭଲ ହୋଇ ଆସିବାରୁ ଭକ୍ତମାନେ ସ୍ଥିର କଲେ ଯେ, ଅଧିକ ଦିନ ରହିଲେ ମା'ଙ୍କର ପରିଶ୍ରମ ବଢ଼ିବ । ଅତଏବ କଲିକତା ଫେରିବା ପାଇଁ ସେମାନେ ପ୍ରସ୍ତୁତ ହେଲେ । ମା'ଙ୍କର କିନ୍ତୁ ଭୀଷଣ ଆପତ୍ତି ! ଯାହାହେଉ, ନିର୍ଦ୍ଦିଷ୍ଟ ଦିନରେ ଏମାନେ ଦ୍ୱିପ୍ରହରର ଖାଇବା ସାରି ଶଗଡ଼ରେ ଚଢ଼ିଲେ । ମା' ଖିଡ଼ିକି ଦରଜା ସାମନାରେ ଛିଡ଼ା ହୋଇ ରହିଲେ—ତାଙ୍କ ଆଖିରୁ ଅବିରାମ ଅଶ୍ରୁ ଝରୁଥାଏ । ଗୋଲାପ-ମା' ଓ ଯୋଗୀନ୍-ମା' ମଧ୍ୟ ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ । କାଳୀକୃଷ୍ଣଙ୍କର ମଧ୍ୟ ସେହି ଅବସ୍ଥା । ଶଗଡ଼ ଚାଲିବାକୁ ଲାଗିଲା । ଅନେକ ଦୂର ଯିବା ପରେ ମଧ୍ୟ କାଳୀକୃଷ୍ଣ ଫେରି ଦେଖିଲେ, ମା' ସେ ପର୍ଯ୍ୟନ୍ତ ତାଳପୋଖରୀ

କୂଳରେ ଛିଡ଼ା ହୋଇ ସେମାନଙ୍କୁ ଅପଲକ ନୟନରେ ଚାହିଁ ରହିଛନ୍ତି । କ୍ରମେ ଗାଡ଼ି ଦୃଷ୍ଟିପଥର ବାହାରକୁ ଚାଲିଗଲା । ମଠକୁ ଫେରି ଆସି କାଳୀକୃଷ୍ଣ ଶ୍ରୀମା'ଙ୍କ ବିଷୟରେ ତାଙ୍କର ଧାରଣା ଲିପିବଦ୍ଧ କରିଛନ୍ତି—''ମା'ଙ୍କ କଥା ଯତ୍‌ସାମାନ୍ୟ ଶୁଣିଥିଲି ସେଥିରୁ କିଏ ଜାଣିବ ଯେ ମା' ଆମର ଏପରି ମା', ଏପରି ଭାବରେ ପ୍ରାଣମନ କାଢ଼ି ନେଇ ଆପଣାଠାରୁ ଆପଣାର କରିନେବେ ! ଘରେ ମୁଁ ମୋ ମା'ଙ୍କୁ ବହୁତ ଭଲ ପାଉଥିଲି । ସେ ମଧ୍ୟ କେତେ ଭଲ ପାଉଥିଲେ, କିନ୍ତୁ ଏ ଯେ ଜନ୍ମଜନ୍ମାନ୍ତରର ଚିରକାଳର ଆପଣାର ମା' ।''

ପ୍ରାୟ ତିନି ବର୍ଷ କାଳ ଗ୍ରାମରେ କଟାଇ ଶ୍ରୀମା' ଆଷାଢ଼ ମାସରେ କଲିକତାକୁ ଫେରିଲେ (୧୮୯୩ ଖ୍ରୀ:) । ବେଲୁଡ଼ ଗ୍ରାମସ୍ଥ ନୀଳାମ୍ବର ମୁଖୋପାଧ୍ୟାୟଙ୍କ ଘର ତାଙ୍କ ରହିବା ପାଇଁ ନିର୍ଦ୍ଦିଷ୍ଟ ହେଲା । ସାରଦା (ସ୍ୱାମୀ ତ୍ରିଗୁଣାତୀତାନନ୍ଦ) ସେବକରୂପେ ଏଠାରେ ରହିଲେ । ସେବକ ନିଷ୍ଠାସହକାରେ ପ୍ରତିଦିନ ସନ୍ଧ୍ୟାରେ ଶ୍ରୀମା'ଙ୍କ ପୂଜା ପାଇଁ ଗଙ୍ଗଶିଉଳି ଗଛ ତଳେ ପରିଷ୍କାର ଲୁଗା ବିଛାଇ ରଖୁଥିଲେ, ଯେପରିକି ପୂଜାର ଫୁଲ ମାଟିରେ ପଡ଼ି ନଷ୍ଟ ନ ହୁଏ ।

ଏହି ସମୟର ପ୍ରଧାନ ଘଟଣା ଶ୍ରୀମା'ଙ୍କର ପଞ୍ଚତପାନୁଷ୍ଠାନ । ଶ୍ରୀଶ୍ରୀଠାକୁରଙ୍କର ଦେହତ୍ୟାଗ ପରେ ମା'ଙ୍କ ମନରେ ତୀବ୍ର ବୈରାଗ୍ୟ ଆସିଥିଲା । କିଛି ଭଲ ଲାଗୁ ନ ଥିଲା । କାହା ସହିତ କଥା କହିବାକୁ ମଧ୍ୟ ପ୍ରବୃତ୍ତି ହେଉ ନ ଥିଲା । କେବଳ କର୍ତ୍ତବ୍ୟବୋଧରେ କର୍ମ କରିଯାଉଥିଲେ । ଶ୍ରୀମା'ଙ୍କ ବିଷାଦ ଦୂର କରିବା ପାଇଁ ତ୍ୟାଗୀ ସନ୍ତାନମାନେ ତାଙ୍କୁ ତୀର୍ଥଭ୍ରମଣରେ ନେଇଗଲେ । ଶ୍ରୀମା' ଯେତେବେଳେ କାଶୀରେ ଥିଲେ, ସେତେବେଳେ ଜଣେ ନେପାଳୀ ସାଧିକା ତାଙ୍କ ପାଖକୁ ଆସୁଥିଲେ । ସେ ନାନା ପ୍ରକାର ବ୍ରତାନୁଷ୍ଠାନ ଜାଣିଥିଲେ । ମାତାଠାକୁରାଣୀଙ୍କର ମାନସିକ ଅବସ୍ଥା ଦେଖି ସେ ପରାମର୍ଶ ଦେଲେ, ''ମାତାଜୀ, ପଞ୍ଚତପା କର ।'' ସାଧିକାଙ୍କ କଥା ଶୁଣି ଶ୍ରୀମା'ଙ୍କର ଚିନ୍ତାସ୍ରୋତ ନବଧାରାରେ ପ୍ରବାହିତ ହେବାକୁ ଲାଗିଲା । ସେ ଭାବିଲେ ବାହାରର ତୀବ୍ର ଅଗ୍ନିତାପରେ ଯଦି ମନର ତାପ ନିର୍ବାପିତ ହୁଏ, ତେବେ ତାହା ହିଁ ଗ୍ରହଣଯୋଗ୍ୟ । ଶ୍ରୀଶ୍ରୀଠାକୁର ତାଙ୍କୁ କହିଥିଲେ, ''ତୁମକୁ ବଞ୍ଚି ରହିବାକୁ ହେବ—ତୁମେ ଗଲେ ଚଳିବ ନାହିଁ ।'' ତେଣୁ ଶରୀର ରକ୍ଷାର ଯେ ପ୍ରୟୋଜନ ରହିଛି, ତାହା ଶ୍ରୀମା' ବୋଧ କରୁଥିଲେ । ଏହି ଦ୍ୱନ୍ଦ୍ୱରେ ପଡ଼ି ସେ ତାଙ୍କର ଦିନ କଟାଉଥିଲେ । ଏହି ସମୟରେ ଦୁଇଟି ଦିବ୍ୟ ଦର୍ଶନ ତାଙ୍କୁ ଏହି କର୍ମ ପାଇଁ ପ୍ରରୋଚିତ କରିଥିଲା । ସେ କାମାରପୁକୁରରେ ଦେଖିଥିଲେ—ଏଗାର କିମ୍ବା ବାରବର୍ଷ ବୟସର ଗୋଟିଏ ଝିଅ ତାଙ୍କ ସହିତ ସର୍ବଦା ରହିଛି । ତାହାର କେଶ ରୁକ୍ଷ, ପରିଧାନ ଗୈରିକ ଏବଂ ଗଳାରେ ରୁଦ୍ରାକ୍ଷର ମାଳା । ଶ୍ରୀଶ୍ରୀଠାକୁରଙ୍କ ଅଦର୍ଶନରୁ ତାଙ୍କ ଅନ୍ତରର ବୈରାଗ୍ୟ ଯେପରି ଏହି କନ୍ୟାର ମୂର୍ତ୍ତି ଧରି ଆସିଛି । ଠାକୁରଙ୍କ ତିରୋଧାନର କିଛି କାଳ ପରଠାରୁ ସେ

ଆଉ ଗୋଟିଏ ଦର୍ଶନ ପ୍ରାୟ ପାଉଥିଲେ । ସେ ଦେଖୁଥିଲେ, ଶ୍ମଶ୍ରୁବିମଣ୍ଡିତ ଜଣେ ସନ୍ନ୍ୟାସୀ ତାଙ୍କୁ ପଞ୍ଚତପା ବ୍ରତ ଅନୁଷ୍ଠାନ କରିବା ପାଇଁ କହୁଛନ୍ତି । ଶ୍ରୀମା' ପ୍ରଥମେ ଏହି ବିଷୟରେ ଉଦାସୀନ ଥିଲେ, କିନ୍ତୁ ସନ୍ନ୍ୟାସୀ ତାଙ୍କୁ ବାରମ୍ବାର ଅନୁରୋଧ କରିବାକୁ ଲାଗିଲେ ।

ଅବଶେଷରେ ବେଲୁଡ଼ରେ ଅବସ୍ଥାନ କାଳରେ ଶ୍ରୀମା'ଙ୍କ ମନରେ ପଞ୍ଚତପା ପାଇଁ ଆଗ୍ରହ ବଢ଼ିଲା । କିନ୍ତୁ ପଞ୍ଚତପା କ'ଣ ସେ ଜାଣିନାହାନ୍ତି, ତେଣୁ ଯୋଗୀନ୍-ମା'ଙ୍କୁ ପଚାରିଲେ । ସେ କହିଲେ, ''ବେଶ୍ ତ ମା', ମୁଁ ବି କରିବି ।'' ଉଭୟଙ୍କ ପାଇଁ ପଞ୍ଚତପା ଅନୁଷ୍ଠାନର ଆୟୋଜନ ହେଲା । ଛାତ ଉପରେ ମାଟି ପକାଇ ପାଞ୍ଚ ହାତ ଅନ୍ତରରେ ଘଷି ଜଳାଇ ଚାରିଟି ଅଗ୍ନିକୁଣ୍ଡ ପ୍ରସ୍ତୁତ ହେଲା । ଅଗ୍ନିର ପରିଧି ବେଶ୍ ବଡ଼ ଏବଂ ତାହା ଦାଉ ଦାଉ କରି ଜଳିବାକୁ ଲାଗିଲା ଏବଂ ତା'ଉପରେ ରହିଛି ଗ୍ରୀଷ୍ମ କାଳର ମାର୍ତ୍ତଣ୍ଡ । ଗଙ୍ଗାରେ ସ୍ନାନ କରି ଆସି ସେହି ପାଞ୍ଚୋଟି ଅଗ୍ନିର ଭୟାବହ ରୂପ ଦେଖି ଶ୍ରୀମା' ଭାବିଲେ, ଏହି ବ୍ରତ-ଅନୁଷ୍ଠାନ କ'ଣ ସମ୍ଭବ ହେବ ? ଯୋଗୀନ୍-ମା' ସାହସ ଦେଇ କହିଲେ, ''ମା' ପଶିଯାଅ, ଡର କ'ଣ ?'' ଠାକୁରଙ୍କୁ ସ୍ମରଣ କରି ଶ୍ରୀମା' ସେହି ଅଗ୍ନିକୁଣ୍ଡର ମଧ୍ୟ ସ୍ଥଳରେ ଆସନ ଗ୍ରହଣ କଲେ । ଯୋଗୀନ୍-ମା' ପାଖରେ ବସିଲେ । ଅଗ୍ନି ଭିତରେ ପ୍ରବେଶ କରି ଶ୍ରୀମା' ବୋଧ କଲେ ଯେପରି କି ଅଗ୍ନିର କୌଣସି ତେଜ ନାହିଁ । ସୂର୍ଯ୍ୟ କ୍ରମଶଃ ଉପରକୁ ଉଠି ମଧ୍ୟାହ୍ନର ଅଗ୍ନିବର୍ଷଣ କରି ଅବଶେଷରେ ପଶ୍ଚିମ ଦିଗ୍‌ବଳୟରେ ଲୀନ ହେଲା । ସେତେବେଳେ ଶ୍ରୀମା' ସହଚରୀଙ୍କ ସହିତ ସେହି ଅଗ୍ନିକୁଣ୍ଡ ଭିତରୁ ଉଠି ଆସିଲେ । ଏହି ଭାବରେ କ୍ରମାନ୍ୱୟରେ ସାତଦିନ ଉଦୟାସ୍ତ ତପସ୍ୟା ଚାଲିଲା—ଦେହରୁ ବର୍ଣ୍ଣ ଝଲସି ଯାଇ ଅଙ୍ଗାରବର୍ଣ୍ଣ ହେଲା । ମା'ଙ୍କ ମନର ତାପ ବହୁପରିମାଣରେ ଶୀତଳ ହେଲା । ଗୈରିକପରିହିତା କିଶୋରୀ ମଧ୍ୟ ଚିରଦିନ ପାଇଁ ବିଦାୟ ନେଲା ।

ବିଷମ ଅଗ୍ନିପରୀକ୍ଷାରେ ଶ୍ରୀମା' ଉତ୍ତୀର୍ଣ୍ଣ ହେଲେ । ଅଥଚ ପରବର୍ତ୍ତୀ କାଳରେ ଭକ୍ତମାନଙ୍କ ସହିତ କଥା-ପ୍ରସଙ୍ଗରେ ଏହି ପଞ୍ଚତପାକୁ ସେ ଅତି ସାଧାରଣ ଜିନିଷ ବୋଲି ବର୍ଣ୍ଣନା କରିଛନ୍ତି । ଜଣେ ଭକ୍ତ ପ୍ରଶ୍ନ କଲେ, ତପସ୍ୟାର କ'ଣ ପ୍ରୟୋଜନ ? ମା' କହିଲେ, ''ତପସ୍ୟାର ପ୍ରୟୋଜନ ଅଛି । ....ପାର୍ବତୀ ମଧ୍ୟ ଶିବଙ୍କ ପାଇଁ ତପସ୍ୟା କରିଥିଲେ ।...ଏହି ସବୁ କରିବା ଲୋକଶିକ୍ଷା ପାଇଁ । ନ ହେଲେ ଲୋକେ କହିବେ, 'ସାଧାରଣଙ୍କ ପରି ଖାଏ ପିଏ ରହେ ।' ଆଉ ପଞ୍ଚତପା ଇତ୍ୟାଦି ଝିଅମାନଙ୍କ ପାଇଁ—ଝିଅମାନେ ଯେପରି ବ୍ରତ କରନ୍ତି ? ଠାକୁର ସବୁ ସାଧନା କରିଛନ୍ତି । ଠାକୁର କହୁଥିଲେ, 'ମୁଁ ଛାଞ୍ଚ କରି ଯାଉଛି, ତୁମେ ମାନେ ଛାଞ୍ଚରେ ଢାଳି ମୂର୍ତ୍ତି ତିଆରି କର ।'' ଅନ୍ତରଙ୍ଗ ଭକ୍ତମାନେ ଜାଣିବାକୁ ଚାହିଁଲେ, ''ଆପଣଙ୍କର ଆଉ ଏତେ କରିବା କ'ଣ ଦରକାର ।'' ମା' ଉତ୍ତର

ଦେଲେ, ''ବାବା, ତୁମମାନଙ୍କ ପାଇଁ । ପିଲାମାନେ କଅଣ ଏତେ କଷ୍ଟ କରି ପାରିବେ ? ତେଣୁ ଏସବୁ କରିବାକୁ ହୁଏ ।''

ପଞ୍ଚତପା କରି ପ୍ରାଣର ଜ୍ୱାଳା ଲିଭିଲେ ସୁଦ୍ଧା ଶରୀରଧାରଣର ପ୍ରୟୋଜନ ବିଷୟରେ ସେ ନିଃସନ୍ଦିଗ୍ଧ ହୋଇ ନ ଥିଲେ । ଏକ ଅଭିନବ ଦର୍ଶନ ଲାଭ କରି ତାହା ମଧ୍ୟ ତିରୋହିତ ହେଲା । ସେଦିନ ପୂର୍ଣ୍ଣିମାରାତି । ବିସ୍ତୃତ ଜାହ୍ନବୀବକ୍ଷର ଜ୍ୟୋତ୍ସ୍ନା, ମୃଦୁ ପବନରେ ଗଳିତ ରଜତ ପରି ନୃତ୍ୟ କରୁଛି । ଶ୍ରୀମା' ଉଦ୍ୟାନବାଟୀରୁ ଗଙ୍ଗାଘାଟ ଉପରେ ବସି ମୁଗ୍ଧନେତ୍ରରେ ସୁରଧୁନୀର ଅପୂର୍ବ ଶୋଭା ଦର୍ଶନ କରୁଛନ୍ତି—ମନରେ ଅନ୍ୟ କୌଣସି ଚିନ୍ତା ନାହିଁ । ଅକସ୍ମାତ୍ ଦେଖିଲେ, ଶ୍ରୀରାମକୃଷ୍ଣ ପଛପଟୁ ଆସି ଦ୍ରୁତ ବେଗରେ ଗଙ୍ଗାକୂଳକୁ ଓହ୍ଲାଇଲେ ଏବଂ ତାଙ୍କ ପବିତ୍ର ଦେହ ଭାଗୀରଥିର ପାପହାରୀ ପବିତ୍ର ନୀରରେ ଲୀନ ହେଲା । ଶ୍ରୀମା' ସ୍ତମ୍ଭିତ ହୋଇ ଅପଲକ ଦୃଷ୍ଟିରେ ଚାହିଁ ରହିଛନ୍ତି; ଏପରି ସମୟରେ ଆଚାର୍ଯ୍ୟ ସ୍ୱାମୀ ବିବେକାନନ୍ଦ ହଠାତ୍ ଆସି ''ଜୟ ରାମକୃଷ୍ଣ'' କହି କହି ଦୁଇହାତରେ ସେହି ବ୍ରହ୍ମବାରି ନେଇ ଚତୁର୍ଦ୍ଦିଗରେ ଅଗଣିତ ନରନାରୀଙ୍କ ମସ୍ତକରେ ସିଞ୍ଚନ କରିବାକୁ ଲାଗିଲେ । ଶ୍ରୀମା' ଚାହିଁ ଦେଖିଲେ, ସହସ୍ର ସହସ୍ର ଜନସାଧାରଣ ସେହି ସ୍ପର୍ଶରେ ସଦ୍ୟୋମୁକ୍ତି ଲାଭ କରୁଛନ୍ତି । ଦୃଶ୍ୟଟି ତାଙ୍କର ଏତେ ଜୀବନ୍ତ ବୋଧ ହେଲା ଯେ, କିଛିଦିନ ପର୍ଯ୍ୟନ୍ତ ଏହା ଯେପରି ତାଙ୍କର ନୟନ ସମ୍ମୁଖରେ ଭାସୁଥିଲା; ସେଥିପାଇଁ ଗଙ୍ଗାବାରିରେ ଲୀନ ହୋଇଥିବା ଠାକୁରଙ୍କ ଦିବ୍ୟ ଦେହରେ ପଦସ୍ପର୍ଶ ହେବ ଭାବି ସେ କେତେଦିନ ଗଙ୍ଗାସ୍ନାନ କରିପାରିଲେ ନାହିଁ । ଏହି ଅଲୌକିକ ଦର୍ଶନ ମାତାଠାକୁରାଣୀଙ୍କ ମନରେ ଯୁଗାବତାରଙ୍କର ଲୀଳାର ତାତ୍ପର୍ଯ୍ୟ ସମ୍ପୂର୍ଣ୍ଣଭାବରେ ଉଦ୍‌ଘାଟିତ କଲା ଏବଂ ଏହାର ମର୍ମ ଉପଲବ୍‌ଧି କରି ତାଙ୍କର ବିଶ୍ୱାସ ହେଲା ଯେ, ଏହି ଦିବ୍ୟ ଲୀଳାର ପୁଷ୍ଟିବିଧାନ ପାଇଁ ନରଦେହରେ ରହିବାର ବିଶେଷ ପ୍ରୟୋଜନ ଅଛି ।

ଏହି ଗୃହରେ ଦିନକର ଅଦ୍ଭୁତ ଘଟଣା ସମସ୍ତଙ୍କୁ ବିମୋହିତ କରିଥିଲା । ଏହି ଘରେ ନାଗମହାଶୟ (ଶ୍ରୀଦୁର୍ଗାଚରଣ ନାଗ—ଠାକୁରଙ୍କର ଜଣେ ଗୃହୀ ଭକ୍ତ) ଶ୍ରୀମା'ଙ୍କର ପ୍ରଥମ ଦର୍ଶନ ଲାଭ କରିଥିଲେ । ନାଗମହାଶୟ ଶ୍ରୀମା'ଙ୍କୁ ସାକ୍ଷାତ୍ ଭଗବତୀ ବୋଲି ଶ୍ରଦ୍ଧା କରୁଥିଲେ । ସେ ଯେଉଁ ଦିନ ଦର୍ଶନ ପାଇଁ ଆସିଲେ ସେଦିନ ଏକାଦଶୀ । ଶ୍ରୀମା' ଆହାରରେ ବସିଛନ୍ତି । ସେତେବେଳେ କୌଣସି ପୁରୁଷ ଭକ୍ତ ଶ୍ରୀମା'ଙ୍କର ସାକ୍ଷାତ୍ ଦର୍ଶନ ପାଉ ନ ଥିଲେ । ଦୁଆର ବନ୍ଧରେ ମୁଣ୍ଡ ଛୁଆଇଁ ପ୍ରଣାମ କଲେ ପରିଚାରିକା ଶ୍ରୀମା'ଙ୍କୁ ଯାଇ କହୁଥିଲା, ''ମା', ତୁମକୁ ଅମୁକ ବାବୁ ପ୍ରଣାମ କରୁଛନ୍ତି'' ଏବଂ ଶ୍ରୀଶ୍ରୀମା' ତାଙ୍କୁ ଆଶୀର୍ବାଦ ଜଣାଉଥିଲେ । ସେଦିନ ପରିଚାରିକା ଆସି କହିଲା, ''ନାଗମହାଶୟ କିଏ ? ସେ ପ୍ରଣାମ କରୁଛନ୍ତି; କିନ୍ତୁ ମୁଣ୍ଡ ଏତେ ଜୋର୍‌ରେ ପିଟୁଛନ୍ତି ଯେ ମନେ ହେଲା

ରକ୍ତ ବାହାରିବ । ମହାରାଜ (ସ୍ୱାମୀ ଯୋଗାନନ୍ଦ) କେତେଥର କହିଲେ ଏପରି ନ କରିବାକୁ, କିନ୍ତୁ କୌଣସି ବାକ୍ୟ ନାହିଁ—ଯେପରି ଚେତା ନାହିଁ । ସେ ପାଗଳ ନା କ'ଣ ?'' ଶ୍ରୀମା' ଏହି ତନ୍ମୟ ଭକ୍ତଙ୍କ କଥା ଶୁଣି ସ୍ନେହରେ ବିଗଳିତ ହେଲେ ଏବଂ ପରିଚାରିକାକୁ କହିଲେ, ''ଯୋଗେନ୍‌କୁ କୁହ ତାଙ୍କୁ ଏଠାକୁ ନେଇ ଆସିବ ।'' ତାଙ୍କୁ ଯୋଗାନନ୍ଦଜୀ ନିଜେ ଧରି ନେଇ ଆସିଲେ । ମା' ଦେଖିଲେ, ନାଗମହାଶୟଙ୍କ କପାଳ ଫୁଲି ଯାଇଛି, ଆଖିରୁ ଅଶ୍ରୁ ଝରୁଛି, ଗୋଡ଼ ଏଠି ସେଠି ପଡୁଛି, ଅଶ୍ରୁ ଯୋଗୁଁ ଶ୍ରୀମା'ଙ୍କୁ ସେ ଦେଖି ମଧ୍ୟ ପାରୁନାହାନ୍ତି—ନାଗମହାଶୟ ଯେପରି ଏ ଜଗତରେ ନାହାନ୍ତି । ଶ୍ରୀମା' ତାଙ୍କର ଚିର ଅଭ୍ୟସ୍ତ ସଙ୍କୋଚ ଭୁଲିଯାଇ ତାଙ୍କ ଭକ୍ତି-ବିହ୍ୱଳ ସନ୍ତାନକୁ ଧରି ବସାଇଲେ । ନାଗମହାଶୟଙ୍କ ମୁହଁରୁ ବାହାରୁଥାଏ କେବଳ 'ମା', ମା' ଶବ୍ଦ—ଯେପରି ଉନ୍ମାଦ, ଅଥଚ ଶାନ୍ତ ଏବଂ ଧୀର ସ୍ଥିର । ଶ୍ରୀମା' ନିଜ ହାତରେ ତାଙ୍କ ଅଶ୍ରୁ ପୋଛିଦେଲେ; ସମ୍ମୁଖରେ ଏକାଦଶୀର ଆହାର୍ଯ୍ୟ ଥିଲା—ଲୁଚି, ମିଷ୍ଟାନ୍ନ ଓ ଫଳ—ସେଥିରୁ କିଛି ନିଜ ମୁହଁରେ ଦେଇ ସ୍ୱହସ୍ତରେ ନାଗମହାଶୟଙ୍କୁ ଖୁଆଇ ଦେବାକୁ ଲାଗିଲେ । କିନ୍ତୁ ନାଗମହାଶୟଙ୍କ ମନ ସେତେବେଳେ ଅନ୍ତର୍ମୁଖୀ—ମୁହଁରେ ଖାଦ୍ୟ ଦେଲେ ମଧ୍ୟ ଖାଇପାରିଲେ ନାହିଁ; କେବଳ 'ମା, ମା' କହୁଛନ୍ତି ଏବଂ ଶ୍ରୀମା'ଙ୍କ ପାଦ ସ୍ପର୍ଶ କରୁଅଛନ୍ତି । ମା'ଙ୍କୁ ପରିଚାରିକାମାନେ କହିଲେ, ''ମା', ତୁମର ତ ଖାଇବା ହେଲା ନାହିଁ, ମହରାଜଙ୍କୁ କହିବା ଏହାଙ୍କୁ ନେଇଯିବେ ।'' ମା' କହିଲେ, ''ରୁହ, ଟିକିଏ ସ୍ଥିର ହେଉ ।'' ଶ୍ରୀମା' କିଛି ସମୟ ତାଙ୍କ ଦେହରେ ଓ ମୁଣ୍ଡରେ ହାତ ବୁଲାଇ ଦେବାରୁ ଓ ଠାକୁରଙ୍କ ନାମ ଉଚ୍ଚାରଣ କରିବାରୁ ତାଙ୍କର ଚେତା ଆସିଲା । ସେତେବେଳେ ମା' ଖାଇବାକୁ ବସିଲେ ଏବଂ ଅବୋଧ ନାଗମହାଶୟଙ୍କୁ ମଧ୍ୟ ଖୁଆଇବାକୁ ଲାଗିଲେ । ଆହାର ଶେଷରେ ଯେତେବେଳେ ନାଗମହାଶୟଙ୍କୁ ଧରି ତଳକୁ ଓହ୍ଲାଉଥିଲେ, ସେତେବେଳେ ଶ୍ରୀମା'ଙ୍କୁ କେବଳ କହୁଥାଆନ୍ତି, ''ନାହଂ, ନାହଂ, ତୁହୁଁ, ତୁହୁଁ ।'' ଯେଉଁମାନେ ନିକଟରେ ଥିଲେ ସେମାନଙ୍କର ଦୃଷ୍ଟି ଆକର୍ଷଣ କରି ଶ୍ରୀମା' କହିଲେ, ''ଦେଖ କିପରି ବିଶ୍ୱାସ ?'' ମାତାଠାକୁରାଣୀଙ୍କ ଶ୍ରୀହସ୍ତରୁ ପ୍ରସାଦ ପାଇ ଆନନ୍ଦରେ ଆତ୍ମହରା ହୋଇ ନାଗମହାଶୟ କହିବାକୁ ଲାଗିଲେ, ''ବାପାଙ୍କଠାରୁ ମା' ଦୟାଳୁ, ବାପାଙ୍କଠାରୁ ମା' ଦୟାଳୁ ।''

ନାଗମହାଶୟଙ୍କ ପ୍ରତି ଶ୍ରୀମା'ଙ୍କର ବାତ୍ସଲ୍ୟପୂର୍ଣ୍ଣ ବ୍ୟବହାରର ଆଉ ଗୋଟିଏ ଦୃଷ୍ଟାନ୍ତ ରହିଛି । ଥରେ ଗୋଟିଏ ମଇଳା ଜୀର୍ଣ୍ଣ ବସ୍ତ୍ର ପିନ୍ଧି ଏବଂ ନିଜ ବଗିଚାରୁ ଝୁଡ଼ିଏ ଆମ୍ବ ମୁଣ୍ଡାଇ ସେ ମା'ଙ୍କ ନିକଟରେ ଉପସ୍ଥିତ ହେଲେ । ମା'ଙ୍କ ଘରେ ପହଞ୍ଚି ସେ ଝୁଡ଼ିନେଇ ଘୂରି ବୁଲିବାକୁ ଲାଗିଲେ—କାହାରିକୁ ତାହା ଦେଲେ ନାହିଁ । ସେ ଠିକ୍ କରିଥିଲେ ମା'ଙ୍କୁ ବସାଇ ଖୁଆଇବେ, କିନ୍ତୁ କାହାକୁ କିଛି କହିଲେ ନାହିଁ । ଅବଶେଷରେ ସ୍ୱାମୀ ଯୋଗାନନ୍ଦ ଖବର ପଠାଇଲେ,

''ମା'ଙ୍କୁ କୁହ, ନାଗମହାଶୟ ଆମ୍ବ ନେଇ ଆସିଛନ୍ତି, କାହାକୁ କିଛି କହୁ ନାହାନ୍ତି କି କାହାକୁ ତାହା ଦେଉ ନାହାନ୍ତି ।'' ଶ୍ରୀମା' ଶୁଣି କହିଲେ—ଏଠାକୁ ପଠାଇ ଦିଅ । ନାଗମହାଶୟ ଝୁଡ଼ି ମୁଣ୍ଡରେ ନେଇ ଆସି ପହଞ୍ଚିଲେ । ଜଣେ ବ୍ରହ୍ମଚାରୀ ତାହା ଓହ୍ଲାଇ ନେବାରୁ ସେ ମାତା ଠାକୁରାଣୀଙ୍କର ଚରଣ ବନ୍ଦନା କଲେ । ମା' ଦେଖିଲେ, ସେ ଏଥର ମଧ୍ୟ ପୂର୍ବଥର ପରି ବିହ୍ୱଳ । ମୁହଁରେ ଶ୍ରୀଶ୍ରୀଠାକୁରଙ୍କ ନାମ ଏବଂ 'ମା' 'ମା' ଶବ୍ଦ, ବକ୍ଷ ଅଶ୍ରୁରେ ଭାସୁଛି । ଠାକୁର ପୂଜା ହୋଇ ନ ଥାଏ । ଆମ୍ବ କାଟି ଠାକୁରଙ୍କୁ ଭୋଗ ଦିଆଗଲା । ପୂଜା ପରେ ଯୋଗୀନ୍-ମା' ଆସି ଗୋଟିଏ ଶାଳ ପତ୍ରରେ ଶ୍ରୀମା'ଙ୍କୁ ପ୍ରସାଦ ଦେଲେ । ମା' କିଛି ଗ୍ରହଣ କଲେ ଏବଂ ଗୋଲାପ-ମା'ଙ୍କୁ କହିଲେ,—''ଆଉ ଗୋଟିଏ ଶାଳ ପତ୍ର ଦିଅ ।'' ପତ୍ରରେ କିଛି ପ୍ରସାଦ ରଖି ସେ ନାଗମହାଶୟଙ୍କୁ କହିଲେ—ଖାଅ । କିନ୍ତୁ କିଏ ଖାଇବ ? ତାଙ୍କ ଦେହରେ ଜ୍ଞାନ ନାହିଁ—ହାତ ଯେପରି ଅବଶ ହୋଇଯାଇଛି । ଶ୍ରୀମା' ତାଙ୍କ ହାତ ଧରି ଅନେକ ବୁଝାଇ ସୁଝାଇ କହିଲେ । କିନ୍ତୁ ସେ ଖାଇ ପାରିଲେ ନାହିଁ—ଫାଳେ ଆମ୍ବ ନେଇ ମୁଣ୍ଡରେ ଘଷିବାକୁ ଲାଗିଲେ । ଅବଶେଷରେ ସେବକ ନାଗମହାଶୟଙ୍କୁ ତଳକୁ ନେଇଗଲେ ।

ଆଉ ଦିନକର ଘଟଣା । ଶ୍ରୀମା' ସେତେବେଳେ ବାଗବଜାରର ଗଙ୍ଗାତୀରରେ ରହୁଥିଲେ । ନାଗମହାଶୟ ଦର୍ଶନ କରିବାକୁ ଆସିବାରୁ ତାଙ୍କୁ ବସାଇ ଗୋଟିଏ ଶାଳ ପତ୍ରରେ ପ୍ରସାଦ ଦେଲେ । ନାଗମହାଶୟ ଭକ୍ତିର ଆତିଶଯ୍ୟ ହେତୁ ପ୍ରସାଦ ସହିତ ପତ୍ରକୁ ମଧ୍ୟ ଖାଇ ପକାଇଲେ । ଆଉଥରେ ମା' ତାଙ୍କୁ ପିନ୍ଧିବା ପାଇଁ ଗୋଟିଏ ଧୋତି ଦେଇଥିଲେ, କିନ୍ତୁ ନାଗମହାଶୟ ତାହା ନ ପିନ୍ଧି ମୁଣ୍ଡରେ ବାନ୍ଧି ରଖିଲେ । ନାଗମହାଶୟଙ୍କ ପ୍ରତି ଶ୍ରୀମା'ଙ୍କର ଅପାର ସ୍ନେହ ତାଙ୍କ ଦେହତ୍ୟାଗ ପରେ ମଧ୍ୟ ପ୍ରକାଶିତ ହେଉଥିଲା । ଦିନେ ଜଣେ ଭକ୍ତ ଦେଖିଲେ, ମା' ତାଙ୍କ ଶୟନଗୃହ କାନ୍ଥରେ ଥିବା ସ୍ୱାମୀଜୀ, ଗିରିଶବାବୁ ଓ ନାଗମହାଶୟଙ୍କ ଛବିଗୁଡ଼ିକୁ ଗୋଟି ଗୋଟି କରି ପୋଛି, ସେଥିରେ ଚନ୍ଦନର ଟିପା ଦେଲେ । ଶେଷରେ ନାଗମହାଶୟଙ୍କ ଛବିକୁ ଚାହିଁରହି କହିଲେ, ''କେତେ ଭକ୍ତ ଆସିଲେ, କିନ୍ତୁ ଏପରି ଆଉ କାହାକୁ ଦେଖିଲି ନାହିଁ !''

୧୩୦୦ ସାଲ ପୌଷ ମାସରେ ବଳରାମ ବାବୁଙ୍କ କନ୍ୟାର ମୃତ୍ୟୁ ହେଲା । ବଳରାମ ବାବୁଙ୍କ ସ୍ତ୍ରୀ କୃଷ୍ଣଭାବିନୀ ଦେବୀ ଶୋକରେ ଜର୍ଜରିତ ହୋଇପଡ଼ିଲେ । ସ୍ଥିର ହେଲା ବାୟୁ ପରିବର୍ତ୍ତନ ପାଇଁ ତାଙ୍କୁ ବିହାର ଅନ୍ତର୍ଗତ 'ଆରା' ସହର ନିକଟବର୍ତ୍ତୀ 'କୈଲୋୟାର'କୁ ନିଆଯିବ । କିନ୍ତୁ କୃଷ୍ଣଭାବିନୀ ଦେବୀ ଶ୍ରୀମା'ଙ୍କ ବ୍ୟତୀତ ଯିବେ ନାହିଁ ବୋଲି କହିଲେ । ଭକ୍ତମାନଙ୍କ ଏକାନ୍ତ ଅନୁରୋଧରେ ଶ୍ରୀମା' କଲିକତାକୁ ଆସିଲେ ଏବଂ କୃଷ୍ଣଭାବିନୀ ଦେବୀ, ତାଙ୍କ ଜନନୀ, ଗୋଲାପ-ମା', ସ୍ୱାମୀ ସାରଦାନନ୍ଦ, ସ୍ୱାମୀ ଯୋଗାନନ୍ଦ ଓ ସ୍ୱାମୀ

ତ୍ରିଗୁଣାତୀତାନନ୍ଦଙ୍କ ସହିତ କୈଲୋୟାର ଯାତ୍ରା କଲେ । ଏଠାରେ ସେମାନେ ଦୁଇମାସ କାଳ ଅତିବାହିତ କରିଥିଲେ । କୈଲୋୟାରର ଶାନ୍ତ ବନ୍ୟ ପରିବେଶ ସମସ୍ତଙ୍କୁ ଆନନ୍ଦ ଦେଇଥିଲା ।

ସେଠାରୁ ଫେରି ମା' ଗାଁକୁ ଚାଲିଗଲେ ଏବଂ କେତେମାସ ସେଠାରେ ରହି ବେଲୁଡ଼ମଠକୁ ଫେରି ଆସିଲେ । ଏହା ୧୯୮୦ ଖ୍ରୀଷ୍ଟାବ୍ଦର ଘଟଣା । ସ୍ୱାମୀ ପ୍ରେମାନନ୍ଦଙ୍କ ଜନନୀ ମାତଙ୍ଗିନୀଦେବୀ ଶ୍ରୀମା'ଙ୍କୁ ସାଦର ଆମନ୍ତ୍ରଣ ପଠାଇଲେ—କେତେବର୍ଷ ପରେ ସେହି ବର୍ଷ ତାଙ୍କ ଘରେ ଦୁର୍ଗାପୂଜା ପୁନର୍ବାର ଆୟୋଜିତ ହେବ । ଶ୍ରୀମା'ଙ୍କୁ ପାଇ ସମସ୍ତେ ବିଶେଷ ଆନନ୍ଦିତ ହେଲେ । ପୂଜା ପରେ ମା' ଜୟରାମବାଟୀକୁ ଚାଲିଗଲେ ।

ଏହି ବର୍ଷର ଶେଷଭାଗରେ ଜନନୀ ଓ ଭାଇମାନଙ୍କ ସହିତ ଶ୍ରୀମା' ତୀର୍ଥ-ଭ୍ରମଣରେ ବାହାରିଲେ । ସ୍ୱାମୀ ଯୋଗାନନ୍ଦ, ଗୋଲାପ-ମା' ଓ ଯୋଗୀନ୍-ମା' ତାଙ୍କ ସହିତ ଥିଲେ । କାଶୀ ଦର୍ଶନ କରି ବୃନ୍ଦାବନକୁ ଗଲେ ଓ ସେଠାରେ ବଳରାମବାବୁଙ୍କ 'କାଲାବାବୁଙ୍କ କୁଞ୍ଜ'ରେ ଦୁଇମାସ କାଳ କଟାଇ କଲିକତାକୁ ଫେରି ଆସିଲେ । ବୃନ୍ଦାବନରୁ ଶ୍ରୀମା' ଗୋଟିଏ ପିତ୍ତଳ ନିର୍ମିତ ବାଳ-ଗୋପାଳ ମୂର୍ତ୍ତି ଆଣିଥିଲେ । ମୂର୍ତ୍ତିଟି ଜୟରାମବାଟୀରେ ଅପୂଜିତ ଅବସ୍ଥାରେ ରହିଥିଲା । ଦିନେ ଶ୍ରୀମା' ଶୋଇଛନ୍ତି । ସେ ଦେଖିଲେ, ଶିଶୁ ଗୋପାଳ ଆଣ୍ଠେଇ ଆଣ୍ଠେଇ ଖଟ ପାଖକୁ ଆସିଛନ୍ତି ଓ ତାଙ୍କୁ କହୁଛନ୍ତି, ''ତୁମେ ମୋତେ ଆଣି ପକାଇ ରଖିଛ, ଖାଇବାକୁ ଦିଅ ନାହିଁ, ପୂଜା ବି କର ନାହିଁ; ତୁମେ ମୋତେ ପୂଜା ନ କଲେ ଆଉ କେହି କରିବେ ନାହିଁ ।'' ଶ୍ରୀମା' ତତ୍କ୍ଷଣାତ୍ ଗୋପାଳକୁ ବାହାର କରି ତାଙ୍କ ଚିବୁକ ସ୍ପର୍ଶ କରି ଚୁମ୍ବନ କଲେ । ପୁଷ୍ପାଞ୍ଜଳି ଦେଇ ତାଙ୍କୁ ନିତ୍ୟପୂଜିତ ଶ୍ରୀରାମକୃଷ୍ଣଙ୍କ ଛବି ପାର୍ଶ୍ୱରେ ରଖିଲେ । ଗୋପାଳ ତଦବଧି ପୂଜା ପାଇବାକୁ ଲାଗିଲେ ।

ଶ୍ରୀମା' କଲିକତାରେ ବଳରାମ ବାବୁଙ୍କ ଭବନ ନିକଟସ୍ଥ ଗୋଟିଏ ଘରେ ମାସେ କାଳ ରହିଥିଲେ (୧୩୦୩ ସାଲ) । ସେଠାରେ ଦିନେ ମଠର ସନ୍ନ୍ୟାସୀମାନଙ୍କ ଉଦ୍ଦେଶ୍ୟରେ ଲିଖିତ ସ୍ୱାମୀଜୀଙ୍କର ଗୋଟିଏ ପତ୍ର ଶ୍ରୀମା'ଙ୍କୁ ପଢ଼ି ଶୁଣାଇ ଦିଆଗଲା । ପତ୍ରରେ ନର-ନାରାୟଣଙ୍କ ସେବା କରିବାକୁ ସ୍ୱାମୀଜୀ ଉଦାତ୍ତ ଆହ୍ୱାନ ଜଣାଇଛନ୍ତି । ପତ୍ର ଶୁଣି ମା' କହିଲେ, ''ନରେନ୍ ହେଉଛି ଠାକୁରଙ୍କର ହାତର ଯନ୍ତ୍ର । ସେ ତାଙ୍କ ପିଲାମାନଙ୍କଦ୍ୱାରା ଓ ଭକ୍ତମାନଙ୍କଦ୍ୱାରା ତାଙ୍କ କାମ କରାଇବେ ବୋଲି, ଜଗତର କଲ୍ୟାଣ କରିବେ ବୋଲି ନରେନ୍ଦ୍ର ମାଧ୍ୟମରେ ଏସବୁ କଥା ଲେଖାଉଛନ୍ତି ।''

ପରେ ଶ୍ରୀମା' ଗଙ୍ଗାତୀରବର୍ତ୍ତୀ ଗୋଟିଏ ଭଡ଼ାଘରେ ରହିବାକୁ ଲାଗିଲେ । ତଳେ ହଳଦୀ ଗୋଦାମ, ଦ୍ୱିତଳ ଓ ତ୍ରିତଳ ବାସୋପଯୋଗୀ ଥିଲା । ଶ୍ରୀମା' ସ୍ତ୍ରୀ-

ଭକ୍ତମାନଙ୍କ ସହିତ ତ୍ରିତଳରେ ବାସ କରୁଥିଲେ । ସେଠାରୁ ପରିଷ୍କାର ଗଙ୍ଗାଦର୍ଶନ କରାଯାଏ । ଶ୍ରୀମା'ଙ୍କ ସେବା ପାଇଁ ସ୍ୱାମୀ ଯୋଗାନନ୍ଦ ଓ କେତେଜଣ ସାଧୁ ବ୍ରହ୍ମଚାରୀଙ୍କ ସହିତ ସ୍ୱାମୀ ବ୍ରହ୍ମାନନ୍ଦଜୀ ସ୍ୱୟଂ ଦ୍ୱିତଳରେ ବାସ କରିବାକୁ ଲାଗିଲେ ।

୧୮୯୭ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମକାଳଠାରୁ ଶ୍ରୀମା' ୧୦/୨ ବୋଷ୍‌ପଡ଼ା ଲେନ୍‌ରେ ରହିବାକୁ ଲାଗିଲେ । ମାର୍ଚ୍ଚ ୧୪ ତାରିଖ ଦିନ ସ୍ୱାମୀ ବିବେକାନନ୍ଦ ବହୁ ଭକ୍ତଙ୍କ ସହିତ ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ ବାଗ୍‌ବଜାରକୁ ଆସିଲେ । ମେ' ମାସରେ ଶ୍ରୀମା' କେଦାରନାଥ ଓ ବଦ୍ରୀନାଥ ଦର୍ଶନ କରିବାକୁ ଯିବାର ପ୍ରସ୍ତାବ ଉଠିଲା; କିନ୍ତୁ ନାନା କାରଣରୁ ତାହା ସମ୍ଭବ ହେଲା ନାହିଁ ।

## ମା'ଙ୍କ ଭାରବହନକାରୀ

୧୮୯୭-୯୮ ଖ୍ରୀଷ୍ଟାବ୍ଦ ଶ୍ରୀମା'ଙ୍କ ଜୀବନରେ ଓ ଶ୍ରୀରାମକୃଷ୍ଣଙ୍କ ଭାବଧାରା ପ୍ରଚାରର ଇତିହାସରେ ବିଶେଷ ଉଲ୍ଲେଖଯୋଗ୍ୟ । ସେତେବେଳେ ମା' ବାଗ୍‌ବଜାର ବୋଷ୍‌ପଡ଼ା ଲେନ୍ ୧୦/୨ ନମ୍ବର ଘରେ ବାସ କରୁଥିଲେ । ତାଙ୍କ ସେବାରେ ସ୍ୱାମୀ ଯୋଗାନନ୍ଦ ନିଯୁକ୍ତ ଥିଲେ ଏବଂ ସ୍ୱାମୀ ତ୍ରିଗୁଣାତୀତାନନ୍ଦ 'ଉଦ୍‌ବୋଧନ' ପ୍ରତିକା ପ୍ରକାଶନ ଦାୟିତ୍ୱରେ ଥିଲେ । ଅବସର ପାଇଲେ ସେ ମଧ୍ୟ ମା'ଙ୍କ ନିକଟରେ ରହୁଥିଲେ ।

ଆଚାର୍ଯ୍ୟ ସ୍ୱାମୀ ବିବେକାନନ୍ଦ ୧୮୯୭ ଖ୍ରୀଷ୍ଟାବ୍ଦ ୨୦ ଫେବୃଆରୀ ଦିନ ଆମେରିକାରୁ କଲିକତାରେ ଆସି ପହଞ୍ଚିଲେ । ଶ୍ରୀରାମକୃଷ୍ଣ ମଠର ସ୍ଥାୟୀ କେନ୍ଦ୍ର ନିର୍ମାଣ ପାଇଁ ସେ ଯେଉଁ ଅର୍ଥ ସଂଗ୍ରହ କରିଥିଲେ, ତାହାଦ୍ୱାରା ୩ ଫେବୃଆରୀ ୧୯୯୮ ଖ୍ରୀଷ୍ଟାବ୍ଦରେ ବେଲୁଡ଼ ଗ୍ରାମରେ ଗଙ୍ଗାତୀରରେ ଖଣ୍ଡିଏ ଜମି କିଣା ହେଲା । ଏହି ଜମିର ଦକ୍ଷିଣରେ ନୀଳାମ୍ବର ବାବୁଙ୍କ ଘରକୁ ଆଲମବଜାରଠାରୁ ମଠ ସ୍ଥାନାନ୍ତରିତ ହୋଇଥିଲା । ସ୍ୱାମୀ ବିଜ୍ଞାନାନନ୍ଦଙ୍କ ତତ୍ତ୍ୱାବଧାନରେ ଏପ୍ରିଲ ମାସରେ ମଠର ନିର୍ମାଣକାର୍ଯ୍ୟ ଆରମ୍ଭ ହେଲା । ଏହି ମାସର ଶେଷ ସପ୍ତାହରେ ଶ୍ରୀମା'ଙ୍କୁ ମଠ ଦେଖାଇବା ପାଇଁ ଗୋଟିଏ ନୌକା ଯୋଗେ ଅଣାଗଲା । ତାଙ୍କ ସହିତ ଥିଲେ ସ୍ୱାମୀ ଯୋଗାନନ୍ଦ, ବ୍ରହ୍ମଚାରୀ କୃଷ୍ଣଲାଲ, ଏବଂ ଗୋଲାପ-ମା' । ଡଙ୍ଗା ଘାଟରେ ଲାଗିଲା ଓ ମାଙ୍ଗଳିକ ଶଙ୍ଖଧ୍ୱନି ବାଜି ଉଠିଲା । ଶ୍ରୀମା' ଅବତରଣ କଲେ ଏବଂ ସନ୍ନ୍ୟାସୀମାନେ ତାଙ୍କ ଶ୍ରୀଚରଣ ଧୌତ କରି ତାଙ୍କୁ ଠାକୁରଘର ଅଗଣାରେ ବସାଇଲେ ଏବଂ ପଙ୍ଖା କରିବାକୁ ଲାଗିଲେ । ସେତେବେଳେ ପ୍ରଖର ଖରା । ସମସ୍ତେ ଗୋଟି ଗୋଟି ହୋଇ ଶ୍ରୀମା'ଙ୍କୁ ପ୍ରଣାମ କଲେ । ପରେ ପୂଜା କରିବା ପାଇଁ ଶ୍ରୀମା' ଠାକୁର ଘରେ ପ୍ରବେଶ କଲେ । ପୂଜାଭୋଗ ନିବେଦନ କରି ମା' ଠାକୁରଙ୍କୁ ଶୟନ ଦେଲେ । ଆହାର ଓ ଟିକିଏ ବିଶ୍ରାମ କରି ଉପରଓଳି ଚାରିଟା ସମୟରେ ମା' ଯେତେବେଳେ ଫେରିବା ପାଇଁ ବାହାରୁଛନ୍ତି, ଏପରି

ସମୟରେ ସ୍ୱାମୀ ବ୍ରହ୍ମାନନ୍ଦଜୀ ଖବର ପଠାଇଲେ, ମା' ଯେପରି ମଠର ନୂତନ ଜମିରେ ଥରେ ପଦଧୂଳି ଦେଇଯାଆନ୍ତି । ଶ୍ରୀମା' ଡଙ୍ଗାରେ ବସି ନୂତନ ଜମିକୁ ଆସିଲେ । ସେତେବେଳେ ସେଠାରେ ସ୍ୱାମୀ ବିବେକାନନ୍ଦଙ୍କର କେତେଜଣ ପାଶ୍ଚାତ୍ୟ ଶିଷ୍ୟା — ଭଗିନୀ ନିବେଦିତା, ମିସେସ୍ ବୁଲ୍ ଓ ମିସ୍ ମ୍ୟାକ୍‌ଲାଉଡ୍ ବାସ କରୁଥିଲେ । ସମ୍ବାଦ ପାଇ ସେମାନେ ଶ୍ରୀମା'ଙ୍କୁ ଅଭ୍ୟର୍ଥନା କଲେ ଏବଂ ସାଙ୍ଗରେ ନେଇ ସବୁ ବୁଲାଇ ଦେଖାଇଲେ । ଶ୍ରୀମା'ଙ୍କ ଆନନ୍ଦର ସୀମା ରହିଲା ନାହିଁ । ସବୁ ଦେଖି ସେ କହିଲେ, ''ଏତେ ଦିନରେ ପିଲାମାନଙ୍କ ପାଇଁ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ଜାଗା ହେଲା — ଠାକୁର ଏତେ ଦିନରେ ସଦୟ ହେଲେ ।'' ମଠ ଜମି ଦେଖି ସେ କଲିକତାକୁ ଫେରିଲେ ।

କାଶ୍ମୀରରେ ଅମରନାଥ ଓ କ୍ଷୀରଭବାନୀ ଦେବୀଙ୍କୁ ଦର୍ଶନ କରି ସ୍ୱାମୀଜୀ ୧୮୯୮ ଅକ୍ଟୋବର ମାସରେ ମଠକୁ ଫେରିଲେ । ସେତେବେଳେ ତାଙ୍କ ଦେହ ଭଲ ନ ଥିଲା । ମହାଷ୍ଟମୀ ପୂଜାଦିନ ସେ ସ୍ୱାମୀ ବ୍ରହ୍ମାନନ୍ଦ, ପ୍ରକାଶାନନ୍ଦ ଓ ବିମଳାନନ୍ଦଙ୍କ ସହିତ ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ ବାଗ୍‌ବଜାରକୁ ଆସିଲେ । ଶ୍ରୀମା' ତାଙ୍କ ଅଭ୍ୟାସାନୁଯାୟୀ ସମସ୍ତ ଶରୀରକୁ ଖଣ୍ଡିଏ ଚଦରରେ ଆବୃତ୍ତ କରି ଗୋଟିଏ କୋଣରେ ଛିଡ଼ା ହୋଇଥିଲେ । ମୃଦୁକଣ୍ଠରେ ଉଚ୍ଚାରିତ ତାଙ୍କର କଥାକୁ ବ୍ରହ୍ମଚାରୀ କୃଷ୍ଣଲାଲ ସ୍ପଷ୍ଟଭାବରେ କହିଦେଉଥିଲେ । ସ୍ୱାମୀଜୀ ଆସି ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ପ୍ରଣାମ କରି ଉଠିବାରୁ ଶ୍ରୀମା' ସ୍ୱାମୀଜୀଙ୍କ ମସ୍ତକରେ ତାଙ୍କ ଡାହାଣ ହାତ ସ୍ପର୍ଶ କରି ଆଶୀର୍ବାଦ କଲେ । ଶ୍ରୀମା'ଙ୍କ କୃତୀ ସନ୍ତାନ (ସ୍ୱାମୀଜୀ) କ୍ଷୁବ୍ଧ ସ୍ୱରରେ କହିଲେ, ''ମା, ଏଇ ତ ତୁମ ଠାକୁରଙ୍କ ମହିମା ! କାଶ୍ମୀରରେ ଗୋଟିଏ ଫକିରର ଚେଲା ମୋ ପାଖକୁ ଯିବା ଆସିବା କରୁଥିଲା ବୋଲି ଫକିର ମୋତେ ଶାପ ଦେଲା, 'ତିନିଦିନ ଭିତରେ ତାଙ୍କୁ (ସ୍ୱାମୀଜୀଙ୍କୁ) ଉଦରାମୟ ରୋଗରେ ଆକ୍ରାନ୍ତ ହୋଇ ଏଠାରୁ ଚାଲିଯିବାକୁ ହେବ ।' ଠିକ୍ ତାହା ହିଁ ହେଲା । ମୁଁ କାଶ୍ମୀର ଛାଡ଼ି ଚାଲିଯିବାକୁ ବାଧ୍ୟ ହେଲି । ତୁମ ଠାକୁର କିଛି କରିପାରିଲେ ନାହିଁ ।'' ଶ୍ରୀମା' ଉତ୍ତର ଦେଲେ, ''ବିଦ୍ୟା ମାନିବାକୁ ହୁଏ ବାବା ! ସେମାନେ ତ ଭାଙ୍ଗିବାକୁ ଆସନ୍ତି ନାହିଁ; ଆମ ଠାକୁର କାଶିବା, ଝିଟିପିଟି ଶବ୍ଦ ପର୍ଯ୍ୟନ୍ତ ମାନୁଥିଲେ । ମୁଁ ଶୁଣିଛି — ଶଙ୍କରାଚାର୍ଯ୍ୟ ମଧ୍ୟ ନିଜ ଶରୀରରେ ରୋଗ ପ୍ରବେଶ କରାଇଥିଲେ । ତୁମେ ତ ଜାଣ, ହଳଧାରୀଙ୍କ ଅଭିଶାପଦ୍ୱାରା ଠାକୁରଙ୍କ ମୁହଁରୁ ରକ୍ତ ପଡ଼ିଥିଲା । ତୁମ ଶରୀରରେ ରୋଗ ଆସିବା ଓ ଠାକୁରଙ୍କ ଶରୀରରେ ଆସିବା ଏକା କଥା ।'' ସ୍ୱାମୀଜୀ ତଥାପି ଅଭିମାନ କରି କହିଲେ ଯେ, ଶ୍ରୀମା' ଯେତେ କୁହନ୍ତୁ ନା କାହିଁକି, ସେ ମାନିବାକୁ ରାଜି ନୁହନ୍ତି; ବସ୍ତୁତଃ ଠାକୁର କିଛି କରିପାରିଲେ ନାହିଁ । ସେତେବେଳେ ଶ୍ରୀମା' ହସି ହସି ଉତ୍ତର ଦେଲେ, ''ନ ମାନି ଆଉ ଚାରା ଅଛି କି ବାବା ? ତୁମ ଚୁଟି ତାଙ୍କ ହାତରେ ବନ୍ଧା !'' ଏହି

କଥାର ସତ୍ୟତା ଉପଲବ୍ଧି କରି ସ୍ୱାମୀଜୀ ଚୁପ୍ ରହିଲେ ଏବଂ ଚରଣ ବନ୍ଦନା କରି ବିଦାୟ ନେଲେ ।

ଭଗିନୀ ନିବେଦିତା କୌଣସି ହିନ୍ଦୁ ଘରେ ରହି ରୀତିନୀତି ଶିଖିବାକୁ ଚାହୁଁଥିଲେ । ଏକଥା ଶୁଣି ଶ୍ରୀମା' ତାଙ୍କୁ ଆନନ୍ଦରେ ନିଜ ଘରେ ରଖିଲେ । କିଛିଦିନ ସେଠାରେ ରହି ନିବେଦିତା ନିକଟବର୍ତ୍ତୀ ଆଉ ଗୋଟିଏ ଘରକୁ ଚାଲିଗଲେ ।

କାଳୀପୂଜାର ପୂର୍ବଦିନ (୧୨ ନଭେମ୍ବର ୧୮୯୮) ନୀଳାମ୍ବର ବାବୁଙ୍କ ଉଦ୍ୟାନ ବାଟୀରେ ମଠର ସନ୍ନ୍ୟାସୀମାନେ ଯଥୋଚିତ ଆୟୋଜନ କରିଛନ୍ତି । ସକାଳେ ଶ୍ରୀମା' ନିତ୍ୟପୂଜିତ ଠାକୁରଙ୍କ ଛବିସହ ଡଙ୍ଗାରେ ଆସି ଘାଟରେ ଓହ୍ଲାଇଲେ । ସାଧୁବୃନ୍ଦ ତାଙ୍କୁ ଯତ୍ନସହକାରେ ମଠକୁ ନେଇଗଲେ । ଏଠାରୁ ସେ ନୂତନ ମଠଜମି ଦେଖିବାକୁ ଗଲେ । ସେଠାରେ ମା' ନିଜ ହାତରେ ସ୍ଥାନ ପରିଷ୍କାର କରି ଠାକୁରଙ୍କୁ ପୂଜା କଲେ । ମଠକୁ ଫେରିଆସି ପ୍ରସାଦ ଗ୍ରହଣ କଲେ । ଅପରାହ୍ନରେ ନିବେଦିତା ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସ୍ୱାମୀଜୀ, ବ୍ରହ୍ମାନନ୍ଦଜୀ ଓ ସାରଦାନନ୍ଦଜୀଙ୍କ ସହିତ ଶ୍ରୀମା' କଲିକତାକୁ ଆସିଲେ ଏବଂ ପରଦିନ ସକାଳେ ନିବେଦିତାଙ୍କ ବାସଭବନରେ ପହଞ୍ଚିଲେ । ଶ୍ରୀମା' ନିଜେ ଠାକୁରଙ୍କୁ ପୂଜା କଲେ ଏବଂ ମା'ଙ୍କ ଆଶୀର୍ବାଦ ଗ୍ରହଣ କରି ବିଦ୍ୟାଳୟର ଆରମ୍ଭ ଘୋଷିତ ହେଲା ।

ମଠଜମି ଦେଖିବା ସମୟରେ ଶ୍ରୀମା'ଙ୍କ ସହିତ ସ୍ୱାମୀଜୀ ଥିଲେ । ସେ ମା'ଙ୍କୁ ସମ୍ପୂର୍ଣ୍ଣ ଜମି ଦେଖାଇ କହିଲେ, "ମା, ତୁମେ ନିଜ ଜାଗାରେ ଏଥର ସ୍ୱଚ୍ଛନ୍ଦରେ ବିଚରଣ କର ।" ଶ୍ରୀମା' ଏହି ଜମି ସମ୍ବନ୍ଧରେ କହିଥିଲେ, "ମୁଁ କିନ୍ତୁ ବରାବର ଦେଖୁଥିଲି, ଠାକୁର ଯେପରିକି ଗଙ୍ଗା ଏପାରିର ଏହି ଜାଗାଟିରେ —ଯେଉଁଠି ବର୍ତ୍ତମାନ ମଠ ହୋଇଛି, ସେଠାରେ କଦଳୀବଗିଚା ଇତ୍ୟାଦି ମଧ୍ୟରେ ଘର କରି ରହିଛନ୍ତି ।" ମା'ଙ୍କର ଏହି ଦର୍ଶନକାଳରେ କିନ୍ତୁ ମଠର ଜମି କିଣା ହୋଇ ନ ଥିଲା ।

ନୂତନ ମଠର କାର୍ଯ୍ୟ ସମାପ୍ତ ହେଲା । ୯ ଡିସେମ୍ବର ୧୮୯୮ ଖ୍ରୀଷ୍ଟାବ୍ଦରେ ପୂଜ୍ୟପାଦ ସ୍ୱାମୀଜୀ, ଶ୍ରୀରାମକୃଷ୍ଣଦେବଙ୍କ ପୂତ ଦେହାବଶେଷପୂର୍ଣ୍ଣ 'ଆତ୍ମାରାମଙ୍କ କଳସ' ନିଜେ ବହନ କରି ଆଣି ନୂତନ ଜମିରେ ଏକ ବୃହତ୍ ବେଦୀ ଉପରେ ସ୍ଥାପନ କଲେ ଏବଂ ଯଥାବିଧି ପୂଜା ହୋମାଦି ସଂପନ୍ନ କଲେ । ଗୃହପ୍ରବେଶ କାର୍ଯ୍ୟ ସମାପ୍ତ ହେବାରୁ ଅଧିକାଂଶ ସାଧୁ ବ୍ରହ୍ମଚାରୀ ନୀଳାମ୍ବର ବାବୁଙ୍କ ବଗିଚାକୁ ଫେରିଗଲେ, କେବଳ କେତେଜଣ ସାଧୁ ନୂତନ ମଠରେ ରହିଲେ । ପରବର୍ଷ (୧୮୯୯ ଜାନୁଆରୀ ୨ ତାରିଖ ଦିନ) ସମସ୍ତେ ନୂତନ ମଠକୁ ଚାଲିଆସିଲେ । ଶ୍ରୀମା'ଙ୍କର ଇଚ୍ଛା—ତାଙ୍କ ତ୍ୟାଗୀ ସନ୍ତାନମାନଙ୍କ ପାଇଁ ଗୋଟିଏ ବାସଗୃହ ନିର୍ମିତ ହେଉ । ଆଜି ସେହି ସଂକଳ୍ପ ପୂର୍ଣ୍ଣ ହେଲା ।

ହର୍ଷରେ କିନ୍ତୁ ବିଷାଦ ଘଟିଲା । ମାର୍ଗଶିର ମାସରେ ଶ୍ରୀମା'ଙ୍କ ସେବକ ସ୍ୱାମୀ ଯୋଗାନନ୍ଦ ଅସୁସ୍ଥ ହୋଇପଡ଼ିଲେ । ଶ୍ରୀରାମକୃଷ୍ଣଙ୍କ ଆଶ୍ରିତ ଦୁଇଜଣ ଡାକ୍ତର ଶ୍ରୀଯୁକ୍ତ ବିପିନବିହାରୀ ଘୋଷ ଓ ଶ୍ରୀଯୁକ୍ତ ଶଶିଭୂଷଣ ଘୋଷ ପରୀକ୍ଷା କରି ଦେଖିଲେ ଯେ ଏହା ଗ୍ରହଣୀ ରୋଗ । ଏଲୋପାଥିକ୍ ଚିକିତ୍ସାରେ କିଛି ଫଳ ହେଲା ନାହିଁ । ତେଣୁ କବିରାଜୀ ଚିକିତ୍ସାର ବ୍ୟବସ୍ଥା ହେଲା । ଗୁରୁଭ୍ରାତାମାନେ ଓ ଅନ୍ୟାନ୍ୟ ସାଧୁ ବ୍ରହ୍ମଚାରୀ ଅହର୍ନିଶୀ ସେବାରେ ନିଯୁକ୍ତ ରହିଲେ, କିନ୍ତୁ ରୋଗର ଉପଶମ ହେଲା ନାହିଁ । ସନ୍ତାନବତ୍ସଳା ଶ୍ରୀମା' ଚିନ୍ତାରେ ଅଧିର । ଦୁଶ୍ଚିନ୍ତାରେ ତାଙ୍କ ଦେହ କ୍ଷୀଣ ହେବାକୁ ଲାଗିଲା । ରୋଗୀଙ୍କ ଅବସ୍ଥାର ଉନ୍ନତି ହେଲେ ଶ୍ରୀମା' ସୁସ୍ଥ ବୋଧ କରନ୍ତି, ଅବନତି ହେଲେ ବସି ବସି କାନ୍ଦନ୍ତି ।

ଶେଷ ଦିନ ଆସନ୍ନ । ଶ୍ରୀମା'ଙ୍କର ଜଣେ ସେବକ ଦେଖିଲେ, ଶ୍ରୀମା' ନିଜ କକ୍ଷରେ ଗୋଡ଼ ଲମ୍ବାଇ ବସିଛନ୍ତି । ଆଖିରୁ ଅବିରତ ଅଶ୍ରୁ ଗଡୁଛି । ସେବକ ନିଜ ବୁଦ୍ଧି ଅନୁଯାୟୀ ପ୍ରବୋଧ ଦେବାକୁ ଚେଷ୍ଟା କଲେ । କିନ୍ତୁ ଶ୍ରୀମା' ଅଧୀର ହୋଇ ପ୍ରଶ୍ନ କଲେ, ''ମୋ ପୁଅ ଯୋଗେନ୍‌ର କଅଣ ହେବ ବାବା ?'' ସେବକ ବୁଝାଇବାକୁ ଚାହିଁଲେ ଯେ ଉଦ୍‌ବେଗର କୌଣସି କାରଣ ନାହିଁ, ଯୋଗୀନ୍ ମହାରାଜ ନିରାମୟ ହେବେ । କିନ୍ତୁ ମା' କହିଲେ, ''ବାବା ମୁଁ ଯେ ଦେଖିଛି । ଭୋର୍ ରାତିରେ ଦେଖିଲି, ଠାକୁର ନେବା ପାଇଁ ଆସିଛନ୍ତି ?'' ଏହା କହି ମା' କାନ୍ଦି ପକାଇଲେ । ପରେ ଧୈର୍ଯ୍ୟ ଧରି କହିଲେ, ''କାହାକୁ କହିବ ନାହିଁ— ଏସବୁ କହିବା କଥା ନୁହେଁ ।''

ଦ୍ୱିପ୍ରହରଠାରୁ (୨୮ ମାର୍ଚ୍ଚ ୧୮୯୯) ରୋଗୀଙ୍କ ଅବସ୍ଥା ସଙ୍କଟଜନକ ହୋଇଉଠିଲା । ଅପରାହ୍ନ ତିନିଟା ଦଶ ମିନିଟରେ ତାଙ୍କ ମୁହଁ ଏକ ଅପୂର୍ବ ଜ୍ୟୋତିରେ ଉଦ୍ଭାସିତ ହେଲା । କୃଷ୍ଣଲାଲ ମହାରାଜ କାନ୍ଦି ଉଠିଲେ; ଦ୍ୱିତଳରେ ଉପବିଷ୍ଟ ମା' ମଧ୍ୟ ଏହା ଶୁଣି କାନ୍ଦିବାକୁ ଲାଗିଲେ; ଲଜ୍ଜାରୂପିଣୀଙ୍କୁ ଏପରି ବିଚଳିତ ଦେଖି ସେବକ ଦ୍ରୁତ ବେଗରେ ଉପରକୁ ଯାଇ ତାଙ୍କ ଚରଣ ଧରି ତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ । କିନ୍ତୁ ଶ୍ରୀମା' ବିରକ୍ତ ହୋଇ କହିଲେ, ''ତୁମେ ଯାଅ, ଯାଅ । ମୋ ଯୋଗେନ୍ ମୋତେ ରଖି ଚାଲିଗଲା — ଆଉ କିଏ ମୋତେ ଦେଖିବ ?'' ସବୁ ଶେଷ ହୋଇଗଲା । ପରଦିନ ଶ୍ରୀମା' ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, ''ଘରର ଗୋଟିଏ ଇଟା ଖସିଲା; ଏଥର ସବୁ ଯିବ ।''

ମା' ତାଙ୍କର ଏହି ସନ୍ତାନକୁ ସ୍ନେହଦୃଷ୍ଟିରେ ଦେଖୁଥିଲେ ଏବଂ ତାଙ୍କ ଉପରେ ଅନେକାଂଶରେ ନିର୍ଭର କରୁଥିଲେ, ଯାହା ସେ ବିଭିନ୍ନ ସମୟରେ ପ୍ରକାଶ କରିଛନ୍ତି— ''ଯୋଗେନ୍ ପରି ମୋତେ କେହି ଭଲପାଉ ନ ଥିଲା । ମୋର ଯୋଗେନ୍‌କୁ ଯଦି କେହି ଆଠଅଣା ପଇସା ଦେଉଥିଲା, ତାହା ସେ ସାଇତି ରଖୁଥିଲା; କହୁଥିଲା, 'ମା ଯେତେବେଳେ ତୀର୍ଥ ଦର୍ଶନ କରିବାକୁ ଯିବେ,

ସେତେବେଳେ ଏହା ଖର୍ଚ୍ଚ କରିବେ ।' ସେ ସବୁବେଳେ ମୋ ପାଖରେ ରହୁଥିଲା । ...ଯୋଗେନ୍ ଦେହ ରଖିବା ପୂର୍ବରୁ କହିଲା, 'ମା, ମୋତେ ନେବାକୁ ଆସିଥିଲେ ବ୍ରହ୍ମା, ବିଷ୍ଣୁ, ଶିବ ଓ ଠାକୁର । ...ଯୋଗେନ୍‌କୁ ଠାକୁର ଅର୍ଜ୍ଜୁନ କହୁଥିଲେ ।... ଶରତ ଆଉ ଯୋଗେନ୍—ଏହି ଦୁଇଜଣ ମୋର ଅନ୍ତରଙ୍ଗ ।''

ସ୍ୱାମୀ ସାରଦାନନ୍ଦଜୀ (ଶରତ ମହାରାଜ) ଓ ସ୍ୱାମୀ ଯୋଗାନନ୍ଦଜୀ— ଏମାନଙ୍କୁ ଶ୍ରୀମା' ତାଙ୍କର ଭାରବହନକାରୀ ବୋଲି ନିର୍ଦ୍ଦେଶ କରିଛନ୍ତି । ସେ କହିଥିଲେ, ''ମୋର ଦାୟିତ୍ୱ ନେଇପାରିବ, ଏପରି କିଏ ଅଛି ?'' ଯୋଗେନ୍ ସେପରି ଥିଲା । କୃଷ୍ଣଲାଲ ଏବେ ଅଛି—ଧୀର, ସ୍ଥିର—ଯୋଗେନ୍‌ର ଚେଲା ।'' ଅନ୍ୟ ଏକ ସମୟରେ କହିଥିଲେ, ''ଯୋଗେନ୍ ମୋର ବହୁ ସେବା କରିଛି— ସେପରି ଆଉ କେହି କରିପାରିବେ ନାହିଁ । କେବଳ ଶରତ ପାରିବ । ଯୋଗେନ୍ ପରେ ଶରତ କରୁଛି । ମୋର ଦାୟିତ୍ୱ ବହନ କରିବା ଭାରୀ କଷ୍ଟ, ଶରତ ଛଡ଼ା ମୋର ଭାର ଆଉ କେହି ନେଇପାରିବେ ନାହିଁ ।''

ବର୍ତ୍ତମାନ ଆମେ ସ୍ୱାମୀ ଯୋଗାନନ୍ଦଙ୍କ ବିଷୟରେ କେତୋଟି ଘଟଣା ଆଲୋଚନା କରିବା । ଶ୍ରୀମା' ପ୍ରତିବର୍ଷ ଜଗଦ୍ଧାତ୍ରୀ ପୂଜା ସମୟରେ ଗାଁକୁ ଯାଉଥିଲେ । ଘରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । କାମ ପାଇଁ ଯଥେଷ୍ଟ ଲୋକ ନ ଥିଲେ । ତେଣୁ ପୂଜା ସମୟରେ ବାସନପତ୍ର ଶ୍ରୀମା' ମାଜୁଥିଲେ । ଏହି ଅସୁବିଧା ଦୂର କରିବା ପାଇଁ ସ୍ୱାମୀ ଯୋଗାନନ୍ଦ ଅର୍ଥ ସଂଗ୍ରହ କରି କାଠର ବାସନ କିଣି ଦେଇଥିଲେ ।

ସ୍ୱାମୀ ଯୋଗାନନ୍ଦଙ୍କର ପ୍ରତ୍ୟେକ ସ୍ମୃତି ମା'ଙ୍କ ନିକଟରେ ଅତି ପ୍ରିୟ ଥିଲା । ଯୋଗାନନ୍ଦଜୀ ତାଙ୍କ ପାଇଁ ଗୋଟିଏ ରେଜେଇ କରାଇ ଦେଇଥିଲେ । ଦୀର୍ଘକାଳ ବ୍ୟବହାର ଯୋଗୁଁ ତାହା ଜୀର୍ଣ୍ଣ ହୋଇ ଯାଇଛି ଦେଖି ଶ୍ରୀମା'ଜଣେ ଭକ୍ତଙ୍କୁ ତାହାର ତୁଳା ଭିଣେଇ ଏବଂ ଖୋଳ ବଦଳାଇ ଆଣିବାକୁ କହିଲେ । କିନ୍ତୁ ପରମୁହୂର୍ତ୍ତରେ ମା' ଭାବିଲେ, ଏପରି କଲେ ପ୍ରିୟ ସନ୍ତାନ ତାଙ୍କୁ ଦେଇଥିବା ଜିନିଷଟିର ରୂପ ବଦଳିଯିବ । ତେଣୁ ରେଜେଇକୁ ସେହି ଭାବରେ ବ୍ୟବହାର କରିବାକୁ ଲାଗିଲେ । ସେ କହୁଥିଲେ, ''ଏହି ରେଜେଇ ଯୋଗେନ୍ ଦେଇଛି— ଦେଖିଲେ ତା' କଥା ମନେପଡ଼େ ।''

ବେଲୁଡ଼ ମଠରେ ସ୍ୱାମୀ ଯୋଗାନନ୍ଦଙ୍କର ଗୋଟିଏ ତୈଳଚିତ୍ର ଦେଖି ଶ୍ରୀମା'ଙ୍କ ମନ ଏକ ଲୋକାତୀତ ରାଜ୍ୟକୁ ଚାଲିଗଲା । ଯୋଗାନନ୍ଦଜୀଙ୍କୁ ଶ୍ରୀମା' ଈଶ୍ୱରକୋଟୀ ଏବଂ କୃଷ୍ଣସଖା ଅର୍ଜ୍ଜୁନ ବୋଲି ଜାଣିଥିଲେ । ଧର୍ମସ୍ଥାପନ ପାଇଁ ସେ ଶ୍ରୀରାମକୃଷ୍ଣଙ୍କ ସହିତ ଅବତୀର୍ଣ୍ଣ ହୋଇଥିଲେ । ଯୋଗେନ୍ ଶ୍ରୀମା'ଙ୍କୁ ଦୀର୍ଘ ବାରବର୍ଷ କାଳ (୧୮୮୬ ରୁ ୧୮୯୯ ପର୍ଯ୍ୟନ୍ତ) ସେବା କରିଥିଲେ ।

ଯୋଗାନନ୍ଦଙ୍କ ଦେହତ୍ୟାଗ ପୂର୍ବରୁ ତାଙ୍କର ଉତ୍ତରାଧିକାରୀ ନିର୍ବାଚିତ ହୋଇଥିଲେ । ଥରେ ଶରତ ମହାରାଜ, ଯୋଗାନନ୍ଦଜୀଙ୍କୁ କହିଥିଲେ, ''ଯୋଗୀନ୍, ନରେନର କଥା କିଛି ତ ବୁଝିପାରେ ନା, କେତେ ପ୍ରକାରର କଥା କହେ— ଯେତେବେଳେ ଯେଉଁ କଥା କହେ, ତାହା ଏତେ ବଡ଼ କରିଦିଏ ଯେ ଅନ୍ୟ ଗୁଡ଼ିକ ଏକାବେଳକେ ଛୋଟ ହୋଇଯାଏ ।'' ଯୋଗାନନ୍ଦ ଶରତ ମହାରାଜଙ୍କୁ କହିଥିଲେ, ''ଶରତ, ତତେ ଗୋଟିଏ କଥା କହୁଛି, ତୁ ମା'ଙ୍କୁ ଆଶ୍ରୟ କର; ସେ ଯାହା କହିବେ ତାହା ଠିକ୍ ।'' ଏହା କହି ସେ ଶରତ ମହାରାଜଙ୍କୁ ମା'ଙ୍କ ନିକଟକୁ ନେଇଗଲେ । ପରବର୍ତ୍ତୀ କାଳରେ ମା'ଙ୍କ ସେବାଧିକାର ପାଇ ଶରତ ମହାରାଜ ରାମକୃଷ୍ଣ-ସଂଘ ଇତିହାସରେ ଚିରସ୍ମରଣୀୟ ହୋଇ ରହିଛନ୍ତି । ଯେତେବେଳେ ସ୍ୱାମୀ ଯୋଗାନନ୍ଦ ଦେହତ୍ୟାଗ କଲେ, ସେତେବେଳେ ସ୍ୱାମୀଜୀଙ୍କ ନିର୍ଦ୍ଦେଶ ଅନୁଯାୟୀ ଶରତ ମହରାଜ ଅର୍ଥ ସଂଗ୍ରହ ପାଇଁ ପଶ୍ଚିମ ଭାରତକୁ ଯାଇଥିଲେ । ମଠକୁ ଫେରିଆସିବା ପରେ ମଧ ତାଙ୍କୁ ବିଭିନ୍ନ କାମରେ ବ୍ୟସ୍ତ ରହିବାକୁ ପଡ଼ିଲା । ଅତଏବ ବ୍ରହ୍ମଚାରୀ କୃଷ୍ଣଲାଲ ଶ୍ରୀମା'ଙ୍କ ସେବାରେ ନିଯୁକ୍ତ ଥିଲେ । ସ୍ୱାମୀ ତ୍ରିଗୁଣାତୀତାନନ୍ଦଜୀ 'ଉଦ୍‌ବୋଧନ' ପତ୍ରିକାରେ କାମ ସାରି ରାତିରେ ମା'ଙ୍କ ଘରେ ରହୁଥିଲେ; ତେଣୁ ମା'ଙ୍କ ତତ୍ତ୍ୱାବଧାନର ଦାୟିତ୍ୱ ତ୍ରିଗୁଣାତୀତଙ୍କ ଉପରେ ନ୍ୟସ୍ତ ଥିଲା । ୧୯୦୨ ଖ୍ରୀଷ୍ଟାବ୍ଦରେ ଆମେରିକାକୁ ଯିବା ଯାଏ ସେ ତାହା ଦକ୍ଷତା ସହକାରେ ସମ୍ପାଦନ କରିଥିଲେ ।

ଶ୍ରୀମା'ଙ୍କ ଅତି ସ୍ନେହର କନିଷ୍ଠ ଭ୍ରାତା ଅଭୟ, ବିସୂଚିକା ରୋଗରେ ଆକ୍ରାନ୍ତ ହୋଇ ପରଲୋକ ଗମନ କଲେ (୨ ଅଗଷ୍ଟ ୧୮୯୯) । ମା'ଙ୍କର ଅନ୍ୟ ଦୁଇଭାଇ ପ୍ରସନ୍ନ ଓ ବରଦା ସେତେବେଳେ କଲିକତାରେ ଏକ ଭଡ଼ା ଘରେ ରହୁଥିଲେ । ଅଭୟ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଡାକ୍ତରୀ ପଢୁଥିଲେ । ଶେଷ ପରୀକ୍ଷା ଦେଇସାରି ସେ ଏହି କାଳବ୍ୟାଧିରେ ଆକ୍ରାନ୍ତ ହେଲେ । ସାରଦାନନ୍ଦଜୀ ତାଙ୍କ ଚିକିତ୍ସାର ବ୍ୟବସ୍ଥା କରିଥିଲେ; କିନ୍ତୁ ସବୁ ବ୍ୟର୍ଥ ହେଲା । ଶ୍ରୀମା' ଓ ଅନ୍ୟ ସମସ୍ତଙ୍କୁ ଶୋକସାଗରରେ ଭସାଇ ଦେଇ ଅଭୟ ଦେହ ତ୍ୟାଗ କଲେ ।

ଅଭୟର ମୃତ୍ୟୁ ପରେ ପ୍ରାୟ ତିନିମାସ କାଳ କଲିକତାରେ ରହି ଶ୍ରୀମା' ବର୍ଦ୍ଧମାନ ଦେଇ ଗାଁକୁ ଗଲେ (୩୦ ଅକ୍ଟୋବର) । ଶ୍ରୀମା' ଦାମୋଦର ନଦୀ ପାରି ହୋଇ ଶଗଡ଼ରେ ବସି ଯାଉଛନ୍ତି ଏବଂ ସମ୍ମୁଖରେ ତ୍ରିଗୁଣାତୀତ ଠେଙ୍ଗା କାନ୍ଧରେ ଦେଇ ପ୍ରହରୀ ସାଜି ଚାଲି ଚାଲି ଯାଉଛନ୍ତି । ରାତି ସେତେବେଳେ ତୃତୀୟ ପ୍ରହର । ଅକସ୍ମାତ୍ ତ୍ରିଗୁଣାତୀତ ଦେଖିଲେ, ବଢ଼ିପାଣିରେ ରାସ୍ତା ଏପରି ଭାବରେ ଭାଙ୍ଗିଯାଇଛି ଯେ ଶଗଡ଼ ଓଲଟି ଯିବାର ସମ୍ଭାବନା । ସୁତରାଂ ତତ୍‌କ୍ଷଣାତ୍ ତ୍ରିଗୁଣାତୀତ ଗାତ ଭିତରେ ପଶି ପେଟେଇ ପଡ଼ିଲେ ଓ ଗାଡ଼ିବାଲାକୁ ତାଙ୍କ ସ୍ଥୂଳ

ସବଳ ଦେହ ଉପରେ ଗାଡ଼ି ଚଳାଇ ନେବାକୁ କହିଲେ । ଭାଗ୍ୟକ୍ରମେ ଶ୍ରୀମା'ଙ୍କର ଏହି ସମୟରେ ନିଦ ଭାଙ୍ଗିଯିବାରୁ ସେ ସବୁ ବୁଝିପାରିଲେ ଏବଂ ଗାଡ଼ିରୁ ଓହ୍ଲାଇ ପଡ଼ି ଏପରି ହଠକାରିତା ପାଇଁ ତ୍ରିଗୁଣାତୀତଙ୍କୁ ଭର୍ତ୍ସନା କଲେ । ଯାହା ହେଉ ସମସ୍ତେ ଚାଲି ଚାଲି ସ୍ଥାନଟି ପାରି ହେଲେ ।

ତ୍ରିଗୁଣାତୀତଙ୍କର ଅପୂର୍ବ ମାତୃଭକ୍ତିର ଆଉ ଗୋଟିଏ ଦୃଷ୍ଟାନ୍ତ—ଯୋଗୀନ୍-ମା' ଥରେ ତାଙ୍କୁ ମା'ଙ୍କ ପାଇଁ କିଛି ରାଗ ଲଙ୍କା କିଣି ଆଣିବାକୁ କହିଲେ । ସବୁଠାରୁ ବେଶୀ ରାଗ ଲଙ୍କା କିଣିବା ପାଇଁ ବିଭିନ୍ନ ବଜାରରେ ଲଙ୍କା ଚାଖି ଚାଖି ଶେଷରେ ବଡ଼ ବଜାରରେ ଉପସ୍ଥିତ ହେଲେ । ସେଠାରେ ସେପରି ଲଙ୍କା ପାଇଲେ ସତ; କିନ୍ତୁ ସେତେବେଳକୁ ଜିଭ ଫୁଲି ଉଠିଲାଣି ! ପରେ ଆମେରିକାରୁ ସେ ମା'ଙ୍କ ସେବାର୍ଥେ ପ୍ରତିମାସରେ ପ୍ରଣାମୀ ପଠାଉଥିଲେ ।

ଶ୍ରୀଶ୍ରୀମା'ଙ୍କ ସେବକମାନଙ୍କ ପ୍ରସଙ୍ଗରେ ଆହୁରି ଦୁଇଜଣଙ୍କ କଥା ଆମେ ଉଲ୍ଲେଖ କରିବା । ସନ୍ନ୍ୟାସୀ ସେବକମାନଙ୍କ ଛଡ଼ା ଯୋଗୀନ୍-ମା' ଓ ଗୋଲାପ-ମା' ସର୍ବଦା ତାଙ୍କ ସହିତ ରହୁଥିଲେ ଓ ତାଙ୍କର ତତ୍ତ୍ୱାବଧାନ କରୁଥିଲେ । ଗାଁକୁ ଗଲେ ମଧ୍ୟ ସେମାନେ ସାଥିରେ ରହୁଥିଲେ । ଏମାନଙ୍କ ସେବାରେ ସନ୍ତୁଷ୍ଟ ହୋଇ ମା' କହିଥିଲେ, ''ଗୋଲାପ ଓ ଯୋଗୀନ୍ ସାଙ୍ଗରେ ନ ଥିଲେ କଲିକତାରେ ମୁଁ ରହିପାରିବି ନାହିଁ ।''

## ମାୟା-ସ୍ୱୀକାର

ଅଭୟଚରଣଙ୍କ ଦେହତ୍ୟାଗ ପୂର୍ବରୁ ଶ୍ରୀମା' ଯେତେବେଳେ ଭାଇର ମୁଣ୍ଡ ନିଜ କୋଳରେ ରଖି ସ୍ନେହରେ ହାତ ବୁଲାଇ ଦେଉଥିଲେ, ସେତେବେଳେ ଦେଇଙ୍କୁ ସ୍ଥିର ଦୃଷ୍ଟିରେ ଅନାଇଁ ରହି ଅଭୟ କହିଲେ, ''ଦେଇ, ସବୁ ରହିଲା—ଦେଖିବ ।'' ଶ୍ରୀମା' ସେହି କର୍ତ୍ତବ୍ୟ ସ୍ୱୀକାର କରି ନେଇଥିଲେ । ଅଭୟଙ୍କ ସ୍ତ୍ରୀ ସୁରବାଳା ସେତେବେଳେ ଗର୍ଭବତୀ ଓ ପିତ୍ରାଳୟରେ ଅବସ୍ଥାନ କରୁଥିଲେ ।

ସେ ଜନମଦୁଃଖିନୀ, ଶୈଶବରୁ ମାତୃହରା; ଆଈମା ଓ ମାଉସୀଙ୍କ କୋଳରେ ବଡ଼ ହୋଇଥିଲେ । ସ୍ୱାମୀଙ୍କ ମୃତ୍ୟୁର ଅଳ୍ପକାଳ ପରେ ଆଈମା ମଧ୍ୟ ଦେହରକ୍ଷା କଲେ । ଜୟରାମବାଟୀରେ ପହଞ୍ଚି ଶ୍ରୀମା' ସୁରବାଳାକୁ ପିତ୍ରାଳୟରୁ ଡକାଇ ଆଣିଲେ । କିଛିଦିନ ପରେ ସୁରବାଳାଙ୍କ ଶେଷ ଅବଲମ୍ବନ ମାଉସୀ ମଧ୍ୟ ଇହଧାମ ତ୍ୟାଗ କଲେ । ଗୋଟିଏ ପରେ ଗୋଟିଏ ଏତେ ଆଘାତ ସହି ନ ପାରି ସୁରବାଳା ପାଗଳ ହୋଇଗଲେ । ଏହି ଅବସ୍ଥାରେ ସେ ୧୯୦୦ ଖ୍ରୀଷ୍ଟାବ୍ଦ ୨୬ ଜାନୁଆରୀ ଦିନ ଗୋଟିଏ କନ୍ୟା ପ୍ରସବ କଲେ । କନ୍ୟାର ନାମ ରଖାଗଲା ରାଧାରାଣୀ—ଡାକ ନାମ ରାଧୁ ଓ ରାଧି । ଜଣେ ପାଗଳୀଙ୍କ ପକ୍ଷେ ଶିଶୁର ଦାୟିତ୍ୱ ନେବା ଅସମ୍ଭବ ଜାଣି ମା' ବଡ଼ ଚିନ୍ତିତ ହେଲେ । ଦୈବାତ୍ କିଛିଦିନ

ପରେ କୁସୁମକୁମାରୀ ନାମକ ଜଣେ ସ୍ତ୍ରୀ-ଭକ୍ତ ଆସି ପହଞ୍ଚିଲେ । ଶ୍ରୀମା' ଏହାଙ୍କ ହାତରେ ରାଧୁର ଲାଳନପାଳନ ଦାୟିତ୍ୱ ଅର୍ପଣ କଲେ ।

ବିଭିନ୍ନ କାରଣରୁ ଶ୍ରୀମା'ଙ୍କୁ ଅଧିକାଂଶ ସମୟ ଜୟରାମବାଟୀରେ ରହିବାକୁ ପଡୁଥିଲା, ଯଦିଓ ତାହା ସୁଖକର ନ ଥିଲା । ବିଧିର ବିଧାନରୁ ତାଙ୍କ ପାରିବାରିକ ଦାୟିତ୍ୱ ବଢ଼ି ବଢ଼ି ଚାଲିଲା । ଭଗବାନ ଯେପରି ମା'ଙ୍କ ସଦା-ଉର୍ଦ୍ଧ୍ୱଗାମୀ ମନକୁ ସଂସାରରେ ବାନ୍ଧିରଖି ଯୁଗଧର୍ମ ପ୍ରବର୍ତ୍ତନର କର୍ମ ସଂପାଦିତ କରିବା ପାଇଁ ତାଙ୍କୁ ବିଚିତ୍ର ସ୍ନେହ-ବନ୍ଧନରେ ଆବଦ୍ଧ କରିଥିଲେ ।

ଠାକୁରଙ୍କ ଦେହରକ୍ଷା ପରେ ଶ୍ରୀମା'ଙ୍କ ମନ ଯେତେବେଳେ ସଂସାର ପ୍ରତି ବିରକ୍ତ, ସେତେବେଳେ ସେ ପ୍ରାର୍ଥନା କରିଥିଲେ, ''ଏ ସଂସାରରେ ରହି ଆଉ ଲାଭ କ'ଣ ହେବ ?'' ଠିକ୍ ସେହି ସମୟରେ ମା' ଦେଖିଲେ ନାଲି ଲୁଗା ପିନ୍ଧି ଦଶ ବାର ବର୍ଷର ଝିଅଟିଏ ଘୂରି ବୁଲୁଛି । ଠାକୁର ତାକୁ ଦେଖାଇ କହିଲେ, ''ଏହାକୁ ଆଶ୍ରୟ କରି ରୁହ ।'' ପର ମୁହୂର୍ତ୍ତରେ ଠାକୁର ଅନ୍ତର୍ହିତ ହେଲେ, ଝିଅଟିକୁ ମଧ୍ୟ ମା' ଆଉ ଦେଖିବାକୁ ପାଇଲେ ନାହିଁ । ଅନେକ ବର୍ଷ ବିତି ଯାଇଛି । ଶ୍ରୀମା' ଦିନେ ଜୟରାମବାଟୀରେ ଅଛନ୍ତି । ସୁରବାଳା ସେତେବେଳେ ପୂରା ପାଗଳ । ସେ କନ୍ଥା କାଖରେ ଯାକି ଚାଲିଛନ୍ତି । ଆଉ ରାଧୁ ଗୁରୁଣ୍ଡି ଗୁରୁଣ୍ଡି ତାଙ୍କ ପଛେ ପଛେ ଯାଉଛି ଓ କାନ୍ଦୁଛି । ଏହା ଦେଖି ମା'ଙ୍କ ହୃଦୟ କରୁଣାରେ ଭରିଉଠିଲା—ସେ ଭାବିଲେ, ''ମୁଁ ଯଦି ଏହାକୁ ନ ଦେଖିବି, ଆଉ କିଏ ଦେଖିବ ! ବାପା ନାହିଁ । ମା' ପାଗଳ ।'' ସେ ଦଉଡ଼ି ଯାଇ ରାଧୁକୁ ଉଠାଇ ନେଲେ । ସେହି ମୁହୂର୍ତ୍ତରେ ଠାକୁର ଦର୍ଶନ ଦେଇ କହିଲେ, ''ସେହି ଝିଅଟି ! ଏହାକୁ ଆଶ୍ରୟ କରି ରୁହ । ଏ ଯୋଗମାୟା ।''

ରାଧୁ ପ୍ରତି ତାଙ୍କର ଆକର୍ଷଣ ଦେଖି ଲୋକଙ୍କ ମନରେ ବହୁ ସନ୍ଦେହ ଉଠୁଥିଲା । ଦିନେ ଜଣେ ଭକ୍ତ କହିପକାଇଲେ, ''ମା, ଆପଣଙ୍କର ଏତେ ଆସକ୍ତି କାହିଁକି ? ଦିନରାତି ଖାଲି 'ରାଧୁ ରାଧୁ', କରୁଛନ୍ତି ଘୋର ସଂସାରୀମାନଙ୍କ ପରି । ...ଏତେ ଆସକ୍ତି ? ଏହା କ'ଣ ଭଲ ?'' ଏପରି ପ୍ରଶ୍ନ ମା' ପୂର୍ବରୁ ମଧ୍ୟ ଶୁଣିଥିଲେ ଏବଂ ଉତ୍ତରରେ କହୁଥିଲେ, ''ଆମେମାନେ ସ୍ତ୍ରୀ-ଲୋକ । ଆମେ ଏହିଭଳି ।'' ଆଜି କିନ୍ତୁ ଉତ୍ତେଜିତ ହୋଇ କହିଲେ, ''ଯେଉଁମାନେ ପରମାର୍ଥ ବିଷୟରେ ଚିନ୍ତା କରନ୍ତି, ସେମାନଙ୍କର ମନ ଖୁବ୍ ସୂକ୍ଷ୍ମ ଓ ଶୁଦ୍ଧ ହୋଇଯାଏ । ସେହି ମନ ଯାହା ଗ୍ରହଣ କରେ, ତାହା ଖୁବ୍ ଶକ୍ତ କରି ଧରେ । ତେଣୁ ଏହା ଆସକ୍ତି ବୋଲି ଅନ୍ୟମାନଙ୍କୁ ମନେ ହୁଏ । ଅନ୍ୟ ଏକ ସମୟରେ ସେ କହିଥିଲେ, ''ଦେଖ, ସମସ୍ତେ କହନ୍ତି, ମୁଁ କୁଆଡ଼େ 'ରାଧୁ, ରାଧୁ' କହି ଅସ୍ଥିର ହୋଇଯାଉଛି । ତା'ଉପରେ ମୋର ଭାରୀ ଆସକ୍ତି ! ଏହି ଆସକ୍ତି ଯଦି ନ ଥାନ୍ତା, ତାହାହେଲେ ଠାକୁରଙ୍କ ଶରୀର ଯିବା ପରେ ଏହି ଦେହଟା ଆଉ ରହି ନ ଥା'ନ୍ତା । ତାଙ୍କ କାମ

ପାଇଁ 'ରାଧି ରାଧି' କରି ଏହି ଦେହଟାକୁ ସେ ରଖିଛନ୍ତି । ଯେତେବେଳେ ତା' ଉପରୁ ମନ ଉଠିଯିବ, ସେତେବେଳେ ଆଉ ଏ ଦେହ ରହିବ ନାହିଁ ।''

ଶ୍ରୀମା'ଙ୍କର ଆଶ୍ଚର୍ଯ୍ୟ ଜୀବନଲୀଳାରେ ଏହି ପଟ୍ଟଭୂମିକାର ଆହୁରି ଗୋଟିଏ ଉଦ୍ଦେଶ୍ୟ ବୋଧହୁଏ ଥିଲା । ଠାକୁରଙ୍କର ଗଳରୋଗ ଦେଖି କେତେକ ସକାମ ଭକ୍ତ ଯେପରି ତାଙ୍କ ପାଖକୁ ଆସିବା ନିରର୍ଥକ ମନେ କରିଥିଲେ, ଠିକ୍ ସେହିପରି ଏହି ଆପାତପ୍ରତୀୟମାନ ସାଂସାରିକ ବହିରାବରଣଦ୍ୱାରା ଭଗବାନ ବୋଧହୁଏ ଶ୍ରୀମା'ଙ୍କୁ ଏହି ଶ୍ରେଣୀର ଭକ୍ତମାନଙ୍କ ଅବାଞ୍ଛିତ ଦୃଷ୍ଟିରୁ ରକ୍ଷାକରିଥିଲେ । ଅଧିକନ୍ତୁ ଯଦିଓ ଠାକୁର ଗୃହସ୍ଥ ଓ ସନ୍ନ୍ୟାସୀ ଉଭୟ ଶ୍ରେଣୀର ଭକ୍ତମାନଙ୍କ ପାଇଁ ଚରମ ଆଦର୍ଶ ସ୍ଥାପନ କରି ଯାଇଥିଲେ, ତଥାପି ତାଙ୍କର ଜୀବନ ପ୍ରଧାନତଃ ପାରିବାରିକ ଗଣ୍ଡି ବାହାରେ କଟିଥିଲା । ସୁତରାଂ ଶତ ସହସ୍ର ପ୍ରତିକୂଳ ସାଂସାରିକ ପରିବେଶରେ ମଣିଷ କିପରି ଆତ୍ମସ୍ଥ ରହି ଦିବ୍ୟ ଜୀବନର ଆସ୍ୱାଦ ପାଇପାରିବ, ତାହାର ପରିଚୟ ଶ୍ରୀରାମକୃଷ୍ଣଙ୍କ ଜୀବନରେ ଆମେ ପାଉନାହୁଁ । ଶ୍ରୀମା'ଙ୍କ ଜୀବନ କିନ୍ତୁ ପାରିବାରିକ ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଏବଂ ସେହି ଘଟଣାଗୁଡ଼ିକରୁ ଅଧିକାଂଶ ସାଂସାରିକ ଦୃଷ୍ଟିରେ ଉଦ୍‌ବେଗଜନକ, ବିରକ୍ତିକର ଅଥବା କ୍ଳେଶପୂର୍ଣ୍ଣ । ଏପରି ପରିବେଶରେ ମଧ୍ୟ ଶ୍ରୀମା'ଙ୍କ ଅଚାର ବ୍ୟବହାର ସର୍ବଦା ଦିବ୍ୟଜ୍ୟୋତିରେ ଉଦ୍ଭାସିତ । ଏହି ଦେବମାନବତାର ଅପୂର୍ବ ମିଶ୍ରଣ ଶ୍ରୀମା'ଙ୍କ ଜୀବନକୁ ଅତି ମଧୁର କରିଛି । ପ୍ରକୃତପକ୍ଷରେ ତାଙ୍କ ପାରିବାରିକ ଜୀବନର ଅନୁଧ୍ୟାନ ସଂସାରୀମାନଙ୍କ ପକ୍ଷରେ ଶିକ୍ଷାପ୍ରଦ ଓ କଲ୍ୟାଣକର ।

ଶ୍ରୀମା'ଙ୍କର ଜୟରାମବାଟୀ ଜୀବନର ପ୍ରତିକୂଳ ଅବସ୍ଥାର ପରିଚୟ ଦେବା ପାଇଁ ବର୍ତ୍ତମାନ ଶ୍ରୀମା'ଙ୍କ ଭାଇମାନଙ୍କ କଥା ଆମେ ଆଲୋଚନା କରିବା । ଶ୍ରୀମା' କଲିକତାରେ ଯେତେବେଳେ ଥାଆନ୍ତି, ଭାଇମାନେ ଟଙ୍କା ପଇସାର ଅଭାବ ବା ପାରିବାରିକ ବିବାଦ କଥା ତାଙ୍କୁ ଜଣାଉଥା'ନ୍ତି । ପତ୍ର ପଢ଼ି କେହି କେହି ମନ୍ତବ୍ୟ କରୁଥିଲେ—ମା' ସେମାନଙ୍କୁ ଖୁବ୍ ଟଙ୍କା ପଇସା ଦିଅ । ଠାକୁରଙ୍କୁ କୁହ, ଖୁବ୍ ଭୋଗ କରନ୍ତୁ, ଯେପରିକି ସେଥିରୁ ନିବୃତ୍ତି ହେବ । ଶ୍ରୀମା' ଉତ୍ତର ଦେଉଥିଲେ, ''ସେମାନଙ୍କର କ'ଣ ଆଉ ନିବୃତ୍ତି ଅଛି ? ସେମାନଙ୍କର କେବେହେଲେ ନିବୃତ୍ତି ହେବ ନାହିଁ । ସଂସାରୀ ଲୋକମାନଙ୍କର କ'ଣ ନିବୃତ୍ତି ହୁଏ ? ସେମାନଙ୍କର ଅତି ଦୁଃଖର କାହାଣୀ । କାଳୀ କେବଳ ଟଙ୍କା ଟଙ୍କା କହେ । ତା'କୁ ଦେଖି ପ୍ରସନ୍ନ ମଧ୍ୟ ତାହା କରୁଛି । କେବଳ ବରଦା କେବେ କିଛି ଚାହେଁ ନାହିଁ— କହେ, ଦେଇ କେଉଁଠୁ ଟଙ୍କା ପାଇବେ ?'' ଦିନେ ଭାଇମାନଙ୍କ ଉପରେ ବିରକ୍ତ ହୋଇ କହିଥିଲେ, ''ବାବା, ସେମାନେ କେବଳ ଟଙ୍କା ଟଙ୍କା ହୋଇ ଶେଷ ହୋଇଗଲେଣି, କେବଳ 'ଧନ ଦିଅ, ଧନ ଦିଅ'—ଭୁଲରେ ବି କେବେ ଜ୍ଞାନଭକ୍ତି

ଚାହିଁଲେ ନାହିଁ ! ଯାହା ଚାହୁଁଛ ତାହା ନିଅ !'' କହିବା ବାହୁଲ୍ୟ, ମା'ଙ୍କ କୃପାରୁ ଏମାନଙ୍କ ସଂସାରରେ ସ୍ୱଚ୍ଛଳତା ଆସିଥିଲା ।

ପାଠକମାନେ ଯେପରି ମନେ ନ କରନ୍ତି ଯେ ମାମୁଁମାନଙ୍କର (ଶ୍ରୀମା'ଙ୍କ ଭାଇମାନଙ୍କର) କୌଣସି ସୁକୃତି ବା ଉଚ୍ଚଭାବ ନ ଥିଲା । ମହାକବି ଗିରିଶଚନ୍ଦ୍ର ଘୋଷ ଏକଦା କହିଥିଲେ, ''ମାମୁଁମାନେ ପୂର୍ବଜନ୍ମରେ ମୁଣ୍ଡକଟା ତପସ୍ୟା କରିଥିଲେ; ତେଣୁ ବର୍ତ୍ତମାନ ସ୍ୱୟଂ ଜଗଦମ୍ବାଙ୍କୁ ଭଗିନୀରୂପେ ପାଇଛନ୍ତି ।'' ଅଧିକନ୍ତୁ ଘଟଣା-ପରମ୍ପରାରୁ ଜଣାଯାଏ, ଶ୍ରୀମା'ଙ୍କ ଦେବୀତ୍ୱ ବିଷୟରେ ସେମାନେ ସମ୍ପୂର୍ଣ୍ଣ ଅଜ୍ଞ ନ ଥିଲେ । କିନ୍ତୁ ସାଂସାରିକ ଅଭାବର ଚିନ୍ତାରେ ସେହି ଜ୍ଞାନ ଆବୃତ ଥିବାରୁ ତାହା କାର୍ଯ୍ୟକାରୀ ହୋଇ ନାହିଁ ।

ଥରେ ଦୁର୍ଗାପୂଜା ପରେ ମା' ଭକ୍ତମାନଙ୍କ ସହିତ ଗାଁକୁ ଯିବାକୁ ବାହାରିଲେ । ମାମୁଁମାନଙ୍କୁ ସମ୍ବାଦ ଦିଆଗଲା—ଯେପରିକି ସେମାନେ ଆମୋଦର ନଈ କୂଳରେ ସେମାନଙ୍କୁ ନେବା ପାଇଁ ପ୍ରସ୍ତୁତ ଥାଆନ୍ତି । ଯଥା ସମୟରେ ସନ୍ଧ୍ୟାବେଳେ ଆମୋଦର ତୀରରେ ପହଞ୍ଚି ସେମାନେ ଦେଖିଲେ ଯେ କେହି ଆସିନାହାନ୍ତି । ଅତଏବ ଶ୍ରୀମା' ତାଙ୍କ ସଙ୍ଗୀମାନଙ୍କୁ ନେଇ ବହୁ ଅସୁବିଧାରେ ନଈ ପାରି ହୋଇ ଜୟରାମବାଟୀରେ ପହଞ୍ଚିଲେ । ଶ୍ରୀମା' ପ୍ରସନ୍ନ ମାମୁଁଙ୍କୁ ପଚାରିଲେ—''ମୁଁ ଆସିଲି, ଅଥଚ ତୁ ନଈକୂଳକୁ ଲୋକ ପଠାଇଲୁ ନାହିଁ କାହିଁକି ? ମୋର ପିଲାମାନେ ଆସିଛନ୍ତି । ତୁ ଗୋଟିଏ ଲୋକ ପଠାଇଲୁ ନାହିଁ କି ନିଜେ ମଧ୍ୟ ଆସିଲୁ ନାହିଁ ?'' ମାମୁଁ ଉତ୍ତର ଦେଲେ, ''ଦେଈ, ମୁଁ କାଳୀର ଭୟରେ ଲୋକ ପଠାଇଲି ନାହିଁ । ନ ହେଲେ କାଳୀ କହିବ, 'ଦେଈକୁ ଏମାନେ ହାତ କରିନେଇଛନ୍ତି ।' ମୁଁ କ'ଣ ବୁଝିନାହିଁ ତୁମେ କିଏ ଏବଂ ଏହି ଭକ୍ତମାନେ କିଏ ? ସବୁ ଜାଣିଛି, କିନ୍ତୁ କିଛି କରିବାର ସାଧ ନାହିଁ । ଭଗବାନ ଏଥର ସେହି କ୍ଷମତା ଦେଇନାହାନ୍ତି । ଆଶୀର୍ବାଦ କର, ତୁମକୁ ଯେପରି ଏଥର ପାଇଛି, ପ୍ରତି ଜନ୍ମରେ ସେହିପରି ପାଏ; ଅନ୍ୟ କିଛି ମୁଁ ଚାହେଁ ନାହିଁ ।'' ଶ୍ରୀମା' କହିଲେ, ''ପୁଣି ତୁମମାନଙ୍କର ଘରକୁ ଆସିବି ? ଏଥର ଯାହା ହୋଇଗଲା । ଶ୍ରୀରାମଚନ୍ଦ୍ର କହିଥିଲେ, 'ମରି ଯେପରି ଆଉ ନ ଜନ୍ମଇ କୌଶଲ୍ୟା ଉଦରେ ।' ଆହୁରି ପୁଣି ତୁମମାନଙ୍କ ଭିତରେ ?''

ପ୍ରସନ୍ନମାମୁଁ ଶ୍ରୀମା'ଙ୍କୁ କହିଲେ, ''ଦେଈ, ଶୁଣିଲି, ତୁ କାହାକୁ ସ୍ୱପ୍ନରେ ଦେଖାଦେଇ ତାହାକୁ ମନ୍ତ୍ର ଦେଇଛୁ ଏବଂ ଏହା ମଧ୍ୟ କହିଛୁ ଯେ ତାହାର ମୁକ୍ତି ହେବ । ଆମମାନଙ୍କୁ ତୁ କାଖେଇ କୁଣ୍ଢେଇ ମଣିଷ କରିଛୁ, ଆମେମାନେ କଅଣ ଚିରଦିନ ଏହିପରି ରହିବୁ ?'' ମା' କହିଲେ, ''ଠାକୁର ଯାହା କରିବେ ତାହା ହେବ । ଆଉ ଦେଖ, ଶ୍ରୀକୃଷ୍ଣ ଗଉଡ଼ ପିଲାମାନଙ୍କ ସହିତ ହସିଛନ୍ତି, ବୁଲିଛନ୍ତି, ତାଙ୍କ ଅଇଁଠା ଖାଇଛନ୍ତି; କିନ୍ତୁ ସେମାନେ କଅଣ ଜାଣିଥିଲେ କୃଷ୍ଣ କିଏ ?''

ଶ୍ରୀମା' ଯେ ସବୁବେଳେ ଏପରି ଔଦାସୀନ୍ୟ ଦେଖାଉଥିଲେ ତାହା ନୁହେଁ । ପ୍ରସନ୍ନମାମୁଁ ଦିନେ ପ୍ରଶ୍ନ କଲେ, ''ଦେଇ ! ଗୋଟିଏ ଗର୍ଭରୁ ଜନ୍ମିଛୁ; ଆମମାନଙ୍କର କଅଣ ହେବ ?'' ଶ୍ରୀମା' ଅଭୟ ଦେଇ କହିଲେ, ''ତାହା ସତ; ତୁମମାନଙ୍କର ଭୟ କଅଣ ?'' ଏହିସବୁ ସମର୍ଥ ଅଥଚ ବିବେଚନାହୀନ ଭାଇମାନଙ୍କ ସାଙ୍ଗରେ ଥିଲେ ଅବୁଝା ଓ ଅସମର୍ଥା ଭାଉଜମାନେ । ଏମାନଙ୍କ ମଧ୍ୟରୁ କାହାରି କାହାରି ଦାୟିତ୍ୱ ମଧ୍ୟ ଶ୍ରୀମା'ଙ୍କୁ ନେବାକୁ ପଡୁଥିଲା । ସର୍ବୋପରି ଥିଲେ ଅଭୟମାମୁଁଙ୍କ ବିଧବା ପତ୍ନୀ 'ସୁରବାଳା' । ମାଈଙ୍କର ପାଗଳାମି ମଝିରେ ମଝିରେ ଏତେ ବଢୁଥିଲା ଯେ, ଶ୍ରୀମା' କହୁଥିଲେ, ''ହୁଏତ କଣ୍ଟା ସହିତ ବେଲପତ୍ର ଶିବଙ୍କ ମୁଣ୍ଡରେ ଦେଇଛି—ତେଣୁ ମୋ ଜୀବନରେ ଏହି କଣ୍ଟକ ।''

ଶ୍ରୀମା' ଯେତେବେଳେ ଜୟରାମବାଟୀରେ ରହୁଥିଲେ, ତାଙ୍କୁ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ପଡୁଥିଲା । କୌଣସି କୌଣସି ଦିନ ସକାଳୁ ସନ୍ଧ୍ୟାଯାଏ ହାଣ୍ଡି ହାଣ୍ଡି ଧାନ ଉଁସାଇବାକୁ ପଡୁଥିଲା, ଅନ୍ୟ ଦିନ ହୁଏତ ଢ଼େଙ୍କିରେ ଧାନକୁଟା ହେଉଛି, ତା'ସହିତ ପୁଣି ରୋଷେଇ କରିବା, ବାସନ ମାଜିବା, ପାଣି ଆଣିବା— ସବୁ କିଛି । ତାଙ୍କ ଜନନୀ ଯେପରି ବୃଦ୍ଧ ବୟସରେ ବି ଅକ୍ଳାନ୍ତ ପରିଶ୍ରମ କରୁଥିଲେ, ସେହିପରି ଶ୍ରୀମା' ମଧ୍ୟ ତାଙ୍କ ପାର୍ଶ୍ୱରେ ରହି ପ୍ରତି କାମରେ ତାଙ୍କୁ ସାହାଯ୍ୟ କରୁଥିଲେ । ଦିନେ ତାଙ୍କର କୌଣସି ଭାଇଙ୍କ ପାଇଁ ଶ୍ରୀମା'ଙ୍କୁ ଅସମ୍ଭବ ପରିଶ୍ରମ କରିବାକୁ ପଡ଼ିଥିଲା । ଏଥିପାଇଁ ତାଙ୍କ ଗୋଡ଼ ଫୁଲିଯିବାରୁ ଶ୍ରୀମା' କହିଲେ, ''ଗିରିଶବାବୁ ସତ କଥା କହିଥିଲେ, 'ଏମାନେ ମୁଣ୍ଡକଟା ତପସ୍ୟା କରିଥିଲେ' ।''

ଏହି ସମୟରେ (ଖ୍ରୀ: ୧୯୦୦) ଶ୍ରୀମା' ସାଧାରଣତଃ ଜୟରାମବାଟୀରେ ରହୁଥିଲେ । ମଝିରେ ମଝିରେ କାମାରପୁକୁର ଯାଇ କିଛି ଦିନ କଟାଇ ଆସୁଥିଲେ । ଥରେ ସେଠାକୁ ଯାଇ ଅସୁସ୍ଥ ହୋଇ ପଡ଼ିଲେ । କଲେରାରେ ଆକ୍ରାନ୍ତ ହୋଇ ଶ୍ରୀମା' ଅବଶ ହୋଇ ପଡ଼ିରହିଲେ । ସାଗର-ମା' ବୋଲି ଜଣେ ସ୍ତ୍ରୀ-ଲୋକ ମା'ଙ୍କ ସେବା କରୁଥିଲା । ସେବାରେ ସନ୍ତୁଷ୍ଟ ହୋଇ ଶ୍ରୀମା' ସାଗର-ମା'ଙ୍କୁ ଆଶୀର୍ବାଦ କରିଥିଲେ—''ତୋର ଭାତଲୁଗାର କଷ୍ଟ ହେବ ନାହିଁ ।'' ଏହି ଘଟଣାର ବର୍ଣ୍ଣନା କରି ପରବର୍ତ୍ତୀ କାଳରେ ସେ କହିଥିଲା, ''ତା' ସତ କଥା, ଏପର୍ଯ୍ୟନ୍ତ ମୋର ଭାତଲୁଗାର କଷ୍ଟ ହୋଇନାହିଁ, ଠାକୁର ସବୁ ଚଳାଇ ନେଉଛନ୍ତି ।''

ପରବର୍ଷ ଶ୍ରୀମତ୍ ସ୍ୱାମୀ ବିବେକାନନ୍ଦ ବେଲୁଡ଼ ମଠରେ ଦୁର୍ଗୋତ୍ସବ କଲେ । ଶ୍ରୀମା'ଙ୍କ ଉପସ୍ଥିତି ଏକାନ୍ତ ବାଞ୍ଛନୀୟ ଜାଣି ସେ ଶ୍ରୀମା' ଓ ତାଙ୍କ ସ୍ତ୍ରୀ-ଭକ୍ତମାନଙ୍କୁ ନୀଳାମ୍ବର ବାବୁଙ୍କ ଭଡ଼ାଘରେ ରହିବାର ବ୍ୟବସ୍ଥା କରିଥିଲେ (୧୮ରୁ ୨୨ ଅକ୍ଟୋବର ୧୯୦୧) । ପୂଜାର ସଂକଳ୍ପ ଶ୍ରୀଶ୍ରୀମା'ଙ୍କ ନାମରେ ହୋଇଥିଲା, କାରଣ ସ୍ୱାମୀଜୀ କହିଥିଲେ ''ଆମେ ତ କୌପୀନଧାରୀ, ଆମମାନଙ୍କ ନାମରେ

ସଂକଳ୍ପ ହେବ ନାହିଁ ।'' ମା'ଙ୍କ ସେବକ କୃଷ୍ଣଲାଲ ମହାରାଜ ପୂଜକର ଆସନ ଗ୍ରହଣ କରିଥିଲେ ଏବଂ ତନ୍ତ୍ରଧାରକ ହୋଇଥିଲେ, ସ୍ୱାମୀ ରାମକୃଷ୍ଣାନନ୍ଦଜୀଙ୍କ ପିତା ଶ୍ରୀ ଈଶ୍ୱରଚନ୍ଦ୍ର ଚକ୍ରବର୍ତ୍ତୀ । ସ୍ୱାମୀଜୀ ଶ୍ରୀମା'ଙ୍କ ହାତରେ ତନ୍ତ୍ରଧାରକଙ୍କୁ ୨୫ଟଙ୍କା ପ୍ରଣାମୀ ଦେଇଥିଲେ ।

ପରେ ପ୍ରାୟ ଦୁଇବର୍ଷ କାଳ ଜୟରାମବାଟୀରେ ଅବସ୍ଥାନ କରି ଶ୍ରୀମା' କଲିକତାକୁ ଫେରିଆସିଲେ (୧୪ ଫେବୃଆରୀ ୧୯୦୪) । ଶ୍ରୀମା'ଙ୍କର ରହିବା ପାଇଁ ସାରଦାନନ୍ଦଜୀ ବାଗ୍‌ବଜାର ଷ୍ଟ୍ରୀଟ୍, ୨/୧ ନମ୍ବର ଘରଟି ଭଡ଼ା ନେଇଥିଲେ । ଶ୍ରୀମା'ଙ୍କ ତତ୍ତ୍ୱାବଧାନ ପାଇଁ ସାରଦାନନ୍ଦଜୀ ମଧ୍ୟ ଏହି ଘରେ ରହୁଥିଲେ । ଏହି ସମୟରେ ଶ୍ରୀଯୁକ୍ତା ଓଲିବୁଲ୍ ମା'ଙ୍କ ସେବା ପାଇଁ ନିୟମିତ ଅର୍ଥ ସାହାଯ୍ୟ ଆମେରିକାରୁ ପଠାଉଥିଲେ ।

ଶ୍ରୀମା'ଙ୍କ ସହିତ ତାଙ୍କ ଭାଇ ଅଭୟଙ୍କ ସ୍ତ୍ରୀ ସୁରବାଳା (ପାଗଳୀ ମାଈଁ) ଓ ରାଧୁ ରହୁଥିଲେ । ଗୋଟିଏ ରାତିରେ ଚୋର ରୋଷେଇ ଘରେ ପଶିଥିଲା । ପାଗଳୀ ମାଈଁ ହଠାତ୍ ଚୋରକୁ ଦେଖି ଅଜ୍ଞାନ ହୋଇପଡ଼ିଗଲେ । ତାଙ୍କର ସଂଜ୍ଞା ଫେରିଲା, କିନ୍ତୁ ମସ୍ତିଷ୍କବିକୃତି ବହୁତ ବଢ଼ିଗଲା । ଶ୍ରୀମା' ଠିକ୍ କଲେ ସେମାନଙ୍କୁ ନେଇ ଗାଁକୁ ଚାଲିଯିବେ । କୁସୁମକୁମାରୀ ନାମକ ମହିଳା ରାଧୁର ଲାଳନ ପାଳନ କରୁଥିଲେ । ଯୋଗୀନ୍-ମା' ଓ ଅନ୍ୟାନ୍ୟ ଭକ୍ତମାନେ ଶ୍ରୀମା'ଙ୍କୁ କହିଲେ ଯେ କୁସୁମକୁମାରୀଙ୍କ ଉପରେ ରାଧୁର ଦାୟିତ୍ୱ ଦେଇ ସେମାନଙ୍କୁ ଗାଁକୁ ପଠାଇଦେବା ଉଚିତ । ସେଥିପାଇଁ ଭକ୍ତମାନେ ସବୁ ବ୍ୟୟ ବହନ କରିବେ; କିନ୍ତୁ ଶ୍ରୀମା' କଲିକତାରେ ରହନ୍ତୁ । ଶ୍ରୀମା' ସବୁ ଶୁଣିଗଲେ, କିନ୍ତୁ କୌଣସି ଉତ୍ତର ଦେଲେ ନାହିଁ । ସନ୍ଧ୍ୟାବେଳେ ଜପ କରୁ କରୁ ତାଙ୍କ ଆଖି ସାମନାରେ ଅକସ୍ମାତ୍ ସେହି ଦୃଶ୍ୟ ଭାସି ଉଠିଲା । ସେ ଦେଖିଲେ, ଜୟରାମବାଟୀରେ ରାଧୁ ଉନ୍ମାଦିନୀ ମାତାଙ୍କ ବ୍ୟବହାରରେ ବହୁତ କଷ୍ଟ ପାଉଛି । ଏପରିକି, ଯେକୌଣସି ସମୟରେ ତା'ର ପ୍ରାଣହାନିର ସମ୍ଭାବନା ମଧ୍ୟ ରହିଛି । ଶ୍ରୀମା' ଏତେ ବିଚଳିତ ହେଲେ ଯେ ତତ୍‌କ୍ଷଣାତ୍ ଆସନ ତ୍ୟାଗ କରି ଯୋଗୀନ୍-ମା'ଙ୍କୁ ସମସ୍ତ କଥା କହିଲେ । ରାଧୁକୁ ନେଇ ଗାଁକୁ ଯିବା ସ୍ଥିର କଲେ ।

ମାତାଠାକୁରାଣୀଙ୍କର ପୋଷ୍ୟମାନଙ୍କ ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଥାଏ । ତାଙ୍କ ଖୁଡୁତା ନୀଳମାଧବ ଶେଷ ବୟସରେ ଶ୍ରୀମା'ଙ୍କ ଉପରେ ନିର୍ଭର କରୁଥିଲେ । ସେ ଅବିବାହିତ ଥିବାରୁ ତାଙ୍କର ଦେଖାଶୁଣା ପାଇଁ କେହି ନ ଥିଲେ । ଶ୍ରୀମା' ନିଜେ ତାଙ୍କର ସେବା କରୁଥିଲେ । ତାଙ୍କ ପାଇଁ ଯେଉଁସବୁ ଜିନିଷ ଭକ୍ତମାନେ ଆଣିଦେଉଥିଲେ, ସେଥିରୁ ବାଛି ବାଛି ଉତ୍ତମ ଜିନିଷଗୁଡ଼ିକ ନୀଳମାଧବଙ୍କ ପାଇଁ ପଠାଇ ଦେଉଥିଲେ । କେହି ପ୍ରତିବାଦ କଲେ ଶ୍ରୀମା'କହୁଥିଲେ, ''ବାବା, ତାଙ୍କର ଆଉ କେତେ ଦିନ, ଆମେ ତ ଅନେକ ଦିନ ବଞ୍ଚିବୁ, ଅନେକ ଖାଇବୁ ।''

ତାଙ୍କର ପ୍ରତି କଥା ଓ କାର୍ଯ୍ୟରେ ଏପରି ଆନ୍ତରିକତା କେବଳ ଯେ ନୀଳମାଧବଙ୍କ କ୍ଷେତ୍ରରେ ଫୁଟିଉଠୁଥିଲା ତାହା ନୁହେଁ, ଏହାର ଆହୁରି ଅନେକ ପରିଚୟ ଆମେ ଯଥାସମୟରେ ପାଇବା ।

ବାଗ୍‌ବଜାରରେ ଅବସ୍ଥାନ କାଳରେ ଶ୍ରୀମା' ନିବେଦିତା ବିଦ୍ୟାଳୟ ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ । ବିଦ୍ୟାଳୟର କର୍ତ୍ତୃପକ୍ଷ ମଧ୍ୟ ତାଙ୍କ ସେବା ପାଇଁ ସର୍ବଦା ପ୍ରସ୍ତୁତ ଥିଲେ । ବିଦ୍ୟାଳୟର ଘୋଡ଼ାଗାଡ଼ିରେ ସେ ପ୍ରତିଦିନ ଗଙ୍ଗା-ସ୍ନାନ ପାଇଁ ଯାଉଥିଲେ ଏବଂ ଛୁଟିଦିନ ଏହି ଗାଡ଼ିରେ ଚଢ଼ି କିଲ୍ଲାପଡ଼ିଆ, ଚିଡ଼ିଆଖାନା, ଯାଦୁଘର, କାଳୀଘାଟ ଇତ୍ୟାଦି ଦେଖିବା ପାଇଁ ଯାଉଥିଲେ । ସମ୍ଭବ ହେଲେ କିଛି ବାଟ ଚାଲି ଚାଲି ମଧ୍ୟ ଯାଉଥିଲେ—ଉଦ୍ଦେଶ୍ୟ ଗୋଡ଼ର ବାତ ଯଦି କିଛିଟା କମେ । ଦକ୍ଷିଣେଶ୍ୱରରେ ଶ୍ରୀମା'ଙ୍କ ଗୋଡ଼ରେ ଯେଉଁ ବାତ ହୋଇଥିଲା, ତାହା ତାଙ୍କର ଚିରସାଥୀ ହୋଇ ରହିଲା ।

ଜନ୍ମାଷ୍ଟମୀ ଉତ୍ସବ ଉପଲକ୍ଷେ ଆମନ୍ତ୍ରିତ ହୋଇ ଶ୍ରୀମା' କାଙ୍କୁଡ଼ଗାଛି ଯୋଗୋଦ୍ୟାନକୁ ଯାଇଥିଲେ । ଏହି ଦିବସରେ ଠାକୁରଙ୍କର ପୂତଦେହାବଶେଷ ୧୮୮୬ ଖ୍ରୀଷ୍ଟାବ୍ଦରେ ସମାହିତ କରାଯାଇଥିଲା । ଉତ୍ସବ ଦେଖି ଶ୍ରୀମା' ଆନନ୍ଦିତ ହେଲେ । ଆଶ୍ରମର ଅଧ୍ୟକ୍ଷ ଶ୍ରୀ ଯୋଗବିନୋଦ ମହାରାଜଙ୍କ ଅନୁରୋଧରେ ତାଙ୍କୁ ଦୀର୍ଘକାଳ ଧରି ଶହ ଶହ ଭକ୍ତମାନଙ୍କର ପ୍ରଣାମ ଗ୍ରହଣ କରିବା ପାଇଁ ବସି ରହିବାକୁ ପଡ଼ିଥିଲା ।

ଏହି ସମୟରେ ଅତି ବୃଦ୍ଧା ଗୋପାଳଙ୍କ ମା' (ଶ୍ରୀମତୀ ଅଘୋରମଣୀ ଦେବୀ, ଯେ ଶ୍ରୀରାମକୃଷ୍ଣଙ୍କୁ ବାଳଗୋପାଳ ରୂପେ ଦେଖୁଥିଲେ) ପୀଡ଼ିତା ହୋଇ ଭଗିନୀ ନିବେଦିତାଙ୍କ ତତ୍ତ୍ୱାବଧାନରେ ବାଳିକା ବିଦ୍ୟାଳୟରେ ଅବସ୍ଥାନ କରୁଥିଲେ । ସେ ଅତି ଉଚ୍ଚକୋଟୀର ସାଧିକା ଥିଲେ ଏବଂ ସେ ତାଙ୍କ ଇଷ୍ଟଦେବ ବାଳଗୋପାଳଙ୍କୁ ସର୍ବଦା ଜୀବନ୍ତ ଭାବେ ଦର୍ଶନ କରୁଥିଲେ । ଶ୍ରୀମା' ତାଙ୍କୁ ନିଜ ଶାଶୁପରି ସମ୍ମାନ କରୁଥିଲେ ଏବଂ ପ୍ରାୟ ଦେଖା କରିବାକୁ ଯାଉଥିଲେ । ତାଙ୍କ ଆହାର ଶ୍ରୀମା' ପ୍ରତିଦିନ ପଠାଇ ଦେଉଥିଲେ । ଶେଷ ଅବସ୍ଥାରେ ବୃଦ୍ଧାଙ୍କର ବାହ୍ୟଜ୍ଞାନ ପ୍ରାୟ ରହୁ ନ ଥିଲା । ସର୍ବଦା ଜପ କରୁଥିଲେ । କାହାକୁ ଚିହ୍ନି ପାରୁ ନ ଥିଲେ କିନ୍ତୁ ଶ୍ରୀମା' ନିକଟକୁ ଆସିଲେ ଅସ୍ପଷ୍ଟ ସ୍ୱରରେ କହୁଥିଲେ, ''କିଏ ? ବୋହୂ ! ଆସ ।''

ଦୀର୍ଘକାଳ ମ୍ୟାଲେରିଆ ରୋଗ ଭୋଗିଥିବାରୁ ଶ୍ରୀମା' ସେହିବର୍ଷ ଗାଁକୁ ଜଗଦ୍ଧାତ୍ରୀ ପୂଜାରେ ଯୋଗ ଦେବା ପାଇଁ ଗଲେ ନାହିଁ (୧୯୦୪ ଖ୍ରୀଷ୍ଟାବ୍ଦ) । ଭାଇ ବରଦାପ୍ରସାଦ ଓ ଜଣେ ଭକ୍ତଙ୍କ ହାତରେ ସମସ୍ତ ପୂଜାସାମଗ୍ରୀ ଶ୍ରୀମା' ପଠାଇଦେଲେ ଏବଂ ପୂଜା ପରେ ସେମାନଙ୍କ ନିକଟରୁ ସବୁକଥା ଜାଣି ଆନନ୍ଦିତ ହେଲେ ।

ମାର୍ଗଶୀର ମାସରେ ଶ୍ରୀଜଗନ୍ନାଥ-କ୍ଷେତ୍ରକୁ ଯିବାର ଆୟୋଜନ ଚାଲିଲା । ସେତେବେଳକୁ ପୁରୀ ପର୍ଯ୍ୟନ୍ତ ବେଙ୍ଗଲ-ନାଗପୁର ରେଳ ଲାଇନ୍ ପ୍ରସ୍ତୁତ ହୋଇଯାଇଛି (୧୯୦୪) । ଦ୍ୱିତୀୟ ଶ୍ରେଣୀର ଗୋଟିଏ ରିଜର୍ଭ ଡବାରେ ଶ୍ରୀମା'ଙ୍କ ସହିତ ଯାତ୍ରା କଲେ ନୀଳମାଧବ, ପାଗଳୀ ମାଈଁ, ଗୋଲାପ-ମା', ଲକ୍ଷ୍ମୀ ଦେବୀ, ରାଧୁ, କୁସୁମକୁମାରୀ ଓ ଅନ୍ୟ ସ୍ତ୍ରୀ-ଭକ୍ତମାନେ ଏବଂ ମଧ୍ୟମ ଶ୍ରେଣୀର ଗୋଟିଏ ଡବାରେ ଥିଲେ ଶ୍ରୀମତ୍ ସ୍ୱାମୀ ପ୍ରେମାନନ୍ଦଜୀ ଓ ଅନ୍ୟ କେତେଜଣ ପୁରୁଷ ଭକ୍ତ । ସାରାରାତି ଗାଡ଼ିରେ କଟାଇ ଏମାନେ ପର ଦିବସ ସକାଳେ ପୁରୀଧାମରେ ଉପସ୍ଥିତ ହେଲେ । ଶ୍ରୀମନ୍ଦିର ନିକଟରେ ବଳରାମ ବାବୁଙ୍କ ଯାତ୍ରୀନିବାସ 'କ୍ଷେତ୍ରବାସୀଙ୍କ ମଠ' ରେ ଶ୍ରୀମା' ଓ ତାଙ୍କର ସଙ୍ଗୀମାନେ ରହିଲେ । ପ୍ରେମାନନ୍ଦଜୀ ସମୁଦ୍ରତୀର ନିକଟବର୍ତ୍ତୀ 'ଶଶିନିକେତନ' କୁ ଚାଲିଗଲେ । ପୁରୀରେ ପହଞ୍ଚି ଶ୍ରୀମା' ଧୂଳିପାଦରେ ପ୍ରଥମେ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରି ଆସିଲେ । ଭକ୍ତମାନଙ୍କ ସହିତ ପ୍ରତ୍ୟହ ସକାଳେ ଦେବଦର୍ଶନ ପାଇଁ ଯାଉଥିଲେ ଏବଂ ସନ୍ଧ୍ୟାରେ ଆରତି ଦେଖିବା ପାଇଁ ମନ୍ଦିରରେ ଉପସ୍ଥିତ ହେଉଥିଲେ । ଦିନେ ପଣ୍ଡା ଆସି ପ୍ରାଚୀନ ଗ୍ରନ୍ଥରୁ ଶ୍ରୀଶ୍ରୀଜଗନ୍ନାଥଙ୍କ ଇତିହାସ ଓ ମହାତ୍ମ୍ୟ ବର୍ଣ୍ଣନା କଲେ । ସେଦିନ ଶ୍ରୀମା' ପ୍ରାୟ ୫୦ଜଣ ପଣ୍ଡାଙ୍କୁ ପରିତୋଷପୂର୍ବକ ଭୋଜନ କରାଇଥିଲେ । ଶ୍ରୀମା' ଓ ଅନ୍ୟାନ୍ୟ ଭକ୍ତମାନଙ୍କ ପାଇଁ ଶ୍ରୀମନ୍ଦିରରୁ ପ୍ରତିଦିନ ମହାପ୍ରସାଦ ଆସୁଥିଲା ।

ଏହି ସମୟରେ ମା'ଙ୍କ ଗୋଡ଼ରେ ଗୋଟିଏ ବଥ ହେଲା । ସେଥିଯୋଗୁଁ ସେ ଭଲ ଭାବରେ ଚାଲିପାରୁ ନ ଥିଲେ । ଅଥଚ ଅସ୍ତ୍ରୋପଚାର ପାଇଁ ମଧ୍ୟ ସେ ସମ୍ମତ ହେଲେ ନାହିଁ । ପ୍ରେମାନନ୍ଦଜୀ ଜଣେ ଯୁବକ ଡାକ୍ତରଙ୍କୁ ନେଇ ଆସିଲେ । ଶ୍ରୀମା' ଅଭ୍ୟାସବଶତଃ କେହି ଆସିଲେ ଚଦର ଘୋଡ଼ାଇ ହୋଇ ବସୁଥିଲେ । ପାଦସ୍ପର୍ଶ କରି ପ୍ରମାଣ କରୁଥିବା ଅବସ୍ଥାରେ ଡାକ୍ତର ବଥର ମୁହଁ ଅସ୍ତ୍ର ଦେଇ ଚିରି ଦେଲେ ଏବଂ ଶ୍ରୀମା'ଙ୍କୁ ଅପରାଧ ପାଇଁ କ୍ଷମା ମାଗିଲେ । ଶ୍ରୀମା' ପ୍ରଥମେ ଟିକେ ବିରକ୍ତ ହେଲେ ସତ, କିନ୍ତୁ ପରେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ି କହିଲେ, ''ଆହା ! ଆରାମ ଲାଗୁଛି ।'' ଯେଉଁମାନଙ୍କ ଦ୍ୱାରା ଏହି କାର୍ଯ୍ୟ ସାଧିତ ହୋଇଥିଲା ସେମାନଙ୍କୁ ସେ ଆଶୀର୍ବାଦ କଲେ ।

ମା'ଙ୍କର ହଠାତ୍ ଇଚ୍ଛା ହେଲା ଗାଁରୁ ଜନନୀ ଶ୍ୟାମାସୁନ୍ଦରୀ ପ୍ରଭୃତିଙ୍କୁ ଆଣି ଜଗନ୍ନାଥ ଦର୍ଶନ କରାଇବେ । ଜଣେ ଭକ୍ତ ସେଥିପାଇଁ ଗାଁକୁ ଗଲେ ଏବଂ ଜୟରାମବାଟୀରେ ପହଞ୍ଚି ଶ୍ୟାମାସୁନ୍ଦରୀଦେବୀ ଓ କାଳୀମାମୁଁଙ୍କୁ ଶ୍ରୀକ୍ଷେତ୍ର ଯିବା ପାଇଁ ଆହ୍ୱାନ ଜଣାଇଲେ । ତୀର୍ଥଯାତ୍ରା କଥା ଶୁଣି ଦଳ ବଢ଼ିବାରେ ଲାଗିଲା । ସେମାନେ କୋତୁଲପୁର ପର୍ଯ୍ୟନ୍ତ ଚାଲି ଚାଲି ଆସି ସେଠାରୁ ଓଟ-ଗାଡ଼ିରେ ବିଷ୍ଣୁପୁରରେ ପହଞ୍ଚିଲେ । ସେଠାରୁ ପୁରୀ ପାଇଁ ରେଳଗାଡ଼ି ଧରିଲେ । ଏମାନଙ୍କୁ

ଦେଖି ପାଗଳୀମାଈଙ୍କ କ୍ରୋଧ ଚରମ ସୀମାରେ ପହଞ୍ଚିଲା ଏବଂ ସେ ଗ୍ରାମ୍ୟ ଭାଷାରେ ଶ୍ରୀମା'ଙ୍କୁ ଅଶ୍ରାବ୍ୟ କଥା କହିବାକୁ ଲାଗିଲେ । ସେ ଚାହୁଁ ନ ଥିଲେ ଯେ ସେ ଓ ରାଧୁ ବ୍ୟତୀତ ପରିବାରର ଅନ୍ୟ କେହି ଶ୍ରୀମା'ଙ୍କ ସ୍ନେହଯତ୍ନର ଅଂଶୀଦାର ହେଉ ।

ଜଗନ୍ନାଥ-କ୍ଷେତ୍ରର ରୀତି ଅନୁଯାୟୀ ମହାପ୍ରସାଦ ଧାରଣ କରିବା ବିଷୟରେ ଜାତି ବିଚାର କରାଯାଏ ନାହିଁ । ଶ୍ରୀମନ୍ଦିର ଅନ୍ତର୍ଗତ ଆନନ୍ଦ-ବଜାରରେ ଯାତ୍ରୀମାନେ ଆଚଣ୍ଡାଳ ପରସ୍ପର ମୁହଁରେ ପ୍ରସାଦ ଦିଅନ୍ତି ଏବଂ ସମସ୍ତଙ୍କ ହାତରୁ ତାହା ଗ୍ରହଣ କରନ୍ତି । ଏହି ପ୍ରଥାର ମର୍ଯ୍ୟାଦା ସ୍ୱୀକାର କରି ଶ୍ରୀମା' ଦିନେ ଜଗନ୍ନାଥଙ୍କ ବାଲ୍ୟଭୋଗର ଖେଚୁଡ଼ି ମହାପ୍ରସାଦ ସମସ୍ତଙ୍କ ମୁହଁରେ ଦେଲେ ଏବଂ ସ୍ୱୟଂ ସମସ୍ତଙ୍କ ହାତରୁ ତାହା ଗ୍ରହଣ କଲେ ।

ପୌଷମାସରେ ନିଜ ଜନନୀଙ୍କ ସହିତ ଶ୍ରୀମା'ପୁରୀରେ ଥାଆନ୍ତି । ସେତେବେଳେ ତାଙ୍କ ଦେହ ପ୍ରାୟ ସୁସ୍ଥ ଥିଲା । ପୁରୀରେ ଅନେକ ଦ୍ରଷ୍ଟବ୍ୟ ସ୍ଥାନ, ଯଥା—ଜଗନ୍ନାଥଙ୍କର ରନ୍ଧନଶାଳା, ଗୁଣ୍ଡିଚା ମନ୍ଦିର, ନରେନ୍ଦ୍ର ସରୋବର, ଗୋବର୍ଦ୍ଧନ ମଠ, ଇତ୍ୟାଦି ଦର୍ଶନ କଲେ । ମା' ଦୁଇଦିନ ସମୁଦ୍ରରେ ସ୍ନାନ ମଧ୍ୟ କରିଥିଲେ । ସେତେବେଳେ ତାଙ୍କ ମନ ଖୁବ୍ ପ୍ରଫୁଲ୍ଲ ଥିଲା । ସଙ୍ଗୀମାନଙ୍କ ସହିତ ବସି ପୁରୁଣା ଦିନର କଥା ଆଲୋଚନା କରୁଥିଲେ । ଏହି ଭାବରେ କିଛି କାଳ ଆନନ୍ଦରେ କଟାଇ ମାଘ ମାସର ପ୍ରଥମ ଭାଗରେ ଶ୍ରୀମା' ନୀଳାଚଳ ଧାମରୁ ବିଦାୟ ନେଲେ ।

## ସ୍ୱଜନ ବିୟୋଗ

ଶ୍ରୀମା'ଙ୍କ ଦାଦା ନୀଳମାଧବ ଶ୍ୱାସରୋଗ ଭୋଗୁଥିଲେ । ପୁରୀରୁ ଫେରି କିଛିଦିନ ଭିତରେ ରୋଗ ଅତ୍ୟନ୍ତ ବଢ଼ିଗଲା । ଚିକିତ୍ସା ସତ୍ତ୍ୱେ ଅବସ୍ଥା କ୍ରମଶଃ ଖରାପ ହେବାକୁ ଲାଗିଲା । ନିଜ ସୁଖ ସୁବିଧା ପ୍ରତି ଦୃଷ୍ଟି ନ ଦେଇ ମା' ତାଙ୍କ ସେବାରେ ବ୍ୟସ୍ତ ରହୁଥିଲେ । ଶେଷଦିନ ଆସି ଉପସ୍ଥିତ ହେଲା । ଦିନ ଦ୍ୱିପ୍ରହର । ଠାକୁରଙ୍କ ପୂଜା ସରିଛି । ଭକ୍ତମାନଙ୍କ ଏକାନ୍ତ ଅନୁରୋଧରେ ମା' ଆହାର କରିବାକୁ ଗଲେ । ମୁହଁରେ କ'ଣ ଦିଟା ପକାଇ ଶ୍ରୀମା' ଫେରି ଆସିଲେ ଏବଂ ଦେଖିଲେ ସେବକମାନଙ୍କ ମୁହଁ ବିମର୍ଷ ଓ ନତମୁଖ । ଦାଦାଙ୍କ ଶେଷମୁହୂର୍ତ୍ତରେ ପାଖରେ ରହିପାରିଲେ ନାହିଁ ବୋଲି ମା'ଙ୍କ ଶ୍ରୀମୁଖ କ୍ରୋଧ ଓ ଅନୁଶୋଚନାରେ ବିରୂପ ହୋଇଗଲା । ପିତୃହରା ବାଳିକା ପରି ସେ କାନ୍ଦିବାକୁ ଲାଗିଲେ । ଠାକୁରଘରୁ ନିର୍ମାଲ୍ୟ ଆଣି ଶବର ମସ୍ତକ ଓ ବକ୍ଷସ୍ଥଳରେ ସ୍ଥାପନ କଲେ । ଶବଯାତ୍ରା ଆରମ୍ଭ ହେଲା । ବାହକ ତିନିଜଣ ବ୍ରାହ୍ମଣ ଓ ଜଣେ ଶୂଦ୍ର । ଗୋଲାପ-ମା' ଶ୍ରୀମା'ଙ୍କୁ ଏହି ଅବୈଧ ଘଟଣା ଦେଖାଇ କହିଲେ, ''ମା' ଜଣେ ଶୂଦ୍ର ବ୍ରାହ୍ମଣର ଶବ

ଛୁଇଁଲା ।'' ଶ୍ରୀମା' ଉତ୍ତର ଦେଲେ, ''କିଏ ଶୂଦ୍ର ? ଭକ୍ତମାନଙ୍କ କଅଣ କୌଣସି ଜାତି ଅଛି ?''

ପ୍ରସନ୍ନ ମାମୁଁଙ୍କ ଝିଅ ନଳିନୀଙ୍କର ବିବାହ ହେଲା ଗୋଘାଟ ଗ୍ରାମର ଶ୍ରୀ ପ୍ରମଥନାଥ ଭଟ୍ଟାଚାର୍ଯ୍ୟଙ୍କ ସହିତ । ସେମାନେ କଲିକତାର ସିମଲା ଷ୍ଟ୍ରୀଟ୍‌ରେ ରହୁଥିଲେ । ପ୍ରମଥନାଥ ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ରୋଗ ଡବଲ ନିମୋନିଆଁ । ଶ୍ରୀମା' ମଝିରେ ମଝିରେ ତାଙ୍କୁ ଦେଖିବା ପାଇଁ ଆସୁଥିଲେ । ପ୍ରମଥଙ୍କ ଚିକିତ୍ସା ପାଇଁ ଆସୁଥିବା ଜଣେ ଡାକ୍ତରଙ୍କ କଥା ଆମେ ବର୍ତ୍ତମାନ ଆଲୋଚନା କରିବା ।

ଡାକ୍ତର ସେତେବେଳେ ଯୁବକ । କିନ୍ତୁ ପାରିବାରିକ ମନୋମାଳିନ୍ୟ ଯୋଗୁଁ ତାଙ୍କ ଜୀବନ ବିଷମୟ ହୋଇଉଠିଛି । ଅସହାୟ ମାନସିକ ଯନ୍ତ୍ରଣା ଭୁଲିବା ପାଇଁ ମର୍ଫିୟା ଇଞ୍ଜେକ୍‌ସନ ନେବାକୁ ଆରମ୍ଭ କରିଛନ୍ତି । ଦିନେ ଡାକ୍ତରଙ୍କ ବନ୍ଧୁ ତାଙ୍କୁ ଶ୍ରୀମା'ଙ୍କ ନିକଟକୁ ନେଇଗଲେ । ପ୍ରମଥ ସେତେବେଳେ କିଛିପରିମାଣରେ ଭଲ । ମହେନ୍ଦ୍ରନାଥ ଗୁପ୍ତଙ୍କ ଆମନ୍ତ୍ରଣରେ ଶ୍ରୀମା' ଭକ୍ତମାନଙ୍କ ସହିତ ତାଙ୍କ ଘରକୁ ଆସିଥାଆନ୍ତି । ଡାକ୍ତର ସେଠାରେ ଯେତେବେଳେ ଉପସ୍ଥିତ ହେଲେ, ସେତେବେଳେ ଶ୍ରୀମା' ଠାକୁରଘରେ ପୂଜା କରୁଥିଲେ । ମା'ଙ୍କ ଆଦେଶ ଅନୁଯାୟୀ ସେ ଠାକୁରଘରେ ପ୍ରବେଶ କଲେ । ବନ୍ଧୁ ହଠାତ୍ ଆସି ଡାକିବାରୁ ସେ ରୋଗୀକୁ ଦେଖିବାକୁ ଆସିଥିଲେ । ମଧ୍ୟାହ୍ନ ଭୋଜନ କରିସାରିଛନ୍ତି । ପଥରେ ଆସୁ ଆସୁ ବନ୍ଧୁ ଯେତେବେଳେ ଦୀକ୍ଷାର ପ୍ରସ୍ତାବ ଜଣାଇଲେ, ସେତେବେଳେ ଡାକ୍ତର ନିଜ ଅସୁବିଧାର କଥା କହିଲେ । ବନ୍ଧୁ କିନ୍ତୁ ପରାମର୍ଶ ଦେଲେ ଯେ ଏ ବିଷୟରେ ନିଜର ମତାମତ ଛାଡ଼ି ଶ୍ରୀମା'ଙ୍କ ନିର୍ଦ୍ଦେଶ ମାନିନେବା ଭଲ । ଯାହାହେଉ, ଠାକୁରଘରେ ଡାକ୍ତର ଆସି ଉପସ୍ଥିତ ହେଲେ । ଶ୍ରୀମା' ସବୁ ଜାଣିଥିବା ସତ୍ତ୍ୱେ ତାଙ୍କୁ ଦୀକ୍ଷା ଦେଲେ । ଡାକ୍ତରଙ୍କ ମୁହଁ ଏକ ଦିବ୍ୟ ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା । ମନର କାଳିମା କୁଆଡ଼େ ଚାଲିଗଲା । ସେଦିନ ସମସ୍ତଙ୍କ ସହିତ ପ୍ରସାଦ ପାଇବାକୁ ବସି ଡାକ୍ତର ଜାତି-ଅଭିମାନ ଛାଡ଼ି ତାଙ୍କର ଅବ୍ରାହ୍ମଣ ବନ୍ଧୁଙ୍କ ପାତ୍ରରୁ ଅନ୍ନନେଇ ଖାଇଥିଲେ । ଏମାନଙ୍କର ପ୍ରୀତିପୂର୍ଣ୍ଣ ବ୍ୟବହାର ଦେଖି ଶ୍ରୀମା' କହିଥିଲେ, ''ସେମାନେ ସବୁ ସହୋଦର ଭ୍ରାତା ।'' ସେମାନେ ଉତ୍ତରରେ କହିଲେ, ''ତାହା ଠିକ୍ କଥା ମା' ! —ଆମେ ଯେ ସମସ୍ତେ ଆପଣଙ୍କର ସନ୍ତାନ ।'' କ୍ରମେ ଡାକ୍ତରଙ୍କ ମାନସିକ ଅବସ୍ଥାର ଏତେ ଉନ୍ନତି ହୋଇଥିଲା ଯେ ସେ ସବୁ ଅଶାନ୍ତିରୁ ମୁକ୍ତ ହୋଇ ରାମକୃଷ୍ଣ ମିଶନର ସେବାକାର୍ଯ୍ୟ ଓ ମଠରେ ସାଧୁମାନଙ୍କର ଚିକିତ୍ସା ଇତ୍ୟାଦି ପାଇଁ ଯଥେଷ୍ଟ ତ୍ୟାଗ ସ୍ୱୀକାର କରିଥିଲେ ।

ବାଗ୍‌ବଜାରରେ ଅବସ୍ଥାନ କାଳରେ ମା'ଙ୍କର ଅନେକଗୁଡ଼ିଏ ଫଟୋ ଉଠାହୋଇଥିଲା । ଶ୍ରୀମା'ଙ୍କ ଫଟୋ ସ୍ୱାମୀ ବିରାଜାନନ୍ଦଙ୍କ ଆଗ୍ରହରେ

ଭ୍ୟାନ୍‌ଡାଇକ୍ କମ୍ପାନୀର ଷ୍ଟୁଡ଼ିଓରେ ଉଠା ହୋଇଥିଲା । ଏହି ଛବିରେ ଶ୍ରୀମା' ସମ୍ମୁଖକୁ ଦୃଷ୍ଟି ରଖି ଆସନ ଉପରେ ବସିଛନ୍ତି ଓ ତାଙ୍କ ଡାହାଣ ପାଖରେ କୁଣ୍ଡରେ ଗୋଟିଏ ଛୋଟ ଗଛ ଅଛି । ଶ୍ରୀମା'ଙ୍କର ଯେଉଁ ଛବି ସର୍ବାଧିକ ପ୍ରଚଳିତ ଓ ପୂଜିତ ହେଉଛି, ତାହା ଶ୍ରୀଯୁକ୍ତା ଓଲିବୁଲ୍‌ଙ୍କ ବ୍ୟବସ୍ଥା ଅନୁସାରେ ୧୮୯୮ ଖ୍ରୀଷ୍ଟାବ୍ଦରେ ଉଠା ହୋଇଥିଲା । ଫଟୋ ଉଠାଇବା ପୂର୍ବରୁ ଭଗିନୀ ନିବେଦିତା ଶ୍ରୀମା'ଙ୍କର କେଶବିନ୍ୟାସ କରିଥିଲେ ।

ଶ୍ରୀ ଲଳିତ ମୋହନ ଚଟ୍ଟୋପାଧ୍ୟାୟ ନାମକ ଜଣେ ଭକ୍ତ ଶ୍ରୀମା'ଙ୍କ ନିକଟକୁ ଯାତାୟାତ କରୁଥିଲେ । କ୍ରମେ ସେ ଦୀକ୍ଷା ଗ୍ରହଣ ପାଇଁ ଉତ୍ସୁକ ହେଲେ ଏବଂ ଶ୍ରୀମା'ଙ୍କର ଅନୁମତି ପାଇ ସସ୍ତ୍ରୀକ ଦୀକ୍ଷା ଗ୍ରହଣ କରିଥିଲେ । ସେ ମଧ୍ୟ ରାମକୃଷ୍ଣ ମଠ ମିଶନର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ମାତାଠାକୁରାଣୀଙ୍କର ସେବା କରି ନିଜ ଜୀବନ ସାର୍ଥକ କରିଥିଲେ ।

ମାଷ୍ଟର ମହାଶୟଙ୍କ ବିଦ୍ୟାଳୟର ଜଣେ ଛାତ୍ର ବିନୋଦ ବିହାରୀ ସୋମ ତାଙ୍କ ଚେଷ୍ଟାରୁ ଠାକୁରଙ୍କର ସାନ୍ନିଧ୍ୟ ଓ ଆଶ୍ରୟ ଲାଭ କରିଥିଲେ । ପରେ ସେ ଥିଏଟରରେ ଯୋଗଦେଲେ ଏବଂ ଭକ୍ତମାନଙ୍କ ନିକଟରେ ପଦ୍ମବିନୋଦରୂପେ ପରିଚିତ ହୋଇଥିଲେ । ସଙ୍ଗଦୋଷରୁ ସେ ପାନାସକ୍ତ ହେଲେ ଏବଂ ମଧ୍ୟରାତ୍ରିରେ ମାତାଠାକୁରାଣୀଙ୍କ ବାସଭବନର ସମ୍ମୁଖ ରାସ୍ତା ଦେଇ ଘରକୁ ଫେରୁଥିଲେ । ନିଶା କରିଥିବାରୁ ବହୁ ଅସଂଲଗ୍ନ କଥା କହି କହି ଯାଉଥିଲେ । ସ୍ୱାମୀ ସାରଦାନନ୍ଦଜୀଙ୍କୁ ସେ 'ଦୋସ୍ତ' ବୋଲି ଡାକୁଥିଲେ । ଗଭୀର ରାତ୍ରିରେ ଯାଉଯାଉ ସେ 'ଦୋସ୍ତଙ୍କୁ' ଆହ୍ୱାନ କରୁଥିଲେ । ଶ୍ରୀମା'ଙ୍କ ନିଦ୍ରାରେ ବ୍ୟାଘାତ ହେବା ଭୟରେ କେହି ଉତ୍ତର ଦେଉ ନ ଥିଲେ । ଦିନେ ରାତିରେ କୌଣସି ଉତ୍ତର ନ ପାଇ ପଦ୍ମବିନୋଦ ନିଶାର ପ୍ରଭାବରେ ଗାଇବାକୁ ଲାଗିଲେ —

ଉଠଗୋ କରୁଣାମୟୀ ଖୋଲ ଗୋ କୁଟୀରଦ୍ୱାର ।
ଅନ୍ଧାରେ ଦିଶଇ ନାହିଁ, ହୃଦ କମ୍ପେ ଅନିବାର ॥
ଉଚ୍ଚସ୍ୱରେ ଡାକୁଛି ତାରା ତୁମକୁ ଯେ କେତେ ବାର ।
ଦୟାମୟୀ ହୋଇ ଆଜି ଏ କି କର ବ୍ୟବହାର ॥
ସନ୍ତାନେ ରଖି ବାହାରେ, ଅଛ ଶୋଇ ଅନ୍ତଃପୁରେ ।
'ମା, ମା' ବୋଲି ଡାକୁଛି ମୁଁ ହେଲି ଅସ୍ଥି ଚର୍ମସାର ॥
ଧ୍ୱନି–ବର୍ଣ୍ଣ–ତାନ–ଲୟେ ତିନିଗ୍ରାମ ବସାଇଲେ ।
ଏତେ ଡାକେ ତେବେ ନିଦ୍ରା ଭାଙ୍ଗେ ନାହିଁ ମା' ତୁମର ॥
ଖେଳେ ମତ୍ତ ଥିଲି ବୋଲି ତୁମେ ମୁହଁ ବଙ୍କାଇଲ ।
ଚାହଁ ମା' ମୁହଁ ଫେରାଇ, ନ ଖେଳିବ କେବେ ଦୀନ ॥
ରାମ କହେ ତ୍ୟଜି ତୋତେ କିଏ ସାହା ହେବ ମୋତେ ।
ମା' ବିନା କେ ନେବ ମୋର ଏ ଅକୃତୀ ଅଧମ ଭାର ॥

ଗୀତ ଶେଷ ହେବାରୁ ଉପର ମହଲାରେ ମା'ଙ୍କ ଝରକାଟି ଖୋଲିଗଲା । ପଦ୍ମବିନୋଦ ତାହା ଦେଖି ତୃପ୍ତି ସହକାରେ କହିଲେ, ''ଉଠିଛ ମା, ପୁଅର ଡାକ ଶୁଣିଛ, ତାହେଲେ ମୋର ପ୍ରଣାମ ନିଅ ।'' ଏହା କହି ସେ ରାସ୍ତାରେ ଗଡ଼ିବାକୁ ଲାଗିଲେ ଏବଂ ରାସ୍ତାର ଧୂଳି ମୁଣ୍ଡରେ ଲଗାଇ ପୁନର୍ବାର ଗୀତ ଗାଇ ଗାଇ ଚାଲିଲେ—

''ଯତନେ ହୃଦୟେ ରଖ ଆଦରିଣୀ ଶ୍ୟାମା ମା'କୁ, (ମନ) ତୁ ଦେଖ୍ ଆଉ ମୁଁ ଦେଖେ ଆଉ ଯେପରି କେହି ନ ଦେଖେ ।''

ପୁନର୍ବାର ଜୋର୍‌ରେ କହିଲେ, ''ମୁଁ ଦେଖେ, ଦୋସ୍ତ ନ ଦେଖେ ।'' ପରଦିନ ଶ୍ରୀମା' ପଚାରିଲେ, ''ପିଲାଟି କିଏ ?'' ସବୁ ଶୁଣି କହିଲେ, ''ଦେଖୁଛ କିପରି ଜ୍ଞାନରେ ଭରପୂର ।''

ଏହି ଭାବରେ ପଦ୍ମବିନୋଦ ଅନ୍ୟ ଏକ ରାତ୍ରିରେ ମଧ ଶ୍ରୀମା'ଙ୍କ ଦର୍ଶନ ପାଇଥିଲେ । ଭକ୍ତମାନେ ଯେତେବେଳେ ମା'ଙ୍କୁ କହିଲେ ଯେ ତାଙ୍କର ଏପରି ମଧ୍ୟରାତ୍ରିରେ ଉଠିବା ଅନୁଚିତ, ସେତେବେଳେ ସ୍ନେହମୟୀ ମା' କହିଲେ, ''ତା' ଡାକରେ ମୁଁ ସ୍ଥିର ରହିପାରେ ନାହିଁ ।'' ଦୈବକ୍ରମେ କିଛିଦିନ ମଧ୍ୟରେ ପଦ୍ମବିନୋଦ କଠିନ ରୋଗରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ରହିଲେ । ଶେଷ ମୁହୂର୍ତ୍ତରେ ସେ 'ଶ୍ରୀରାମକୃଷ୍ଣ କଥାମୃତ' ଶୁଣିବାକୁ ଚାହିଁଲେ ଏବଂ ଠାକୁରଙ୍କ ଅମୃତବାଣୀ ଶୁଣି ତାଙ୍କ ନୟନ ଅଶ୍ରୁପୂର୍ଣ୍ଣ ହେଲା ଏବଂ ସେ ରାମକୃଷ୍ଣ–ନାମ ଉଚ୍ଚାରଣ କରୁ କରୁ ଅମର ଧାମକୁ ଚାଲିଗଲେ । ଶ୍ରୀମା' ଏହି ବିବରଣୀ ଶୁଣି କହିଲେ, ''ତାହା ହେବ ନାହିଁ, ସେ ଯେ ଠାକୁରଙ୍କର ସନ୍ତାନ ! ଜାବୁଅ ବୋଲି ହୋଇଥିଲା; ଏବେ ଯାହାଙ୍କ ପୁଅ, ତାଙ୍କ କୋଳକୁ ଚାଲିଗଲା ।''

୧୯୦୫ ଖ୍ରୀଷ୍ଟାବ୍ଦ ଜ୍ୟେଷ୍ଠ ମାସରେ ଶ୍ରୀମା' ଗାଁକୁ ଯିବା ସ୍ଥିର ହେଲା । ପ୍ରଥମଥର ପାଇଁ ସେ ବିଷ୍ଣୁପୁର ରାସ୍ତା ଦେଇ ଗମନ କଲେ । ବିଷ୍ଣୁପୁରଯାଏ ଟ୍ରେନ୍‌ରେ ଯାଇ ସେଠାରେ ଗୋଟିଏ ଚଟୀଘରେ ଆହାର ଓ ବିଶ୍ରାମ ନେଲେ । ସନ୍ଧ୍ୟା ହେବାରୁ ଚାରୋଟି ଶଗଡ଼ ଗାଡ଼ିରେ ସମସ୍ତେ କୋତୁଲପୁର ଦିଗକୁ ଅଗ୍ରସର ହେଲେ । ସକାଳେ ସେଠାରେ ପହଞ୍ଚି ସେମାନେ ରନ୍ଧନ ଓ ଆହାର ଶେଷ କଲେ । ତତ୍‌ପରେ ଶ୍ରୀମା' ଓ ରାଧୁ ପାଲିଙ୍କିରେ ଏବଂ ଅନ୍ୟମାନେ ଶଗଡ଼ ଗାଡ଼ିରେ ଜୟରାମବାଟୀକୁ ଯାତ୍ରା କଲେ ।

ପୂର୍ବବର୍ଷ ଶ୍ରୀମା' ଜଗଦ୍ଧାତ୍ରୀ ପୂଜା ଉପଲକ୍ଷେ ଗାଁକୁ ଆସି ନ ଥିଲେ । ଏ ବର୍ଷ ପୂଜା ବେଶ୍ ଭଲ ଭାବରେ ସଂପନ୍ନ ହେଲା । ପୂଜାର ସବୁ ଉପକରଣ ସାରଦାନନ୍ଦଜୀ କଲିକତାରୁ ପଠାଇଥିଲେ । ଦିନକର ଘଟଣା ଅତି ମର୍ମସ୍ପର୍ଶୀ । କାମାରପୁକୁରର ଶ୍ରୀ ଗଣେଶ ଘୋଷାଲ ଠାକୁରଙ୍କର ସହପାଠୀ ଥିଲେ । ସେ ଦିନେ ଶ୍ରୀମା'ଙ୍କ ସହିତ ଦେଖା କରିବାକୁ ଆସିଲେ । ଶ୍ରୀମା' ସସଂଭ୍ରମେ ଘୋଷାଲ

ମହାଶୟଙ୍କୁ ପ୍ରମାଣ କରିବାକୁ ଉଦ୍ୟତ ହେଲେ । କିନ୍ତୁ ଘୋଷାଲ ମହାଶୟ ଘୋର ଆପତ୍ତି କରି କହିଲେ ଯେ ସେ ମା' । ମା' ସନ୍ତାନକୁ ପ୍ରଣାମ କଲେ ତାହାର ଅକଲ୍ୟାଣ ହେବ । ଅବଶେଷରେ ସେ ମା'ଙ୍କୁ ନତଜାନୁ ହୋଇ ପ୍ରଣାମ କଲେ ।

ଦିନେ ଦ୍ୱିପ୍ରହର ସମୟରେ ବ୍ରହ୍ମଚାରୀ ଗିରିଜା (ସ୍ୱାମୀ ଗିରିଜାନନ୍ଦ) ମା'ଙ୍କ ଅନୁମତି କ୍ରମେ ତାଙ୍କ ବନ୍ଧୁଙ୍କ ସହିତ ଜୟରାମବାଟୀରେ ଆସି ଉପସ୍ଥିତ ହେଲେ । ସେହିଦିନ ହଠାତ୍ ପ୍ରସନ୍ନମାମୁଁଙ୍କ ସ୍ତ୍ରୀ କଲେରାରେ ଆକ୍ରାନ୍ତ ହେଲେ । ଗ୍ରାମରେ ଚିକିତ୍ସକ ଓ ଔଷଧ ନାହିଁ । ବାରଘଣ୍ଟା ମଧ୍ୟରେ ମାଈଁ ଦେହତ୍ୟାଗ କଲେ । ତାଙ୍କର ଦୁଇ ଝିଅ ନଳିନୀ ଓ ମାକୁ—ସେତେବେଳେ ଖୁବ୍ ଛୋଟ । ସେମାନଙ୍କୁ ଦେଖିବା ପାଇଁ କେହି ନାହିଁ । ଶ୍ରୀମା' ପୂର୍ବରୁ ରାଧୁର ଭାର ନେଇଥିଲେ; ନଳିନୀ ଓ ମାକୁକୁ ମଧ୍ୟ ସେ ଆଶ୍ରୟ ଦେଲେ । ଗିରିଜା ମହାରାଜ ଭାବିଲେ ଯେ ଏହି ଶୋକ ସମୟରେ ଦୀକ୍ଷାର କୌଣସି ପ୍ରଶ୍ନ ଉଠାଇବା କଥା ନୁହେଁ । ସୁତରାଂ ସେ ଅନୁଡ଼ ଗ୍ରାମରେ ଦେବୀ ଦର୍ଶନ ପାଇଁ ଶ୍ରୀମା'ଙ୍କ ଅନୁମତି ମାଗିଲେ । କିନ୍ତୁ ଶ୍ରୀମା' କହିଲେ, ''କେତେ ଆଶା କରି ଆସିଛ, ସ୍ନାନ କରି ଆସ ।'' କୃପାମୟୀ ସେହି ଦିନ ତାଙ୍କୁ ଦୀକ୍ଷା ଦେଲେ । ବନ୍ଧୁ ବଟୁବାବୁ ଦୀକ୍ଷାପ୍ରାର୍ଥୀ ନ ଥିଲେ, କିନ୍ତୁ ଅହେତୁକ କରୁଣାମୟୀ ତାଙ୍କୁ ମଧ୍ୟ ଦୀକ୍ଷା ଦେଲେ ।

କ୍ରମେ ମାଘ ମାସ ଆସିଲା (୧୯୦୬ ଖ୍ରୀ:) । ଶୀତଦିନେ ସକାଳେ ଘର ବାରଣ୍ଡାରେ ବସି ସମସ୍ତେ ଖରା ପୁଆଉଁଥିଲେ । ଶିରୋମଣିପୁର ହାଟରୁ ପନିପରିବା ନେଇ ଜଣେ ସ୍ତ୍ରୀ-ଲୋକ ବିକ୍ରି କରିବାକୁ ଆସିଛି । ଧାନ, ସୋରିଷ ଇତ୍ୟାଦି ବିନିମୟରେ ଆଈମା' ତାଙ୍କଠାରୁ କିଛି ପନିପରିବା କିଣିଲେ ଏବଂ ପରେ ଢେଙ୍କିଶାଳରେ ଧାନ କୁଟିଲେ । ଲାଗ୍ ଲାଗ୍ ଦୁଇଥର ଶୌଚ ଗଲେ । ଫେରିଆସି ବାରଣ୍ଡାରେ ଶୋଇ ପଡ଼ିଲେ ଏବଂ ଶ୍ରୀମା'ଙ୍କର ଜଣେ ସେବକଙ୍କୁ କହିଲେ, ''ଆଉ ବଞ୍ଚିବି ନାହିଁ । ମୁଣ୍ଡ ଘୂରାଇ ଦେଉଛି ।'' ଶ୍ରୀମା' ତତ୍‌କ୍ଷଣାତ୍ ଆସିଲେ, କିନ୍ତୁ କେହି ହେଲେ ବୁଝିପାରିଲେ ନାହିଁ ଯେ ବୃଦ୍ଧାଙ୍କ ଅନ୍ତିମ କାଳ ଆସନ୍ନ । ବୃଦ୍ଧା କହିଲେ, ''ପାଣି ପିଇବି ।'' ଶ୍ରୀମା' ଶୀଘ୍ର ଗଙ୍ଗାଜଳ ଆଣି ବୃଦ୍ଧାଙ୍କ ମୁହଁରେ ତିନିଥର ଦେଲେ । ତା'ପରେ ରତ୍ନଗର୍ଭା ଶ୍ୟାମାସୁନ୍ଦରୀ ଦେବୀଙ୍କ ଦେହ ନିଶ୍ଚଳ ହେଲା । ଶ୍ରୀମା' ତାଙ୍କ ମସ୍ତକ ଓ ହୃଦୟରେ ମନ୍ତ୍ର ଜପ କଲେ—ଆଈମା'ଙ୍କ ଆଖି ଦୁଇଟି ଊର୍ଦ୍ଧ୍ୱଦୃଷ୍ଟି । ସେତେବେଳେ ସକାଳ ନଅଟା, ଘରେ କ୍ରନ୍ଦନଧ୍ୱନି ଉଠିଲା । ଯଥାସମୟରେ ଆମୋଦର ନଦୀକୂଳରେ ତାଙ୍କ ଦେହର ସତ୍‌କାର ହେଲା । ଭକ୍ତିମତୀ ଶ୍ୟାମାସୁନ୍ଦରୀ ପୂର୍ବଜନ୍ମର ସୁକୃତି ଫଳରୁ ଶ୍ରୀଶ୍ରୀମା'ଙ୍କୁ କନ୍ୟାରୂପେ ପାଇଥିଲେ ଏବଂ ସଜ୍ଞାନରେ ଦିବ୍ୟଧାମକୁ ପ୍ରୟାଣ କଲେ । ଶ୍ରୀମା' ସଂସାରୀ ଲୋକଙ୍କ ପରି ଡାକ ଛାଡ଼ି କାନ୍ଦିବାକୁ ଲାଗିଲେ । ଆଜି ସେ ମାତୃହରା । ଆଜି

ତାଙ୍କର ଏପରି କେହି ନାହିଁ, ଯାହା ନିକଟରେ ସେ ସ୍ନେହର ପ୍ରତ୍ୟାଶୀ ହେବେ । ଏତେ ବଡ଼ ସଂସାରର ଦାୟିତ୍ୱ ଏବେ ତାଙ୍କ ଉପରେ ।

ଯେଉଁମାନେ ଆଦର୍ଶଚରିତ୍ର, ସେମାନଙ୍କର ଶୋକ ଅତି ତୀବ୍ର ହେଲେ ମଧ୍ୟ ସେମାନେ ସେଥିରେ ଭାଙ୍ଗି ପଡ଼ନ୍ତି ନାହିଁ । ନିଜ କର୍ତ୍ତବ୍ୟ ପ୍ରତି ତାଙ୍କର ନିଷ୍ଠା ଅତି ଦୃଢ଼ । ସମ୍ବାଦ ପାଇ କଲିକତାରୁ ସାରଦାନନ୍ଦଜୀ ଶ୍ରାଦ୍ଧ ପାଇଁ ପ୍ରୟୋଜନୀୟ ଦ୍ରବ୍ୟ ଯୋଗାଡ଼ କରି ଗାଁକୁ ପଠାଇଲେ । ରୀତି ଅନୁଯାୟୀ ଶ୍ରାଦ୍ଧ ସୁସମ୍ପନ୍ନ ହେଲା ।

ମାତୃଶୋକ ଓ ଶ୍ରାଦ୍ଧର କଠିନ ପରିଶ୍ରମ ଯୋଗୁଁ ଶ୍ରୀମା'ଙ୍କ ଶରୀର ଅତି ଦୁର୍ବଳ ହୋଇପଡ଼ିଲା । ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭ କରିବା ପାଇଁ ପ୍ରାୟ ଏକ ମାସ ସମୟ ଲାଗିଲା । ସମ୍ଭବତଃ ୧୯୦୬ ଖ୍ରୀଷ୍ଟାବ୍ଦର ଶେଷଭାଗରେ ସେ କଲିକତା ଆସି ବାଗ୍‌ବଜାରସ୍ଥିତ ତାଙ୍କ ଘରେ ପହଞ୍ଚିଲେ । ଗୋପାଳଙ୍କ ମା' ସେତେବେଳେ ଶେଷ ରୋଗଶଯ୍ୟାରେ ଶାୟୀତ । ଶ୍ରୀମା' ସେହି ବୃଦ୍ଧା ସାଧିକାଙ୍କ ନିକଟରେ ଉପସ୍ଥିତ ହେବା ମାତ୍ରେ ସେ କ୍ଷୀଣ ସ୍ୱରରେ କହି ଉଠିଲେ, ''ଗୋପାଳ, ଆସିଛ ?'' ଏହା କହି କଅଣ ଯେପରି ଧରିବା ପାଇଁ ହାତ ବଢ଼ାଇଲେ । ଶ୍ରୀମା' କିଛି ବୁଝିପାରିଲେ ନାହିଁ । ସେବିକା କହିଲେ ଯେ, ଗୋପାଳଙ୍କ ମା' ତାଙ୍କୁ ଗୋପାଳ ଜ୍ଞାନରେ ଅର୍ଥାତ୍ ଶ୍ରୀରାମକୃଷ୍ଣଙ୍କ ସହିତ ଅଭିନ୍ନ ବୋଧ କରି ତାଙ୍କୁ ଏହି ପରି ସମ୍ବୋଧନ କରୁଛନ୍ତି ଏବଂ ତାଙ୍କ ଚରଣଧୂଳି ମାଗୁଛନ୍ତି । ଶ୍ରୀମା' ତାଙ୍କୁ ନିଜ ଶାଶୁ ବୋଲି ମନେ କରୁଥିଲେ, କିନ୍ତୁ ଏହି ଚରମ ଅବସ୍ଥାରେ ଦ୍ୱିଧା କରିପାରିଲେ ନାହିଁ । ସେବିକା ଅଞ୍ଚଳରେ ଶ୍ରୀମା'ଙ୍କ ପଦଧୂଳି ନେଇ ଗୋପାଳ ମା'ଙ୍କ ଅଙ୍ଗରେ ଲେପିଦେଲେ । ସମସ୍ତେ ବୁଝିଲେ ଯେ ତାଙ୍କର ''ଗୋପାଳଲୋକ ଗମନରେ ଆଉ ବିଳମ୍ବ ନାହିଁ । ସ୍ୱଳ୍ପକାଳ ପରେ ଆଷାଢ଼ ମାସ ୨୪ ତାରିଖ ଦିନ ସେ ଇହଧାମ ତ୍ୟାଗ କଲେ ।

## ଗିରିଶଚନ୍ଦ୍ର ଘୋଷ

ଶ୍ରୀମା'ଙ୍କୁ ଭକ୍ତମାନେ ପ୍ରଥମେ କେବଳ ଗୁରୁପତ୍ନୀରୂପେ ଜାଣିଥିଲେ । ଜଣେ ଯୁବକ ଭକ୍ତ କାଳୀପଦ ଘୋଷଙ୍କ ବୈଠକଖାନାରେ ଉପସ୍ଥିତ ହୋଇ ଦେଖିଲେ ସେଠାରେ ଠାକୁର ଓ ଅନ୍ୟାନ୍ୟ ଦେବଦେବୀଙ୍କର ଛବି ଅଛି, କିନ୍ତୁ ଶ୍ରୀମା'ଙ୍କର ଛବି ନାହିଁ । ସେତେବେଳେ ସେ କାଳୀବାବୁଙ୍କୁ ଏହାର କାରଣ ପଚାରିଲେ । କାଳୀବାବୁ ହାତ ଯୋଡ଼ି ଠାକୁରଙ୍କୁ ଚାହିଁ କହିଲେ, ''ଏ ଆମମାନଙ୍କର ମାତା ଓ ପିତା ଉଭୟ ।'' ଯୁବକ ସନ୍ତୁଷ୍ଟ ନ ହୋଇ ମହାକବି ଶ୍ରୀ ଗିରିଶଚନ୍ଦ୍ର ଘୋଷଙ୍କୁ ସବୁ ଜଣାଇଲେ । ସେ କହିଲେ, ''ଆମେ କଅଣ ଆଗେ ମା'ଙ୍କୁ ଚିହ୍ନି ଥିଲୁ । ପରେ ନିରଞ୍ଜନ ଆମ ଆଖିଖୋଲି ଦେଲା ।'' ସ୍ୱାମୀ ନିରଞ୍ଜନାନନ୍ଦଜୀ କେବଳ ଯେ ମା'ଙ୍କୁ ସମ୍ମାନ ଦେଖାଇ କ୍ଷାନ୍ତ ରହୁଥିଲେ, ତାହା ନୁହେଁ; ଭକ୍ତମହଲରେ ନିର୍ଭୀକଭାବରେ ତାଙ୍କର ମହିମା ପ୍ରଚାର ମଧ୍ୟ କରୁଥିଲେ ।

ଶ୍ରୀରାମକୃଷ୍ଣ ଦିନେ କହିଥିଲେ ଗିରିଶଚନ୍ଦ୍ରଙ୍କ ବିଶ୍ୱାସ ପାଞ୍ଚସୁଉକା ପାଞ୍ଚଅଣା । ଶ୍ରୀମା'ଙ୍କୁ ସେ ଯେଉଁଦିନ ଜଗଦମ୍ବାରୂପେ ସ୍ୱୀକାର କଲେ, ସେହିଦିନଠାରୁ ତାଙ୍କର ଶ୍ରଦ୍ଧା ଉପରୋକ୍ତ ଭକ୍ତିରେ ପରିଣତ ହେଲା । ଅନେକଙ୍କର ଧାରଣା ସୁଲକ୍ଷଣା ପତ୍ନୀଙ୍କୁ ପାଇ ଗିରିଶ ଗୁରୁଲାଭ, ଅର୍ଥଲାଭ, ଯଶଲାଭ ଇତ୍ୟାଦି କରିଥିଲେ । ଦୁଇଟି କନ୍ୟା ଏବଂ ଗୋଟିଏ ପୁତ୍ରକୁ ଜନ୍ମଦେଇ ତାଙ୍କପତ୍ନୀ କଠିନ ରୋଗରେ ଆକ୍ରାନ୍ତ ହେଲେ ଏବଂ ଚିର ବିଦାୟ ନେଲେ । ଗିରିଶଚନ୍ଦ୍ର ଚତୁର୍ଦ୍ଦିଗ ଶୂନ୍ୟ ଦେଖିଲେ । ଶ୍ରୀରାମକୃଷ୍ଣଙ୍କୁ 'ବକଲମା' (ଭାରସମର୍ପଣ) ଦେବା ପରଠାରୁ ତାଙ୍କର ଶୋକ କରିବାର ମଧ୍ୟ ଅଧିକାର ନ ଥିଲା । କେବଳ ଅର୍ନ୍ତଦାହରେ ଜଳିବା ବ୍ୟତୀତ ଅନ୍ୟ କୌଣସି ଉପାୟ ନ ଥିଲା । ଏହି ଗଭୀର ଶୋକ ଭୁଲିବା ପାଇଁ ସେ ପୁଅର ଲାଳନପାଳନରେ ନିଜକୁ ସର୍ବଦା ବ୍ୟସ୍ତ ରଖିବାକୁ ଲାଗିଲେ । ଏହି ପୁତ୍ର ପ୍ରତି ଏତେ ଆକର୍ଷଣର ଅନ୍ୟ ଏକ କାରଣ ଥିଲା । ଭକ୍ତଚୂଡ଼ାମଣି ଗିରିଶଚନ୍ଦ୍ର ଦିନେ ଠାକୁରଙ୍କ ନିକଟରେ ପ୍ରାର୍ଥନା କରିଥିଲେ, ସେ ଯେପରି ତାଙ୍କର ପୁତ୍ର ରୂପେ ଜନ୍ମଗ୍ରହଣ କରନ୍ତି । ଠାକୁର ଅବଶ୍ୟ ସେଥିରେ ସମ୍ମତ ହେଲେ ନାହିଁ, ତଥାପି ତାଙ୍କ ଲୀଳା-ସମ୍ୱରଣ ପରେ ଯେତେବେଳେ ଏହି ପୁତ୍ର ଜନ୍ମିଲା, ସେତେବେଳେ ଗିରିଶବାବୁଙ୍କର ପୂର୍ଣ୍ଣ ବିଶ୍ୱାସ ହେଲା ଯେ, ଠାକୁର ତାଙ୍କର ଆକୁଳ ପ୍ରାର୍ଥନା ପୂର୍ଣ୍ଣ କରି ପୁତ୍ରରୂପେ ଗୃହ ଆଲୋକିତ କରିଛନ୍ତି । ଅତଏବ ଏହି ପୁତ୍ରକୁ ସେ ଦେବତାଜ୍ଞାନରେ ପାଳନ କରୁଥିଲେ । ପୁଅର ସ୍ୱଭାବ ଅତି ମଧୁର ଥିଲା ଏବଂ ସମସ୍ତେ ଅତି ସହଜରେ ତା'ପ୍ରତି ଆକୃଷ୍ଟ ହେଉଥିଲେ । ଶ୍ରୀମା' ଯେତେବେଳେ ଗିରିଶଭବନରେ ପଦାର୍ପଣ କରୁଥିଲେ, ସେତେବେଳେ ଶିଶୁଟି ତାଙ୍କ କୋଳରେ ବସି ଆନନ୍ଦିତ ହେଉଥିଲା ।

୧୮୯୦ ଖ୍ରୀଷ୍ଟାବ୍ଦରେ ଶ୍ରୀମା' ଯେତେବେଳେ ବରାହନଗରରେ ସୌରୀନ୍ଦ୍ର ଠାକୁରଙ୍କ ଘରେ ବାସ କରୁଥିଲେ, ସେତେବେଳେ ସମ୍ଭବତଃ ସ୍ୱାମୀ ନିରଞ୍ଜନାନନ୍ଦଙ୍କ ଆଗ୍ରହରେ ଗିରିଶ ଏହି ପୁଅ ସହିତ ଶ୍ରୀମା'ଙ୍କୁ ଦର୍ଶନ କରିବାକୁ ଆସିଥିଲେ । ମାଷ୍ଟର ମହାଶୟ ଇତ୍ୟାଦି କେତେଜଣ ଭକ୍ତ ଯଦିଓ ଶ୍ରୀମା'ଙ୍କୁ ପୂର୍ଣ୍ଣରୂପେ ଗ୍ରହଣ କରିଥିଲେ, ତଥାପି କେବଳ ଗିରିଶଙ୍କ ଆଗମନ ପରଠାରୁ ସେ ଭକ୍ତଗୋଷ୍ଠୀଙ୍କ ଦ୍ୱାରା ପ୍ରକାଶ୍ୟରେ ଜଗଦମ୍ବାରୂପେ ସ୍ୱୀକୃତ ହେଲେ । ତେଣୁ ଗିରିଶଙ୍କ ଆଗମନ ପରଠାରୁ ଶ୍ରୀମା' ଭକ୍ତଜନନୀ ରୂପେ ନିଜକୁ ଆତ୍ମପ୍ରକାଶ କରିଥିଲେ । ଗିରିଶଙ୍କ ପୁଅର ସେତେବେଳେ ତିନିବର୍ଷ ବୟସ । ସେ କିନ୍ତୁ କଥା କହୁ ନ ଥିଲା, ହାବଭାବରେ ସବୁ ଜଣାଉଥିଲା । ସୌରୀନ୍ଦ୍ର ଠାକୁରଙ୍କ ଘରେ ପହଞ୍ଚି ସେ ମା'ଙ୍କୁ ଦେଖିବାକୁ ବ୍ୟାକୁଳ ହୋଇ ପଡ଼ିଲା । ଯଦିଓ ଗିରିଶ ମା'ଙ୍କୁ ଦେଖି ନ ଥିଲେ ତାଙ୍କ ପୁଅ ତାଙ୍କୁ ଦେଖିଥିଲା । କଥା ନ କହିପାରିଲେ ମଧ୍ୟ ସେ ଅସ୍ଥିର ହୋଇ ଶ୍ରୀମା' ଉପରେ ଯେଉଁଠାରେ ଥିଲେ ସେହି ଦିଗକୁ ଦେଖାଇ 'ଉଃ'

'ଉଃ' କରିବାକୁ ଲାଗିଲେ । ଏକଥା ବୁଝିପାରି ଜଣେ ସେବକ ତାଙ୍କୁ ଉପରକୁ ନେଇ ଯିବାରୁ ସେ ମା'ଙ୍କ ଗୋଡ଼ତଳେ ପଡ଼ି ପ୍ରଣାମ କଲା । ତା'ପରେ ତଳକୁ ଆସି ପିତାଙ୍କୁ ମଧ୍ୟ ସେଠାକୁ ନେଇଯିବା ପାଇଁ ହାତ ଧରି ଟାଣିବାକୁ ଲାଗିଲା । ଗିରିଶ ଉଚ୍ଚ ସ୍ୱରରେ କାନ୍ଦି ଉଠିଲେ—" ଆରେ ! ମୁଁ କିପରି ମା'ଙ୍କୁ ଦେଖିବାକୁ ଯିବି—ମୁଁ ଯେ ମହାପାପୀ !" ବାଳକ କିନ୍ତୁ ଛାଡ଼ିଲା ନାହିଁ । ଶେଷରେ ତାକୁ କୋଳରେ ଧରି ଗିରିଶ କମ୍ପି କମ୍ପି ଅଶ୍ରୁଭାରାକ୍ରାନ୍ତ ନୟନରେ ଶ୍ରୀମା'ଙ୍କ ପଦତଳେ ଦଣ୍ଡବତ କଲେ ଏବଂ କହିଲେ, "ମା' ଏହାରି ଯୋଗୁଁ ତୁମ ଶ୍ରୀଚରଣ ଦର୍ଶନ ହେଲା ।" ପୁତ୍ର କିନ୍ତୁ ସ୍ୱଳ୍ପାୟୁ, ତିନିବର୍ଷ ବୟସରେ ସେ ଦେହତ୍ୟାଗ କଲା । ପୁତ୍ରଶୋକ ଭୁଲିବା ପାଇଁ ଗିରିଶ ଜୟରାମବାଟୀକୁ ଯାଇ କେତେମାସ କଟାଇ ଆସିଲେ ।

ଜୟରାମବାଟୀରେ ପହଞ୍ଚି ଗିରିଶଚନ୍ଦ୍ର ସ୍ନାନ ସାରି ଓଦାଲୁଗାରେ ମା'ଙ୍କୁ ଦର୍ଶନ କରିବା ପାଇଁ ଆସୁଥିଲେ । ସେତେବେଳେ ମା'ଙ୍କ ଚିନ୍ତାରେ ସେ ବିଭୋର, ଦେହ କମ୍ପୁଛି । ଶ୍ରୀମା'ଙ୍କ ଚରଣରେ ମସ୍ତକ ସ୍ପର୍ଶ କରି ସେ ଯେତେବେଳେ ଉପରକୁ ଚାହିଁଲେ ସେତେବେଳେ ମା'ଙ୍କ ଶ୍ରୀମୁଖ ପ୍ରଥମଥର ପାଇଁ ଦର୍ଶନ କରି ବିସ୍ମିତ ହେଲେ—"ତୁମେ କଅଣ ସେହି ମା' ?" ଏହି ବିସ୍ମୟାନୁଭୂତି ସହିତ ଗୋଟିଏ ଘଟଣାର ସଂଯୋଗ ଥିଲା । ଏହା ବହୁ ପୂର୍ବର କଥା । ଯୁବକ ଗିରିଶ ସେତେବେଳେ ବିସୂଚିକା ରୋଗରେ ଶଯ୍ୟାଶାୟୀ, ଜୀବନର ଆଶା ଖୁବ୍ କମ୍; ସେହି ସମୟରେ ସେ ସ୍ୱପ୍ନ ଦେଖିଲେ, ଜଣେ ମାତୃମୂର୍ତ୍ତି ମହାପ୍ରସାଦ ଆଣି ତାଙ୍କ ମୁହଁରେ ଦେଇ କହୁଛନ୍ତି, 'ଖାଅ । ତାଙ୍କ ଦେହରେ ନାଲି ଧଡ଼ିର ଶାଢ଼ୀ । ଦେହରେ ଏକ ଦିବ୍ୟ ଜ୍ୟୋତି ଏବଂ ମୁହଁରେ ଚିତ୍ତହରଣକାରୀ ସ୍ନେହ । ପ୍ରସାଦ ଅତି ସୁସ୍ୱାଦୁ ଥିଲା । କ୍ରମେ ଗିରିଶ ନୀରୋଗ ହେଲେ । ଗିରିଶ ଆଜି ଦେଖିଲେ, ସ୍ୱପ୍ନର ସେହି ଦେବୀ ଅକସ୍ମାତ୍ ସମ୍ମୁଖରେ ଉପସ୍ଥିତ । ସେ ପୂର୍ବେ ଶ୍ରୀମା'ଙ୍କ ମୁହଁ କେବେ ଦେଖି ନ ଥିଲେ । ଆଜି ବୁଝିଲେ ଏହି ଦେବୀ ତାଙ୍କୁ ସର୍ବଦା ରକ୍ଷା କରିଆସୁଛନ୍ତି । ତଥାପି ମା'ଙ୍କ ମୁହଁରୁ ସତ୍ୟ ଜାଣିବା ପାଇଁ ବାହାରକୁ ଆସି ଜଣଙ୍କ ଦ୍ୱାରା ମା'ଙ୍କୁ ପ୍ରଶ୍ନ କଲେ, "ମା' ତାଙ୍କୁ ପୂର୍ବରୁ କେବେ ଦର୍ଶନ ଦେଇଛନ୍ତି କି ନାହିଁ ?" ମା' ସେ କଥା ସ୍ୱୀକାର କଲେ । ଗିରିଶ ଆଉ ଦିନେ ଶ୍ରୀମା'ଙ୍କୁ ପଚାରିଲେ, "ତୁମେ କି ଧରଣର ମା' ?" ମା' ତତ୍‌କ୍ଷଣାତ୍ ଉତ୍ତର ଦେଲେ, "ମୁଁ ପ୍ରକୃତ ମା' । ଗୁରୁପତ୍ନୀ ନୁହେଁ, ଧର୍ମ ମା' ନୁହେଁ—ସତ୍ୟ ଜନନୀ ।"

ଦୀର୍ଘକାଳ ପଲ୍ଲୀଗ୍ରାମରେ ବାସ କରି ମହାକବିଙ୍କ ମନରେ ଗଭୀର ଆନନ୍ଦର ସଞ୍ଚାର ହୋଇଥିଲା । ସହରର କୋଳାହଳ ଓ ବିବିଧ ସମସ୍ୟାରୁ ମୁକ୍ତ ହୋଇ ସେ ମା'ଙ୍କ ଘରେ ଅତି ଆନନ୍ଦରେ ଦିନ କଟାଉଥିଲେ । ସରଳ କୃଷକମାନଙ୍କ ସହିତ ବିଲବାଡ଼ିରେ ସମୟ କଟାଉଥିଲେ । ଚେଷ୍ଟା ନ କରି ସ୍ୱତଃ ଆଧ୍ୟାତ୍ମିକ

ଚିନ୍ତାରେ ସର୍ବଦା ପୂର୍ଣ୍ଣ ହୋଇ ରହୁଥିଲେ । ସୂର୍ଯ୍ୟାସ୍ତ ପରେ ମୁକ୍ତ ପ୍ରାନ୍ତରକୁ ଯାଇ ଏକାକୀ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । କାଳୀମାମୁଁଙ୍କ ସହିତ ଦିନେ ତୁମୂଳ ତର୍କ ହେଲା—ବିଷୟ, ଶ୍ରୀମା' ଦେବୀ ଅଟନ୍ତି ନା ନାହିଁ ? ମାମୁଁ ତାଙ୍କୁ ନିଜ ଭଉଣୀ ବୋଲି ଜାଣିଥିଲେ ଏବଂ ଏହା ତାଙ୍କ ପକ୍ଷରେ କୌଣସି ଦୋଷର କଥା ନୁହେଁ । ପୁରାଣରେ ମଧ୍ୟ ଆମେ ଦେଖୁ, ଯଦୁବଂଶୀୟମାନେ ଶ୍ରୀକୃଷ୍ଣଙ୍କ ସହିତ ସର୍ବଦା ରହିଲେ ସୁଦ୍ଧା ତାଙ୍କୁ ଈଶ୍ୱର ବୋଲି ଚିହ୍ନିପାରି ନ ଥିଲେ । ଏଣେ ଭକ୍ତ ଗିରିଶଙ୍କ ବିଶ୍ୱାସ ଅଟଳ । କାଳୀମାମୁଁ କହିଲେ, ''ତୁମେମାନେ ଦେଈକୁ ମା' ଜଗଦମ୍ବା, ଜଗତଜନନୀ ଇତ୍ୟାଦି କେତେ କଥା କୁହ । କିନ୍ତୁ ଆମେ ଯଦିଓ ଗୋଟିଏ ଗର୍ଭରୁ ଜନ୍ମିଛୁ, ତଥାପି କିଛି ବୁଝିପାରୁନାହୁଁ ।'' ଗିରିଶବାବୁ ଦୃଢ଼ ଓ ଗମ୍ଭୀର କଣ୍ଠରେ କହିଲେ, ''କଅଣ କହୁଛ ? ତୁମେ ଜଣେ ସାଧାରଣ ଗ୍ରାମୀଣ ବ୍ରାହ୍ମଣ । ଯଜନଯାଜନ, ପଠନ-ପାଠନ ଇତ୍ୟାଦି ବ୍ରାହ୍ମଣଙ୍କ କର୍ମ ଛାଡ଼ି ଚାଷବାସ କରୁଛ । ଜଣେ ଯଦି ଗୋଟିଏ ବଳଦ ଦେବ ବୋଲି କହିବ, ତେବେ ତୁମେ ତା' ପଛେ ପଛେ ଛଅମାସ ଧରି ବୁଲିବ । ଆଉ ଅଘଟନ-ଘଟନ-ପଟୀୟସୀ ମହାମାୟା ତୁମକୁ ସମସ୍ତ ଜୀବନ ଭୁଲାଇ ରଖିପାରିବେ ନାହିଁ ? ଯାଅ, ଯଦି ଇହ ଓ ପର ଜନ୍ମରେ ମୁକ୍ତି ଚାହଁ, ତେବେ ବର୍ତ୍ତମାନ ଯାଇ ମା'ଙ୍କ ଗୋଡ଼ତଳେ ଶରଣ ପଶ ।'' କଥା ଭିତରେ ଏପରି ଗୋଟିଏ ଶକ୍ତି ଥିଲା ଯେ, କାଳୀମାମୁଁ ମା'ଙ୍କ ନିକଟକୁ ଯାଇ ତାଙ୍କ ଗୋଡ଼ତଳେ ପଡ଼ିଗଲେ । କିନ୍ତୁ ଶ୍ରୀମା' କହିଲେ, ''ଆରେ କାଳୀ ! ମୁଁ ତୋର ସେହି ଦେଈ । ଆଜି ତୁ ଏପରି କାହିଁକି କରୁଛୁ ?'' ସେ କଥାରେ ମାମୁଁ ଭୁଲିଯାଇ ଫେରି ଆସିଲେ ।

ଶ୍ରୀମା'ଙ୍କ ସ୍ନେହଯତ୍ନରେ ଗିରିଶ ଅଭିଭୂତ ହୋଇପଡ଼ିଥିଲେ । ଗାଁରେ ଦୁଧ ସହଜରେ ମିଳେ ନାହିଁ । ଅଥଚ ଗିରିଶଙ୍କ ପାଇଁ ସକାଳେ ତାହା ଦରକାର । ଶ୍ରୀମା' ନିଜେ ସନ୍ଧାନ କରି ତାଙ୍କ ପାଇଁ ଦୁଧ ନେଇ ଆସୁଥିଲେ । ଗିରିଶ ଆହୁରି ମଧ୍ୟ ଲକ୍ଷ୍ୟ କଲେ ଯେ, ତାଙ୍କ ବିଛଣା ଚଦର ପ୍ରତିନିଦ ସଫା ସୁତରା ରହୁଛି । ଏହାର କାରଣ ଅନୁସନ୍ଧାନ କରି ଦେଖିଲେ ଯେ ଶ୍ରୀମା' ତାଙ୍କ ଚଦର ପୋଖରୀତୁଠରେ ସାବୁନ ଦେଇ ସଫା କରୁଛନ୍ତି । ସଂସାରତାପରେ କ୍ଳିଷ୍ଟ ଗିରିଶବାବୁ ଦିନେ ସନ୍ନ୍ୟାସ ଗ୍ରହଣର ଇଚ୍ଛା ନିବେଦନ କଲେ । କିନ୍ତୁ ଶ୍ରୀମା' ସମ୍ମତ ହେଲେ ନାହିଁ । ସେତେବେଳେ ବୁଦ୍ଧିମାନ୍ ଓ ଶବ୍ଦପ୍ରୟୋଗରେ ନିପୁଣ ମହାକବି ଅଧଘଣ୍ଟାଏ ଧରି ଶ୍ରୀମା'ଙ୍କୁ ବୁଝାଇବାକୁ ଚେଷ୍ଟା କଲେ । ଏହି ପ୍ରଖରବୁଦ୍ଧି ଓ ଯୁକ୍ତି ସମ୍ମୁଖରେ ଅଧିକାଂଶ ଲୋକ ହାର ମାନିବେ । କିନ୍ତୁ ଶ୍ରୀମା' ନିଜର ସିଦ୍ଧାନ୍ତରେ ଅଟଳ ରହିଲେ ।

ସେଠାରୁ ଶ୍ରୀରାମକୃଷ୍ଣଙ୍କ ଜନ୍ମସ୍ଥାନକୁ ମଧ୍ୟ କିଛିଦିନ ପାଇଁ ଗିରିଶ ଯାଇଥିଲେ । ଜୟରାମବାଟୀରୁ କଲିକତା ଫେରିବା ସମୟରେ ଗିରିଶବାବୁ ନିଜ

କର୍ତ୍ତବ୍ୟ ବିଷୟରେ ଶ୍ରୀମା'ଙ୍କୁ ପଚାରିଥିଲେ । କଲିକତାକୁ ସେ ଯେପରିକି ଏକ ସ୍ୱତନ୍ତ୍ର ବ୍ୟକ୍ତି ହୋଇ ଫେରି ଆସିଥିଲେ ଏବଂ ଅବଶିଷ୍ଟ ଜୀବନ ଠାକୁରଙ୍କ ଭାବଧାରା ପ୍ରଚାରରେ ବ୍ରତୀ ହୋଇଥିଲେ । ମା' ଥରେ ଦୀର୍ଘକାଳ ପରେ କଲିକତାରୁ ଗାଁକୁ ଆସୁଥିଲେ । ବିଷ୍ଣୁପୁରରୁ ଗାଡ଼ି ତିନିଘଣ୍ଟା ବିଳମ୍ବରେ ଦିନ ଦ୍ୱିପ୍ରହରରେ ପହଞ୍ଚିଲା । ରାଜାମହାରାଜ (ବ୍ରହ୍ମାନନ୍ଦଜୀ) ଓ ବାବୁରାମ ମହାରାଜ (ପ୍ରେମାନନ୍ଦଜୀ) ମା'ଙ୍କ ଦର୍ଶନ ପାଇଁ ଷ୍ଟେସନକୁ ଆସିଥିଲେ । ଖରା ଦିନ । ଗରମରେ ସମସ୍ତଙ୍କୁ ଖୁବ୍ କଷ୍ଟ ହେଉଛି । ଗାଡ଼ି ଆସି ପହଞ୍ଚିଲା । ଯୋଗୀନ୍-ମା' ଓ ଗୋଲାପ-ମା' ଅତି ସନ୍ତର୍ପଣରେ ମା'ଙ୍କୁ ଓହ୍ଲାଇଲେ । ବ୍ରହ୍ମାନନ୍ଦଜୀ ଓ ସମବେତ ଭକ୍ତମାନଙ୍କୁ ଦେଖି ଗୋଲାପ-ମା' ତାଙ୍କ ସ୍ୱାଭାବିକ ରୁକ୍ଷ ସ୍ୱରରେ କହିଲେ, ''ମହାରାଜ, ତୁମମାନଙ୍କର କଅଣ ଟିକିଏ ବୁଦ୍ଧି ନାହିଁ ? ଏହି ଖରାରେ ମା' ଜଳିପୋଡ଼ି ହୋଇ ଆସୁଛନ୍ତି । ଆଉ ତୁମେମାନେ ଯଦି ପ୍ରଣାମ କରିବା ପାଇଁ ବିଭ୍ରାଟ କର, ତେବେ ଅନ୍ୟମାନଙ୍କର ଆଉ କି କଥା !'' ନିତାନ୍ତ ଅପରାଧୀଙ୍କ ପରି ମହାରାଜ ପ୍ରଣାମ କରିବାକୁ ଅଗ୍ରସର ହେଲେ ନାହିଁ । ଶ୍ରୀମା' ଘୋଡ଼ାଗାଡ଼ିରେ ବସି ବାଗ୍‌ବଜାରକୁ ଯାତ୍ରା କଲେ । ଏଣେ ରାଜାମହାରାଜ ଓ ବାବୁରାମ ମହାରାଜ ପଛେ ପଛେ ଅନ୍ୟ ଗାଡ଼ିରେ ଚାଲିଲେ । ମା'ଙ୍କ ଘରେ ପହଞ୍ଚି ସମସ୍ତେ ଅପେକ୍ଷା କରୁଛନ୍ତି । କେତେବେଳେ ଦର୍ଶନ ହେବ । ଏହି ସମୟରେ ଗିରିଶବାବୁ ଆସି ଉପସ୍ଥିତ । ମହାରାଜ ପ୍ରଭୃତିଙ୍କୁ ଦେଖି ସେ ମା'ଙ୍କ ବିଷୟରେ ପଚାରିଲେ । ତାଙ୍କ ଗମ୍ଭୀର ଶବ୍ଦ ଉପରୁ ଶୁଣି ଗୋଲାପ-ମା' ତଳକୁ ଓହ୍ଲାଇ ଆସି ପୁଣି ଭର୍ତ୍ସନା କରିବାକୁ ଲାଗିଲେ । ଗୋଲାପ-ମା' କହିଲେ, ''ଘୋଷ ମହାଶୟଙ୍କର ଏହି ଅପୂର୍ବ ଭକ୍ତି ଦେଖି ଆମେ ଆଶ୍ଚର୍ଯ୍ୟ । ମା' ଗରମରେ ଜଳିପୋଡ଼ି ଆସିଛନ୍ତି, କିପରି ଟିକିଏ ବିଶ୍ରାମ କରିବେ ତା' ନୁହେଁ, ଏଠିକି ଆସିଛ ତାଙ୍କୁ ବିରକ୍ତ କରିବା ପାଇଁ !'' ଗିରିଶବାବୁ ସେ କଥାକୁ ଆଗ୍ରାହ୍ୟ କରି ଦୁଇଜଣ ସ୍ୱାମୀଜୀଙ୍କୁ ନେଇ ଉପରକୁ ଚାଲିଲେ । ଗୋଲାପ-ମା' ପୁଣି ଥରେ ତାଙ୍କୁ ଧମକାଇଲେ । କିନ୍ତୁ ଗିରିଶ ତାଙ୍କ ଆଡ଼କୁ ଅନାଇଁ କହିଲେ, ''କଳିହୁଡ଼ୀ ଝିଅ କହୁଛି କଅଣ ନା ଆମେ ମା'ଙ୍କୁ ବିରକ୍ତ କରିବାକୁ ଆସିଛୁ ! କୁଆଡ଼େ ଏତେଦିନ ପରେ ପୁଅମାନଙ୍କୁ ଦେଖି ମା'ଙ୍କ ପ୍ରାଣ ଶୀତଳ ହେବ, ଆଉ ଇଏ ଆମକୁ ମାତୃସ୍ନେହ ଶିଖାଉଛନ୍ତି !'' ସେମାନେ ଉପରକୁ ଚାଲିଗଲେ ଏବଂ ମା' ମଧ୍ୟ ସେମାନଙ୍କୁ ଆଦର ସହିତ ଗ୍ରହଣ କଲେ ଓ ଆଶୀର୍ବାଦ କଲେ । ଇତିମଧ୍ୟରେ ଗୋଲାପ-ମା' ମଧ୍ୟ ଆସି ପହଞ୍ଚିଲେ । ସେ ଅଭିଯୋଗ କରି କହିଲେ, ''ଶେଷରେ ଗିରିଶବାବୁ ମୋତେ ଏପରି କଥା କହିଲେ !'' ଶ୍ରୀମା' ତାଙ୍କୁ କହିଲେ, ''ତୁମକୁ ବହୁତଥର କହିଛି, ମୋ ପିଲାମାନଙ୍କ ବିଷୟରେ କୌଣସି ମତାମତ ପ୍ରକାଶ କରିବ ନାହିଁ ।''

ଗିରିଶବାବୁ ପ୍ରତିବର୍ଷପରି ଦୁର୍ଗାପୂଜାର ଆୟୋଜନ କଲେ (୧୯୦୭ ଖ୍ରୀ:) ଓ ଶ୍ରୀମା'ଙ୍କୁ ଚିଠି ଲେଖି ଜଣାଇଲେ ଯେ ଶ୍ରୀମା' ତାଙ୍କ ପୂଜାରେ ଉପସ୍ଥିତ ନ ରହିଲେ ତାଙ୍କ ପୂଜା ସମ୍ପୂର୍ଣ୍ଣ ବ୍ୟର୍ଥ ହେବ । ଶ୍ରୀମା' ସେତେବେଳେ ଗାଁରେ ମ୍ୟାଲେରିଆ ଭୋଗି ଭୋଗି ସ୍ୱାସ୍ଥ୍ୟ ଅତି ଖରାପ । ଅନ୍ୟମାନଙ୍କ ଆପତ୍ତି ସତ୍ତ୍ୱେ ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବାକୁ କଲିକତା ଯିବା ପାଇଁ ସମ୍ମତ ହେଲେ । ବିଷ୍ଣୁପୁରରୁ ରେଳଗାଡ଼ିରେ ଶ୍ରୀମା' କଲିକତାକୁ ଆସିଲେ । ତା' ପରଦିନ ଗିରିଶଙ୍କ ବଡ଼ ଭଉଣୀ ଆସି ପ୍ରଣାମ କରି କହିଲେ ଯେ, ଗିରିଶ ଜିଦ୍ କରି ବସିଛନ୍ତି, ମା' ନ ଆସିଲେ ପୂଜା କରିବା ନିରର୍ଥକ । ସୁତରାଂ ସେ ନ ଆସିଲେ ପୂଜା ବନ୍ଦ ରହିବ । ଶ୍ରୀମା' ବଳରାମ ଭବନରେ ଥାଆନ୍ତି । ଗିରିଶଙ୍କ ଘରେ ପୂଜା ଆରମ୍ଭ ହେଲା; ଏଣେ ବଳରାମଙ୍କ ଘରେ ମଧ୍ୟ ଉତ୍ସବ ଚାଲିଛି । ପ୍ରତିଦିନ ଶହ ଶହ ଲୋକ ଆସି ଶ୍ରୀମା'ଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ଦେଇ ଯାଉଛନ୍ତି । ଘଣ୍ଟା ଘଣ୍ଟା ଧରି ଶ୍ରୀମା'ଙ୍କୁ ଭକ୍ତମାନଙ୍କର ଅର୍ଘ୍ୟ ଗ୍ରହଣ କରିବାକୁ ପଡୁଛି । ଅଷ୍ଟମୀ ଦିନ ଗଭୀର ରାତ୍ରୀରେ ସନ୍ଧିପୂଜା । ଏଣେ ଶରୀର ଅସୁସ୍ଥ ଏବଂ ପୂଜା ଓ ଭକ୍ତମାନଙ୍କ ପୁଷ୍ପାଞ୍ଜଳି ଗ୍ରହଣ କରୁଥିବାରୁ ଅଧିକ ପରିଶ୍ରମ ହେଉଛି । ତେଣୁ ଠିକ୍ ହେଲା ଯେ ମା' ସନ୍ଧିପୂଜାରେ ରହିବେ ନାହିଁ । ଗିରିଶ ଏ ସମ୍ବାଦ ପାଇ ମୂହ୍ୟମାନ ହେଲେ, କିନ୍ତୁ ବର୍ତ୍ତମାନ କରିବାର କିଛି ନାହିଁ । ଏଣେ ସନ୍ଧିପୂଜାର କିଛି ପୂର୍ବରୁ ଶ୍ରୀମା' ଠିକ୍ କଲେ ଯେ ସେ ପୂଜା ଦେଖିବାକୁ ଯିବେ । ସ୍ତ୍ରୀ-ଭକ୍ତମାନଙ୍କ ସହିତ ସରୁ ଗଳି ଦେଇ ଗିରିଶଙ୍କ ଘରେ ଉପସ୍ଥିତ ହେଲେ । ଏଣେ ଗିରିଶ ମନ ଖରାପ କରି ବୈଠକଖାନରେ ବସିଛନ୍ତି; ପୂଜାମଣ୍ଡପକୁ ଯିବେ ନାହିଁ ଠିକ୍ କରିଛନ୍ତି । ଶ୍ରୀମା'ଙ୍କ ଆଗମନ ସମ୍ବାଦ ପାଇ ଗିରିଶ ଅତିଶୟ ଉଲ୍ଲସିତ ହୋଇ ଉଠିଲେ । ପୂଜା ଭଲ ଭାବରେ କଟିଗଲା । ପୂଜାର ତିନିଦିନ ସମସ୍ତେ ଶ୍ରୀମା'ଙ୍କୁ ଅର୍ଘ୍ୟ ଦେଲେ— ଗିରିଶଙ୍କ ଆତ୍ମୀୟ ସ୍ୱଜନ, ଏପରିକି ଥିଏଟରର ଅଭିନେତା ଅଭିନେତ୍ରୀ, ପରିଚିତ ଅପରିଚିତ, କେହିହେଲେ ସେଥିରୁ ବଞ୍ଚିତ ହେଲେ ନାହିଁ ।

## ସ୍ୱାମୀ ସାରଦାନନ୍ଦ

ଶ୍ରୀମା'ଙ୍କ ଶିଷ୍ୟ ଡାକ୍ତର କାଞ୍ଜିଲାଲ ଜୟରାମବାଟୀରେ କେତେଦିନ ରହି ଫେରି ଯାଇଛନ୍ତି (୧୯୦୫ ଖ୍ରୀ:) । ଦିନେ ଶ୍ରୀମା'ଙ୍କର ପ୍ରବଳ ଜ୍ୱର ହେଲା । ଉତ୍ତାପ ଏତେ ବଢ଼ିଲା ଯେ ସମସ୍ତେ ଡରିଗଲେ । ଦିନେ ରାତିରେ ମା' ପ୍ରଳାପ ବକିଲେ, "ଯିବାକୁ ହେବ । — ନା — । କାହିଁକି ? —ରାଧୁ ପାଇଁ ? —ଆଚ୍ଛା, ତାହା ହେବ ।" ମନେହେଲା, ଯେପରି କି ଶ୍ରୀଶ୍ରୀଠାକୁରଙ୍କ ସହିତ କଥା ହେଉଛନ୍ତି । ମା' ବିଦାୟ ଚାହୁଁଛନ୍ତି, କିନ୍ତୁ ଠାକୁର ରାଧୁ ପାଇଁ ରହିବାକୁ କହୁଛନ୍ତି । ଯାହା ହେଉ, ଡାକ୍ତରବାବୁ ଯିବା ସମୟରେ କେତେକ ଔଷଧ ରଖିଯାଇଥିଲେ । ଜ୍ୱରର

ଔଷଧ ଖାଇ ଶ୍ରୀମା' ସୁସ୍ଥ ହେଲେ । ଶ୍ରୀମା' ଗାଁରେ ରହିଲେ ସୁଦ୍ଧା ସାରଦାନନ୍ଦଜୀ ପତ୍ରଦ୍ୱାରା କିମ୍ବା ଲୋକ ପଠାଇ ତାଙ୍କର ଖବର ନେଉଥିଲେ ଏବଂ ପ୍ରୟୋଜନ ଅନୁଯାୟୀ ଅର୍ଥ ଓ ଔଷଧ ପଠାଉଥିଲେ । ତାଙ୍କ ଇଚ୍ଛା ଶ୍ରୀମା' ଆସି କଲିକତାରେ ରହନ୍ତୁ; କିନ୍ତୁ ମା'ଙ୍କ ଇଚ୍ଛା ବିରୋଧରେ କିଛି କହୁ ନ ଥିଲେ ।

ଶ୍ରୀମା' କଲିକତାକୁ ଆସିଲେ କୌଣସି ଭକ୍ତଙ୍କ ଘରେ ରହୁଥିଲେ । ଶ୍ରୀମା'ଙ୍କ ସହିତ ତାଙ୍କର ଆତ୍ମୀୟସ୍ୱଜନ ଏବଂ କେତେଜଣ ମହିଳା ଭକ୍ତ ମଧ୍ୟ ରହୁଥିଲେ । ଜଣେ ଗୃହସ୍ଥଙ୍କ ପକ୍ଷରେ ଏତେ ଜଣ ଲୋକଙ୍କ ପାଇଁ ବ୍ୟବସ୍ଥା କରିବା କଠିନ ଏବଂ ବ୍ୟୟସାଧ । ବଡ଼ ଘରଟିଏ ଭଡ଼ା ନେବା ମଧ୍ୟ ଖୁବ୍ ସହଜ ନ ଥିଲା । ପୁଣି ଗଙ୍ଗା ନିକଟବର୍ତ୍ତୀ ନ ହେଲେ ଶ୍ରୀମା'ଙ୍କର ଗଙ୍ଗାସ୍ନାନର ଅସୁବିଧା ହେଉଥିଲା । ଅଧିକନ୍ତୁ ଉଦ୍‌ବୋଧନ ପତ୍ରିକା ପରିଚାଳନା ପାଇଁ ଏବଂ ଏହି କାମରେ ନିଯୁକ୍ତ ସାଧୁମାନଙ୍କ ବସବାସ ପାଇଁ ମଧ୍ୟ ଘରର ପ୍ରୟୋଜନ ଥିଲା । ଏହିସବୁ କଥା ଭାବିଚିନ୍ତି ସାରଦାନନ୍ଦଜୀ ଠିକ୍ କଲେ, ବାଗ୍‌ବଜାରରେ ଗୋଟିଏ ପକ୍‌କା ଘର ତିଆରି କରିବେ । ଶ୍ରୀଯୁକ୍ତ କେଦାରଚନ୍ଦ୍ର ଦାସ ଠାକୁରଘର ତିଆରି ପାଇଁ ବାଗ୍‌ବଜାରରେ ପ୍ରାୟ ୭୦ ଡେସିମିଲ୍ ଜମି ବେଲୁଡ଼ ମଠକୁ ଦାନ କରିଥିଲେ । 'ଉଦ୍‌ବୋଧନ' ପାଇଁ ସାରଦାନନ୍ଦଜୀ ଗୋଟିଏ ପକ୍‌କା ଘର ତିଆରି କରିବେ ବୋଲି ଠିକ୍ କରିଥିଲେ, କିନ୍ତୁ ହାତରେ ସେତେ ଅର୍ଥ ନ ଥିଲା । ଅନେକ ଚେଷ୍ଟା କରି ପାଞ୍ଚ ହଜାର ସାତଶହ ଟଙ୍କା ଋଣ ନେଇ ୧୯୦୭ ଖ୍ରୀଷ୍ଟାବ୍ଦରେ ନୂତନ ଗୃହକାର୍ଯ୍ୟ ଆରମ୍ଭ କଲେ । ଅବଶେଷରେ ବହୁ ପରିଶ୍ରମ ସ୍ୱୀକାର କରି ପ୍ରାୟ ଏଗାର ହଜାର ଟଙ୍କା ଖର୍ଚ୍ଚରେ ଗୃହଟି ନିର୍ମିତ ହେଲା । ୧୯୦୮ ଖ୍ରୀଷ୍ଟାବ୍ଦରେ 'ଉଦ୍‌ବୋଧନ' କାର୍ଯ୍ୟାଳୟ ନୂତନ ଗୃହକୁ ସ୍ଥାନାନ୍ତରିତ ହେଲା । ତଳ ମହଲାରେ ଛଅଟି ଏବଂ ଉପର ମହଲାରେ ଦୁଇଟି ଓ ସବା ଉପରେ ଗୋଟିଏ ସବୁ ମିଶି ଦଶଟି ଘର । ତଳମହଲାର ଘରଗୁଡ଼ିକ 'ଉଦ୍‌ବୋଧନ' ପାଇଁ ଏବଂ ଉପରର ଘରଗୁଡ଼ିକ ଶ୍ରୀମା' ଓ ତାଙ୍କ ସଙ୍ଗିନୀମାନଙ୍କ ପାଇଁ ନିର୍ଦ୍ଧାରିତ ହେଲା ।

ଏହି ସମୟରେ ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ । ଫାଲ୍‌ଗୁନ ମାସ ଶେଷରେ କାମାରପୁକୁରରେ ଶ୍ରୀଶ୍ରୀଠାକୁରଙ୍କ ଜନ୍ମୋତ୍ସବ କରିବା ପାଇଁ କାଙ୍କୁଡ଼ଗାଛି ଯୋଗଦ୍ୟାନରୁ ସ୍ୱାମୀ ଯୋଗବିନୋଦ ସେଠାରେ ଉପସ୍ଥିତ ହେଲେ ଏବଂ ଉତ୍ସବକୁ ସର୍ବାଙ୍ଗସୁନ୍ଦର କରିବା ପାଇଁ ଶ୍ରୀମା'ଙ୍କୁ ଜୟରାମବାଟୀରୁ ନେଇ ଆସିଲେ । ଉତ୍ସବରେ ଯୋଗ ଦେଇ ଶ୍ରୀମା' ଖୁବ୍ ଆନନ୍ଦ ପାଇଥିଲେ ।

ଜୟରାମବାଟୀରେ ଏକ ନୂତନ ପରିସ୍ଥିତିର ସୃଷ୍ଟି ହେଲା ଏବଂ ତାହାର ସମାଧାନ ପାଇଁ ଶ୍ରୀମା' ତାଙ୍କର ଅତି ବିଶ୍ୱସ୍ତ, ଧୀରସ୍ଥିର ସନ୍ତାନ ସ୍ୱାମୀ ସାରଦାନନ୍ଦଙ୍କୁ ଖବର ପଠାଇଲେ । ଶ୍ୟାମାସୁନ୍ଦରୀଙ୍କ ଦେହତ୍ୟାଗ ପରଠାରୁ ଶ୍ରୀମା' ଏହି ସଂସାରର ଅଭିଭାବକ ହୋଇଥିଲେ । ଭାଇମାନଙ୍କ ଭିତରେ

ମତବିରୋଧ ଓ ସ୍ୱାର୍ଥର ସଂଘର୍ଷ ପ୍ରବଳ ଆକାର ଧାରଣ କଲା । ଅତଏବ ଉପାୟ ନ ଦେଖି ଶ୍ରୀମା' ସ୍ଥିର କଲେ ଯେ, ଭାଇମାନଙ୍କ ଭିତରେ ସବୁ ଧନସମ୍ପତ୍ତି ବଣ୍ଟନ କରିଦେବେ । ୧୯୦୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୨୩ ତାରିଖ ଦିନ ସ୍ୱାମୀ ସାରଦାନନ୍ଦଜୀ, ଯୋଗୀନ-ମା' ଓ ଗୋଲାପ-ମା'ଙ୍କ ସହିତ ଜୟରାମବାଟୀକୁ ଯାତ୍ରା କଲେ । ବୈଷୟିକ କର୍ମରେ ଲିପ୍ତ ଥିଲେ ସୁଦ୍ଧା ସାରଦାନନ୍ଦଜୀ ଅବସର ସମୟରେ ସ୍ୱାମୀଜୀଙ୍କ ''ଜ୍ଞାନ-ଯୋଗ''ର ସଂପାଦନା କରୁଥିଲେ କିମ୍ବା ଗ୍ରାମବାସୀଙ୍କ ସହିତ ଶ୍ରୀରାମକୃଷ୍ଣ-ପ୍ରସଙ୍ଗ ଚର୍ଚ୍ଚା କରୁଥିଲେ । ଶ୍ରୀମା' ସେତେବେଳେ ଖୁବ୍ ବ୍ୟସ୍ତ ରହୁଥିଲେ । ସଂସାରର ଦୈନନ୍ଦିନ କର୍ମ ଛଡ଼ା ସାରଦାନନ୍ଦଜୀଙ୍କ ପାଇଁ ଦୁଇଓଳି ରୋଷେଇର ଦାୟିତ୍ୱ ତାଙ୍କରି ଉପରେ । ଜମିର ମାପ ହୋଇ ଭାଗ ବଣ୍ଟା ହେଲା । ଏଥିପାଇଁ କାଳୀମାମୁଁ ଓ ପ୍ରସନ୍ନମାମୁଁ ମଧ୍ୟରେ ଭୀଷଣ ମତବିରୋଧ ହେଲା । ଯାହା ହେଉ ସାରଦାନନ୍ଦଜୀଙ୍କ ମଧ୍ୟସ୍ଥତା ହେତୁ ସମସ୍ୟାର ସମାଧାନ ହେଲା । ଏତେ ଗୋଳମାଳ ମଧ୍ୟରେ ମଧ୍ୟ ସାରଦାନନ୍ଦଜୀ ସୁମେରୁବତ୍ ଅଚଳ ଅଟଳ ରହିଥିଲେ । ଶ୍ରୀମା' ମଧ୍ୟ ଏହି ସମସ୍ତ ଜଞ୍ଜାଳର ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ଥିଲେ । ସାରଦାନନ୍ଦଜୀ ଦିନେ କହିଲେ, ''ଆମମାନଙ୍କୁ ତ ଦେଖୁଛ—ପାନରୁ ଚୂନ ଖସିଲେ ଆମେ ରାଗି ନିଆଁ ହୋଇଯାଉ, କିନ୍ତୁ ମା'ଙ୍କୁ ଦେଖ, ତାଙ୍କ ଭାଇମାନେ କି କାଣ୍ଡ କରୁଛନ୍ତି—ଅଥଚ ସେ ପୂର୍ବପରି ରହିଛନ୍ତି—ଧୀରସ୍ଥିର !

ସାଲିସ୍ ଦଲିଲ ଲେଖାହେବା ସମୟରେ ଶ୍ରୀମା'ଙ୍କୁ ପଚରାହେଲା—ସେ କେଉଁ ଘରେ ରହିବେ ? ଶ୍ରୀମା' ଉତ୍ତର ଦେଲେ ମୂଷା ଗାତ କରେ—ସାପ ସେହି ଗାତରେ ରହେ । ଶ୍ରୀମା'ଙ୍କୁ ପୁନର୍ବାର ପଚରାଗଲା—ତାଙ୍କର ନିର୍ଦ୍ଦିଷ୍ଟ ଘର ନ ଥିଲେ ସେ ରହିବେ କେଉଁଠି ? ଶ୍ରୀମା' ଉତ୍ତର ଦେଲେ, ''ଦୁଇଦିନ ପ୍ରସନ୍ନର ଘରେ, ଦୁଇଦିନ କାଳୀଘରେ ରହିବି ।'' ମା' ରହୁଥିବା ଘରଟି ପ୍ରସନ୍ନମାମୁଁଙ୍କ ଭାଗରେ ପଡ଼ିଲା । ଅତଃପର ଶ୍ରୀମା' କଲିକତା ଯିବେ ବୋଲି ସ୍ଥିର କଲେ ।

ମେ ୨୧ ତାରିଖ ଶୁକ୍ରବାର ଦିନ ଜୟରାମବାଟୀରୁ ବାହାରି ଶ୍ରୀମା' ୨୩ ତାରିଖ ରବିବାର ଦିନ ସକାଳେ ଉଦ୍‌ବୋଧନ ଘରେ ଶୁଭ ପଦାର୍ପଣ କଲେ । ଶ୍ରୀମା'ଙ୍କୁ ତାଙ୍କ ନିର୍ଦ୍ଦିଷ୍ଟ ବଖରାରେ ଦେଖି ମାତୃଭକ୍ତ ସାରଦାନନ୍ଦଜୀ ନିଜର ଶ୍ରମ ସାର୍ଥକ ବୋଧ କଲେ । ସେତେବେଳେ ଏହି ଘର ସମ୍ମୁଖରେ ଖୋଲା ପଡ଼ିଆ ଥିଲା । ନିକଟରେ ଗଙ୍ଗାନଦୀ, ଉତ୍ତରକୁ ଚାହିଁଲେ ଦେବଦାରୁ ଇତ୍ୟାଦି ଗଛର ଶୀର୍ଷ ଦୃଷ୍ଟିଗୋଚର ହୁଏ । ଶ୍ରୀମା' ଆନନ୍ଦିତ ହୋଇ ସାରଦାନନ୍ଦଜୀଙ୍କୁ ଅଜସ୍ର ଆଶୀର୍ବାଦ କଲେ । ଦୁଇ ମହଲାର ଠାକୁର ଘରେ ବେଦୀ ଉପରେ ଠାକୁରଙ୍କୁ ପ୍ରତିଷ୍ଠିତ କରାଯାଇଛି । ଭଗିନୀ ନିବେଦିତା ବେଦୀ ପାଇଁ ସୁନ୍ଦର ରେଶମୀ ଚନ୍ଦ୍ରାତପ କରି ଦେଇଛନ୍ତି । ପାଖ ବଖରାରେ ଶ୍ରୀମା'ଙ୍କ ପାଇଁ ଗୋଟିଏ ଏବଂ ରାଧୁ ପାଇଁ ଗୋଟିଏ ଖଟ ପକାହୋଇଛି । ଶ୍ରୀମା' ବ୍ୟବସ୍ଥା ଦେଖି କହିଲେ

ଠାକୁରଙ୍କୁ ଛାଡ଼ି ମୁଁ ଅନ୍ୟବଖରାରେ ରହି ପାରିବି ନାହିଁ । ତେଣୁ ତାଙ୍କ ଖଟକୁ ଠାକୁର-ଘରକୁ ସ୍ଥାନାନ୍ତରିତ କରାଗଲା ।

ଶ୍ରୀମା'ଙ୍କ ପ୍ରତି ପୂଜ୍ୟପାଦ ସ୍ୱାମୀ ସାରଦାନନ୍ଦଜୀଙ୍କ ଅପୂର୍ବ ଭକ୍ତିର ଏବଂ ତାଙ୍କ ପ୍ରତି ମା'ଙ୍କର ଅନୁପମ ସ୍ନେହର କିଞ୍ଚିତ୍ ପରିଚୟ ନ ଦେଲେ ଏମାନଙ୍କର ଅଲୌକିକ ସମ୍ବନ୍ଧ ବିଷୟରେ ପୂର୍ଣ୍ଣ ଧାରଣା ହେବ ନାହିଁ । ୧୯୨୦ ଖ୍ରୀଷ୍ଟାବ୍ଦରେ ସାରଦାନନ୍ଦଜୀ କାଶୀରେ ଥିଲେ । ଏହି ସମୟରେ ଶ୍ରୀମା'ଙ୍କର କଲିକତା ଯିବା ପ୍ରଶ୍ନ ଉଠିବାରୁ ସେ କହିଲେ, ''ଶରତ କଲିକତାରେ ନ ଥିଲେ ମୋର ସେଠାକୁ ଯିବା ହେବ ନାହିଁ । କାହା ପାଖକୁ ଯିବି ?...ଶରତ ଛଡ଼ା ମୋର ଭାର କିଏ ବହନ କରିପାରିବ ?'' ଆଉଥରେ କହିଥିଲେ—''ଶରତ ଯେତେଦିନ ଯାଏ ଅଛି, ସେତେଦିନ ମୁଁ ସେଠାରେ ରହିବି । ତା'ପରେ ମୋର ଭାର ନେଇ ପାରିବ ଏପରି କିଏ ଅଛି; ମୋର ଧାରଣା ନାହିଁ ।'' ଶ୍ରୋତା ମା'ଙ୍କୁ ପଚାରିଲେ, ''ମହାରାଜ ସ୍ୱାମୀ ବ୍ରହ୍ମାନନ୍ଦଜୀ ପାରିବେ ନାହିଁ ?'' ମା' ଉତ୍ତର ଦେଲେ, ''ନା, ରାଖାଲର ଭାବ ଭିନ୍ନ ।'' ପୁଣି ପ୍ରଶ୍ନ ହେଲା, ''ବାବୁରାମ ମହାରାଜ ପାରିବେ ନାହିଁ ?'' ମା' ଉତ୍ତର ଦେଲେ, ''ସେ ମଧ୍ୟ ପାରିବ ନାହିଁ ।'' ଥରେ ମା'ଙ୍କର ରାଞ୍ଚି ଯିବାର ପ୍ରସ୍ତାବ ଆସିବାରୁ ମା' କହିଲେ, ''ଦେଖ, ସେମାନେ ମନେ କରନ୍ତି ମୋତେ ନେଇ ଯିବା ଖୁବ୍ ସହଜ । ଥରେ ମୁଁ ଢାକା ଯିବି ବୋଲି ସେମାନେ ଖବର କାଗଜରେ ଛପାଇ ଦେଲେ, ଅଥଚ ମୋତେ କିଛି ଜଣାଇ ନାହାନ୍ତି ! ଦୁଇ ଚାରି ଦିନ ଚଳେଇ ନେବା ସହଜ, କିନ୍ତୁ ମୋ ଭାର ନେବା କଅଣ ସହଜ ? ଶରତ ମୋର ବାସୁକି—ସହସ୍ର ଫଣା ଧରି ରହିଛି ।''

ଜଣେ ଭକ୍ତ ଦୀକ୍ଷା ନେବା ପାଇଁ ଶ୍ରୀମା'ଙ୍କ ନିକଟକୁ ଆସିଲେ । ମା' ସେତେବେଳେ ଅସୁସ୍ଥ । ମା' କହିଲେ, ''ଶରତକୁ କୁହ, ସେ ଯାହା ବ୍ୟବସ୍ଥା କରିବ ତାହା ହେବ । ଶରତ ମୋ ମୁଣ୍ଡର ମଣି ।''

ଶ୍ରୀମା'ଙ୍କ ଦ୍ୱାରା ଏପରି ପ୍ରଶଂସିତ ହେଲେ ମଧ୍ୟ ସାରଦାନନ୍ଦଜୀ ଅତି ନିରଭିମାନୀ ଥିଲେ । ସେ ସେତେବେଳେ ''ଶ୍ରୀରାମକୃଷ୍ଣ-ଲୀଳାପ୍ରସଙ୍ଗ'' ଲେଖିବା ଆରମ୍ଭ କରିଥାଆନ୍ତି । ତଳମହଲା ପ୍ରବେଶ-ଦ୍ୱାର ନିକଟରେ ତାଙ୍କର ଦପ୍ତରଖାନା । ଶରତ ମହାରାଜ ନିଜକୁ ଶ୍ରୀମା'ଙ୍କ ଘରର ଦରଓ୍ୱାନ ବୋଲି ମନେ କରୁଥିଲେ । କିନ୍ତୁ ଏ କାମ ଅତି ସୁଖକର ନ ଥିଲା । ଦିନେ ବରିଶାଲର ଭକ୍ତ ଶ୍ରୀ ସୁରେନ୍ଦ୍ର ନାଥ ରାୟ ମା'ଙ୍କ ଦର୍ଶନ ପାଇଁ ଚାଲି ଚାଲି ଦିନ ଦୁଇଟାବେଳେ ଆସି ପହଞ୍ଚିଲେ । ମା' ଟିକିଏ ଆଗରୁ ବିଶ୍ରାମ କରିବା ପାଇଁ ନିଜ କକ୍ଷକୁ ଯାଇଥାଆନ୍ତି । ସିଡ଼ି ଦେଇ ଉପରକୁ ଉଠିବା ଦେଖି ସାରଦାନନ୍ଦ ବାଧା ଦେଲେ । କିନ୍ତୁ ଭକ୍ତ ଜିଦ୍ କରି ତାଙ୍କୁ ଠେଲି ଦେଇ ଉପରକୁ ଉଠିଗଲେ । କହିଲେ, ''ମା' କଅଣ କେବଳ ଆପଣଙ୍କର ?'' ଉପରେ ପହଞ୍ଚି ଅନୁତପ୍ତ ହୋଇ ଭାବିଲେ—ଗଲାବେଳେ

ଦେଖା ନ ହେଲେ ଭଲ । ଶ୍ରୀମା'ଙ୍କୁ ମଧ୍ୟ ନିଜ ଦୋଷ କଥା ଜଣାଇଲେ । ମା' ଆଶ୍ୱାସନା ଦେଇ କହିଲେ, ତାଙ୍କର କୌଣସି ଦୋଷ ନାହିଁ ଏବଂ ତାଙ୍କ ସନ୍ତାନମାନେ (ସାରଦାନନ୍ଦଜୀ ଇତ୍ୟାଦି) କୌଣସି ଅପରାଧ ନିଅନ୍ତି ନାହିଁ । ତଥାପି ସଙ୍କୁଚିତ ହୋଇ ତଳକୁ ଓହ୍ଲାଇ ଦେଖିଲେ ସାରଦାନନ୍ଦଜୀ ଠିକ୍ ନିଜ ସ୍ଥାନରେ ପୂର୍ବପରି ଠିଆ ହୋଇଛନ୍ତି । ଭକ୍ତ ପ୍ରଣାମ କରି ଅପରାଧ ପାଇଁ କ୍ଷମା ମାଗିବାରୁ ସାରଦାନନ୍ଦଜୀ ତାଙ୍କୁ ଆଲିଙ୍ଗନ କରି କହିଲେ, ''ଏଥିରେ ଅପରାଧ କଅଣ ? ଏପରି ବ୍ୟାକୁଳ ନ ହେଲେ କଅଣ ତାଙ୍କର ଦେଖା ମିଳିବ ?''

ନୂତନ ଘରକୁ ଆସିବାର କେତେ ସପ୍ତାହ ପରେ ଶ୍ରୀମା' ବସନ୍ତରୋଗରେ ଆକ୍ରାନ୍ତ ହେଲେ । ଗୋଟିଏ ଶୀତଳା ମନ୍ଦିରର ପୂଜକ ତାଙ୍କର ଚିକିତ୍ସା କଲେ । ବ୍ରାହ୍ମଣ ପ୍ରତିଦିନ ଆସୁଥିଲେ ଏବଂ ଶ୍ରୀମା' ତାଙ୍କୁ ଗଳବସ୍ତ୍ର ହୋଇ ପ୍ରଣାମ କରୁଥିଲେ ଓ ପଦଧୂଳି ନେଉଥିଲେ । ଦିନେ ଜଣେ ସେବକ ପ୍ରତିବାଦ କରି କହିଲେ ଯେ ଏପରି ବିନୟ ପ୍ରଦର୍ଶନ ଅଶୋଭନୀୟ, ବିଶେଷତଃ ବ୍ରାହ୍ମଣ ଯଦି ଚରିତ୍ରହୀନ ହୋଇଥାଏ । ଶ୍ରୀମା' ସହଜ ଭାବରେ ଉତ୍ତର ଦେଲେ, ଯାହା ହେଉ ପଛେ ସେ ଜଣେ ବ୍ରାହ୍ମଣ । ପୋଷାକକୁ ଉଚିତ ସମ୍ମାନ ଦେବାକୁ ହୁଏ । ଦେହ ଭଲ ହୋଇ ଉଠିବାରୁ ଶ୍ରୀମା' ଜଣେ ଭକ୍ତଙ୍କ ଘୋଡ଼ାଗାଡ଼ିରେ ପାର୍ଶ୍ୱନାଥଙ୍କ ମନ୍ଦିର ଇତ୍ୟାଦି ଦେଖିବାକୁ ଯାଇଥିଲେ । ସେପ୍ଟେମ୍ବର ବାର ତାରିଖ ଦିନ ମିନର୍ଭା ଥିଏଟରରେ 'ପାଣ୍ଡବ ଗୌରବ' ଅଭିନୟ ଦେଖିବାକୁ ଯାଇଥିଲେ । ଏଥିରେ ଗିରିଶବାବୁ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ଦେବୀମୂର୍ତ୍ତିଙ୍କ ଆବିର୍ଭାବ ଦେଖି ଶ୍ରୀମା' ସମାଧିସ୍ଥ ହୋଇପଡ଼ିଲେ ।

ଏବେଠାରୁ ଗୋଲାପ-ମା' ଶ୍ରୀମା'ଙ୍କ ଗୃହରେ ବରାବର ରହିବାକୁ ଆରମ୍ଭ କଲେ । ମା'ଙ୍କ ପାଖ ଘରେ ସେ ରହୁଥିଲେ । ଯୋଗୀନ୍-ମା' ପ୍ରତିଦିନ ଦୁଇଓଳି ଆସୁଥିଲେ ଓ ବିଭିନ୍ନ କାମରେ ସାହାଯ୍ୟ କରୁଥିଲେ । ଥରେ ଶ୍ରୀମା' କୀର୍ତ୍ତନ ଶୁଣିବାକୁ ଯାଇଥିଲେ । କୀର୍ତ୍ତନର ଭାବ ଓ ସଙ୍ଗୀତ ମାଧ୍ୟମରେ ସମସ୍ତେ ମୁଗ୍ଧ ହେଲେ । ଯେତେବେଳେ କୀର୍ତ୍ତନ ଶେଷ ହେଲା ସେତେବେଳେ ଶ୍ରୀମା' ସମ୍ପୂର୍ଣ୍ଣ ବାହ୍ୟଜ୍ଞାନଶୂନ୍ୟ ହୋଇ ବସିରହିଲେ । ଗୋଲାପ-ମା' ତାଙ୍କୁ ହାତ ଧରି ଉଠାଇଲେ ଏବଂ ଅନେକ କଷ୍ଟକରି ଗାଡ଼ିରେ ବସାଇଲେ । ଉଦ୍‌ବୋଧନରେ ପହଞ୍ଚି ମଧ୍ୟ ସେହି ଭାବ ରହିଛି । ଶ୍ରୀମା' ନିସ୍ପନ୍ଦ ଭାବରେ ଛିଡ଼ା ହୋଇ ରହିଲେ, ଡାକିଲେ ଉତ୍ତର ଦିଅନ୍ତି ନାହିଁ କିମ୍ବା ଆଖିର ପଲକ ପଡ଼େ ନାହିଁ । ଭକ୍ତମାନେ ପରାମର୍ଶ କରି ସ୍ଥିର କଲେ ଯେ ତାଙ୍କୁ ମା' ବୋଲି ଡାକିଲେ ହୁଏତ ସ୍ୱାଭାବିକ ଭୂମିକୁ ଆସିବେ । କାରଣ ସନ୍ତାନର କଲ୍ୟାଣ ପାଇଁ ଆସିଥିବା ଜନନୀ ସନ୍ତାନଙ୍କର ଡାକ ନିଶ୍ଚୟ ଶୁଣିବେ । ସେହି ଅନୁସାରେ ଜଣେ ସେବକ ତାଙ୍କ କାନରେ 'ମା' 'ମା' ବୋଲି ଡାକିବାକୁ ଲାଗିଲା । ଶରୀରରେ ସ୍ପନ୍ଦନ ଦେଖା ଦେଲା ଏବଂ କ୍ରମେ

ସେ ସ୍ପଷ୍ଟ ସ୍ୱରରେ କହିଲେ, ''କାହିଁକି ବାବା !'' ଭକ୍ତମାନେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲେ ।

ସାରଦାନନ୍ଦଜୀଙ୍କର ସେତେବେଳେ ବହୁତ କାମ—ମା'ଙ୍କ ସେବା, ରାମକୃଷ୍ଣ ମଠ ଓ ମିଶନର ସଂପାଦକୀୟ କର୍ତ୍ତବ୍ୟ, ଗୃହ ନିର୍ମାଣ ପାଇଁ ଯେଉଁ ଋଣ କରିଥିଲେ ତାହା ଶୋଧ କରିବା ପାଇଁ 'ଶ୍ରୀରାମକୃଷ୍ଣ-ଲୀଳାପ୍ରସଙ୍ଗ' ଲେଖିବା, ମା'ଙ୍କ ପାଇଁ ଆସିଥିବା ଭକ୍ତମାନଙ୍କ ସହିତ କଥାବାର୍ତ୍ତା କରିବା, ଇତ୍ୟାଦି । କେଉଁ କେଉଁ ଦିନ ସନ୍ଧ୍ୟାଳତି ପରେ ମା' ଉପରୁ ଖବର ପଠାଉଥିଲେ, ''ଶରତକୁ କୁହ ଭଜନ ଗାଇବ ।'' ତଳେ ବୈଠକଖାନାରେ ତାନପୁରା ଇତ୍ୟାଦି ରହୁଥିଲା । ଆଦେଶ ପାଇଲେ ସୁକଣ୍ଠ ଗାୟକ ଗୀତ ଗାଉଥିଲେ । ମାତୃଭବନର ପ୍ରସାର ପାଇଁ ସାରଦାନନ୍ଦଜୀ ସଂଲଗ୍ନ କିଛି ଜମି କିଣି ସେଥିରେ ଘର ନିର୍ମାଣ କଲେ ।

ସାତ ଆଠ ମାସ କାଳ ଗାଁରେ କଟାଇ ଶ୍ରୀମା' କଲିକତାକୁ ଫେରିଲେ । ସେ ବର୍ଷ ଖୁବ୍ ଶୀତ (୧୯୧୦ ଖ୍ରୀଷ୍ଟାବ୍ଦ) । ସାରଦାନନ୍ଦଜୀ ଦଶଟଙ୍କା ମୂଲ୍ୟର ଗୋଟିଏ ଭଲ ବିଲାତି ଗେଞ୍ଜି କିଣିଲେ । ଶ୍ରୀମା' ତାହା ପାଇ ଖୁବ୍ ଖୁସି ହେଲେ ଏବଂ ତିନିଦିନ ତାହା ବ୍ୟବହାର କଲେ । ସେତେବେଳେ ସ୍ତ୍ରୀ-ଲୋକମାନେ ଜାମା କିମ୍ବା ସୁଏଟର୍ ପିନ୍ଧୁ ନ ଥିଲେ । ସାମର୍ଥ୍ୟ ଥିଲେ ମଧ୍ୟ ସେ ବିଳାସିତାକୁ କେବେହେଲେ ପ୍ରଶ୍ରୟ ଦେଇନାହାନ୍ତି ।

## ଦାକ୍ଷିଣାତ୍ୟରେ

ଶ୍ରୀଯୁକ୍ତ ରାମକୃଷ୍ଣ ବସୁଙ୍କ ଜନନୀ ଶ୍ରୀମା'ଙ୍କୁ ତାଙ୍କ ଜମିଦାରୀ କୋଠାରକୁ ନେଇଯାଇ ସେଠାରେ କିଛିଦିନ ରଖିବାକୁ ଇଚ୍ଛା କରିଥିଲେ । ୧୩୧୭ ସାଲ ୧୮ ମାର୍ଗଶୀର ଦିନ ଯାତ୍ରା ସ୍ଥିର ହେଲା । ଗୋଟିଏ ଦ୍ୱିତୀୟ ଶ୍ରେଣୀ ଡବାରେ ଶ୍ରୀମା', ଗୋଲାପ-ମା' , ରାମକୃଷ୍ଣବାବୁଙ୍କ ମା' ଏବଂ ରାଧୁ ଇତ୍ୟାଦି ଉଠିଲେ । ପୁରୁଷ ଭକ୍ତମାନେ ଗୋଟିଏ ମଧ୍ୟମ ଶ୍ରେଣୀର ଡବାରେ ବସିଲେ । ଭଦ୍ରକ ଷ୍ଟେସନରେ ପ୍ରେମାନନ୍ଦଜୀଙ୍କ ଭାଇ ତୁଳସୀରାମବାବୁ ଯାନବାହନ ସହିତ ଉପସ୍ଥିତ ଥିଲେ । ସେ ପ୍ରଥମେ ସେମାନଙ୍କୁ ଭଦ୍ରକରେ ଥିବା ତାଙ୍କ କଚେରୀ ଘରକୁ ନେଇଗଲେ । ସେଠାରେ କିଛି ସମୟ ବିଶ୍ରାମ କରି ପାଲିଙ୍କିଦ୍ୱାରା ଆଠ ନଅ କୋଶ ଦୂରବର୍ତ୍ତୀ କୋଠାରକୁ ସମସ୍ତେ ଚାଲିଗଲେ । ଏଠାରେ ଦୁଇମାସ କାଳ ବେଶ୍ ଆନନ୍ଦରେ କଟିଲା ।

ଶ୍ରୀମା' ଥିବାରୁ ସରସ୍ୱତୀପୂଜା ସୁନ୍ଦର ଭାବରେ ଆୟୋଜିତ ହେଲା । ପୂଜାଦିନ ଶ୍ରୀମା' କେତେଜଣ ଭକ୍ତଙ୍କୁ ଦୀକ୍ଷା ମଧ୍ୟ ଦେଲେ । ଏମାନଙ୍କ ଭିତରେ ତିନିଜଣ ଭକ୍ତ ଶିଲଂରୁ ଆସିଥିଲେ । କୋଠାରର ପୋଷ୍ଟମାଷ୍ଟର ଘଟଣାଚକ୍ରରେ ପଡ଼ି ଯୌବନରେ ଖ୍ରୀଷ୍ଟଧର୍ମ ଅବଲମ୍ବନ କରିଥିଲେ । ସେ ବିଶେଷ ଅନୁତପ୍ତ

ହୋଇ ସ୍ୱଧର୍ମକୁ ଫେରିଆସିବାକୁ ଚାହିଁଥିଲେ । ଶ୍ରୀମା' ଏକଥା ଶୁଣି ବିଧାନ ଦେଲେ ଯେ ସରସ୍ୱତୀପୂଜାର ପୂର୍ବଦିନ ୰ରାଧାଶ୍ୟାମଚାନ୍ଦ ମନ୍ଦିରରେ ଯଥାବିଧି ପ୍ରାୟଶ୍ଚିତ କରି ଗାୟତ୍ରୀ ଓ ଯଜ୍ଞୋପବୀତ ଧାରଣ କଲେ ପୁଣି ବ୍ରାହ୍ମଣତ୍ୱରେ ପ୍ରତିଷ୍ଠିତ ହେବେ । ସେହି ଅନୁସାରେ ଶୁଦ୍ଧିକ୍ରିୟା ହେଲା ଏବଂ ସେ କୃଷ୍ଣଲାଲ ମହାରାଜଙ୍କ (ସ୍ୱାମୀ ଧୀରାନନ୍ଦ) ନିକଟରୁ ଗାୟତ୍ରୀ ମନ୍ତ୍ର ଓ ଯଜ୍ଞୋପବିତ ପାଇଲେ । ସରସ୍ୱତୀ ପୂଜାଦିନ ଶ୍ରୀମା'ଙ୍କ ନିକଟରୁ ମନ୍ତ୍ରଦୀକ୍ଷା ପାଇଲେ । ସେଦିନ ରାତ୍ରିରେ ଯାତ୍ରା ଅଭିନୟ ହେଲା । ଶ୍ରୀକୃଷ୍ଣ ଓ ରାଧାଙ୍କ ବେଶ ଧରିଥିବା ଦୁଇଟି ବାଳକଙ୍କ ମଧୁର ଗୀତ ଓ ନୃତ୍ୟ ଦେଖି ଶ୍ରୀମା' ଏତେ ମୁଗ୍ଧ ହେଲେ ଯେ ପରଦିନ ରାତିରେ ମଧ ଏ ଅଭିନୟ ହୋଇଥିଲା ।

ଶ୍ରୀମା' ଦ୍ୱିପ୍ରହରେ ଅଳ୍ପ ବିଶ୍ରାମ କରି ଜଣେ ସେବକଙ୍କ ଦ୍ୱାରା ଚିଠିପତ୍ର ଲେଖାଉଥିଲେ । ଦିନେ ସେବକ ଆସି ଦେଖିଲେ ଯେ ଶ୍ରୀମା' ସ୍ଥିର ହୋଇ ବସିଛନ୍ତି । ଚକ୍ଷୁଦ୍ୱୟ ଖୋଲା ଥିଲେ ମଧ ଦୃଷ୍ଟି ଯେପରି ଏ ଜଗତରେ ନାହିଁ । ଦଶ ପନ୍ଦର ମିନିଟ୍ ଏହି ଭାବରେ ରହି ହଠାତ୍ ଯେପରି ନିଦରୁ ଉଠିଛନ୍ତି ସେପରି ପ୍ରଶ୍ନ କଲେ, ''କେତେବେଳୁ ଆସିଲଣି ?'' ସେବକ କହିଲେ, ''ବେଶୀ ସମୟ ହୋଇ ନାହିଁ ।'' ମା' କିନ୍ତୁ ନିଜକୁ ନିଜେ କହିଯିବାକୁ ଲାଗିଲେ— ବାରମ୍ବାର ଆସିବା— ଏହାର କଅଣ ଶେଷ ନାହିଁ ? ଯେଉଁଠି ଶିବ ସେଇଠି ଶକ୍ତି— ନିସ୍ତାର ନାହିଁ । ତଥାପି ଲୋକେ ବୁଝନ୍ତି ନାହିଁ । ଶ୍ରୀମା' ଆହୁରି କହିଲେ ଯେ ଜୀବର କଲ୍ୟାଣ ପାଇଁ ଠାକୁର ଯୁଗେ ଯୁଗେ ଅବତୀର୍ଣ୍ଣ ହୁଅନ୍ତି । କାରଣ ଜୀବ ତାଙ୍କର ସୃଷ୍ଟି । ନିଜର ଗୋଟିଏ ଅନୁଭୂତିର କଥା ମଧ କହିଲେ, ''ଠାକୁର ସବୁ ହୋଇଛନ୍ତି— ଅନ୍ଧ, ଛୋଟା ସବୁ ସେ ନିଜେ । ଜୀବର କଷ୍ଟ ତାଙ୍କରି ।'' ତେଣୁ ଶ୍ରୀମା'ଙ୍କୁ ମଧ ସେହି କଷ୍ଟ ନିବାରଣରେ ପ୍ରବୃତ୍ତ ହେବାକୁ ହୁଏ । ଏହି ଅସୀମ କରୁଣାର ଭାବ ହୃଦୟରେ ଜାଗ୍ରତ ହେଲେ ସେତେବେଳେ ନିଦ୍ରା, ବିଶ୍ରାମ ସବୁ ଚାଲିଯାଏ । ସେତେବେଳେ ସବୁ ଛାଡ଼ି ମନେହୁଏ ଜୀବର କଲ୍ୟାଣ-ଚିନ୍ତା ହିଁ ତାଙ୍କର ଏକମାତ୍ର କର୍ତ୍ତବ୍ୟ । ତେଣୁ ଅନ୍ୟମାନେ ଯେତେବେଳେ ବିଶ୍ରାମ ନେଉଛନ୍ତି ତାଙ୍କର ସେତେବେଳେ କୌଣସି ଅବକାଶ ନାହିଁ । ଏପରି କଥା କହୁ କହୁ ମନ୍ଦିରରେ ସନ୍ଧ୍ୟା ଆଳତିର ଘଣ୍ଟା ବଜିଲା । ଅକସ୍ମାତ୍ ଚିନ୍ତାଧାରା ବାଧା ପାଇବାରୁ ମା' ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ ସଚେତନ ହେଲେ ଏବଂ ଠାକୁରଙ୍କ ସଂଧ୍ୟା ଆଳତି ପାଇଁ ଉଠିଲେ ।

କୋଠାରଠାରୁ ଶ୍ରୀମା'ଙ୍କର ରାମେଶ୍ୱର ଦର୍ଶନ ପାଇଁ ଯିବାର କଥା ହେଲା । ଶ୍ରୀମା' କହିଲେ, ''ମୁଁ ଯିବି । ମୋ ଶଶୁର ମଧ ସେଠାକୁ ଯାଇଥିଲେ ।'' ତୀର୍ଥଯାତ୍ରାର ସଂକଳ୍ପ ସ୍ଥିର ହେବାରୁ କଲିକତାରେ ସାରଦାନନ୍ଦଜୀଙ୍କୁ ଓ ମାନ୍ଦ୍ରାଜରେ ରାମକୃଷ୍ଣାନନ୍ଦଜୀଙ୍କୁ ସବୁ ଲେଖି ଜଣାଇ ଦିଆଗଲା । ଉଭୟେ ଯାତ୍ରା ପାଇଁ ରାଜି ହେଲେ । ରାମକୃଷ୍ଣାନନ୍ଦଜୀ ଦାକ୍ଷିଣାତ୍ୟ ଭ୍ରମଣର ସବୁ ଦାୟିତ୍ୱ ଗ୍ରହଣ କରି ମା'ଙ୍କୁ

ସାଦର ଆମନ୍ତ୍ରଣ ଜଣାଇଲେ । ମା'ଙ୍କ ସହିତ କୃଷ୍ଣଲାଲ ମହାରାଜ, ସୁକୁଲ ମହାରାଜ, ଗୋଲାପ-ମା', କୃଷ୍ଣଭାବିନୀ ଦେବୀ (ବଳରାମ ବାବୁଙ୍କ ସ୍ତ୍ରୀ), ରାଧୁ ଏବଂ ଜଣେ ସେବକ ଯିବା ସ୍ଥିର ହେଲା । ଯାତ୍ରାର ସବୁ ଆୟୋଜନ ଠିକ୍ ଠାକ୍ କରି ସେମାନେ ମାନ୍ଦ୍ରାଜ ମେଲ୍‌ରେ ଉଠିଲେ । ଖୋର୍ଦ୍ଧା ରୋଡ଼ ଷ୍ଟେସନ ପାରିହୋଇ ଗାଡ଼ି ବିସ୍ତୀର୍ଣ୍ଣ ଚିଲିକା ହ୍ରଦ କୂଳେ କୂଳେ ଚାଲିଲା । ସେତେବେଳେ ପ୍ରଭାତର ମୃଦୁ ସମୀରଣରେ ହ୍ରଦ ଉପରେ ଅସଂଖ୍ୟ ତରଙ୍ଗମାଳା ଅପୂର୍ବ ଛନ୍ଦରେ ନୃତ୍ୟ କରୁଥା'ନ୍ତି । ବଗମାନେ ଆହାର ଅନ୍ୱେଷଣରେ ଅଳ୍ପ ପାଣିରେ ଘୂରି ବୁଲୁଥାଆନ୍ତି ଅଥବା ବିଚିତ୍ର ମାଳାର ଆକାର ଧରି ଆକାଶରେ ଉଡ଼ି ଯାଉଥା'ନ୍ତି । ହ୍ରଦ ଭିତରେ ଛୋଟ ଛୋଟ ଦ୍ୱୀପ । ଆକାଶରେ ନୀଳକଣ୍ଠ ପକ୍ଷୀ ଉଡ଼ିଚାଲିଯାଉଥା'ନ୍ତି । ଶ୍ରୀମା' ନୀଳକଣ୍ଠ ପକ୍ଷୀ ଦେଖି ହାତ ଯୋଡ଼ି ପ୍ରଣାମ କଲେ । ସୂର୍ଯ୍ୟୋଦୟ ହେବାରୁ ହ୍ରଦ ଉପରୁ ବାଷ୍ପରାଶି ଉଠିବାକୁ ଲାଗିଲା (ସେତେବେଳେ ମାଘ ମାସ) ଗାଡ଼ି ତୀବ୍ର ବେଗରେ ଚାଲିଛି ଏବଂ ଯାତ୍ରୀମାନେ ଝରକା ଦେଇ ହ୍ରଦର ଏହି ସୌନ୍ଦର୍ଯ୍ୟ ଏବଂ ଉଭୟ ପାର୍ଶ୍ୱର ମନୋରମ ପ୍ରାକୃତିକ ଶୋଭା ଦେଖି ଦେଖି ଚାଲିଛନ୍ତି । ଏହି ଭାବରେ ସକାଳ ଆଠଟା ସମୟରେ ସେମାନେ ବ୍ରହ୍ମପୁରଠାରେ ପହଞ୍ଚିଲେ । ରାମକୃଷ୍ଣାନନ୍ଦଜୀଙ୍କ ବ୍ୟବସ୍ଥା ଅନୁଯାୟୀ କେଲନାର୍ କମ୍ପାନୀର ମ୍ୟାନେଜର ଷ୍ଟେସନରୁ ସମସ୍ତଙ୍କୁ ନିଜ ଗୃହକୁ ନେଇଗଲେ । ଅପରାହ୍ନରେ ବହୁ ଭକ୍ତଙ୍କର ସମାଗମ ହେଲା । ଭକ୍ତମାନେ ଫଳ, ମୂଳ, ନଡ଼ିଆ ଇତ୍ୟାଦି ନୈବେଦ୍ୟ ଦେଇ ସାଷ୍ଟାଙ୍ଗ ପ୍ରଣାମ କଲେ । ପରଦିନ ସକାଳେ ପୁଣି ସେହି ଟ୍ରେନରେ ସେମାନେ ଉଠିଲେ । ଅପରାହ୍ନରେ ୱାଲ୍‌ଟିୟର ଦେଇ ଟ୍ରେନ୍ ଯିବା ବେଳେ ଶ୍ରୀମା' ପାହାଡ଼ ଉପର ସ୍ତରକୁ ସ୍ତର ବିନ୍ୟସ୍ତ ଘରଗୁଡ଼ିକୁ ଦେଖି ଉଲ୍ଲସିତ ହୋଇ କହିଲେ, ''ଦେଖ, ଦେଖ ଠିକ୍ ଯେପରି ଛବି ।''

ପରଦିନ ଦ୍ୱିପ୍ରହରେ ଟ୍ରେନ୍ ଯେତେବେଳେ ମାନ୍ଦ୍ରାଜରେ ପହଞ୍ଚିଲା, ସେଠାରେ ରାମକୃଷ୍ଣାନନ୍ଦଜୀ ସେମାନଙ୍କୁ ଅଭ୍ୟର୍ଥନା କରିବା ପାଇଁ ଉପସ୍ଥିତ ଥିଲେ । ଷ୍ଟେସନ୍‌ରେ ଉପସ୍ଥିତ ଭକ୍ତମାନେ ଜୟଧ୍ୱନି କଲେ ଓ ଶ୍ରୀମା'ଙ୍କୁ ମାଇଲାପୁର ଅଞ୍ଚଳକୁ ପାଛୋଟି ନେଇଗଲେ । ଗୋଟିଏ ଦୁଇମହଲା କୋଠା ମା' ଓ ସଙ୍ଗୀମାନଙ୍କ ପାଇଁ ଭଡ଼ା ନିଆଯାଇଥିଲା । ଏଠାରେ ସେ ପ୍ରାୟ ମାସେ କାଳ ଥିଲେ । ପ୍ରତିଦିନ ସଂଧ୍ୟାରେ ସେ ସହର ଦେଖିବା ପାଇଁ ବାହାରୁଥିଲେ । ତାଙ୍କ ବାସଗୃହକୁ ଆସି ନାରୀ-ବିଦ୍ୟାଳୟର ଛାତ୍ରୀମାନେ ଦିନେ ତାମିଲ ଭଜନ ଶୁଣାଇଥିଲେ । ବହୁ ସ୍ଥାନୀୟ ପୁରୁଷ ଓ ସ୍ତ୍ରୀ-ଭକ୍ତ ମା'ଙ୍କ ନିକଟରୁ ଦୀକ୍ଷା ନେଇଥିଲେ । କାହାରି ସାହାଯ୍ୟ ବିନା ଶ୍ରୀମା' ମନ୍ତ୍ର ଓ ଜପର ପ୍ରଣାଳୀ ଓ ଧ୍ୟାନର ପକ୍ରିୟା ଦୀକ୍ଷିତମାନଙ୍କୁ ବୁଝାଇ ଦେଇପାରୁଥିଲେ । ଅନ୍ୟ ସମୟରେ କଥାବାର୍ତ୍ତା ପାଇଁ ଦୋଭାଷୀର ପ୍ରୟୋଜନ ହେଉଥିଲା । ରାମେଶ୍ୱରକୁ ଯିବା

ପଥରେ ମଦୁରାରେ ମୀନାକ୍ଷୀ ଦେବୀଙ୍କୁ ଦର୍ଶନ କରିବା ପାଇଁ ସ୍ଥିର ହେଲା । ରାତିରେ ଗାଡ଼ିରେ ଗୋଟିଏ ଦ୍ୱିତୀୟ ଶ୍ରେଣୀ ବଖରାରେ ମା' ଭକ୍ତମଣ୍ଡଳିଙ୍କ ସହିତ ଯାତ୍ରା କଲେ । ରାମକୃଷ୍ଣାନନ୍ଦଜୀ ସାଥିରେ ଥାଆନ୍ତି । ସକାଳେ ମଦୁରାରେ ପହଞ୍ଚି ସେମାନେ ସ୍ଥାନୀୟ ମୁନିସିପାଲିଟିର ଚେୟାରମ୍ୟାନଙ୍କ ଘରେ ଆତିଥ୍ୟ ଗ୍ରହଣ କଲେ । ମଦୁରା ନଗର ବୈଙ୍କୈ ନଦୀ ତୀରରେ ଅବସ୍ଥିତ । ମନ୍ଦିରଟି ଅତି ପ୍ରାଚୀନ ଓ ବିଶାଳ । ସ୍ଥାପତ୍ୟ ଓ କଳା ଦୃଷ୍ଟିରୁ ସମଗ୍ର ଭାରତରେ ଏହାର ସ୍ଥାନ ଖୁବ୍ ଉଚ୍ଚରେ । ମନ୍ଦିରର ପ୍ରବେଶଦ୍ୱାରଗୁଡ଼ିକର (ଗୋପୁରମ୍) ଉଚ୍ଚତା ଓ ଶିଳ୍ପକଳା ଦର୍ଶକମାନଙ୍କୁ ଆକର୍ଷିତ କରେ । ମନ୍ଦିରରେ ସର୍ବତ୍ର ଖୋଦିତ ପୌରାଣିକ ଦୃଶ୍ୟସମୂହ ମନକୁ ମୁଗ୍ଧ କରେ । ମନ୍ଦିର ମଧ୍ୟରେ ସୁନ୍ଦରେଶ୍ୱର ସ୍ୱାମୀ ନାମକ ଶିବଲିଙ୍ଗ ପ୍ରତିଷ୍ଠିତ ଏବଂ ମୀନାକ୍ଷୀ ଦେବୀଙ୍କର ମୂର୍ତ୍ତି ବିରାଜିତ । ଏପରି ସୁନ୍ଦର ଦେବୀମୂର୍ତ୍ତି ଭାରତରେ ବିରଳ । ମନ୍ଦିର ଭିତରେ କେତେଗୁଡ଼ିଏ ମଣ୍ଡପ ଅଛି, ଯେଉଁଗୁଡ଼ିକ ଭିତରୁ ସହସ୍ରସ୍ତମ୍ଭ-ମଣ୍ଡପ ଓ ବସନ୍ତ-ମଣ୍ଡପ ପ୍ରସିଦ୍ଧ । ନିକଟରେ ଶିବଗଙ୍ଗା ନାମକ ଜଳାଶୟ ଅଛି । ଶ୍ରୀମା' ଅପରାହ୍ଣରେ ସେଠାରେ ସ୍ନାନ କରି ଦେବଦର୍ଶନ କଲେ ଏବଂ ସ୍ଥାନୀୟ ପ୍ରଥାନୁଯାୟୀ ଶିବଗଙ୍ଗା ତୀରରେ ପ୍ରଦୀପ ଜାଳିଦେଇ ଆସିଲେ । ମଦୁରାରେ ଅବସ୍ଥାନ କାଳରେ ସେମାନେ ତିରୁମଲ ନାୟକଙ୍କ ପ୍ରାସାଦ ଓ ତେପ୍ପାକୁଲମ୍ ନାମକ ବୃହତ୍ ସରୋବର ମଧ୍ୟ ଦେଖିଥିଲେ । ପଥରନିର୍ମିତ ରାଜଭବନର ବିଶାଳ ଛାତ ଶହେ ପଚିଶଟି ସ୍ତମ୍ଭ ଉପରେ ସ୍ଥାପିତ ।

ମଦୁରାଠାରୁ ରାମେଶ୍ୱର ଅଭିମୁଖରେ ଯାତ୍ରା କରି ମଣ୍ଡପମ୍ ନାମକ ସ୍ଥାନରେ ଉପସ୍ଥିତ ହେଲେ । ସେଠାରୁ ଷ୍ଟିମର ଧରି ଉପସାଗର ଅତିକ୍ରମ କଲେ ଓ ପମ୍ବନ ଦ୍ୱୀପରେ ପଦାର୍ପଣ କଲେ । ପୁନର୍ବାର ରେଳଗାଡ଼ିରେ ଚଢ଼ି ରାତି ଏଗାରଟା ସମୟରେ ରାମେଶ୍ୱରରେ ପହଞ୍ଚିଲେ । ସେଠାରେ ପୂର୍ବ ବ୍ୟବସ୍ଥାନୁଯାୟୀ ସେମାନେ ପଣ୍ଡା ଗଙ୍ଗାରାମ ପୀତାମ୍ବରଙ୍କ ସାହାଯ୍ୟରେ ଗୋଟିଏ ଭଡ଼ାଘରେ ରହିଲେ । ପରଦିନ ପ୍ରତ୍ୟୁଷରୁ ଉଠି ସମୁଦ୍ରରେ ସ୍ନାନ ସାରି ଶ୍ରୀମା' ଓ ଅନ୍ୟାନ୍ୟ ସମସ୍ତେ ମନ୍ଦିରରେ ଉପସ୍ଥିତ ହେଲେ । ରାମେଶ୍ୱରର ପ୍ରସ୍ତରମୟ ମନ୍ଦିର ବିଶାଳତ୍ୱ ଦୃଷ୍ଟିରୁ ବୋଧହୁଏ ଅଦ୍ୱିତୀୟ । ଗର୍ଭମନ୍ଦିରକୁ ଘେରି ତିନୋଟି ପରିକ୍ରମା ରହିଛି । ତିନି ମହଲାରେ ବିଭକ୍ତ ମନ୍ଦିରର ପ୍ରବେଶ-ପଥରେ ଅତି ଉଚ୍ଚ ଗୋପୁରମ୍ । ମନ୍ଦିରର ପ୍ରତ୍ୟେକ ଅଂଶ ସୁନ୍ଦର ଭାସ୍କର୍ଯ୍ୟରେ ପରିପୂର୍ଣ୍ଣ । ଦେବତାମାନଙ୍କର ବିବିଧ ଲୀଳା ପଥରରେ ଖୋଦିତ ହୋଇ ରହିଛି । ବାହାରର ଦୁଇଟି ପରିକ୍ରମା ଅତିକ୍ରମ କରି ଭିତର ମହଲରେ ପ୍ରବେଶ କଲେ ପ୍ରଥମେ ପଡ଼େ ଉଚ୍ଚ ପ୍ରସ୍ତରର ବୃଷ ବା ନନ୍ଦି । ତାହା ନିକଟରେ ଉଚ୍ଚ ସ୍ତମ୍ଭ । ରାମେଶ୍ୱର ବାଲୁକାମୟ ଲିଙ୍ଗ-ମୂର୍ତ୍ତି — ଗର୍ଭମନ୍ଦିରରେ ଅବସ୍ଥିତ । ଲିଙ୍ଗଟି କଠିନ ନୁହେଁ ବୋଲି ସର୍ବଦା ସୁବର୍ଣ୍ଣ ମୁକୁଟରେ ଆବୃତ୍ତ କରି ରଖା ହୁଏ । ସ୍ନାନଜଳ ଏହି ଆବୃତ ଉପରେ ଢଳାଯାଏ ।

ତେବେ ପ୍ରତ୍ୟୁଷରେ ଅନାବୃତ ମୂର୍ତ୍ତିରେ ମଧ୍ୟ ଦର୍ଶନ ମିଳିଥାଏ । ରାମେଶ୍ୱରଙ୍କ ସ୍ନାନ ଓ ଭୋଗ ପାଇଁ ଗଙ୍ଗାଜଳ ବ୍ୟବହୃତ ହୁଏ ।

ପମ୍ବନ ଦ୍ୱୀପ ଓ ସେଠାରେ ଅବସ୍ଥିତ ରାମେଶ୍ୱର ମନ୍ଦିର ସେତେବେଳେ ରାମନାଦରାଜାଙ୍କ ଅଧୀନରେ ଥିଲା । ସେ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟ । ସୁତରାଂ ସେ ମନ୍ଦିରର କର୍ମଚାରୀମାନଙ୍କୁ ଆଗରୁ ଜଣାଇ ରଖିଥିଲେ— ମୋର ଗୁରୁଙ୍କ ଗୁରୁ ପରମଗୁରୁ ଯାଉଛନ୍ତି— ସବୁ ବ୍ୟବସ୍ଥା କରିବ । ଗର୍ଭମନ୍ଦିରରେ ବ୍ରାହ୍ମଣ ପୁରୋହିତ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରବେଶ ନିଷେଧ ହେଲେ ସୁଦ୍ଧା ରାଜାଙ୍କ ଆଦେଶ ଅନୁସାରେ ମନ୍ଦିର କର୍ମଚାରୀମାନେ ଶ୍ରୀମା' ଓ ତାଙ୍କର ସଙ୍ଗୀମାନଙ୍କୁ ସାଦରେ ଭିତରକୁ ନେଇ ଯାଇ ଶିବଲିଙ୍ଗର ସୁବର୍ଣ୍ଣ ଆବରଣ ଉନ୍ମୋଚନ କରିଦେଲେ ଏବଂ ଶ୍ରୀମା' ମନଭରି ରାମେଶ୍ୱରଙ୍କୁ ଗଙ୍ଗାଜଳରେ ସ୍ନାନ କରାଇଲେ । ରାମକୃଷ୍ଣାନନ୍ଦଜୀ ଦେଇଥିବା ୧୦୮ ସୁବର୍ଣ୍ଣ-ବିଲ୍ୱପତ୍ରଦ୍ୱାରା ମା' ଶିବପୂଜା କଲେ । ରାମେଶ୍ୱରରେ ସେମାନେ ତ୍ରିରାତ୍ରି ଯାପନ କରିଥିଲେ । ପ୍ରତିଦିନ ପୂଜା ଓ ଆରାତ୍ରିକ ଦର୍ଶନ କରୁଥିଲେ । ତୃତୀୟ ଦିନ ଶ୍ରୀମା' ମନ୍ଦିରରେ ବିଶେଷ ପୂଜାର ଆୟୋଜନ କଲେ । ପଣ୍ଡାମାନଙ୍କ ପ୍ରାଚୀନ ପୋଥିରୁ ରାମେଶ୍ୱର-ମାହାତ୍ମ୍ୟ ଶ୍ରବଣ କଲେ ଓ ସେମାନଙ୍କୁ ତୃପ୍ତି ସହକାରେ ଭୋଜନ କରାଇ ସମସ୍ତଙ୍କୁ ଗୋଟିଏ ଗୋଟିଏ ଢାଳ ଦେଇଥିଲେ । ପୁରାଣକଥା ଶ୍ରବଣ କରିବା ସମୟରେ ହାତରେ ପାନ, ଗୁଆ ଓ ପଇସା ନେଇ ବସିବାକୁ ପଡ଼େ ଏବଂ ପଢ଼ା ଶେଷ ହେଲେ କଥକ ଠାକୁରଙ୍କୁ ତାହା ଦାନ କରିବାକୁ ହୁଏ । ଶ୍ରୀମା' ଏସବୁ ଆଚାର ଯଥାଯଥ ପାଳନ କରିଥିଲେ ।

ରାମନାଦର ରାଜା କର୍ମଚାରୀମାନଙ୍କୁ ଆଦେଶ ଦେଇଥିଲେ ଯେ ସେମାନେ ଯେପରି ମନ୍ଦିର ସଂଲଗ୍ନ ରତ୍ନାଗାର ଖୋଲି ଶ୍ରୀମା'ଙ୍କୁ ଦେଖାନ୍ତି ଏବଂ କିଛି ଚାହିଁଲେ ତାହା ଯେପରି ତତ୍‌କ୍ଷଣାତ୍ ତାଙ୍କୁ ଉପହାର ଦିଅନ୍ତି । କର୍ମଚାରୀମାନଙ୍କ ନିକଟରୁ ଏ କଥା ଶୁଣି ଶ୍ରୀମା' କହିଲେ, ''ମୋର ଆଉ କ'ଣ ପ୍ରୟୋଜନ !'' ଆମର ଯାହା କିଛି ପ୍ରୟୋଜନ ସବୁ ଶଶୀ (ରାମକୃଷ୍ଣାନନ୍ଦଜୀ) ବ୍ୟବସ୍ଥା କରୁଛି । କିନ୍ତୁ ସେମାନେ କ୍ଷୁର୍ଣ୍ଣ ହେବେ ଭାବି କହିଲେ, ''ଆଚ୍ଛା, ରାଧୁର ଯଦି କିଛି ପ୍ରୟୋଜନ ହୁଏ, ସେ ତାହା ନେବ ।'' ରାଧୁକୁ ମଧ୍ୟ କହିଲେ, ''ତୋର ଯଦି କିଛି ପ୍ରୟୋଜନ ହୁଏ ତୁ ନେଇପାରୁ ।'' ଶ୍ରୀମା' ଭଦ୍ରତା ଦୃଷ୍ଟିରୁ ଏପରି କହିଲେ ସତ, କିନ୍ତୁ ଯେତେବେଳେ କୋଷାଗାର ଖୋଲା ହେଲା, ହୀରା ନୀଳା ମଣି ମାଣିକ୍ୟ ଝକମକ କରି ଉଠିଲା, ସେତେବେଳେ ତାଙ୍କ ହୃଦୟ କମ୍ପିତ ହେବାକୁ ଲାଗିଲା ଏବଂ ସେ ଠାକୁରଙ୍କୁ ପ୍ରାର୍ଥନା ଜଣାଇଲେ, ''ଠାକୁରେ, ରାଧୁ ମନରେ ଯେପରି କୌଣସି ବାସନା ନ ଉଠେ ।'' ଠାକୁର ମିନତି ପ୍ରାର୍ଥନା ଶୁଣିଲେ । ସବୁ ଦେଖି ରାଧୁ କହିଲା, ''ଏସବୁ କଅଣ ନେବି ? ମୋର ଏ ସବୁ ପ୍ରୟୋଜନ ନାହିଁ । ମୁଁ

ଲେଖିବା ପେନ୍‌ସିଲ ହଜାଇ ଦେଇଛି, ଗୋଟିଏ ପେନ୍‌ସିଲ କିଣିଦିଅ ।'' ଶ୍ରୀମା' ଏହା ଶୁଣି ସ୍ୱସ୍ତିର ନିଃଶ୍ୱାସ ମାରିଲେ ଏବଂ ବଜାରରୁ ଦୁଇ ପଇସାର ଗୋଟିଏ ପେନ୍‌ସିଲ କିଣି ରାଧୁଙ୍କୁ ଦେଲେ ।

ଶ୍ରୀମା'ଙ୍କ ସେବକ କୃଷ୍ଣଲାଲ ମହାରାଜ ଦିନେ ସରଳା ଦେବୀଙ୍କୁ କହିଥିଲେ ଯେ, ଆବରଣମୁକ୍ତ ରାମେଶ୍ୱରଶିବଙ୍କୁ ଦର୍ଶନ କରି ଶ୍ରୀମା' କହି ପକାଇଲେ, ''ଯେପରି ରଖିଯାଇଥିଲି ଠିକ୍ ସେପରି ଅଛି ।'' ନିକଟରେ ଯେଉଁ ଭକ୍ତ ଥିଲେ ସେ ପଚାରିଲେ, ''ମା' କଅଣ କହିଲ ?'' ମା' ସେତେବେଳେ ଆତ୍ମସମ୍ବରଣ କରି କହିଲେ, ''ସେ ଗୋଟିଏ କଥା ମୁହଁରୁ ବାହାରିଗଲା ।'' ଦାକ୍ଷିଣାତ୍ୟ ଭ୍ରମଣ ପରେ ଯେତେବେଳେ ସେ କଲିକତାରେ ଥିଲେ ସେତେବେଳେ ଜଣେ ଭକ୍ତ ପ୍ରଶ୍ନ କଲେ, ''ରାମେଶ୍ୱର ପ୍ରଭୃତି କିପରି ଦେଖିଲେ ?'' ମା' ଉତ୍ତର ଦେଲେ, ''ବାବା ! ଯେପରି ରଖି ଆସିଥିଲି, ସେପରି ଅଛି ।'' ସଦା ଉତ୍କର୍ଣ୍ଣା ଗୋଲାପ-ମା' ସେତେବେଳେ ବାରଣ୍ଡା ଦେଇ ଯାଉଥିଲେ । କଥାଟା କାନରେ ପଡ଼ିବାମାତ୍ରେ ସେ ଉତ୍ସାହ ସହକାରେ ପ୍ରଶ୍ନ କଲେ, ''କଅଣ କହିଲ ମା !'' ମା' ଚମକି ପଡ଼ି କହିଲେ, ''କାହିଁ କଅଣ କହିଲି ? ମୁଁ କହୁଛି—ତୁମମାନଙ୍କ ନିକଟରୁ ଯେପରି ଶୁଣିଥିଲି ସେପରି ଦେଖି ବଡ଼ ଆନନ୍ଦ ହେଲା ।'' ଗୋଲାପ-ମା' ମଧ୍ୟ ନଛୋଡ଼ବନ୍ଧା ହୋଇ କହିଲେ, ''ନା ମା' , ମୁଁ ସବୁ ଶୁଣିଛି, ଏବେ ଆଉ କଥା ଫେରାଇପାରିବ ନାହିଁ ।'' ଏହା କହି ସେଠାରୁ ସେ ଚାଲିଗଲେ ଏବଂ ସମସ୍ତଙ୍କୁ ତାହା ଜଣାଇଦେଲେ । ଭକ୍ତମାନଙ୍କ ବିଶ୍ୱାସ ଯେ, ଯେଉଁ ଦେବୀ ତ୍ରେତୟା ଯୁଗରେ ଜନମଦୁଃଖିନୀ ସୀତାରୂପେ ଅବତୀର୍ଣ୍ଣା ହୋଇଥିଲେ ଓ ସମୁଦ୍ର-ତୀରରେ ବାଲୁକା-ନିର୍ମିତ ଶିବଲିଙ୍ଗରେ ପୂଜା କରିଥିଲେ, ସେ ହିଁ ପୁନର୍ବାର କଳିଯୁଗରେ ସର୍ବଂସହା ଅଶେଷ କଲ୍ୟାଣମୟୀ ଭକ୍ତଜନନୀରୂପେ ଅବତୀର୍ଣ୍ଣା ହୋଇ ନିଜ ହାତରେ ପ୍ରତିଷ୍ଠିତ ଲିଙ୍ଗକୁ କେତେକାଳ ପରେ ଠିକ୍ ସେହି ଭାବରେ ରହିଥିବା ଦେଖି, ହଠାତ୍ ପାରିପାର୍ଶ୍ୱିକ ଅବସ୍ଥାକୁ ଭୁଲିଯାଇ ଉପରୋକ୍ତ କଥା କହି ପକାଇଥିଲେ ।

ରାମେଶ୍ୱରଠାରୁ ୧୪/୧୫ ମାଇଲ ଦୂରରେ ଦ୍ୱୀପର ଶେଷ ପ୍ରାନ୍ତରେ ଅବସ୍ଥିତ ଧନୁଷ୍କୋଟି ତୀର୍ଥକୁ ଶ୍ରୀମା' ଯାଇ ନ ଥିଲେ । ସେଠାରେ ସୁନା ଓ ରୂପାର ଧନୁ ଓ ତୀରଦ୍ୱାରା ସମୁଦ୍ରର ପୂଜା କରିବା ବିଧି । ଶ୍ରୀମା' ଦୁଇଜଣ ସେବକଙ୍କୁ ପୂଜା ପାଇଁ ରୂପାର ଧନୁ ଓ ତୀର ସହିତ ପଠାଇଦେଲେ । ରାମେଶ୍ୱରରୁ ମଦୁରାକୁ ଆସି ସେଠାରେ ଗୋଟିଏ ଦିନ ଅବସ୍ଥାନ କରି ମାନ୍ଦ୍ରାଜକୁ ଫେରିଲେ । ଠାକୁରଙ୍କ ଜନ୍ମତିଥି ଉତ୍ସବ ଦିନ ଶ୍ରୀମା' ସେଠାରେ ଥିବାରୁ ଗୋଟିଏ ଆଧ୍ୟାତ୍ମିକ ବାତାବରଣ ସୃଷ୍ଟି ହୋଇଥିଲା । ଏହି ଦିନ କେତେଜଣ ଭକ୍ତ ତାଙ୍କ ନିକଟରୁ ଦୀକ୍ଷା ନେଇଥିଲେ ।

ଉତ୍ସବ ପରେ ଚୈତ୍ରମାସ ୧୦ ତାରିଖରେ ଶ୍ରୀମା' ବାଙ୍ଗାଲୋର ସହରରେ ଯାଇ ପହଞ୍ଚିଲେ । ସହରର ଯେଉଁ ଅଂଶରେ ଶ୍ରୀରାମକୃଷ୍ଣ ମଠ ଅବସ୍ଥିତ ତାହା ସେତେବେଳେ ଖୁବ୍ ସୁନ୍ଦର ଓ ନିର୍ଜନ ଥିଲା । ଏବେ ସହର ବଢ଼ିଲେ ମଧ୍ୟ ବିସ୍ତୃତ ଭୂମି ଉପରେ ଅବସ୍ଥିତ ପ୍ରସ୍ତର ନିର୍ମିତ ଆଶ୍ରମଟି ଅତି ନୀରବ । ଆଶ୍ରମଭୂମି ବହୁ ଫଳଫୁଲରେ ସୁଶୋଭିତ । ସମ୍ମୁଖରେ ବୁଲ୍‌ଟେମ୍ପଲ୍ ରୋଡ଼ । ଅଦୂରରେ ବୃଷଭ-ମନ୍ଦିର ରହିଛି । ମନ୍ଦିରରେ ବୃହତ୍ ବୃଷଭମୂର୍ତ୍ତି; ଅନ୍ୟ କୌଣସି ଦେବତା ନାହାନ୍ତି । ପୂଜା ଦେବା ପାଇଁ ଶହ ଶହ ଯାତ୍ରୀ ସେଠାରେ ସମାଗତ ହୁଅନ୍ତି । ଶ୍ରୀମା' ଓ ସଙ୍ଗୀମାନେ ଆଶ୍ରମବାଟୀରେ ରହିଲେ । ଭକ୍ତ ଓ ସେବକମାନେ ବାହାରେ ତମ୍ବୁ ଖଟାଇ ରହିଥିଲେ । ଶ୍ରୀମା'ଙ୍କ ଆସିବା କଥା ପ୍ରଚାରିତ ହେବାରୁ ପ୍ରତିଦିନ ବହୁ ଭକ୍ତ ଆସି ତାଙ୍କର ଦର୍ଶନ କରିବାକୁ ଲାଗିଲେ । ଭକ୍ତମାନଙ୍କର ଆଣିଥିବା ଫୁଲ ପ୍ରତିଦିନ ଗୋଟିଏ ବିରାଟ ସ୍ତୂପରେ ପରିଣତ ହେଉଥିଲା । ବାଙ୍ଗାଲୋରରେ ମା' ଏକ ସପ୍ତାହ କାଳ ଥିଲେ । ଦିନେ ଅପରାହ୍ଣରେ ସ୍ୱାମୀ ବିଶୁଦ୍ଧାନନ୍ଦଜୀ ତାଙ୍କୁ ଗାଡ଼ିରେ ନିକଟବର୍ତ୍ତୀ ଗୁହା-ମନ୍ଦିରକୁ ନେଇଯାଇଥିଲେ । ମନ୍ଦିର ଦର୍ଶନ କରି ଶୀଘ୍ର ଆଶ୍ରମକୁ ଫେରି ଆସିଲେ । ଆଶ୍ରମ ଫାଟକରେ ପହଞ୍ଚି ଦେଖିଲେ ଆଶ୍ରମର ପ୍ରକାଣ୍ଡ ଜମି ଲୋକାକୀର୍ଣ୍ଣ । ଗାଡ଼ି ଆସୁଥିବାର ଶବ୍ଦ ପାଇ ସେମାନେ ଯନ୍ତ୍ରଚାଳିତ ପରି ଉଠି ଠିଆ ହେଲେ ଏବଂ ପରକ୍ଷଣରେ ସାଷ୍ଟାଙ୍ଗ ପ୍ରଣତ ହେଲେ । ଶ୍ରୀମା' ଅଭିଭୂତ ହୋଇ ଗାଡ଼ିରୁ ଓହ୍ଲାଇ ପଡ଼ିଲେ ଏବଂ ଅଭୟ ମୁଦ୍ରାରେ ଡାହାଣ ହାତ ଉଠାଇ ମୂର୍ତ୍ତିପରି ପାଞ୍ଚ ମିନିଟ୍ ସ୍ଥିରହୋଇ ରହିଲେ । ସେତେବେଳେ ଚତୁର୍ଦ୍ଦିଗ ନିସ୍ତବଧ୍—ଅଥଚ ସେହି ଶାନ୍ତି ଭିତରେ ମଧ୍ୟ ଅଜ୍ଞାତ ଏକ ଶକ୍ତିର କ୍ରିୟା ଚାଲିଥିଲା, ଯାହାର ସ୍ପନ୍ଦନରେ ସମସ୍ତେ ବିହ୍ୱଳ । ଶ୍ରୀମା' ଧୀରେ ଧୀରେ ଆଶ୍ରମକୁ ଯାଇ ହଲ୍ ଘରେ ବସିଲେ । ଭକ୍ତମାନେ ମଧ୍ୟ ଆସି ବସିଲେ । ଶ୍ରୀମା' ମୌନ । କିନ୍ତୁ ଭକ୍ତମାନଙ୍କର ସବୁ ସଂଶୟ ଦୂରୀଭୂତ ହେଲା । ସେ ନୀରବତା ଭଙ୍ଗ କରି ବିଶୁଦ୍ଧାନନ୍ଦଜୀଙ୍କୁ ପଚାରିଲେ, ଏମାନଙ୍କର ଭାଷା ମୋର ଜଣା ନାହିଁ । ଗୋଟିଏ ଯୋଡ଼ିଏ କଥା କହି ପାରିଲେ ଏମାନେ କେତେ ଶାନ୍ତି ପାଇଥାଆନ୍ତେ । ବିଶୁଦ୍ଧାନନ୍ଦଜୀ ତାହା ଇଂରାଜୀରେ କହିବାରୁ ସେମାନେ କହିଲେ, ''ନା, ନା, ଏହା ଯଥେଷ୍ଟ । ଆମମାନଙ୍କର ହୃଦୟ ଆନନ୍ଦରେ ଭରିଯାଇଛି—ଏପରି ପରିସ୍ଥିତିରେ ଭାଷାର କୌଣସି ପ୍ରୟୋଜନ ନାହିଁ ।''

ଦିନେ ସନ୍ଧ୍ୟାବେଳେ ଆଶ୍ରମର ପଶ୍ଚାତ୍ ଭାଗରେ ଥିବା କ୍ଷୁଦ୍ର ପାହାଡ଼ ଉପରୁ ଶ୍ରୀମା' ସୂର୍ଯ୍ୟାସ୍ତ ଦେଖୁଥିଲେ । ରାମକୃଷ୍ଣାନନ୍ଦଜୀ ଏହି ସମ୍ବାଦ ପାଇ କହି ଉଠିଲେ—ମା' ପର୍ବତବାସୀନୀ ହୋଇଛନ୍ତି ଓ ଶୀଘ୍ର ସେହି ଦିଗକୁ ଚାଲିଲେ । ତାଙ୍କର ଦେହ ସ୍ଥୂଳ । ଦ୍ରୁତ ଚାଲିପାରନ୍ତି ନାହିଁ । କ୍ଷୁଦ୍ର ପାହାଡ଼ ଉପରକୁ ଉଠି ଅଣନିଃଶ୍ୱାସୀ ହୋଇଗଲେ । କିନ୍ତୁ ସେଥିପାଇଁ ତାଙ୍କର ଭ୍ରୂକ୍ଷେପ ନାହିଁ । ମା'ଙ୍କ

ସମ୍ମୁଖରେ ଦଣ୍ଡବତ୍ ପ୍ରଣାମ କରି ତାଙ୍କ ପାଦପଦ୍ମରେ ମସ୍ତକ ରଖି ସ୍ତବ କରିବାକୁ ଲାଗିଲେ—

''ସର୍ବମଙ୍ଗଲମାଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥
ସୃଷ୍ଟିସ୍ଥିତିବିନାଶାନାମ୍ ଶକ୍ତିଭୂତେ ସନାତନି ।
ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁ ତେ ॥
ଶରଣାଗତଦୀନାର୍ତ୍ତ ପରିତ୍ରାଣପରାୟଣେ ।
ସର୍ବସ୍ୟାର୍ତ୍ତି ହରେଦେବି ନାରୟଣି ନମୋଽସ୍ତୁ ତେ ॥

ଆଉ କହିବାକୁ ଲାଗିଲେ, ''କୃପା, କୃପା ।'' ଶ୍ରୀମା' ତାଙ୍କର ମସ୍ତକ ସ୍ପର୍ଶ କରି ଅବୋଧ ସନ୍ତାନକୁ ଶାନ୍ତ କଲେ । ଶ୍ରୀମା' ଏହି ପାହାଡ଼ ଉପରେ ବସି କିଛି ସମୟ ଜପ ମଧ୍ୟ କରିଥିଲେ ।

ଦିନକର ଘଟଣା । ଶ୍ରୀମା' ହଲ୍‌ଘରେ ସାଧାରଣ ଭାବରେ ବସିଛନ୍ତି ଏବଂ ସ୍ତ୍ରୀ ଭକ୍ତମାନେ ଆସି ତାଙ୍କୁ ଦର୍ଶନ କରି ଯାଉଛନ୍ତି—ଜଣେ ସମ୍ଭ୍ରାନ୍ତ ପରିବାରର ମହିଳା ସେଠାକୁ ଆସିଲେ ଏବଂ ହଲ୍‌ର କେନ୍ଦ୍ରସ୍ଥଳରେ ବସିଲେ । କିଛି ସମୟ ପରେ କେତେଜଣ ସ୍ତ୍ରୀଭକ୍ତ ଆସି ଏହି ଐଶ୍ୱର୍ଯ୍ୟମୟୀଙ୍କୁ ଦେଖି ଭାବିଲେ ଏ ନିଶ୍ଚିତ ଶ୍ରୀମା' ଏବଂ ତାଙ୍କୁ ପ୍ରଣାମ ପାଇଁ ଉଦ୍ୟତ ହେଲେ । ମହିଳା ଆପତ୍ତି ଜଣାଇଲେ । କିନ୍ତୁ ତାଙ୍କ କଥା ବିଶ୍ୱାସ ନ କରି ସ୍ତ୍ରୀଭକ୍ତମାନେ ଚରଣ ସ୍ପର୍ଶ କରିବାକୁ ଅଗ୍ରସର ହେଲେ । ଏପରି ପରିସ୍ଥିତିରେ ମହିଳାଜଣକ ଉଠି ଠିଆ ହେଲେ ଏବଂ ଉଚ୍ଚସ୍ୱରରେ ସେମାନଙ୍କୁ ବାରଣ କଲେ । କିନ୍ତୁ ସେତେବେଳକୁ ତାଙ୍କୁ ସମସ୍ତେ ଘେରି ପକାଇଛନ୍ତି ଏବଂ ସମସ୍ତେ ତାଙ୍କ ଚରଣ ସ୍ପର୍ଶ ପାଇଁ ଉଦ୍‌ଗ୍ରୀବ । ନିରୁପାୟ ହୋଇ ସେ କୌଣସି ପ୍ରକାର ବ୍ୟୂହ ଭେଦକରି ବାହାରକୁ ଚାଲିଗଲେ । ମା' ଅଦୂରରେ ବସି ସବୁ ଦେଖୁଥିଲେ ଏବଂ ଭାଷା ଅବୋଧ ହେଲେ ମଧ୍ୟ ଘଟଣାଟି ସହଜରେ ବୁଝିପାରିଥିଲେ । ଐଶ୍ୱର୍ଯ୍ୟର ବିଡ଼ମ୍ବନା ଦେଖି ସେ ହାସ୍ୟ ସମ୍ବରଣ କରିପାରି ନ ଥିଲେ । ବାଙ୍ଗାଲୋରରେ ସାତଦିନ ରହି ଶ୍ରୀମା' ଓ ଅନ୍ୟ ସମସ୍ତେ ମାନ୍ଦ୍ରାଜକୁ ଫେରିଆସିଲେ ଏବଂ ସେଠାରେ ଦିନେ ଦୁଇଦିନ ବିଶ୍ରାମ କରି କଲିକତା ଅଭିମୁଖେ ଯାତ୍ରା କଲେ । ପ୍ରଥମେ ସେମାନେ ରାଜମହେନ୍ଦ୍ରୀରେ ସ୍ଥାନୀୟ ଜିଲ୍ଲା ଜଜ୍ ପାର୍ଥସାରଥି ଆୟେଙ୍ଗାର ମହାଶୟଙ୍କ ଘରେ ଅତିଥି ହେଲେ ଏବଂ ସେଠାରେ ଗୋଟିଏ ଦିନ ବିଶ୍ରାମ କଲେ । ସେ ଗୋଦାବରୀ ନଦୀରେ ମଧ୍ୟ ସ୍ନାନ କରିଥିଲେ । ରାଜମହେନ୍ଦ୍ରୀ ପରେ ସେମାନେ ପୁରୀରେ ଆସି ପହଞ୍ଚିଲେ । ଏଥର ''କ୍ଷେତ୍ରବାସୀଙ୍କ ମଠ''ରେ ନ ରହି ସମୁଦ୍ରକୂଳ ନିକଟବର୍ତ୍ତୀ ଶଶୀନିକେତନରେ ତିନି ଚାରିଦିନ ଥିଲେ । ଅବଶେଷରେ ସେଠାରୁ ଯାତ୍ରା କରି ଚୈତ୍ରମାସ ୨୮

ତାରିଖ ଦିନ କଲିକତାରେ ପହଞ୍ଚିଲେ । ଦୀର୍ଘକାଳ ତୀର୍ଥ ଭ୍ରମଣ ଫଳରେ ତାଙ୍କ ମନ ସେତେବେଳେ ବେଶ୍ ପ୍ରଫୁଲ୍ଲ ଓ ଶରୀର ମଧ୍ୟ ସୁସ୍ଥ ଥିଲା ।

ତୀର୍ଥ ଦର୍ଶନ ପରେ ଶ୍ରୀମା' ଯେଉଁଦିନ ପ୍ରଥମେ ବେଲୁଡ଼ ମଠକୁ ଆସିଲେ ସେଦିନ ତାଙ୍କୁ ମହାସମାରୋହରେ ଅଭ୍ୟର୍ଥନା କରାଗଲା । ମଠର ପ୍ରବେଶଦ୍ୱାରରେ ମଙ୍ଗଳଘଟ ଓ କଦଳୀବୃକ୍ଷ ସ୍ଥାପିତ ହେଲା ଏବଂ ପଥର ଉଭୟ ପାର୍ଶ୍ୱରେ ଶତାଧିକ ବ୍ୟକ୍ତି ଶ୍ରେଣୀବଦ୍ଧ ହୋଇ ହାତଯୋଡ଼ି ଛିଡ଼ା ହେଲେ । ଶ୍ରୀମା' ଆସି ପହଞ୍ଚିବା ମାତ୍ରେ କେତୋଟି ବାଣ ଫୁଟାହେଲା ଏବଂ ଶ୍ରୀମା' ଯେତେବେଳେ ମନ୍ଥର ଗତିରେ ଅଗ୍ରସର ହେଉଥିଲେ ସେତେବେଳେ ଭକ୍ତମାନେ "ସର୍ବମଙ୍ଗଳମାଙ୍ଗଲ୍ୟେ" ଇତ୍ୟାଦି ସ୍ତୋତ୍ର ପାଠ କରୁଥିଲେ । ସ୍ୱାମୀ ବ୍ରହ୍ମାନନ୍ଦଜୀଙ୍କର ଆଦେଶ ଥିଲା ଯେ ଏହି ଅବସ୍ଥାରେ କେହି ମା'ଙ୍କ ପାଦ ଛୁଇଁ ପ୍ରଣାମ କରିପାରିବେ ନାହିଁ । ତାଙ୍କ ସର୍ବାଙ୍ଗରେ ବସ୍ତ୍ର ଆଚ୍ଛାଦିତ—ଯେପରି ଶୁଦ୍ଧ, ଶୁକ୍ଲପଟ୍ଟାବୃତ ଗୋଟିଏ ସଚଳ ସାତ୍ତ୍ୱିକ ପ୍ରତିମା । ମଠର ଦକ୍ଷିଣ ଭାଗରୁ ଉତ୍ତର ଦିଗକୁ ଚାଲିଛନ୍ତି । ଅକସ୍ମାତ୍ କିଏ ଦ୍ରୁତବେଗରେ ଶ୍ରେଣୀ ଭଙ୍ଗ କରି ଶ୍ରୀମା'ଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ଅତିଶୀଘ୍ର ଚରଣ ବନ୍ଦନା କରି ଅଦୃଶ୍ୟ ହୋଇଗଲେ । ବ୍ରହ୍ମାନନ୍ଦଜୀ କହିଉଠିଲେ, "ଧର, ଧର, କିଏ, କିଏ !" ଜଣାଗଲା ସେ ଖୋକା ମହାରାଜ (ସ୍ୱାମୀ ସୁବୋଧାନନ୍ଦଜୀ) । ସମସ୍ତେ ହସି ଉଠିଲେ । ସାରାଦିନ ମଠରେ କଟାଇ ସନ୍ଧ୍ୟାବେଳେ ଶ୍ରୀମା' ବିଦାୟ ନେଲେ ।

## ଦୃଷ୍ଟିକୋଣ

ରାଧାରାଣୀ (ରାଧୁ) ସେତେବେଳେ ବିବାହ ଯୋଗ୍ୟା ହୋଇଛି । ସୁତରାଂ ତାକୁ ପାତ୍ରସ୍ଥ କରିବା ପାଇଁ ୧୩୧୮ ସାଲ ଜ୍ୟେଷ୍ଠମାସରେ ଶ୍ରୀମା' ଜୟରାମବାଟୀ ଅଭିମୁଖେ ଯାତ୍ରା କଲେ । ୫ ତାରିଖ କୋଆଲପଡ଼ାରେ ପହଞ୍ଚିଲେ । ଦୀର୍ଘ ଦଶବର୍ଷକାଳ କଲିକତା ଯିବା ଆସିବା ପଥରେ ଶ୍ରୀମା' ଏଠାରେ ବିଶ୍ରାମ କରୁଥିଲେ । କହୁଥିଲେ, "ଏ ମୋର ବୈଠକଖାନା ।" ଆଶ୍ରମବାସୀମାନେ ଶ୍ରୀମା'ଙ୍କ ପ୍ରତି ଅନୁରକ୍ତ ଥିଲେ ଏବଂ ସର୍ବଦା ତାଙ୍କ ସେବା ପାଇଁ ପ୍ରସ୍ତୁତ ରହୁଥିଲେ । ଶ୍ରୀମା' ଆସୁଛନ୍ତି ଜାଣି ଆଶ୍ରମବାସୀମାନେ ନୂଆ ଠାକୁରଘର ସୁସଜ୍ଜିତ କରି, ରାସ୍ତା ସଫା କରି ତା' ଉପରେ ବସ୍ତା ବିଛାଇ ତାଙ୍କ ପଥ ଚାହିଁ ବସିଥିଲେ । ଶୀଘ୍ର ସ୍ନାନାହାର ଓ ବିଶ୍ରାମ ପରେ ଶ୍ରୀମା' ପାଲିଙ୍କିରେ ଉଠିଲେ । ବିଦାୟ ନେବାବେଳେ ସମସ୍ତଙ୍କୁ ମଝିରେ ମଝିରେ ଜୟରାମବାଟୀ ଯିବା ପାଇଁ ସାଦରେ ଆହ୍ୱାନ ଜଣାଇଲେ । କେତେଦିନ ଭିତରେ ସାରଦାନନ୍ଦଜୀ, ଗୋଲାପ-ମା', ଯୋଗୀନ୍-ମା' ଓ ଜଣେ ଦୁଇଜଣ ବ୍ରହ୍ମଚାରୀ ଜୟରାମବାଟୀରେ ଉପସ୍ଥିତ ହେଲେ । ରାଧୁର ବିବାହ ବିଷୟ ଠିକ୍‌ଠାକ୍ ହୋଇଯାଇଛି । ବର ତାଜପୁରର

ଜମିଦାର ବଂଶୀୟ ଶ୍ରୀ ମନ୍ମଥ ନାଥ ଚଟ୍ଟୋପାଧ୍ୟାୟ । ବିବାହ ତାରିଖ ୨୭ ଜ୍ୟେଷ୍ଠ । ଶ୍ରୀସାରଦାନନ୍ଦଜୀ ପ୍ରଚୁର ଅର୍ଥ ବ୍ୟୟ କରି ବିବାହର ସବୁ ଆୟୋଜନ କଲେ । ସୁଯୋଗ ବୁଝି ବରପକ୍ଷ ସାରଦାନନ୍ଦଜୀଙ୍କଠାରୁ ବହୁଗୁଣ ଅଧିକ ଅର୍ଥ ଆଦାୟ କଲେ । ଯଥାବିଧି ବିବାହ ସୁସମ୍ପନ୍ନ ହେଲା ।

ମା' ରାଧୁକୁ ଅତି ଭଲ ପାଉଥିଲେ, ଏହା ସମସ୍ତେ ଜାଣନ୍ତି । ସୁତରାଂ କନ୍ୟା ପାଇଁ ଯେପରି ଭଲ ପାତ୍ର ମିଳେ ତାହା ମା'ଙ୍କର କାମ୍ୟ । ଜଣେ ଭକ୍ତ ଦିନେ ମା'ଙ୍କୁ ପରାମର୍ଶ ଦେଲେ ଯେ ମାଷ୍ଟର ମହାଶୟ ମରଟନ୍ ସ୍କୁଲର ଅଧ୍ୟକ୍ଷ । ତାଙ୍କୁ କହିଲେ ସେ ଅନାୟାସରେ ଉତ୍ତମ ବରର ସନ୍ଧାନ ଦେଇପାରିବେ । ଶ୍ରୀମା' ଉଦାସଭାବରେ ଉତ୍ତର ଦେଲେ, ''ଆପଣା ଛାଏଁ ଯଦି ଜୁଟେ ତ ଭଲ—ମୁଁ କାହାକୁ କେବେ ବନ୍ଧନରେ ପକାଇବାକୁ ଭଲପାଏ ନାହିଁ ।'' ତାଙ୍କର ସାଂସାରିକ ଜୀବନ ବାସ୍ତବିକ ପାଣିରେ ଭାସମାନ ପଦ୍ମପତ୍ର ପରି ଥିଲା । ଅଥଚ କର୍ତ୍ତବ୍ୟ କର୍ମରେ ତାଙ୍କର ବିନ୍ଦୁମାତ୍ର ଅବହେଳା ନ ଥିଲା ।

ଦାକ୍ଷିଣାତ୍ୟକୁ ତୀର୍ଥଦର୍ଶନରେ ଯିବା ପୂର୍ବରୁ ଆତ୍ମୀୟମାନଙ୍କ ଆଗ୍ରହରେ ତାଜପୁରଠାରେ ବିବାହ ସ୍ଥିର ହୋଇଥିଲା । ଜ୍ୟୋତିଷ କୋଷ୍ଠୀ ଦେଖି କହିଲେ ''ରାଧୁର ବୈଧବ୍ୟଯୋଗ ଅଛି ।'' ତଥାପି ଶ୍ରୀମା' ପୂର୍ବ ସିଦ୍ଧାନ୍ତ ଉପରେ ହସ୍ତକ୍ଷେପ କରିନାହାନ୍ତି । ବିବାହର ବହୁପରେ ମନ୍ମଥ ଯେତେବେଳେ ମା'ଙ୍କୁ ଦୀକ୍ଷା ପାଇଁ ଧରିବସିଲା, ସେତେବେଳେ ଆତ୍ମୀୟକୁ ଦୀକ୍ଷା ଦେବା ପାଇଁ ଇଚ୍ଛା ନ ଥିଲେ ମଧ୍ୟ ଅବଶେଷରେ ଦୀକ୍ଷା ଦେଇଥିଲେ ଏବଂ କହିଥିଲେ ଯେ, ବିଧିର ବିଧାନରେ ହସ୍ତକ୍ଷେପ କରିବା ଯଦିଓ ଅନୁଚିତ, ତଥାପି ଦୀକ୍ଷା ପ୍ରଭାବରେ ରାଧୁର ବୈଧବ୍ୟ ଖଣ୍ଡିତ ହୋଇପାରେ । ଅଗଷ୍ଟ ୨୧ ତାରିଖ ଦିନ (୧୯୧୧ ଖ୍ରୀଷ୍ଟାବ୍ଦ) ଶ୍ରୀରାମକୃଷ୍ଣ ସଂଘର ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଖସି ପଡ଼ିଲା—ସ୍ୱାମୀ ରାମକୃଷ୍ଣାନନ୍ଦଜୀ କଲିକତାରେ ଉଦ୍‌ବୋଧନ ଭବନରେ ମହାପ୍ରୟାଣ କଲେ । ଦେହରକ୍ଷା କରିବାର କେତେଦିନ ପୂର୍ବେ ସେ ଶ୍ରୀମା'ଙ୍କୁ ଦେଖିବାକୁ ଚାହିଁଥିଲେ ଏବଂ ଶ୍ରୀମା'ଙ୍କୁ ଆଣିବା ପାଇଁ ଜୟରାମବାଟୀକୁ ଲୋକ ପ୍ରେରିତ ହୋଇଥିଲା । କିନ୍ତୁ ପ୍ରିୟ ସନ୍ତାନର ଦେହତ୍ୟାଗ ଜନନୀ କିପରି ଦେଖିବେ ତାହା ଭାବି ଅତି କଷ୍ଟରେ ଆସିଥିବା ଲୋକକୁ ଫେରାଇ ଦେଲେ । ତଥାପି ରୋଗଶଯ୍ୟାରେ ଶାୟିତ ଅବସ୍ଥାରେ ରାମକୃଷ୍ଣାନନ୍ଦଜୀ ଶ୍ରୀମା'ଙ୍କର ଦର୍ଶନ ପାଇ କହିଉଠିଲେ, ''ମା' ଆସିଛନ୍ତି ।'' ରାମକୃଷ୍ଣାନନ୍ଦଜୀଙ୍କର ଦେହତ୍ୟାଗ ସମ୍ବାଦ ଜୟରାମବାଟୀରେ ପହଞ୍ଚିଲା । ଶ୍ରୀମା' ତାହା ଶୁଣି ଅତି କାତର ହୋଇ କହିଲେ, ''ମୋର ଶଶି ଚାଲିଗଲା—ମୋର ଯେପରି ଅଣ୍ଟା ଭାଙ୍ଗି ଯାଇଛି ।''

ଜୟରାମବାଟୀରେ ପନିପରିବା ଅଭାବ । କୋଆଲପଡ଼ା ଆଶ୍ରମରେ ପନିପରିବାର ବଗିଚା ଅଛି, ଅଧିକନ୍ତୁ ସେଠାକାର ବଜାରରେ ମଧ୍ୟ ଏହା

ସହଜରେ ପ୍ରାପ୍ତ । ସୁତରାଂ ଆଶ୍ରମବାସୀମାନେ ସପ୍ତାହକୁ ୨/୩ ଦିନ ପନିପରିବା ମୁଣ୍ଡରେ ଝୁଡ଼ିଝୁଡ଼ି ବୋହି ଆଣି ଜୟରାମବାଟୀରେ ପହଞ୍ଚନ୍ତି । ପନିପରିବା ସହିତ ଶ୍ରୀମା'ଙ୍କ ପାଇଁ ଲୁଣ, ତେଲ, ମସଲା, ଅଟା ପ୍ରଭୃତି ମଧ୍ୟ କିଣିନେଇ ଯାଉଥିଲେ । ଏତଦ୍‌ବ୍ୟତୀତ ଜୟରାମବାଟୀରେ ସବୁ ପ୍ରକାର କର୍ମ ପାଇଁ ସେମାନେ ତତ୍‌ପର । କାମଦାମ ସାରି ସେମାନେ କୋଆଲପଡ଼ାକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଶ୍ରୀମା' ସେମାନଙ୍କୁ ଉଖୁଡ଼ା, ଲଡୁ ଓ ବିଭିନ୍ନ ମିଠା ପ୍ରସାଦ ପ୍ରଚୁର ପରିମାଣରେ ତାଙ୍କ ପାଇଁ ବାନ୍ଧି ଦେଉଥିଲେ ଓ ଆଶୀର୍ବାଦ କରି କହୁଥିଲେ, ତୁମମାନଙ୍କର ଚୈତନ୍ୟ ହେଉ, ଭକ୍ତି, ବିଶ୍ୱାସ ହେଉ । ବସ୍ତୁତଃ କୋଆଲପଡ଼ା ଆଶ୍ରମ ଶ୍ରୀମା'ଙ୍କ ସଂସାରର ଅନ୍ତର୍ଭୁକ୍ତ ଥିଲା କିନ୍ତୁ ସେତେବେଳେ ବେଲୁଡ଼ ମଠର ଅଧୀନକୁ ଆସି ନ ଥିଲା ।

ଜଗଦ୍ଧାତ୍ରୀ ପୂଜା ପରେ ଶ୍ରୀମା'ଙ୍କର କଲିକତା ଯିବା ସ୍ଥିର ହେଲା । ତାଙ୍କୁ ନେବା ପାଇଁ ସାରଦାନନ୍ଦଜୀ ଜଣେ ବ୍ରହ୍ମଚାରୀଙ୍କୁ ପୂଜା ପୂର୍ବରୁ ପଠାଇଥିଲେ । ଯାତ୍ରାର ଦୁଇ ତିନି ଦିନ ପୂର୍ବରୁ କୋଆଲପଡ଼ା ଆଶ୍ରମର ଅଧ୍ୟକ୍ଷ କେଦାର ବାବୁ (ସ୍ୱାମୀ କେଶବାନନ୍ଦଜୀ) ଜୟରାମବାଟୀ ଯାଇ ମା' ଠିକ୍ କେବେ କୋଆଲପଡ଼ାରେ ପହଞ୍ଚିବେ ଇତ୍ୟାଦି ଖବରାଖବର ନେଲେ । ମା' ସେତେବେଳେ ବସି ପାନ ଭାଙ୍ଗୁଥିଲେ । କାମର କଥା ଶେଷ ହେବାରୁ ସେ କହିଲେ, ''ଦେଖ ବାବା, ତୁମେମାନେ ଯେତେବେଳେ ଠାକୁରଙ୍କ ପାଇଁ ଘର ଏବଂ ଆମ ପାଇଁ ପଥରେ ବିଶ୍ରାମ ପାଇଁ ଟିକିଏ ସ୍ଥାନ କରିଛ, ସେତେବେଳେ ଏଥର ଯିବା ସମୟରେ ସେଠାରେ ଠାକୁରଙ୍କୁ ବସାଇ ଦେଇ ଯିବି—ସବୁ ଆୟୋଜନ କରିବ । ପୂଜା, ଅନ୍ନଭୋଗ, ଆଳତି ସବୁ ନିୟମିତ କରିବ । କେବଳ ସ୍ୱଦେଶୀ କରି କଅଣ ହେବ ! ଆମର ଯାହା କିଛି ସବୁରି ମୂଳରେ ଏହି ଠାକୁର— କେବଳ ସେ ଆମର ଆଦର୍ଶ, ଯାହା କର ନା କାହିଁକି ତାଙ୍କୁ ଧରିଥିଲେ କେବେ ଦୁର୍ଗତି ହେବ ନାହିଁ ।'' କୋଆଲପଡ଼ା ଆଶ୍ରମରେ ସେତେବେଳେ ଖୁବ୍ ସ୍ୱଦେଶୀ ଚର୍ଚ୍ଚା ଚାଲିଥିଲା । ଧ୍ୟାନଜପ ପୂଜାପାଠ ଅପେକ୍ଷା ତନ୍ତ ଚରଖା ଓ ସ୍ୱଦେଶୀ ଆନ୍ଦୋଳନ ଉପରେ ବେଶୀ ଝୁଙ୍କ୍ ଥିଲା । ଆଶ୍ରମ ଉପରେ ପୋଲିସ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲା । ସେମାନେ ପ୍ରତ୍ୟେକ ଦିନ ଆଶ୍ରମକୁ ଆସି ସମ୍ବାଦ ରଖୁଥିଲେ ଏବଂ ନବାଗତ ଭକ୍ତମାନଙ୍କର ନାମ ଠିକଣା ଆଦି ଲେଖି ରଖୁଥିଲେ । ଆଶ୍ରମର ଅଧ୍ୟକ୍ଷ କିନ୍ତୁ ଏସବୁ ପ୍ରତି ଭ୍ରୁକ୍ଷେପ କରୁ ନ ଥିଲେ । ସୁତରାଂ ଶ୍ରୀମା'ଙ୍କର ଏହି ଉପଦେଶ ସମ୍ପୂର୍ଣ୍ଣ ଭାବେ ଗ୍ରହଣ କରିପାରିଲେ ନାହିଁ । ପ୍ରକାଶ୍ୟରେ ଆପତ୍ତି ନ କରି ଅନ୍ୟ ଭାବରେ କହିଲେ—ସ୍ୱାମୀଜୀ (ବିବେକାନନ୍ଦ) କିନ୍ତୁ ଦେଶର କାମ ପାଇଁ ସମସ୍ତଙ୍କୁ ଉତ୍ସାହିତ କରିଛନ୍ତି ଏବଂ ଦେଶର ଯୁବକମାନଙ୍କୁ ନିଷ୍କାମ କର୍ମ କରିବା ପାଇଁ ଆହ୍ୱାନ କରିଛନ୍ତି । ସେ ଆଜି ବଞ୍ଚିଥିଲେ କେତେ କାମ ହେଉଥାନ୍ତା ! କେଦାରବାବୁ ଅଜ୍ଞାତସାରରେ ମା'ଙ୍କ ହୃଦୟର ଅନେକଗୁଡ଼ିଏ

ତନ୍ତ୍ରୀକୁ ଆଘାତ କରିବାରୁ ନୂତନ ଯେଉଁ ସ୍ୱର ଆଗତ ହେଲା, ତାହା ପୂର୍ବପରି ମଧୁର ଓ ସୁଗଭୀର ଏବଂ ଉଚ୍ଚ ଆଧ୍ୟାତ୍ମିକ ସଂପଦରେ ଭରପୂର । ତାଙ୍କ କଥା ଶେଷ ହେବା ପୂର୍ବରୁ ଶ୍ରୀମା' କହିଉଠିଲେ, ''ଓଃ ବାବା, ମୋର ନରେନ୍ ଆଜି ଯଦି ଥାଆନ୍ତା, ତା'ହେଲେ କମ୍ପାନୀ (ଇଷ୍ଟ ଇଣ୍ଡିଆ କମ୍ପାନୀ) କଅଣ ଆଜି ତାକୁ ଛାଡ଼ି ଦେଇଥାଆନ୍ତା ? ଜେଲଖାନାରେ ରଖିଥାଆନ୍ତା । ମୁଁ କିନ୍ତୁ ତାହା ଦେଖି ପାରି ନ ଥାନ୍ତି । ନରେନ୍ ଯେପରି ଖୋଲା ତରବାରୀ । ବିଲାତରୁ ଫେରିଆସି ମୋତେ କହିଲା, 'ମା, ଆପଣଙ୍କ ଆଶୀର୍ବାଦରେ ସମୁଦ୍ର ଲଙ୍ଘନ କରି ଇଂରେଜମାନଙ୍କ ତିଆରି ଜାହାଜରେ ଚଢ଼ି ତାଙ୍କ ରାଜ୍ୟକୁ ଯାଇଥିଲି ଏବଂ ସେଠାରେ ମଧ୍ୟ ଦେଖିଲି ଠାକୁରଙ୍କର କି ମହିମା ! କେତେ ଭଦ୍ରବ୍ୟକ୍ତି ମୋ ନିକଟରୁ ଠାକୁରଙ୍କ କଥା ମନ୍ତ୍ରମୁଗ୍ଧପରି ଶୁଣୁଛନ୍ତି ଏବଂ ଏହି ଭାବ ଗ୍ରହଣ କରୁଛନ୍ତି ।' ସେମାନେ ବି ତ ମୋର ପିଲା — କ'ଣ କହୁଛ ? ଏହି ପ୍ରଶ୍ନର ଉତ୍ତର ଦେଇ ନ ପାରି କେଦାର ବାବୁ ଚୁପ୍‌କରି ରହିଲେ । ସେ ସ୍ୱଦେଶୀ ଆନ୍ଦୋଳନକୁ ବିଦେଶୀମାନଙ୍କ ପ୍ରତି ବିଦ୍ୱେଷରେ ପରିଣତ କରିଥିଲେ । ମା'ଙ୍କ କଥା ଶୁଣି ଅନୁଭବ କଲେ ଯେ, ସାଧନ ଭଜନ ବ୍ୟତୀତ ନିଷ୍କାମ କର୍ମ କରିବା କଠିନ ।

ବିଦେଶୀମାନଙ୍କ ପ୍ରତି ବିଦ୍ୱେଷ ତ ଦୂରର କଥା, ତାଙ୍କ ମହାନ ଉଦାରତା ତାଙ୍କ କରୁଣାପୂର୍ଣ୍ଣ ମନକୁ ସବୁପ୍ରକାର ସଂକୋଚ-ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଉଠାଇ ବିଦେଶୀମାନଙ୍କ ସହିତ ସମତା ରକ୍ଷା କରୁଥିଲା । ଇଷ୍ଟର ଉତ୍ସବ ଦିନ ନିବେଦିତାଙ୍କ ମୁହଁରୁ ଧର୍ମସଙ୍ଗୀତ ଶୁଣି ସେ ସମାଧିସ୍ଥ ହୋଇଗଲେ । ଆଉ ଦିନେ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ଯେତେବେଳେ ନିବେଦିତା ଓ କ୍ରିଷ୍ଟିନ୍ ଖ୍ରୀଷ୍ଟାନ ବିବାହ କଥା ବୁଝାଇବା ପାଇଁ ବରକନ୍ୟା ଓ ପୁରୋହିତର ଆଚରଣ ବ୍ୟାଖ୍ୟା କରୁଥିଲେ, ସେତେବେଳେ ମା' ଆଗ୍ରହ ସହକାରେ ବାରମ୍ବାର ଏହା ଶୁଣିବାକୁ ଚାହିଁଲେ । ଅତି ସହଜରେ ସେ ବିଦେଶୀ ଆଚାର ବ୍ୟବହାରକୁ ଗ୍ରହଣ କରିପାରୁଥିଲେ । ୧୮୯୮ ଖ୍ରୀଷ୍ଟାବ୍ଦରେ ଶ୍ରୀମତୀ ଓଲିବୁଲ୍ ମା'ଙ୍କ ଫଟୋ ଉଠାଇବା ପାଇଁ ଷ୍ଟୁଡ଼ିଓକୁ ଯିବାର ପ୍ରସ୍ତାବ ଦେବାରୁ ଲଜ୍ଜାଶୀଳ ମା'ପ୍ରଥମେ ଅସମ୍ମତ ହେଲେ । କିନ୍ତୁ ଓଲିବୁଲ୍‌ଙ୍କ କାକୁତି ମିନତି ଯୋଗୁଁ ମହିଳା ଫଟୋଗ୍ରାଫର ଆଣିବାକୁ କହିଲେ । ତାହା ମଧ୍ୟ ଯେତେବେଳେ ସମ୍ଭବ ହେଲା ନାହିଁ, ସେତେବେଳେ ସେ କୌଣସି ସାହେବଙ୍କୁ ଆଣିବାକୁ କହିଲେ; କାରଣ ଇଉରୋପ ଆମେରିକାରେ ପୁରୁଷ-ଲୋକ ସ୍ତ୍ରୀ-ଲୋକମାନଙ୍କର ଫଟୋ ନେବା କୌଣସି ସଂକୋଚର ବିଷୟ ନୁହେଁ । କେବଳ ଏତିକି ନୁହେଁ, ସ୍ୱାମୀ ବିବେକାନନ୍ଦ ଗୋଟିଏ ପତ୍ରରେ (ମାର୍ଚ୍ଚ ୧୮୯୮) ଲେଖିଛନ୍ତି — ଶ୍ରୀମା' ବର୍ତ୍ତମାନ କଲିକତାରେ ଅଛନ୍ତି । ୟୁରୋପିଆନ ଓ ଆମେରିକାନ ମହିଳାମାନେ ସେଦିନ ତାଙ୍କୁ ଦେଖିବାକୁ ଯାଇଛନ୍ତି । ତୁମେମାନେ କ'ଣ ଭାବିପାରିବ ଶ୍ରୀମା' ସେମାନଙ୍କ ସହ ବସି ଏକତ୍ର ଖାଇଥିଲେ । ଏହା କଅଣ ଏକ ଅଦ୍ଭୁତ ଘଟଣା ନୁହେଁ ?

ବିଦେଶୀମାନଙ୍କ ପ୍ରତି ପ୍ରୀତି ଓ ଉଦାରତା ଥିଲେ ମଧ୍ୟ ବିଦେଶୀମାନଙ୍କ ଅତ୍ୟାଚାରକୁ ଶ୍ରୀମା' ସହ୍ୟ କରିପାରୁ ନ ଥିଲେ । ବାଙ୍କୁଡ଼ା ଜିଲ୍ଲାର ସିନ୍ଧୁବାଳାମାନଙ୍କ ପ୍ରତି ପୁଲିସର ଅତ୍ୟାଚାର କଥା ଶୁଣି ଶାନ୍ତପ୍ରକୃତି ମା' ମଧ୍ୟ ଗର୍ଜି ଉଠିଥିଲେ । ଦେବେନ୍ ବାବୁଙ୍କ ସ୍ତ୍ରୀ ଓ ଭଗିନୀ ଉଭୟଙ୍କ ନାମ ସିନ୍ଧୁବାଳା । ଭଗିନୀ ଅନ୍ତଃସ୍ୱତ୍ତା ଥିଲେ । ରାଜଦ୍ରୋହରେ ସଂଶ୍ଳିଷ୍ଟ ଅଛନ୍ତି, ଏପରି ସନ୍ଦେହ କରି ପୁଲିସ ଭଗିନୀଙ୍କୁ ଓ ପରେ ଦେବେନ୍ ବାବୁଙ୍କ ସ୍ତ୍ରୀଙ୍କୁ ଗିରଫ୍ଦାର କଲେ । କେବଳ ସେତିକି ନୁହେଁ, ପୋଲିସ ମହିଳାମାନଙ୍କୁ ବନ୍ଦୀ କରି ରାସ୍ତା ଦେଇ ଚଲେଇ ଚଲେଇ ନେଲେ । ଏହି ନିଦାରୁଣ ସମ୍ବାଦ ପାଇ ଶ୍ରୀମା' ଅଗ୍ନିମୂର୍ତ୍ତି ହୋଇ କହିଲେ, ''ଏହା କଅଣ କମ୍ପାନୀର ଆଦେଶ ନା ପୁଲିସ ସାହେବଙ୍କ କରାମତି ! ନିରପରାଧ ସ୍ତ୍ରୀଲୋକଙ୍କ ଉପରେ ଏପରି ଅତ୍ୟାଚାର ମହାରାଣୀ ଭିକ୍ଟୋରିଆଙ୍କ ସମୟରେ ତ କେବେ ହୋଇ ନାହିଁ ! ଏହା ଯଦି କମ୍ପାନୀର ଆଦେଶ ହୋଇଥାଏ ତେବେ ସେମାନଙ୍କର ଆୟୁ ଶେଷ ହୋଇଗଲାଣି । ସେଠାରେ କଅଣ କେହି ପୁରୁଷ ଲୋକ ନ ଥିଲେ, ଯିଏ ଦୁଇ ଚଟକଣା ଦେଇ ସ୍ତ୍ରୀଲୋକମାନଙ୍କୁ ମୁକ୍ତ କରି ଦେଇଥାଆନ୍ତା ?''

ସେତେବେଳେ ୟୁରୋପରେ ପ୍ରଥମ ବିଶ୍ୱଯୁଦ୍ଧ ଚାଲିଛି । ମା' ସେତେବେଳେ କୋଆଲପଡ଼ାରେ ଅଛନ୍ତି । ଜଣେ ଭକ୍ତ ଆସି ପ୍ରଣାମ କରିବାରୁ ଶ୍ରୀମା' କୁଶଳପ୍ରଶ୍ନାଦି କରି ଯୁଦ୍ଧର ଖବର ନେଲେ । କହିଲେ, ''କେତେ ଲୋକ ମରୁଛନ୍ତି, କି ମଣିଷମରା କଳ ବାହାର କରିଛନ୍ତି ! ଆଜିକାଲି କେତେ ରକମ ଯନ୍ତ୍ରପାତି ବାହାରିଲାଣି । ଏହି ଦେଖୁନ କାଲି କଲିକତାରୁ ବାହାରି ଆଜି ଏଠାରେ ପହଞ୍ଚିବା ସହଜ । ସେତେବେଳେ ଆମେ କେତେ ଚାଲି ଚାଲି କଷ୍ଟ କରି ଦକ୍ଷିଣେଶ୍ୱରକୁ ଯାଉଥିଲୁ !'' ଭକ୍ତ ଉତ୍ସାହିତ ହୋଇ ପାଶ୍ଚାତ୍ୟ ବିଜ୍ଞାନର ପ୍ରଶଂସା କରିବାକୁ ଲାଗିଲେ ଏବଂ କହିଲେ, ''ଇଂରେଜ ସରକାର ଆମ ସୁଖ ସୁବିଧା ବୃଦ୍ଧି କରିଛନ୍ତି ।'' ସବୁ ଶୁଣି ଶ୍ରୀମା' କହିଲେ, ''କିନ୍ତୁ ବାବା ! ଏହିସବୁ ସୁବିଧା ହେଲେ ମଧ୍ୟ ଆମ ଦେଶରେ ଅନ୍ନବସ୍ତ୍ରର ଅଭାବ ବଢ଼ିଛି । ଆଗରୁ କିନ୍ତୁ ଏସବୁ ନ ଥିଲା ।''

ଆଉ ଦିନକର କଥା । ଦେଶରେ ସେତେବେଳେ ବସ୍ତ୍ରାଭାବ—ସ୍ତ୍ରୀ-ଲୋକମାନଙ୍କ ପକ୍ଷରେ ଲଜ୍ଜାନିବାରଣ କରିବା ଅସମ୍ଭବ ହୋଇପଡ଼ିଛି । ବସ୍ତ୍ରର ଅଭାବରେ ସ୍ତ୍ରୀ-ଲୋକମାନେ ଘରୁ ବାହାରକୁ ବାହାରିପାରନ୍ତି ନାହିଁ । ଲଜ୍ଜାନିବାରଣରେ ଅସମର୍ଥ ହୋଇ ସ୍ତ୍ରୀ-ଲୋକମାନଙ୍କର ଆତ୍ମହତ୍ୟାର ଖବର ସମ୍ବାଦପତ୍ରରେ ପ୍ରାୟ ପ୍ରକାଶିତ ହେଉଥିଲା । ଦିନେ ଏହିପରି କେତୋଟି ଘଟଣା ବିଷୟ ଶୁଣି ଶ୍ରୀମା' ଏତେ ବିଚଳିତ ହେଲେ ଯେ ସେ ନିଜକୁ ସମ୍ଭାଳି ନ ପାରି କାନ୍ଦି କାନ୍ଦି କହିବାକୁ ଲାଗିଲେ, ''ସେମାନେ (ଇଂରେଜମାନେ) କେବେ ଯିବେ ? କେବେ ଯିବେ ?'' ପରେ ଟିକିଏ ଶାନ୍ତ ହୋଇ କହିଲେ, ''ଆଗେ ଘରେ ଘରେ ଚରଖା ଥିଲା । ଜମିରେ କପା ଚାଷ ହେଉଥିଲା, ସମସ୍ତେ ସୂତା

କାଟୁଥିଲେ, ନିଜର ପ୍ରୟୋଜନୀୟ ଲୁଗାପଟା ସମସ୍ତେ ନିଜେ ପ୍ରସ୍ତୁତ କରୁଥିଲେ, ବସ୍ତ୍ରର ଅଭାବ ନ ଥିଲା । କମ୍ପାନୀ ଆସି ସବୁ ନଷ୍ଟ କରିଦେଲା । କମ୍ପାନୀ ଲୋକଙ୍କୁ ଆରାମପ୍ରିୟ କରିଦେଲା—ଟଙ୍କାରେ ଚାରିଟି ଲୁଗା ଓ ଗୋଟିଏ ମାଗଣା, ସମସ୍ତେ ବାବୁ ହୋଇଗଲେ । ଚରଖା ଉଠିଗଲା । ଏବେ ବାବୁମାନେ ସବୁ କାବୁ ହୋଇଛନ୍ତି !'' ସେତେବେଳେ ମହାତ୍ମା ଗାନ୍ଧୀଙ୍କର ଚରଖା ଓ ଅସହଯୋଗ ଆନ୍ଦୋଳନ ହୋଇନାହିଁ ।

ଶ୍ରୀମା'ଙ୍କ ହୃଦୟ ଦେଶର ଦୁଃଖଦୁର୍ଦ୍ଦଶାରେ ବିଗଳିତ ହେଉଥିଲା । ବିଦେଶୀ ଶାସକମାନଙ୍କର ଶୋଷଣନୀତିକୁ ସେ ତୀବ୍ରଭାବରେ ପ୍ରତିବାଦ କରୁଥିଲେ — ଜଣେ ଦେଶଭକ୍ତ ଯେତେବେଳେ ପ୍ରଶ୍ନ କଲେ, ''ମା', ଦେଶର ଦୁଃଖଦୁର୍ଦ୍ଦଶା କଅଣ ଦୂର ହେବ ନାହିଁ ?'' ଶ୍ରୀମା' ଉତ୍ତର ଦେଇଥିଲେ, ''ଶ୍ରୀଶ୍ରୀଠାକୁର ଏଥିପାଇଁ ତ ଆସିଥିଲେ ।'' ସୁତରାଂ କୋଆଲପଡ଼ା ଭକ୍ତମାନେ ସ୍ୱଦେଶୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ ମଧ୍ୟ ତାଙ୍କ ସିଦ୍ଧାନ୍ତ ଥିଲା ଆଶ୍ରମବାସୀମାନେ ଶ୍ରୀରାମକୃଷ୍ଣଙ୍କୁ ଆଶ୍ରୟ ନ କଲେ ଅଚିରେ ପଥଭ୍ରଷ୍ଟ ହେବେ । ତେଣୁ କଲିକତା ଯିବା ପଥରେ ସେ ଆଶ୍ରମରେ ଠାକୁରଙ୍କୁ ପ୍ରତିଷ୍ଠିତ କରିବାକୁ ଇଚ୍ଛା କଲେ । ମାର୍ଗଶୀର ମାସ ଆରମ୍ଭ । ଖୁବ୍ ଭୋରରୁ ଶ୍ରୀମା' ବାହାରିଛନ୍ତି । ସୂର୍ଯ୍ୟୋଦୟ ପୂର୍ବରୁ କୋଆଲପଡ଼ାରେ ପୂଜା କରିବାକୁ ହେବ । ସେତେବେଳେ ଖୁବ୍ ଶୀତ । ଆଶ୍ରମରେ ଶ୍ରୀମା' ଠାକୁର ପ୍ରତିଷ୍ଠା କରିବେ ବୋଲି ଭକ୍ତମାନେ ଯଥେଷ୍ଟ ଆୟୋଜନ କରିଛନ୍ତି । ଶ୍ରୀମା' ଆଶ୍ରମରେ ପହଞ୍ଚି ସ୍ନାନ ଇତ୍ୟାଦି ସାରି ଠାକୁରଘର ବେଦୀରେ ଶ୍ରୀଶ୍ରୀଠାକୁରଙ୍କର ଓ ନିଜ ଫଟୋ ସ୍ଥାପନ କରି ଯଥାବିଧି ପୂଜା କଲେ । ପୂଜା ଓ ହୋମ ଶେଷ ହେଲା । ସମସ୍ତେ ପ୍ରସାଦ ପାଇଲେ । ଅବସର ପାଇ ଶ୍ରୀମା' ଚାଲି ଚାଲି କେଦାରବାବୁଙ୍କ ଘରକୁ ଗଲେ । ଶ୍ରୀମା'ଙ୍କ ତତ୍ତ୍ୱାବଧାନ ପାଇଁ ପ୍ରେରିତ ବ୍ରହ୍ମଚାରୀ ପ୍ରକାଶ ମହାରାଜ ଶ୍ରୀମା' ଚାଲି ଚାଲି ଯିବା ଶୁଣି ବିରକ୍ତ ହେଲେ ଓ ଗୋଟିଏ ପାଲିଙ୍କି ବ୍ୟବସ୍ଥା କରି ବିଦେଶୀମାନଙ୍କ ସହିତ ମା'ଙ୍କୁ ଫେରାଇ ଆଣିବା ପାଇଁ ଗଲେ । ପ୍ରକାଶ ମହାରାଜଙ୍କ ଅନୁରୋଧ ରକ୍ଷା କରି ଶ୍ରୀମା' ପାଲିଙ୍କିରେ ଉଠିଲେ, କିନ୍ତୁ ଆଶ୍ରମକୁ ଫେରି ଆସି ତାଙ୍କୁ ବିରକ୍ତି ସହକାରେ କହିଲେ, ''ଏ ଆମର ପଡ଼ା ଗାଁ, କୋଆଲପଡ଼ା ମୋର ବୈଠକଖାନା । ଏହିସବୁ ପିଲାମାନେ ନିଜର ଲୋକ, କଲିକତାରୁ ଆସି ଏଠାରେ ଟିକିଏ ସ୍ୱାଧୀନ ଭାବରେ ଚଲାବୁଲା କରେ । ସେଠାରେ ସର୍ବଦା ସଙ୍କୁଚିତ ହୋଇ ରହିବାକୁ ପଡ଼େ । ଏଠାରେ ମଧ୍ୟ ଯଦି ତୁମମାନଙ୍କର କଥାନୁଯାୟୀ ଚଳିବାକୁ ପଡ଼େ ତା'ହେଲେ ମୁଁ ପାରିବି ନାହିଁ । ଶରତକୁ ଲେଖି ଜଣାଇ ଦିଅ ।'' ସବୁ କଥା ବୁଝିପାରି ପ୍ରକାଶ ମହାରାଜ କ୍ଷମା ଚାହିଁଲେ ।

ସ୍ଥିର ହେଲା ସଂଧ୍ୟା ୬ଟା ପୂର୍ବରୁ ଯାତ୍ରା ଆରମ୍ଭ ହେବ । ଅତଏବ ରାତିର ଖାଇବା ତାହା ଆଗରୁ ପ୍ରସ୍ତୁତ କରି ରଖିବା କଥା । କିନ୍ତୁ ଆଶ୍ରମବାସୀମାନଙ୍କ

ଯଥାଶକ୍ତି ଚେଷ୍ଟା ସତ୍ତ୍ୱେ ନିର୍ଦ୍ଧାରିତ ସମୟରେ କାମ ଶେଷ ହେଲା ନାହିଁ । ପ୍ରକାଶ ମହାରାଜ ଏଥିରେ ବିରକ୍ତ ହେବାରୁ ଆଶ୍ରମବାସୀମାନେ କହିଲେ ଯେ ସେମାନେ ଠିକ୍ ସମୟରେ ବାହାରି ଯାଆନ୍ତୁ । ପରେ ଆହାର ପ୍ରସ୍ତୁତ ହେଲେ ସେମାନେ କୌଣସିମତେ ତାହା ପହଞ୍ଚାଇ ଦେବେ । ଶ୍ରୀମା' ସବୁ କଥା ଶୁଣି ପ୍ରକାଶ ମହାରାଜଙ୍କୁ କହିଲେ, ''ତୁମେ ମୁଣ୍ଡ ଗରମ କରି ନିଜେ ରଗାରଗି କରୁଛ କାହିଁକି ? ଏ ଆମର ଗାଁ ଗଣ୍ଡା ଜାଗା, କଲିକତା ପରି ସବୁ ଘଣ୍ଟାକଣ୍ଟା ଅନୁଯାୟୀ କାମ ହେବ ନାହିଁ । ଦେଖୁଛ ତ, ସକାଳୁ ପିଲାମାନେ କିପରି ଖଟୁଛନ୍ତି । ତୁମେ ଯାହା କୁହ ନା କାହିଁକି, ଏଠାରୁ ନ ଖାଇ ଯିବା ହେବ ନାହିଁ ।'' ଶେଷରେ ଆହାରାଦି ପରେ ରାତି ପ୍ରାୟ ଆଠଟାରେ ଆଠଟି ଶଗଡ଼ ଗାଡ଼ିରେ ସମସ୍ତେ ବିଷ୍ଣୁପୁର ଅଭିମୁଖେ ଯାତ୍ରା କଲେ ।

## ବେଲୁଡ଼ ଓ କାଶୀ

୧୯୧୨ ଖ୍ରୀଷ୍ଟାବ୍ଦ ଦୁର୍ଗାପୂଜା ଦେଖିବା ପାଇଁ ଶ୍ରୀମା' ବେଲୁଡ଼ମଠକୁ ଆସିଥିଲେ । ୧୭ ଅକ୍ଟୋବର ଦିନ ଶ୍ରୀମା'ଙ୍କର ଶୁଭ ପଦାର୍ପଣ ହେଲା । ଦେବୀଙ୍କ ବୋଧନ ଶେଷ ହେବାର ଅଳ୍ପ ପରେ ଶ୍ରୀମା' ଆସି ପହଞ୍ଚିଲେ । ସ୍ୱାମୀ ପ୍ରେମାନନ୍ଦ ଓ ଅନ୍ୟାନ୍ୟ ସାଧୁ ଭକ୍ତମାନେ ଗାଡ଼ିରୁ ଘୋଡ଼ା ଫିଟାଇଦେଇ ଟାଣି ଟାଣି ମଠ ପ୍ରାଙ୍ଗଣକୁ ଆଣିଲେ । ଆଜି ସମସ୍ତେ ଆନନ୍ଦରେ ଉତ୍‌ଫୁଲ୍ଲ । ଶ୍ରୀମା' ଏକାଦଶୀ ଯାଏ ବେଲୁଡ଼ରେ ବାସ କରିଥିଲେ । ମଠର ଉତ୍ତର ଦିଗରେ ଥିବା ଉଦ୍ୟାନବାଟୀରେ ସେମାନେ ରହିଲେ । ଶ୍ରୀମା' ଦକ୍ଷିଣର ଘରଟିରେ ରହୁଥିଲେ । ମହାଷ୍ଟମୀ ଦିନ ତିନିଶତାଧିକ ଭକ୍ତ ଶ୍ରୀମା'ଙ୍କୁ ପ୍ରଣାମ କଲେ । ସେଦିନ ତିନି ଚାରିଜଣଙ୍କର ଦୀକ୍ଷା ମଧ୍ୟ ହେଲା । ଅଷ୍ଟମୀ ଓ ଦଶମୀ ରାତିରେ ଯାତ୍ରା ଅଭିନୟ ହୋଇଥିଲା । ଶ୍ରୀମା' ମଠ ମହଲାରୁ ଉଭୟ ଯାତ୍ରା ଦେଖିଥିଲେ । ପୂଜା ପରେ ଗୋଲାପ-ମା' ଆସି ସ୍ୱାମୀ ସାରଦାନନ୍ଦଜୀଙ୍କୁ ସମ୍ବାଦ ଦେଲେ, ''ଶରତ, ମା ଠାକୁରାଣୀ ତୁମମାନଙ୍କ ସେବାରେ ଖୁସୀ ହୋଇ ତୁମମାନଙ୍କୁ ଆଶୀର୍ବାଦ କରୁଛନ୍ତି ।'' ସପ୍ତାହେ କାଳ ବେଲୁଡ଼ରେ ରହି ୨୨ ତାରିଖ ଦିନ ଶ୍ରୀମା' ଉଦ୍‌ବୋଧନକୁ ଫେରିଗଲେ ।

ବେଲୁଡ଼ମଠ ଦୁର୍ଗୋତ୍ସବରେ ଯୋଗଦାନ କରିବା ଏହା ପ୍ରଥମ ବା ଶେଷ ନୁହେଁ । ସ୍ୱାମୀ ବିବେକାନନ୍ଦ ଥିବା ସମୟରେ ଏବଂ ପରେ ୧୯୧୬ ଖ୍ରୀଷ୍ଟାବ୍ଦରେ ମଧ୍ୟ ସେ ଏଠାରେ ପୂଜା ଦର୍ଶନ କରିଥିଲେ । ବେଲୁଡ଼ମଠ ସହିତ ତାଙ୍କର ଗୋଟିଏ ପ୍ରାଣର ସଂଯୋଗ ଥିଲା । ମଠ ବ୍ୟତୀତ ଶ୍ରୀମା' ନୀଳାମ୍ବରବାବୁଙ୍କ ଉଦ୍ୟାନବାଟୀ ଏବଂ ଘୁସୁଡ଼ିରେ ଦୀର୍ଘକାଳ ବାସ କରିଥିଲେ । ଏହିସବୁ ସ୍ଥାନରେ କେତେ ଧ୍ୟାନ-ଧାରଣା, ପୂଜା-ପାଠ, ସାଧନା ଓ ଅନୁଭୂତି ହୋଇଯାଇଛି । ଶ୍ରୀମା' ଦିନେ ତାଙ୍କ ବେଲୁଡ଼ ଜୀବନ କଥା ସ୍ମରଣ କରି କହିଥିଲେ, ''ଆହା ! ବେଲୁଡ଼ରେ କିପରି

ଥିଲି ! କିପରି ଶାନ୍ତ ଜାଗା ! ଧ୍ୟାନ ଲାଗି ରହୁଥିଲା । ଏହିସବୁ କାରଣରୁ ନରେନ୍ଦ୍ର ସେଠାରେ ମଠ କରିବାକୁ ଇଚ୍ଛା କରିଥିଲା ।''

ବେଲୁଡ଼ମଠ ଦୁର୍ଗାପୂଜାର ସଂକଳ୍ପ ଶ୍ରୀମା'ଙ୍କ ନାମରେ ହୋଇଥାଏ । ପୂଜା ଉପଲକ୍ଷେ ଶ୍ରୀମା'ଙ୍କ ବେଲୁଡ଼କୁ ଆସିବା ଏବଂ ସେଠାରେ ରହିବା ସହିତ ଜଡ଼ିତ ବହୁ ଘଟଣାର ସ୍ମୃତି ଆଜି ମଧ୍ୟ ସାଧୁମାନେ ଆଦର ସହିତ ହୃଦୟରେ ପୋଷଣ କରନ୍ତି । ପୂଜା ଦିନ ଶ୍ରୀମା' ମଠରେ ଉପସ୍ଥିତ ଥିଲେ ସାଧୁମାନେ ଦେବୀଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ଦିଅନ୍ତି ଏବଂ ଏହି ଜୀବନ୍ତ ଦେବୀଙ୍କର ମଧ୍ୟ ସେହି ଭାବରେ ଆରାଧନା କରିଥାଆନ୍ତି । ଶ୍ରୀମା'ଙ୍କୁ ପ୍ରସନ୍ନା ଦେଖିଲେ ସମସ୍ତେ ମନେକରନ୍ତି ଦେବୀ ପୂଜା ଗ୍ରହଣ କରିଛନ୍ତି । କୌଣସି ଏକ ଦୁର୍ଗାପୂଜାରେ ସ୍ୱାମୀ ବ୍ରହ୍ମାନନ୍ଦଜୀ ମହାଷ୍ଟମୀ ଦିନ ୧୦୮ ଫୁଲ ଦେଇ ଶ୍ରୀମା'ଙ୍କ ଚରଣ ବନ୍ଦନା କରିଥିଲେ ।

୧୯୧୬ ଖ୍ରୀଷ୍ଟାବ୍ଦ ଦୁର୍ଗାପୂଜାରେ ସପ୍ତମୀ ଦିନ ଶ୍ରୀମା' ମଠରେ ପଦାର୍ପଣ କରିଥିଲେ ।

ହଠାତ୍ ରାଧୁର ଦେହ ଅସୁସ୍ଥ ହୋଇ ପଡ଼ିବାରୁ ଶ୍ରୀମା' କଲିକତା ଫେରିଯିବାକୁ ମନସ୍ଥ କଲେ । ଜଣେ ସାଧୁ ପ୍ରେମାନନ୍ଦଜୀଙ୍କୁ ପରାମର୍ଶ ଦେଲେ, ସେ ଯେପରି ଶ୍ରୀମା'ଙ୍କୁ ରହିବାକୁ ଅନୁରୋଧ କରନ୍ତି । କିନ୍ତୁ ପ୍ରେମାନନ୍ଦଜୀ କହିଲେ, ''ମହାମାୟାଙ୍କୁ କିଏ ନିଷେଧ କରିବ ? ତାଙ୍କର ଯାହା ଇଚ୍ଛା ତାହା ହିଁ ହେବ—ତାଙ୍କ ଇଚ୍ଛା ବିରୋଧରେ କିଏ କଅଣ କରିପାରିବ ?'' ଯାହା ହେଉ ରାଧୁ ସୁସ୍ଥ ହୋଇ ଉଠିବାରୁ ଶ୍ରୀମା' କଲିକତା ଫେରିବା ସଂକଳ୍ପ ତ୍ୟାଗ କଲେ । ମହାଷ୍ଟମୀ ଦିନ ସକାଳେ ସେ ଯେତେବେଳେ ପ୍ରତିମା ଦର୍ଶନ ପାଇଁ ଯାଉଥିଲେ, ସେତେବେଳେ ଦେଖିଲେ ଯେ ମଠର ସାଧୁ ବ୍ରହ୍ମଚାରୀମାନେ ଭୋଗ ପାଇଁ ପରିବା କାଟୁଛନ୍ତି । ଶ୍ରୀମା' ତାହା ଦେଖି କହିଲେ, ''ପିଲାମାନେ ତ ବେଶ୍ ଭଲ ପରିବା କାଟିପାରନ୍ତି ।'' କାର୍ଯ୍ୟରତ ଜଣେ ସନ୍ୟାସୀ (ଶ୍ରୀମା'ଙ୍କ ଶିଷ୍ୟ ଜଗଦାନନ୍ଦଜୀ) ହସି ହସି କହିଲେ, ''ବ୍ରହ୍ମମୟୀଙ୍କ ପ୍ରସନ୍ନତା ଲାଭ କରିବା ହିଁ ଉଦ୍ଦେଶ୍ୟ— ତାହା ସାଧନ ଭଜନ କରି ହେଉ ବା ପରିବା କାଟି ହେଉ ।'' ଏହି ପୂଜୋତ୍ସବର ବିବରଣୀ ସ୍ୱାମୀ ଶିବାନନ୍ଦଜୀଙ୍କ ଗୋଟିଏ ପତ୍ରରୁ ମିଳିଥାଏ—''ଶ୍ରୀଶ୍ରୀମା' ଉପସ୍ଥିତ ଥିବାରୁ ପୂଜା ପ୍ରତ୍ୟକ୍ଷରୂପେ ସମ୍ପାଦିତ ହେଲା । ...ଯଦିଓ ତିନିଦିନ ଧରି ଅବିରାମ ବର୍ଷା, ଝଡ଼ ଚାଲିଥିଲା, ତଥାପି ମା'ଙ୍କ କୃପାରୁ କୌଣସି ବିଘ୍ନ ହୋଇ ନାହିଁ । ଏପରି କି, ଭକ୍ତମାନେ ଯେତେବେଳେ ପ୍ରସାଦ ପାଇବାକୁ ବସୁଥିଲେ, ଠିକ୍ ସେହି ସମୟରେ ବର୍ଷା କିଛି ସମୟ ପାଇଁ ବନ୍ଦ ହୋଇ ଯାଉଥିଲା । ସମସ୍ତେ ଏହା ଦେଖି ଆଶ୍ଚର୍ଯ୍ୟ ।''

ଅଷ୍ଟମୀ ଦିନ ସନ୍ଧିପୂଜା ପରେ ପୂଜନୀୟ ଶରତ ମହାରାଜ ଜଣେ ବ୍ରହ୍ମଚାରୀଙ୍କୁ କହିଲେ, ''ଏହି ଗିନିଟା ମା'ଙ୍କୁ ଦେଇ ପ୍ରଣାମ କରି ଆସ ।''

ବ୍ରହ୍ମଚାରୀ ଭାବିଲେ ହୁଏତ ପ୍ରତିମା ସମ୍ମୁଖରେ ପ୍ରଣାମୀ ଦେବାକୁ କହୁଛନ୍ତି, ତେଣୁ ନିଃସନ୍ଦେହ ହେବା ପାଇଁ ପଚାରିଲେ । ଶରତ ମହାରାଜ କହିଲେ, ''ସେହି ବଗିଚାରେ ମା' ଅଛନ୍ତି । ତାଙ୍କ ପାଦରେ ଗିନିଟା ରଖି ପ୍ରଣାମ କରି ଆସ । ଏଠାରେ ତ ତାଙ୍କରି ପୂଜା ହେଲା ।''

୧୯୧୨ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୫ ତାରିଖ ଦିନ ଶ୍ରୀମା' ଭକ୍ତମାନଙ୍କ ସହିତ କାଶୀଧାମରେ ଉପସ୍ଥିତ ହେଲେ । ଶ୍ରୀରାମକୃଷ୍ଣ ଅଦ୍ୱୈତ ଆଶ୍ରମ ନିକଟବର୍ତ୍ତୀ 'ଲକ୍ଷ୍ମୀନିବାସ' ରେ ଶ୍ରୀମା'ଙ୍କ ରହିବା ପାଇଁ ଜାଗା ଠିକ୍ ହୋଇଥିଲା । ଏହି ଘରେ ସେ ଅଢ଼େଇମାସ କାଳ ରହିଥିଲେ । ସ୍ତ୍ରୀ-ଭକ୍ତମାନଙ୍କ ସହିତ ଶ୍ରୀମା' ଉପରମହଲାରେ ରହୁଥିଲେ । ଗୃହର ପ୍ରଶସ୍ତ ବାରଣ୍ଡା ଦେଖି ଶ୍ରୀମା' ଖୁସି ହୋଇ କହିଲେ, ''ଭାଗ୍ୟବାନ ନ ହେଲେ ଏପରି ହୁଏ ନାହିଁ । କ୍ଷୁଦ୍ର ଜାଗାରେ ରହିଲେ ମନ ମଧ୍ୟ ଛୋଟ ହୋଇଯାଏ । ଖୋଲା ଜାଗାରେ ହୃଦୟ ଖୋଲା ହୁଏ ।

ପରଦିନ ସକାଳେ ଶ୍ରୀମା' ପାଲିଙ୍କିରେ ଚଢ଼ି ବିଶ୍ୱନାଥ ଓ ଅନ୍ନପୂର୍ଣ୍ଣାଙ୍କୁ ଦର୍ଶନ କରିବାକୁ ଗଲେ । କାଳୀପୂଜା ପରଦିନ ସକାଳେ ସେ ରାମକୃଷ୍ଣ ମିଶନ ସେବାଶ୍ରମ ଦେଖିବାକୁ ଗଲେ । ସେତେବେଳେ ପୂଜ୍ୟପାଦ ବ୍ରହ୍ମାନନ୍ଦଜୀ, ଶିବାନନ୍ଦଜୀ, ତୁରୀୟାନନ୍ଦଜୀ, ଚାରୁବାବୁ ଇତ୍ୟାଦି ଅନେକ ଭକ୍ତ ଏଠାରେ ଉପସ୍ଥିତ ଥିଲେ । ସ୍ୱାମୀ ଅଚଳାନନ୍ଦ ଶ୍ରୀମା'ଙ୍କୁ ପାଲିଙ୍କିରେ ନେଇ ରୋଗୀମାନଙ୍କର ଆବାସ ଘରଗୁଡ଼ିକ ଦେଖାଇଲେ । ସବୁ ଦେଖି ଶ୍ରୀମା' ସେବାଶ୍ରମର କୋଠାବାଡ଼ି ବଗିଚା ଓ ବ୍ୟବସ୍ଥା ବିଷୟରେ ସନ୍ତୋଷ ପ୍ରକାଶ କଲେ । ସେ କହିଲେ, ''ଏଠାରେ ଠାକୁର ସ୍ୱୟଂ ବିରାଜ କରୁଛନ୍ତି ଏବଂ ମହାଲକ୍ଷ୍ମୀ ପୂର୍ଣ୍ଣ ହୋଇ ଅଛନ୍ତି ।'' ସେ ଜାଣିବାକୁ ଚାହିଁଲେ ପ୍ରଥମେ ଏହି ଆଶ୍ରମର ଉଦ୍ୟୋକ୍ତା କେଉଁମାନେ ଏବଂ କିପରି ଭାବରେ ତାଙ୍କ ପରିକଳ୍ପନା କାର୍ଯ୍ୟକାରୀ ହୋଇଥିଲା । ସବୁ ଶୁଣି ସେ କହିଲେ, ''ଏହି ସ୍ଥାନଟି ଏତେ ସୁନ୍ଦର ଯେ ମୋର ଇଚ୍ଛା ହେଉଛି କାଶୀରେ ରହିଯିବି । ବସାକୁ ଫେରି ସେ ଜଣେ ଭକ୍ତ ମାଧ୍ୟମରେ ସେବାଶ୍ରମ ପାଇଁ ୧୦ଟଙ୍କା ପଠାଇଲେ । ତାଙ୍କର ପ୍ରଦତ୍ତ ସେହି ୧୦ଟଙ୍କା ନୋଟଟି ଆଜି ମଧ୍ୟ ସେବାଶ୍ରମରେ ସୁରକ୍ଷିତ ଅଛି ।

ଜଣେ ଭକ୍ତ ତାଙ୍କୁ ପ୍ରଣାମ କରି ପଚାରିଲେ, ''ମା' ସେବାଶ୍ରମ କିପରି ଦେଖିଲେ ?'' ମା' ଧୀର ଭାବରେ କହିଲେ, ''ଦେଖିଲି ଠାକୁର ସେଠାରେ ପ୍ରତ୍ୟକ୍ଷ ବିରାଜ କରୁଛନ୍ତି—ସେଥିପାଇଁ ଏସବୁ କାମ ହେଉଛି । ଏସବୁ ତାଙ୍କରି କାମ ।'' ଶ୍ରୀମା'ଙ୍କର ଏହି ମତ ସ୍ୱାମୀ ବ୍ରହ୍ମାନନ୍ଦଜୀ ନିକଟରେ ନିବେଦିତ ହେଲା । ଠିକ୍ ସେହି ସମୟରେ ମାଷ୍ଟର ମହାଶୟ ଅଦ୍ୱିତ ଆଶ୍ରମକୁ ଆସିଲେ । ତାଙ୍କର ଧାରଣା ଥିଲା ସାଧନ ଭଜନଦ୍ୱାରା ଈଶ୍ୱରଲାଭ ନ କରି ସମାଜସେବାରେ ବ୍ରତୀ ହେବା ଶ୍ରୀଶ୍ରୀଠାକୁରଙ୍କର ଭାବର ଅନୁକୂଳ ନୁହେଁ । ବ୍ରହ୍ମାନନ୍ଦଜୀ ଏକଥା

ଜାଣିଥିଲେ । ତେଣୁ ତାଙ୍କୁ ଆସିଥିବାର ଦେଖି କେତେଜଣ ଭକ୍ତଙ୍କୁ ତାଙ୍କ ନିକଟକୁ ପଠାଇ ପଚାରିଲେ, ''ମା' କହିଛନ୍ତି ସେବାଶ୍ରମ ଠାକୁରଙ୍କର କାମ । ଠାକୁର ଏଠାରେ ପ୍ରତ୍ୟକ୍ଷ ରହିଛନ୍ତି; ଆପଣଙ୍କ ମତ କଅଣ ?'' ମାଷ୍ଟର ମହାଶୟଙ୍କୁ ଦେଖି ସମସ୍ତେ ଏକ ସଙ୍ଗେ ପ୍ରଶ୍ନ କରିବାକୁ ଲାଗିଲେ; ମହାରାଜ ମଧ୍ୟ ସେଥିରେ ଯୋଗ ଦେଲେ । ମାଷ୍ଟର ମହାଶୟ ହସି ହସି କହିଲେ, ''ଆଉ ଅସ୍ୱୀକାର କରିବାର ଉପାୟ ନାହିଁ ।''

ବ୍ରହ୍ମାନନ୍ଦଜୀ ପ୍ରତିଦିନ ସକାଳେ ଭ୍ରମଣ ପାଇଁ ବାହାରି ଲକ୍ଷ୍ମୀ-ନିବାସକୁ ଯାଉଥିଲେ ଏବଂ ଗୋଲାପ-ମା'ଙ୍କୁ ଶ୍ରୀମା'ଙ୍କ କୁଶଳପ୍ରଶ୍ନାଦି କରୁଥିଲେ ଓ ଛୋଟ ପିଲାଙ୍କ ପରି ଥଟ୍ଟା କରୁଥିଲେ । ଦିନେ ସକାଳେ ମହାରାଜ ଉପସ୍ଥିତ ହେବାରୁ ଗୋଲାପ-ମା' ଉପର ବାରଣ୍ଡାରୁ କହିଲେ, ''ରାଖାଲ, ମା' ପଚାରୁଛନ୍ତି, ଆଗେ ଶକ୍ତିପୂଜା କରିବାକୁ ହୁଏ କାହିଁକି ?'' ମହାରଜା ଉତ୍ତର ଦେଲେ, ''ମା'ଙ୍କ ନିକଟରେ ଯେ ବ୍ରହ୍ମଜ୍ଞାନର ଚାବି । ମା' କୃପା କରି ଏ ଦୁଆର ନ ଖୋଲିଲେ ଆଉ ଉପାୟ ନାହିଁ ।'' ଏହା କହି ସେ ବାଉଲ ସ୍ୱରରେ (ବୁଲା ବାବାଜୀଙ୍କ ସଙ୍ଗୀତ) ଗୀତ ଗାଇଲେ —

''ଶଙ୍କରୀ ଚରଣେ ମନ ମଗ୍ନ ହୋଇ ରହରେ ।
ମଗ୍ନ ହୋଇ ରହରେ, ସବୁ ଯନ୍ତ୍ରଣା ଘୁଞ୍ଚାଅରେ ॥
ଏ ତିନି ସଂସାର ମିଛ, ମିଛେ ଭ୍ରମି ବୁଲରେ ।
କୁଳକୁଣ୍ଡଳିନୀ ବ୍ରହ୍ମମୟୀଙ୍କୁ ଅନ୍ତରେ ଚିନ୍ତରେ ॥
କମଳାକାନ୍ତର ବାଣୀ, ଶ୍ୟାମା ମା'ଙ୍କ ଗୁଣ ଗାଅରେ ।
ଏ ତ ସୁଖର ନଦୀ, ନିରବଧି ଧୀରେ ଧୀରେ ବାହରେ ॥''

ଗୀତ ଗାଉ ଗାଉ ସେ ଭାବୋନ୍ମତ୍ତ ହୋଇ ନୃତ୍ୟ କରିବାକୁ ଲାଗିଲେ ଏବଂ ଗୀତ ଶେଷ ହେବାରୁ, ହୋ, ହୋ, କହି ସବେଗରେ ଚାଲିଗଲେ । ଏହି ଅପୂର୍ବ ଭାବ ଓ ନୃତ୍ୟ ଦେଖି ଶ୍ରୀମା' ଆନନ୍ଦ ପ୍ରକାଶ କରିଥିଲେ ।

କାଶୀଧାମରେ ବିଭିନ୍ନ ଦେବଦେବୀ-ଦର୍ଶନ ପାଇଁ ଶ୍ରୀମା' ମଝିରେ ମଝିରେ ବାହାରୁଥିଲେ । ଦିନେ ତିଳଭାଣ୍ଡେଶ୍ୱର ଶିବଙ୍କୁ ଦେଖି କହିଲେ, ''ଏହା ସ୍ୱୟମ୍ଭୁ ଲିଙ୍ଗ ।'' ପରେ ସଂଧ୍ୟାବେଳେ କେଦାରନାଥ ମନ୍ଦିରକୁ ଯାଇ ଗଙ୍ଗା ଦର୍ଶନ କଲେ ଓ ସଂନ୍ଧ୍ୟାଳତି ଦେଖିଲେ । ଶ୍ରୀମା'ଙ୍କ ମତରେ ଏହି କେଦାର ଓ ହିମାଳୟର କେଦାର ଏକ । ଏ ବଡ଼ ଜାଗ୍ରତ ଦେବତା । ଏହାଙ୍କୁ ଦର୍ଶନ କଲେ ହିମାଳୟ କେଦାର ଦର୍ଶନର ଫଳ ହୁଏ । ଶ୍ରୀମା' ସାରନାଥ ମଧ୍ୟ ଦେଖିବାକୁ ଯାଇଥିଲେ । ସ୍ୱାମୀଜୀଙ୍କ ପାଶ୍ଚାତ୍ୟ ଶିଷ୍ୟ ମିସ୍ ମ୍ୟାକ୍‌ଲାଉଡ୍ ମଧ୍ୟ ସେତେବେଳେ କାଶୀରେ ଥିଲେ ଏବଂ ଶ୍ରୀମା'ଙ୍କ ପାଇଁ ବଡ଼ ଫିଟନ୍ (ବଡ଼ ଘୋଡ଼ାଗାଡ଼ି) ବ୍ୟବସ୍ଥା କରିଥିଲେ । ସାରନାଥରେ ଶ୍ରୀମା' ଯେତେବେଳେ ବୌଦ୍ଧଯୁଗର ସ୍ମୃତିଚିହ୍ନଗୁଡ଼ିକ ଦେଖୁଥିଲେ,

ସେତେବେଳେ କେତେଜଣ ସାହେବ ବିସ୍ମୟ ସହକାରେ ଏହିସବୁ ପ୍ରାଚୀନ କୀର୍ତ୍ତି ନିରୀକ୍ଷଣ କରୁଥିଲେ । ତାହା ଦେଖି ଶ୍ରୀମା' କହିଲେ, ''ଯେଉଁମାନେ କରିଥିଲେ ସେମାନେ ପୁଣି ଆସିଛନ୍ତି ଏବଂ ଦେଖି ଅବାକ୍ ହୋଇ କହୁଛନ୍ତି, 'କିପରି ଆଶ୍ଚର୍ଯ୍ୟ କୀର୍ତ୍ତି ରଖି ଯାଇଛନ୍ତି ।'' ମହାରାଜ ମଧ୍ୟ ଅନ୍ୟ ଗୋଟିଏ ଗାଡ଼ିରେ ଆସିଥିଲେ । ଫେରିବା ସମୟରେ ଶ୍ରୀମା' ଫିଟନ୍ ଗାଡ଼ିରେ ମହାରାଜଙ୍କୁ ବସିବା ପାଇଁ କହିଲେ । କିନ୍ତୁ ମହାରାଜ ରାଜି ହେଲେ ନାହିଁ । ମହାରାଜ ଭଡ଼ାଗାଡ଼ିରେ ଉଠିଲେ । ରାସ୍ତାରେ ଗୋଟିଏ ବାଙ୍କ ବୁଲିବା ସମୟରେ ଗାଡ଼ି ଓଲଟି ଗଲା, କିନ୍ତୁ ମହାରାଜଙ୍କୁ ବେଶୀ ଆଘାତ ଲାଗିଲା ନାହିଁ । ମହାରାଜ କହିଲେ ''ଭାଗ୍ୟ ଭଲ, ମା' ଏହି ଗାଡ଼ିରେ ବସିନାହାନ୍ତି ।'' ପରେ ମା' ଏ କଥା ଶୁଣି କହିଥିଲେ ''ଏ ବିପଦ ମୋ ଅଦୃଷ୍ଟରେ ଥିଲା, ରାଖାଲ ଜୋର୍ କରି ନିଜ ଉପରକୁ ନେଇଗଲା । ନ ହେଲେ ପିଲାପିଲିଙ୍କର କଅଣ ହୋଇଥାଆନ୍ତା କେଜାଣି ।''

ଶ୍ରୀମା' ଏଥର କାଶୀଧାମରେ ଦୁଇଜଣ ସାଧୁଙ୍କୁ ଦର୍ଶନ କଲେ—ଜଣେ ନାନକପନ୍ଥୀ ସାଧୁ ଏବଂ ଅନ୍ୟ ଜଣକ ଚାମେଲୀ ପୁରୀ । ପ୍ରଥମ ସାଧୁଙ୍କୁ ସେ ଟଙ୍କା ଦେଇ ପ୍ରଣାମ କରି ତାଙ୍କ ପଦଧୂଳି ଗ୍ରହଣ କରିଥିଲେ । ବୃଦ୍ଧ ସନ୍ୟାସୀ ଚାମେଲୀ ପୁରୀଙ୍କୁ ଦର୍ଶନ କରିବା ସମୟରେ ଗୋଲାପ-ମା' ପଚାରିଲେ, ''କିଏ ଖାଇବାକୁ ଦିଅନ୍ତି ?'' ପୁରୀଜୀ ଉତ୍ତରରେ ତେଜ ଓ ବିଶ୍ୱାସ ସହିତ କହିଲେ, ''ଏକ୍ ଦୁର୍ଗାମାଈ ଦେବୀ ହୈ, ଔର କଉନ୍ ଦେଗା ?'' ଉତ୍ତର ଶୁଣି ଶ୍ରୀମା' ଖୁବ୍ ଖୁସି ହୋଇଥିଲେ ଏବଂ ବସାକୁ ଫେରି କହିଥିଲେ, ''ଆହା, ବୃଦ୍ଧ ସନ୍ୟାସୀଙ୍କ ମୁଖ କିପରି ଶିଶୁଭଳି ସରଳ !'' ପରଦିନ ଶ୍ରୀମା' ପୁରୀଜୀଙ୍କ ପାଇଁ କମଳାଲେମ୍ବୁ, ସନ୍ଦେଶ ଓ ଗୋଟିଏ କମ୍ବଳ ପଠାଇଥିଲେ । ଅନ୍ୟାନ୍ୟ ସାଧୁ ଦେଖିବା କଥା ପଡ଼ିବାରୁ ସେ କହିଲେ, ''ଆଉ କଅଣ ସାଧୁ ଦେଖିବି ? ଏଇ ତ ସାଧୁ ଦେଖିଲି—ଆଉ ସାଧୁ କାହାନ୍ତି !'' ପୂର୍ବେ ଶ୍ରୀମା' ଦୁଇଥର କାଶୀକୁ ଆସିଥିଲେ, କିନ୍ତୁ ବେଶୀ ଦିନ ରହି ନ ଥିଲେ । ଏଥର ଦୀର୍ଘକାଳ ରହିବା ସୁଯୋଗରେ ସେ ସମ୍ପୂର୍ଣ୍ଣ 'କାଶୀଖଣ୍ଡ' ଶୁଣିଲେ ଏବଂ ଅଧିକାଂଶ ଦେବଦେବୀଙ୍କୁ ଦର୍ଶନ କଲେ । ଦିନେ ଅଦ୍ୱୈତ ଆଶ୍ରମରେ ରାସଲୀଳା ଅଭିନୀତ ହୋଇଥିଲା । ଶ୍ରୀକୃଷ୍ଣ-ରାଧିକାଙ୍କ ଭୂମିକାରେ ଅଭିନୟ କରିଥିବା ଦୁଇଜଣ ବାଳକକୁ ଟଙ୍କା ସହିତ ପ୍ରଣାମ କଲେ । ମା'ଙ୍କ ଆବାସସ୍ଥଳରେ ପ୍ରତିଦିନ ଅପରାହ୍ଣରେ ସ୍ୱାମୀ ଗିରିଜାନନ୍ଦ ତାଙ୍କୁ ଭାଗବତ ପଢ଼ି ଶୁଣାଉଥିଲେ । ଡିସେମ୍ବର ୩୦ ତାରିଖ ଦିନ ଶ୍ରୀମା'ଙ୍କ ଉପସ୍ଥିତିରେ ଅଦ୍ୱୈତ ଆଶ୍ରମରେ ଆଡ଼ମ୍ବର ସହିତ ତାଙ୍କ ଜନ୍ମତିଥି ପାଳିତ ହେଲା ।

ଶ୍ରୀମା'ଙ୍କ ଜୀବନରେ ଉଚ୍ଚ ଭାବଧାରା ଏବଂ ସାଧାରଣ ପାରିବାରିକ ବ୍ୟବହାର ଏକସଙ୍ଗେ ଏପରିଭାବରେ ଚାଲିଥିଲା ଯେ ସାଧାରଣ ଲୋକଙ୍କ

ପକ୍ଷରେ ଉଭୟଙ୍କୁ ପୃଥକ୍ କରି ତାହାର ତାତ୍ପର୍ଯ୍ୟ ବୁଝିବା ଦୁଃସାଧ୍ୟ ଥିଲା । ଦିନେ କେତେଜଣ ସ୍ତ୍ରୀ-ଭକ୍ତ ଆସି ଦେଖିଲେ, ଶ୍ରୀମା' ରାଧୁ ଇତ୍ୟାଦିଙ୍କୁ ନେଇ ଖୁବ୍ ବ୍ୟସ୍ତ । ଏହି ସଂସାରଲୀଳା ଦେଖି ସେମାନେ କହିପକାଇଲେ, ''ମା', ଆପଣ ଘୋର ମାୟାରେ ବଦ୍ଧ ।' ଅସ୍ପଷ୍ଟ ସ୍ୱରରେ ମା' ଉତ୍ତର ଦେଲେ, ''କଅଣ କରିବି ମା', ମୁଁ ନିଜେ ମହାମାୟା ।'' ଏହି କଥାର ତାତ୍ପର୍ଯ୍ୟ ବୋଧହୁଏ ସେମାନେ ବୁଝି ପାରି ନ ଥିଲେ ।

ଦିନେ କେତେଜଣ ମହିଳା-ଭକ୍ତ ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ ଆସିଥିଲେ । ଶ୍ରୀମା' ବାରଣ୍ଡାରେ ବସି ଥିଲେ, ଗୋଲାପ-ମା' ପ୍ରଭୃତି ପାଖରେ ଥିଲେ । ଗୋଲାପ-ମା'ଙ୍କୁ ଭବ୍ୟା ଓ ପ୍ରାଚୀନ ଦେଖି ଜଣେ ସ୍ତ୍ରୀଲୋକ ତାଙ୍କୁ ଶ୍ରୀମା' ଭାବି ପ୍ରଣାମ କଲେ । ଗୋଲାପ-ମା' ବୁଝିପାରି କହିଲେ, ''ସେଠାରେ ଶ୍ରୀମା' ବସିଛନ୍ତି ।'' ମହିଳା ଭାବିଲେ ଗୋଲାପ-ମା' ରହସ୍ୟ କରୁଛନ୍ତି । ଗୋଲାପ-ମା' ପୁନର୍ବାର କହିବାରୁ ସେ ଶ୍ରୀମା'ଙ୍କୁ ପ୍ରଣାମ କରିବାକୁ ଗଲେ; ଶ୍ରୀମା' କିନ୍ତୁ ଥଟ୍ଟା କରି କହିଲେ, ''ନା, ନା, ସେ ଶ୍ରୀମା' ।'' ସ୍ତ୍ରୀ-ଲୋକମାନେ ଏକ ବିରାଟ ସମସ୍ୟାରେ ପଡ଼ିଲେ । ତାଙ୍କର ଭ୍ରମ ଦୂର ହୋଇନାହିଁ ଦେଖି ଗୋଲାପ-ମା' ତାଙ୍କୁ ତୀବ୍ର ସ୍ୱରରେ କହିଲେ, ''ତୁମର କ'ଣ ବୁଦ୍ଧି ବିବେଚନା ନାହିଁ । ମଣିଷ କି ଦେବତା — ମୁହଁ ଦେଖି ବୁଝିପାରୁନ ? ମଣିଷର ଚେହେରା କଅଣ ଏପରି ହୁଏ ?'' ବାସ୍ତବିକ ଶ୍ରୀମା'ଙ୍କ ସରଳ ଓ ପ୍ରସନ୍ନ ଦୃଷ୍ଟିରେ ଏପରି ଗୋଟିଏ ବୈଶିଷ୍ଟ୍ୟ ଥିଲା, ଯାହା ସ୍ୱତଃ ନିଜ ଅସାଧାରଣତ୍ୱକୁ ପ୍ରକାଶ କରୁଥିଲା । କିନ୍ତୁ ଯେଉଁମାନଙ୍କର ମନ ନିମ୍ନଦୃଷ୍ଟି ସେମାନେ ତାହା ଦେଖିବେ କିପରି ?

ଶ୍ରୀମା' ମାଘମାସ ୨ତାରିଖରେ କାଶୀରୁ ଯାତ୍ରା ଆରମ୍ଭ କରି, ପରଦିନ କଲିକତାରେ ପହଞ୍ଚିଲେ ଏବଂ ସେଠାରେ ମାସାଧିକ କାଳ ଅବସ୍ଥାନ କରି ଫାଲ୍‌ଗୁନ ମାସ ୧୧ ତାରିଖ ଦିନ ଜୟରାମବାଟୀ ଅଭିମୁଖେ ଯାତ୍ରା କଲେ । ଏହା ତାଙ୍କର ଶେଷ ତୀର୍ଥଦର୍ଶନ । ତାଙ୍କ ମର୍ତ୍ତ୍ୟଲୀଳାର ଅବଶିଷ୍ଟ ସମୟ ଜୟରାମବାଟୀ ଓ କଲିକତାରେ ଅତିବାହିତ ହୋଇଥିଲା ।

## ପଲ୍ଲୀଗ୍ରାମରେ

ବିଷ୍ଣୁପୁରରେ ରେଲ୍‌ଲାଇନ୍ ପ୍ରସ୍ତୁତ ହେବା ପରଠାରୁ ଶ୍ରୀମା' ଏହି ପଥଦେଇ ଗାଁକୁ ଯିବା ଆସିବା କରୁଥିଲେ । ପ୍ରଥମେ ବିଷ୍ଣୁପୁରରେ କେହି ପରିଚିତ ନ ହେବାରୁ ସେ ପୋକାବନ୍ଧ ବା ଲାଲବନ୍ଧ ନାମକ ବିଶାଳ ଦୀର୍ଘିକା ଦ୍ୱୟର ତୀରରେ ବିଶ୍ରାମ କରୁଥିଲେ ଏବଂ ଚଟିରେ ରୋଷେଇବାସ ହେଉଥିଲା । ସ୍ୱାମୀଜୀଙ୍କ ଶିଷ୍ୟ ସ୍ୱାମୀ ସଦାନନ୍ଦ ୧୯୦୮ ଖ୍ରୀଷ୍ଟାବ୍ଦରେ ବିଷ୍ଣୁପୁରରେ ସୁରେଶ୍ୱର ସେନଙ୍କ ଘରେ ଦୁଇମାସ ରହିଥିଲେ ଏବଂ ତାଙ୍କ ସଂସ୍ପର୍ଶରେ ଆସି ପରିବାରର ସମସ୍ତେ ଶ୍ରୀରାମକୃଷ୍ଣଙ୍କ

ଭାବଧାରା ଗ୍ରହଣ କରିଥିଲେ । ଏହା ପରଠାରୁ ବିଷ୍ଣୁପୁର ଦେଇ ଯିବାଆସିବା ବେଳେ ଶ୍ରୀମା' ଏହି ଘରେ କିଛି ସମୟ ବିଶ୍ରାମ କରି ଯାଉଥିଲେ । ଥରେ ଶ୍ରୀଶ୍ରୀଠାକୁର ଶ୍ରୀମା'ଙ୍କୁ କହିଥିଲେ, ''ବିଷ୍ଣୁପୁର ଗୁପ୍ତ ବୃନ୍ଦାବନ, ତୁମେ ଦେଖିବାକୁ ଯିବ ।'' ଶ୍ରୀମା' ସେତେବେଳେ ଚିନ୍ତା କରି ନ ଥିଲେ ଯେ ଦିନେ ବିଷ୍ଣୁପୁର ତାଙ୍କ ଯିବା ଆସିବାରେ ପ୍ରଧାନ ରାସ୍ତାରେ ପରିଣତ ହେବ । ତେଣୁ ଏହି କଥାରେ ସନ୍ଦେହ ପ୍ରକାଶ କରିଥିଲେ; କିନ୍ତୁ ଠାକୁର ପୁନର୍ବାର କହିଲେ, ''ନା ଗୋ, ଦେଖିବ ।'' ଥରେ ବିଷ୍ଣୁପୁର ଦେଇ ଯିବା ସମୟରେ ଲାଲବନ୍ଧ ତୀରରେ ବସି ଶ୍ରୀମା' କହିଥିଲେ, ''ଠାକୁରଙ୍କ କଥା ଆଜି ସତ୍ୟ ହେଲା'' ବିଷ୍ଣୁପୁର ବର୍ତ୍ତମାନ ହତଶ୍ରୀ ହୋଇ ସୁଦ୍ଧା ପ୍ରାଚୀନ ଧର୍ମପ୍ରାଣ ରାଜାମାନଙ୍କର ବହୁ କୀର୍ତ୍ତି ନିଜ ଅଙ୍ଗରେ ଧାରଣ କରି ତାହାର ସ୍ଥାପତ୍ୟମୟ ଶିଳ୍ପର ଗୌରବ ସ୍ମରଣ କରାଇ ଦିଏ । ଶ୍ରୀମା' ଏହିସବୁ କୀର୍ତ୍ତି ଦେଖି ବିଶେଷ ଆନନ୍ଦିତ ହୋଇଥିଲେ ।

୧୯୧୩ ଖ୍ରୀଷ୍ଟାବ୍ଦରେ କାଶୀରୁ ଫେରି ଶ୍ରୀମା' ଜୟରାମବାଟୀକୁ ଗଲେ । ବିଷ୍ଣୁପୁରଠାରୁ ଦୀର୍ଘ ପଥ ଶଗଡ଼ରେ ବସି ଯିବାରୁ ଶ୍ରୀମା'ଙ୍କ ଗୋଡ଼ ପ୍ରାୟ କୋଲ ମାରି ଯାଇଥିଲା । ତାଙ୍କୁ ଧରାଧରି କରି ଶଗଡ଼ଗାଡ଼ିରୁ ଓହ୍ଲାଇଲେ । ପୋଖରୀରେ ଗାଧୋଇ ଆସି ଶ୍ରୀମା' ପୂଜାରେ ବସିଲେ । ଭକ୍ତ କେଦାରବାବୁ ଶ୍ରୀମା'ଙ୍କୁ କହିଲେ, ''ମା, ଆପଣଙ୍କ ସବୁ ସନ୍ତାନ ବିଦ୍ୱାନ—କେବଳ ଆମେ କେତୋଟି ଆପଣଙ୍କର ମୂର୍ଖ ସନ୍ତାନ ।'' ଶ୍ରୀମା' କହିଲେ, ''ସେ କି କଥା ? ଠାକୁର ମଧ୍ୟ ବିଶେଷ ଲେଖାପଢ଼ା ଜାଣି ନ ଥିଲେ । ଭଗବାନଙ୍କଠାରେ ମତି ହେବା ସାର କଥା । ତୁମମାନଙ୍କଦ୍ୱାରା ଦେଶର ଅନେକ କାମ ହେବ । ଏହି ଆଶ୍ରମର ପିଲାମାନେ କେତେ କାମ କରୁଛନ୍ତି । ଭାବନା କଅଣ ? ଏଥର ଠାକୁର ଆସିଛନ୍ତି ଧନୀ-ନିର୍ଦ୍ଧନ, ପଣ୍ଡିତ-ମୂର୍ଖ, ସମସ୍ତଙ୍କୁ ଉଦ୍ଧାର କରିବା ପାଇଁ । ମୁଁ ତୁମମାନଙ୍କୁ ସ୍ନେହ କରେ—ତୁମେମାନେ ମୋର ଆପଣାର ଲୋକ ।'' ଆହାରାଦି ପରେ ଅଳ୍ପ ବିଶ୍ରାମ କରି ଶ୍ରୀମା' ପାଲିଙ୍କିରେ ବସି ଜୟରାମବାଟୀକୁ ଗଲେ ।

ସେତେବେଳେ ଜୟରାମବାଟୀରେ ଖୁବ୍ ମ୍ୟାଲେରିଆ ଓ ଆମାଶୟ ରୋଗର ପ୍ରକୋପ । ଆନୁଡ଼ ଡାକଘରୁ ସପ୍ତାହକୁ ଦୁଇଦିନ ଚିଠି ଦିଆନିଆ ହୁଏ । ଆମୋଦର ନଦୀରେ ବନ୍ୟା ଯୋଗୁଁ କିଛିଦିନ ପାଇଁ ଡାକ ଯିବା ଆସିବା ବନ୍ଦ ହୋଇଗଲା । ଦୀର୍ଘକାଳ ସମ୍ବାଦ ନ ପାଇ ଉତ୍କଣ୍ଠିତ ହୋଇ ସ୍ୱାମୀ ସାରଦାନନ୍ଦଜୀ କଲିକତାରୁ ଲୋକ ପଠାଇଲେ । ଶ୍ରୀମା' ସେତେବେଳେ ଆମାଶୟ ରୋଗରେ ଆକ୍ରାନ୍ତ । ଏହି ସମ୍ବାଦ ପାଇ ତାଙ୍କ ଚିକିତ୍ସା ପାଇଁ ଡାକ୍ତର କାଞ୍ଜିଲାଲ ଓ ନିବେଦିତା ବିଦ୍ୟାଳୟର ସୁଧୀରାଦେବୀ ଜୟରାମବାଟୀକୁ ଆସିଲେ । ତାଙ୍କ ସହିତ ଦୁଇଜଣ ମହିଳା-ଭକ୍ତ ମା'ଙ୍କ ସେବାପାଇଁ ଆସିଥାଆନ୍ତି । ଏମାନଙ୍କର ସେବାଯତ୍ନରେ ଶ୍ରୀମା' ଶୀଘ୍ର ନିରାମୟ ହେଲେ, କିନ୍ତୁ ଏତେ ଲୋକ ରହିବାର ଉପଯୁକ୍ତ ବ୍ୟବସ୍ଥା

କରିବା ଗୋଟିଏ ସମସ୍ୟା । ବର୍ଷାଦିନେ ପଲ୍ଲୀର ରାସ୍ତା ନଗରବାସୀଙ୍କ ପକ୍ଷରେ ବ୍ୟବହାର ଯୋଗ୍ୟ ନୁହେଁ । ପନିପରିବା କିଛି ମିଳେ ନାହିଁ । ଶ୍ରୀମା'ଙ୍କ ଅନୁରୋଧରେ କୋଆଲପଡ଼ା ଆଶ୍ରମବାସୀମାନେ ପ୍ରତିଦିନ ଦୁଇଓଳି ପନିପରିବା ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଆଣୁଥିଲେ ଓ ଜୟରାମବାଟୀରେ ରହି କାମଦାମ କରୁଥିଲେ ।

ମା' ସୁସ୍ଥ ହୋଇଯିବାରୁ ଡାକ୍ତର କାଞ୍ଜିଲାଲ କଲିକତା ଫେରିଗଲେ । ଏବେ ପାଣିରେ ତିନ୍ତିବୁଡ଼ି ଅତ୍ୟଧିକ ପରିଶ୍ରମ କରିଥିବାରୁ କୋଆଲପଡ଼ା ଆଶ୍ରମବାସୀମାନେ ସମସ୍ତେ ଜ୍ୱରରେ ପଡ଼ିଲେ । ଆଠ ଦଶଦିନ ହେଲା କୌଣସି ଖବର ନାହିଁ । ଶ୍ରୀମା' ଭାବିଲେ ହୁଏତ ସମସ୍ତେ ଅସୁସ୍ଥ ହୋଇପଡ଼ିଛନ୍ତି । ଜଣେ ସ୍ତ୍ରୀଲୋକକୁ ପଠାଇ ଜାଣିଲେ ଯେ ବାସ୍ତବିକ ସେମାନେ ଜ୍ୱରରେ ପଡ଼ିଛନ୍ତି । ଶ୍ରୀମା' ଆଶ୍ରମାଧ୍ୟକ୍ଷଙ୍କର କୃପଣତା କଥା ଜାଣିଥିଲେ, ତେଣୁ ଚିନ୍ତିତ ହୋଇ ଚିଠି ଲେଖିଲେ, ''ଶ୍ରୀମାନ୍ କେଦାର, ସେହି ଆଶ୍ରମରେ ମୁଁ ଠାକୁରଙ୍କୁ ପ୍ରତିଷ୍ଠିତ କରିଛି । ଠାକୁର ଉଷୁନା ଭାତ ଖାଉଥିଲେ; ତେଣୁ ମୁଁ କହୁଛି, ଠାକୁରଙ୍କୁ ଉଷୁନା ଭାତ ଓ ଅନ୍ତତଃପକ୍ଷେ ତିନି ପ୍ରକାରର ଭୋଗ ନିଶ୍ଚୟ ଦେବ । ଏତେ କଠୋରତା କଲେ ପିଲାମାନେ ମ୍ୟାଲେରିଆ କବଳରୁ ବଞ୍ଚିବେ କିପରି ?''

କଲିକତାରୁ ଫେରି ଆସି ଶ୍ରୀମା' ପରବର୍ଷ ଚିଠି ଲେଖିଲେ, ''ତୁମେମାନେ ଯଦି କୋଆଲପଡ଼ାରେ ମୋ ପାଇଁ ଗୋଟିଏ ଘର ତିଆରି କରିବ, ତା' ହେଲେ ଗାଁକୁ ଯିବା ପଥରେ ସେଠାରେ ମଧ୍ୟ କିଛି ଦିନ ରହିଯିବି । ଜୟରାମବାଟୀରେ ଭାଇମାନଙ୍କ ସଂସାରର ସମସ୍ୟା ଦିନକୁ ଦିନ ବଢ଼ୁଛି; ସେହି ଯନ୍ତ୍ରଣା ଆଉ ସହି ହେଉନାହିଁ ।'' ଚିଠି ପାଇ ଆଶ୍ରମର କର୍ମୀମାନେ ଉତ୍ସାହର ସହିତ କେଦାରବାବୁଙ୍କ ଜମି ଉପରେ ଶ୍ରୀମା'ଙ୍କ ପାଇଁ ଗୋଟିଏ ଘର ତିଆରି କଲେ । ତିନୋଟି ବଖରା । ଘରଟି ଶୀଘ୍ର ପ୍ରସ୍ତୁତ ହୋଇଗଲା । ଏହି ଘର 'ଜଗଦମ୍ବା ଆଶ୍ରମ' ନାମରେ ପରିଚିତ ।

୧୯୧୫ ଖ୍ରୀଷ୍ଟାବ୍ଦ ବୈଶାଖ ମାସରେ ଜୟରାମବାଟୀକୁ ଯିବା ପଥରେ ଶ୍ରୀମା' ଏହି ନୂତନ ଘରଟି ଦେଖିଗଲେ । କିନ୍ତୁ ସେଥର ରହିପାରିଲେ ନାହିଁ । ତିନିମାସ ପରେ କୋଆଲପଡ଼ାକୁ ଆସିବା ସ୍ଥିର ହେଲା । ସେତେବେଳେ ଶ୍ରାବଣମାସ । ସକାଳୁ ଅବିରାମ ବର୍ଷା ଚାଲିଛି । ଆଶ୍ରମବାସୀମାନେ ଚିନ୍ତିତ ହେଲେ, ଏହି ସମୟରେ ଶ୍ରୀମା'ଙ୍କୁ ଆଣିବାକୁ ଯିବା ଠିକ୍ ହେବ କି ନାହିଁ । ଶେଷରେ ସତ୍ୟରକ୍ଷା ପାଇଁ ଗଲେ— ଆସିବା ନ ଆସିବା ମା'ଙ୍କର ଇଚ୍ଛା । ଏହି ଦୁର୍ଯୋଗରେ କୌଣସି ପ୍ରକାରେ ପାଲିଙ୍କି ନେଇ ଅପରାହ୍ନ ଚାରିଟା ସମୟରେ ଜୟରାମବାଟୀରେ ପହଞ୍ଚିଲେ । କାଳୀମାମୁଁ ଗର୍ଜି ଉଠିଲେ, ''ତୁମେମାନେ ଦେଈଙ୍କର ଭାରୀ ଭକ୍ତ ହୋଇଛ ? ଯୋଗେନ୍ ମହାରାଜ କିପରି ସେବା କରୁଥିଲେ ଶରତ ମହାରାଜ କେତେ ସାବଧାନରେ ସବୁ କାମ କରନ୍ତି—ସେମାନଙ୍କ

କିପରି ଭକ୍ତି ! ଆଉ ତୁମେମାନେ ଆସିଛ ଏଇ ଘୋର ବର୍ଷା ଭିତରେ !'' ଶ୍ରୀମା' ସବୁ ଶୁଣୁଥିଲେ ଓ ଭକ୍ତମାନଙ୍କୁ ଚାହିଁ ମୁରୁକି ମୁରୁକି ହସୁଥିଲେ । ଜଣେ ଭକ୍ତ ଭରସା କରି କହିଲେ, ''ଆଜି ପାଲିଙ୍କି ଆଣିବାର କଥା ଥିଲା, ତେଣୁ କେବଳ ସତ୍ୟରକ୍ଷା ପାଇଁ ଆସିଛୁ ।'' ମା' ହସି ହସି କହିଲେ, ''ତୁମେମାନେ କଥା ରଖିପାର—ଆଉ ମୁଁ ପାରିବି ନାହିଁ ? ମୋତେ ବର୍ତ୍ତମାନ ନେଇ ଚାଲ । ରାଧୁ ଇତ୍ୟାଦି ସେମାନେ ପରେ ଆସିବେ ।'' କିନ୍ତୁ ଭକ୍ତମାନେ ରାଜି ହେଲେ ନାହିଁ । କହିଲେ, ''ତାହା କିପରି ସମ୍ଭବ ? ଆମେ ଆପଣଙ୍କୁ କ'ଣ ବର୍ଷାରେ ଭିଜାଇ ଅସୁସ୍ଥ କରିବୁ !'' ପାଲିଙ୍କି ରାତିର ଅନ୍ଧାରରେ ଫେରିଗଲା । ମାସେ ପରେ ଶ୍ରୀମା' ରାଧୁ ଇତ୍ୟାଦିଙ୍କୁ ନେଇ ଏହି ନୂଆ ଘରେ ପନ୍ଦର ଦିନ କାଳ ରହିଥିଲେ ।

ଜଗଦ୍ଧାତ୍ରୀ ପୂଜା ସମୟରେ ଶ୍ରୀମା' ଅସୁସ୍ଥ ହୋଇ ପଡ଼ିବାରୁ ଜଣେ ବାଳକ-ଭକ୍ତଙ୍କୁ ଭଣ୍ଡାରଘରର କାମ କରିବାକୁ ପଡ଼ିଲା । ପିଲାଟି ଅବ୍ରାହ୍ମଣ; ତେଣୁ ମା' ତାକୁ ସାବଧାନ କରାଇ ଦେଲେ । ଏହିସବୁ ଅଞ୍ଚଳରେ ସାମାଜିକ ବିଧିନିୟମ ଖୁବ୍ କଠୋର ଥିଲା । ଥରେ ଭଗିନୀ ନିବେଦିତା ଜୟରାମବାଟୀରେ ରୋଷଇ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଶ୍ୟାମାସୁନ୍ଦରୀ ଦେବୀ କହିଥିଲେ, ''ନା, ସେ କଥାଟି କୁହ ନାହିଁ । ତୁମେ ଆମ ରୋଷଇ ଘରେ ପଶିଲେ, ଗାଁର ଲୋକମାନେ ଆମମାନଙ୍କୁ ଏକଘରିକିଆ କରିଦେବେ ।'' ଥରେ ଜଗଦ୍ଧାତ୍ରୀ ପୂଜା ସମୟରେ ମଝିଆ ମାମୁଁ ପ୍ରସାଦ ପରିବେଷଣ କରୁଥିଲେ । ସେତେବେଳେ ଜଣେ ସନ୍ନ୍ୟାସୀ ହୋମର ବିଭୂତି ତାଙ୍କ ମୁଣ୍ଡରେ ଲଗାଇ ଦେବାରୁ ବ୍ରାହ୍ମଣବଂଶୀୟ ଗ୍ରାମର ଜମିଦାରବାବୁମାନେ ଏହି ଅନାଚାରର ପ୍ରତିବାଦରେ ଏବଂ ଜାତିନାଶ ହେବା ଭୟରେ ଅର୍ଦ୍ଧଭୁକ୍ତ ଅବସ୍ଥାରେ ଉଠିଗଲେ । ଶ୍ରୀମା'ଙ୍କ ବହୁ ଅନୁରୋଧ ସତ୍ତ୍ୱେ ଆଉ ବସିଲେ ନାହିଁ, ଅଧିକନ୍ତୁ ପଚିଶ ଟଙ୍କା ଅର୍ଥଦଣ୍ଡ ଆଦାୟ କଲେ । ପରେ ଶ୍ରୀମା'ଙ୍କ ଶିଷ୍ୟ ଶ୍ରୀଲଳିତମୋହନ ଚଟ୍ଟୋପାଧ୍ୟାୟ ଜୟରାମବାଟୀକୁ ଆସି ଏ କଥା ଶୁଣିଲେ । ସେ ସାଙ୍ଗରେ ଗ୍ରାମୋଫୋନ୍ ଆଣିଥିଲେ ଏବଂ ଗ୍ରାମବାସୀମାନଙ୍କୁ ତାହା ବଜାଇ ଶୁଣାଉଥିଲେ । ଗାଁଗଣ୍ଡାରେ ତାହା ଏକ ନୂଆ ଜିନିଷ, ସୁତରାଂ ଦଣ୍ଡ ଆଦାୟକାରୀ ଜମିଦାରମାନେ ମଧ୍ୟ ତାହା ଶୁଣିବାକୁ ଆସିଥିଲେ । ପ୍ରତିଶୋଧ ନେବାର ଉତ୍ତମ ସୁଯୋଗ ପାଇ ବୀରଭକ୍ତ ଅଗ୍ନିମୂର୍ତ୍ତି ଧାରଣ କଲେ ଏବଂ ଭୟ ଦେଖାଇ କହିଲେ ଯେ ଟଙ୍କା ଫେରାଇ ନ ଦେଲେ ସେ ସେମାନଙ୍କୁ ଗୁଳିକରି ମାରିଦେବେ । ଏହି ଧମକରେ ଡରିଯାଇ ସେମାନେ ତତ୍‌କ୍ଷଣାତ୍ ଟଙ୍କା ଫେରାଇ ଦେଲେ । ଏହି ଅଦ୍ଭୁତ କୀର୍ତ୍ତି ପାଇଁ ଲଳିତବାବୁ ଭକ୍ତ ମହଲରେ 'କାଇଜର୍' ଆଖ୍ୟା ପାଇଥିଲେ ।

ସାମାଜିକ କ୍ଷେତ୍ରରେ ଶ୍ରୀମା' ପଲ୍ଲୀଗ୍ରାମର ଏହି ଜାତୀୟ ସଙ୍କୀର୍ଣ୍ଣତାକୁ ମାନି ନେଲେ ସୁଦ୍ଧା ଭକ୍ତମାନଙ୍କ ସହିତ ବ୍ୟକ୍ତିଗତ ବ୍ୟବହାର କାଳରେ ଏହିସବୁ

କୃତ୍ରିମତାକୁ ଯଥାସମ୍ଭବ ଅସ୍ୱୀକାର କରି ଚଳୁଥିଲେ । ସେ ତିନିଦିନ ଦେବୀପ୍ରତିମା ରଖି ପୂଜା କରୁଥଲେ ଏବଂ ମଣ୍ଡପକୁ ଯାଇ ଅଞ୍ଜଳି ପ୍ରଦାନ କରୁଥିଲେ । ତୃତୀୟ ଦିନ (ଏକାଦଶୀ) ରାତିରେ ସାଧୁ ବ୍ରହ୍ମଚାରୀମାନେ ଦେବୀସଙ୍ଗୀତ ଗାଉଥିଲେ— ''ମା'ଙ୍କୁ ଦେଖିବ ବୋଲି ଭାବନା ଆଉ କେହି ନ କର । ସେ ଯେ ତୁମର ଆମର ମା' ନୁହନ୍ତି, ଜଗତର ମା' ସର୍ବକାର ।'' ଏହି ଗୀତଟି ବାରମ୍ବାର ଗାଇ ଆନନ୍ଦ-ସାଗରରେ ଯେତେବେଳେ ସେମାନେ ଭାସିବାକୁ ଲାଗିଲେ, ଶ୍ରୀମା' ସେତେବେଳେ କୋଆଲପଡ଼ାର ଭକ୍ତବାଳକଙ୍କୁ କହିଲେ, ''ଆହା, ଗୀତଟି ବେଶ୍ ଜମିଥିଲା । ଭକ୍ତଙ୍କର ପୁଣି ଜାତି ! ସବୁ ସନ୍ତାନ ସମାନ । ମୋର ଇଚ୍ଛା ହୁଏ ସମସ୍ତଙ୍କୁ ଏକାଠି ବସାଇ ଖୁଆନ୍ତି । ତେବେ ଏହି ପୋଡ଼ା ଦେଶରେ ଜାତିର ଭାରୀ ବଡ଼ାଇ । ଯାହା ହେଉ, ମୁଢ଼ି ଖାଇବାରେ ଦୋଷ ନାହିଁ । କାଲି ଗୋଟିଏ କାମ କର—ଖୁବ୍ ବଡ଼ିଭୋରରୁ କାମାରପୁକୁରକୁ ଯାଇ ସତ୍ୟଗୁଡ଼ିଆ ଦୋକାନରୁ ବଡ଼ ବଡ଼ ଜିଲାପି ଦୁଇସେର ନେଇ ଆସିବ ।'' ପରଦିନ ସକାଳ ୯ଟା ବେଳକୁ ଜିଲାପି ଆସିଲା । ଶ୍ରୀମା' ତାହା ଠାକୁରଙ୍କ ନିକଟରେ ନିବେଦନ କରି ଗୋଟିଏ ବଡ଼ ଥାଳିରେ ପ୍ରଚୁର ମୁଢ଼ି ରଖି ତାହାର ଚାରିପାଖରେ ଜିଲାପି ସଜାଇ ଦେଲେ । ପରେ ସେ ଥାଳିକୁ ଭକ୍ତମାନଙ୍କ ନିକଟକୁ ପଠାଇଦେଲେ ଏବଂ ତାହା ସେମାନେ ଯେତେବେଳେ ଅତି ଆନନ୍ଦରେ ଖାଉଥିଲେ ସେ ପାଖ ଘରେ ଛିଡ଼ା ହୋଇ ସ୍ନେହ ସହକାରେ ଦେଖିବାକୁ ଲାଗିଲେ ।

କ୍ରମେ ଗ୍ରାମର ଲୋକମାନେ ମଧ୍ୟ ଜାଣିପାରିଲେ ଯେ, ଶ୍ରୀମା'ଙ୍କ ଭକ୍ତମାନେ ଗୋଟିଏ ବିଶେଷ ସ୍ତରର ଲୋକ । ଦିନେ ସେ ଘରର ସଦର ଦରଜା ସମ୍ମୁଖସ୍ଥ ପଥର ଉପରେ ବସିଛନ୍ତି, ସମ୍ମୁଖରେ ଅନେକ ଗୁଡ଼ିଏ ପିଲା ଖେଳୁଛନ୍ତି । ଦୂର ଦେଶରୁ ଆସିଥିବା କେତେଜଣ ନୂତନ ଭକ୍ତ ପିଲାମାନଙ୍କ ପାଖଦେଇ ଚାଲିଗଲେ । ଗୋଟିଏ ବାଳକ ସଙ୍ଗୀମାନଙ୍କୁ ପଚାରିଲା, ''ସେମାନେ କିଏ ?'' ସେଥିମଧ୍ୟରୁ ଜଣେ ପିଲା ବିଜ୍ଞ ପରି ଉତ୍ତର ଦେଲା, ''କାହିଁକି ? ସେମାନେ ସବୁ ଭକ୍ତ ! ତୁ ଜାଣିନୁ ?'' ସେମାନଙ୍କ ଜାତି ବିଷୟରେ ପ୍ରଶ୍ନ କରିବାରୁ ବିଜ୍ଞ ବାଳକଟି ଉତ୍ତର ଦେଲା, ''କାହିଁକି,ଜାଣିନୁ ?—ସେମାନ ଭକ୍ତ ।'' ମା' ଶୁଣି କହିଲେ, ''ଦେଖ, ପିଲାମାନଙ୍କ ମୁହଁରୁ ଅନେକ ସମୟରେ ଯାହା ବାହାରେ, ସବୁ ଠିକ୍ କଥା, ସବୁ ଠିକ୍ । ସେମାନ ବୁଝିଛନ୍ତି ଯେ ଭକ୍ତମାନଙ୍କର ଗୋଟିଏ ଜାତି ।''

ଏହି ସମୟରେ ପୂଜନୀୟା ଗୌରୀ-ମା' ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ କୋଆଲପଡ଼ା ଦେଇ ଜୟରାମବାଟୀକୁ ଆସିଲେ । କୋଆଲପଡ଼ାରୁ ସେ ବ୍ରହ୍ମଚାରୀ ବରଦାଙ୍କୁ ସାଙ୍ଗରେ ଆଣିଥିଲେ । ଆମୋଦର ତୀରକୁ ଆସି ଟିକିଏ ବିଶ୍ରାମ କରୁଛନ୍ତି, ଏପରି ସମୟରେ ତାଙ୍କ ମନରେ ଗୋଟିଏ ଖିଆଲ ଉଠିଲା । ସନ୍ଧ୍ୟା ସମୟରେ ମା'ଙ୍କ ଘରେ ପହଞ୍ଚି ସେ ବରଦା ମହାରାଜଙ୍କୁ ଟିକିଏ ଅପେକ୍ଷା

କରିବାକୁ କହି ମୁଣ୍ଡରେ ପଗଡ଼ି ବାନ୍ଧି ଘର ଭିତରକୁ ପଶିଲେ ଓ ଭିକାରୀମାନଙ୍କୁ ଅନୁକରଣ କରି କହିଲେ, ''ମା' ଦୁଇଟି ଭିକ୍ଷା ଦିଅ, ମା !'' ଛୋଟ ମାଈଁ ବାରଣ୍ଡାକୁ ବାହାରି ଆସି ପଚାରିଲେ, ''କିଏ ଗୋ ?'' ଗୌରୀ–ମା' ପୁଣି କରୁଣ ସ୍ୱରରେ କହିଲେ, ''ଦୁଇଟି ଭିକ୍ଷା ଦିଅ ମା' !'' ଏହି ଅସମୟରେ ଘର ଭିତରେ ପୁରୁଷ ଚେହେରା ଦେଖି ଛୋଟ ମାଈଁ ଚିତ୍କାର କରି ଶ୍ରୀମା'ଙ୍କ ନିକଟକୁ ଧାଇଁ ଆସିଲେ । ମା' ଧୀର ଭାବରେ ବାହାରି ଆସି ଦୃଢ଼ସ୍ୱରରେ କହିଲେ, ''କିଏ ରେ !'' ଗୌରୀ–ମା' ସେହିଠାରେ ଠିଆ ହୋଇ କହିଲେ, ''ଦୁଇଟି ଭିକ୍ଷା ଦିଅ ମା', ମୁଁ ରାତି ଭିକାରୀ ।'' ଅନ୍ଧକାରରେ ମୁହଁ ନ ଦେଖିଲେ ସୁଦ୍ଧା ସ୍ୱର ବୁଝିପାରି ଶ୍ରୀମା' ଗୌରୀ–ମା'ଙ୍କୁ ଚିହ୍ନିପାରିଲେ ଓ କହିଲେ, ''ଓ ! ଗୌରଦାସୀ । ଆସ, ଆସ !'' କେତେବେଳେ ଆସିଲ ?'' ସେତେବେଳେ ସମସ୍ତେ ମିଶି ଖୁବ୍ ହସଥଟ୍ଟା କଲେ; ଛୋଟ ମାଈଁ ଆଉ ଲାଜରେ ଘରୁ ବାହାରିଲେ ନାହିଁ ।

ଶ୍ରୀମା' ଜୟରାମବାଟୀକୁ ଆସିଲେ ପ୍ରାୟ ବଡ଼ ମାମୁଁଙ୍କ ଘରେ ରହୁଥିଲେ । କିନ୍ତୁ ବର୍ତ୍ତମାନ ତାଙ୍କର ସଙ୍ଗୀ ଅନେକ, ଭକ୍ତମାନଙ୍କ ସଂଖ୍ୟା ମଧ୍ୟ ଅନେକ ବଢ଼ିଛି; ଏଣେ ମାମୁଁଙ୍କ ସଂସାର ମଧ୍ୟ ବଢ଼ିଛି । ତେଣୁ ଏହି ଘରେ ରହିବା କ୍ରମଶଃ ଅସୁବିଧାଜନକ ହେବାରୁ, ମା'ଙ୍କ ଅନୁମତି କ୍ରମେ ପୁଣ୍ୟପୁକୁର ପଶ୍ଚିମତୀରରେ ଦୁଇ ହଜାର ଟଙ୍କା ବ୍ୟୟରେ ଗୋଟିଏ ନୂତନ ଘର ତିଆରି ହେଲା । ଘରର ଉତ୍ତର–ପଶ୍ଚିମ କୋଣରେ ଶ୍ରୀମା'ଙ୍କ ପାଇଁ ଦକ୍ଷିଣଦ୍ୱାରୀ ବଖରା, ତାହାର ଦକ୍ଷିଣ–ପଶ୍ଚିମ ଦିଗକୁ ବୈଠକଖାନା ବା ଜଗଦ୍ଧାତ୍ରୀ–ପୂଜାମଣ୍ଡପ । ଏତଦ୍‌ବ୍ୟତୀତ ସ୍ତ୍ରୀ–ଭକ୍ତମାନଙ୍କ ପାଇଁ ବାସସ୍ଥାନ ଓ ରନ୍ଧନଶାଳା ମଧ୍ୟ ଏହି ଗୃହରେ ଥିଲା । ୧୯୧୬ ଖ୍ରୀ. ୧୫ ମେ'ରେ ଗୃହପ୍ରବେଶ କାର୍ଯ୍ୟ ଆନୁଷ୍ଠାନିକଭାବରେ ସମ୍ପନ୍ନ ହେଲା । ଏହି ଘର ଜମି କଣିବା ସମୟରେ ପୁଣ୍ୟପୁକୁର ମଧ୍ୟ ବହୁ ଅର୍ଥ ବ୍ୟୟରେ କ୍ରୀତ ହେଲା । ଏହି ଘରେ ଶ୍ରୀମା' ଚାରିବର୍ଷକାଳ ରହିଥିଲେ ।

କୋଆଲପଡ଼ାର ଭକ୍ତମାନେ ଗୃହନିର୍ମାଣରୁ ଆରମ୍ଭ କରି ଗୃହପ୍ରବେଶର ଆୟୋଜନ ପର୍ଯ୍ୟନ୍ତ ଯାବତୀୟ କାମ କରିଥିଲେ । କିନ୍ତୁ କର୍ତ୍ତୃସ୍ଥାନୀୟ କେତେଜଣ ଧନୀ, ମାନୀ ଓ ବିଦ୍ୱାନ୍ ଗୃହସ୍ଥଙ୍କ ବ୍ୟବହାରରେ ମର୍ମାହତ ହୋଇ ସେମାନେ ସ୍ଥିର କଲେ ଯେ, ପ୍ରତିଷ୍ଠା ଦିବସରେ ସେମାନେ ଉପସ୍ଥିତ ରହିବେ ନାହିଁ । ସେଦିନ ଶ୍ରୀମା' ସେମାନଙ୍କର ଅଭାବ ବୋଧ କରି ବାରମ୍ବାର ସେମାନଙ୍କର ସନ୍ଧାନ କରିବାକୁ ଲାଗିଲେ; କିନ୍ତୁ ସେମାନେ କେହି ହେଲେ ଆସିଲେ ନାହିଁ ଏବଂ ସେମାନଙ୍କର ନ ଆସିବାର କାରଣ ମଧ୍ୟ ଶ୍ରୀମା' ଜାଣିପାରିଲେ ନାହିଁ । ଦିନେ ଦୁଇଦନ ପରେ ଦ୍ରବ୍ୟସମ୍ଭାର ନେଇ ସେମାନଙ୍କର ଭିତରୁ କେତେ ଜଣ ଶ୍ରୀମା'ଙ୍କ ନିକଟରେ ଉପସ୍ଥିତ ହେବାରୁ ସେ ନାନା ପ୍ରଶ୍ନ କରିବାକୁ ଲାଗିଲେ । ଶ୍ରୀମା'ସବୁ ଜାଣିଲେ । ଅଧିକନ୍ତୁ ଶୁଣିଲେ ଯେ, ଜଣେ ଭକ୍ତଙ୍କ ପରାମର୍ଶ ଅନୁଯାୟୀ ଏଥର

ତାଙ୍କୁ କୋଆଲପଡ଼ା ଓ ବିଷ୍ଣୁପୁର ଦେଇ ନ ନେଇ ଗଡ଼ବେତା ପଥରେ କଲିକତା ଯିବାର ବ୍ୟବସ୍ଥା କରାଯିବ । ସବୁ ଶୁଣି ଶ୍ରୀମା' କହିଲେ, ''ଗାଁରେ ମାନନ୍ତି ନାହିଁ, ଅଥଚ ସେ ଆପଣା ଛାଏଁ ପ୍ରଧାନ ! କୋଆଲପଡ଼ାର ପିଲାମାନେ ମୋ ପାଇଁ, ଭକ୍ତମାନଙ୍କ ପାଇଁ, ସେଠାରେ ସବୁ ବ୍ୟବସ୍ଥା କରିଛନ୍ତି । ସେମାନେ ଆମ ପାଇଁ କ'ଣ ନ କରନ୍ତି ? ଯୋଗ୍ୟତା ନାହିଁ—ଅଥଚ ସେମାନଙ୍କୁ କଡ଼ା କଥା କହି ମନରେ ଆଘାତ ଦେଇଛି । ତା' କଥାରେ ମୁଁ ନଈନାଳ ପାରି ହୋଇ ଗଡ଼ବେତା ଦେଇ ଯିବି ? ଏସବୁ ବୁଦ୍ଧି ତାକୁ କିଏ ଦେଇଛି ? କୋଆଲପଡ଼ାର ପିଲାମାନେ ମୋର ଡାହାଣ ହାତ ଏବଂ ବାମ ହାତ ଉଭୟ । ଯିଏ ଯାହା କହ, କୋଆଲପଡ଼ା ଦେଇ ମୁଁ ଚିରକାଳ ଯିବା ଆସିବା କରିବି ।'' ଗୃହପ୍ରବେଶ ସମୟରେ ସାରଦାନନ୍ଦଜୀ ବୃନ୍ଦାବନରେ ଥିଲେ । କଲିକତା ଫେରି ଶ୍ରୀମା'ଙ୍କୁ ଆଣିବା ପାଇଁ ଜୟରାମବାଟୀକୁ ଗଲେ । ସ୍ଥିର ହେଲା ଫେରିବା ପଥରେ କୋତୁଲପୁରଠାରେ ସବ୍‌ରେଜିଷ୍ଟ୍ରାରଙ୍କ ଅଫିସରେ ନୂତନ ଘର ଏବଂ ଜଗଦ୍ଧାତ୍ରୀଙ୍କ ପାଇଁ କିଣା ହୋଇଥିବା କିଛି ଧାନ୍ୟକ୍ଷେତ୍ର ରେଜିଷ୍ଟ୍ରୀ କରାଯିବ । ଏହିସବୁ ସମ୍ପତ୍ତି ଶ୍ରୀମା' ଜଗଦ୍ଧାତ୍ରୀଙ୍କ ନାମରେ ଅର୍ପଣ କରି ବେଲୁଡ଼ ମଠର ଟ୍ରଷ୍ଟିମାନଙ୍କ ଉପରେ ତାହାର ରକ୍ଷଣାବେକ୍ଷଣର ଭାର ଦେଇଥିଲେ । ଜୟରାମବାଟୀରେ ମାତ୍ର କେତେଦିନ ରହି ଜୁଲାଇ ୬ ତାରିଖରେ ସାରଦାନନ୍ଦଜୀଙ୍କ ସହିତ ଶ୍ରୀମା' କୋଆଲପଡ଼ାକୁ ଆସିଲେ । ପରଦିନ ସବ୍‌ରେଜିଷ୍ଟ୍ରାରଙ୍କୁ ଆଣି ରେଜିଷ୍ଟ୍ରୀର ବ୍ୟବସ୍ଥା ହେଲା । ଏହି ସମୟରେ ସାରଦାନନ୍ଦଜୀଙ୍କର ଶ୍ରୀମା'ଙ୍କ ପ୍ରତି ଆନୁଗତ୍ୟଜନିତ ସୌଜନ୍ୟ ଦେଖି ସମସ୍ତେ ମୁଗ୍‌ଧ ହୋଇଥିଲେ । ସବ୍‌ରେଜିଷ୍ଟ୍ରାର ଜାତିରେ ମୁସଲମାନ ଏବଂ ବୟସରେ ୨୭/୨୮ ବର୍ଷର ଯୁବକ ହେଲେ ସୁଦ୍ଧା ସାରଦାନନ୍ଦଜୀ ଦଣ୍ଡାୟମାନ ରହି ତାଙ୍କୁ ସିଗାରେଟ୍ ଇତ୍ୟାଦି ଦେଇ ଶିଷ୍ଟାଚାର ଦୃଷ୍ଟିରୁ ନିଜେ ପଙ୍ଖା କରିବାକୁ ଲାଗିଲେ— ଯେପରିକି ସେ ଅତି ସାଧାରଣ ବ୍ୟକ୍ତି ।

୧୯୧୭ ଖ୍ରୀଷ୍ଟାବ୍ଦରେ ନୂଆ ଘରେ ପ୍ରଥମ ଜଗଦ୍ଧାତ୍ରୀ ପୂଜା ହେବ । ଦୁର୍ଗାପୂଜା ପରଠାରୁ ଶ୍ରୀମା' ଦିନ ଗଣୁଛନ୍ତି— ''ଆଉ ଏଇ କେତେଟା ଦିନ ଅଛି; ମୋ ମା' ଏହି ସମୟରେ କେତେ ଆୟୋଜନ କରୁଥିଲେ, କେତେ ଯତ୍ନ କରି ସବୁ ଯୋଗାଡ଼ କରୁଥିଲେ । କିପରି ଏସବୁ ହେବ, କୁହ ଦେଖି ?'' କାଳୀପୂଜାଦିନ କହିଲେ, ''ମା' ଆଜିଠାରୁ ସଳିତା ବଳି ରଖୁଥିଲେ ।''—ଏହା କହି ସଳିତା ବଳିବା ପାଇଁ ବସି ପଡ଼ିଲେ । ଜଗଦ୍ଧାତ୍ରୀପୂଜାଦିନ ସକାଳେ ସେ ଗଳବସ୍ତ୍ର ହୋଇ ଦେବୀଙ୍କ ନିକଟରେ ପ୍ରଣାମ କରି ପ୍ରାର୍ଥନା କଲେ ଯେପରି ପୂଜା ନିର୍ବିଘ୍ନରେ ସଂପନ୍ନ ହୁଏ । ହଳଦିପୁକୁରର ଜଣେ ଭଟ୍ଟାଚାର୍ଯ୍ୟ ପୂଜକ ଏବଂ ମାମୁଁମାନଙ୍କର କୁଳଗୁରୁ ତନ୍ତ୍ରଧାରକ ହେଲେ । ପୂଜା ସମାପ୍ତ ହେବାରୁ ଶ୍ରୀମା' କୁଳଗୁରୁଙ୍କୁ ପ୍ରଣାମ କରି ପଦଧୂଳି ନେଲେ । ପୂଜକଙ୍କୁ ପ୍ରଣାମ କରିବାକୁ ଯିବାରୁ ସେ ଦୂରେଇ ଯାଇ

କହିଲେ, ''ମା', ଆପଣ ଆମମାନଙ୍କୁ ପ୍ରଣାମ କରୁଛନ୍ତି କଅଣ ? ଆଶୀର୍ବାଦ କରନ୍ତୁ !'' କୁଳଗୁରୁଙ୍କର ବୋଧହୁଏ ଚୈତନ୍ୟ ହେଲା, କିନ୍ତୁ ଦୀନତା ନ ଦେଖାଇ ବରଂ ନିଜ ଆଚରଣ ସମର୍ଥନ ପାଇଁ କହିଲେ, 'ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍, ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।'' ଶ୍ରୀମା' ମଧ୍ୟ ଏ କଥାକୁ ସମର୍ଥନ କଲେ । ଜଗଦ୍ଧାତ୍ରୀପୂଜା ପରଠାରୁ ଶ୍ରୀମା'ଙ୍କର ସ୍ୱାସ୍ଥ୍ୟର ଅବନତି ହେବାକୁ ଲାଗିଲା । ସମ୍ବାଦ ପାଇ ସାରଦାନନ୍ଦଜୀ ତାଙ୍କ ଭାଇ ଡାକ୍ତର ସତୀଶଚନ୍ଦ୍ର ଚକ୍ରବର୍ତ୍ତୀ, ଡାକ୍ତର କାଞ୍ଜିଲାଲ୍, ଯୋଗୀନ୍‌-ମା', ଗୋଲାପ-ମା' ଓ ସାରଳାଦେବୀ ଇତ୍ୟାଦିଙ୍କୁ ନେଇ ଜାନୁଆରୀ ୨୧ ତାରିଖ ଦିନ ଜୟରାମବାଟୀରେ ପହଞ୍ଚିଲେ । ଶ୍ରୀମା' କହିଲେ, ''ମୁଁ କାଞ୍ଜିଲାଲର ଔଷଧ ଖାଇବି ।'' ସେ ଶୀଘ୍ର ସୁସ୍ଥ ହୋଇଉଠିଲେ ।

ସେତେବେଳେ ରାଜନୈତିକ ଆନ୍ଦୋଳନକୁ ଦମନ କରିବା ପାଇଁ କଡ଼ା ପୁଲିସର ବ୍ୟବସ୍ଥା ହୋଇଥିଲା । ନୂଆ ଲୋକ ଆସିଲେ ସେମାନଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖା ଯାଉଥିଲା । ଏପରିକି ଶ୍ରୀମା'ଙ୍କ ଘରକୁ ଆସୁଥିବା ଭକ୍ତମାନଙ୍କର ନାମ ଠିକଣା ଇତ୍ୟାଦି ଲେଖି ନେଉଥିଲେ । ଅନ୍ତରୀଣମାନଙ୍କ ମଧ୍ୟରେ କେତେଜଣ ମା'ଙ୍କର ଭକ୍ତ ମଧ୍ୟ ଥିଲେ । ବିଶେଷ କରି ପୂର୍ବବଙ୍ଗର କେତେଜଣ ସାଧୁ ଜୟରାମବାଟୀକୁ ଯିବାଆସିବା କରିବାରୁ ପୁଲିସର ସନ୍ଦେହ ବଢ଼ିଥିଲା । ଶ୍ରୀମା'ଙ୍କ ଘରକୁ ପୁଲିସ୍ 'ମାତାଜୀଙ୍କ ଆଶ୍ରମ' କହୁଥିଲେ । କୋଆଲପଡ଼ା ଆଶ୍ରମ ପ୍ରତି ମଧ୍ୟ ସେମାନଙ୍କର କଡ଼ା ଦୃଷ୍ଟି ଥିଲା । ଏହା ଶ୍ରୀମା'ଙ୍କ ପକ୍ଷରେ ଉଦ୍‌ବେଗର କାରଣ ହୋଇଉଠିଲା । ଏହାର ସମାଧାନ ପାଇଁ ଭକ୍ତ ବିଭୂତିବାବୁ ବାଙ୍କୁଡ଼ାରୁ ପୁଲିସର ଜଣେ ବଡ଼ କର୍ମଚାରୀଙ୍କୁ ଜୟରାମବାଟୀ ନେଇ ଆସିଲେ । ସେ ଶ୍ରୀମା'ଙ୍କୁ ପ୍ରଣାମ ଓ ଦର୍ଶନ କରି ତାଙ୍କର ସ୍ନେହ ଓ ଆଶୀର୍ବାଦ ପାଇ କହିଲେ, ''ପୁଲିସ୍ ପାଇଁ ମା'ଙ୍କର କୌଣସି ଚିନ୍ତା ବା ଭାବନା ହୁଏ କି ନାହିଁ ?'' ଭଦ୍ରତା କରି ବିଭୂତିବାବୁ ପ୍ରଶ୍ନଟିକୁ ଏଡ଼ାଇ ଯିବାକୁ ଚାହିଁଲେ, କିନ୍ତୁ ଶ୍ରୀମା' ସରଳଭାବରେ କହିଲେ, ''ଭୟ ତ ନିଶ୍ଚୟ ହୁଏ ବାବା !'' ଉତ୍ତରରେ ପୁଲିସ କର୍ମଚାରୀ ତାଙ୍କୁ ନିଶ୍ଚିନ୍ତ ରହିବାକୁ କହି ବିଦାୟ ନେଲେ । ସେହିଦିନଠାରୁ କେବଳ ଖୋଜ ଖବର ଛଡ଼ା ପୁଲିସ ଅନ୍ୟ କିଛି କରୁ ନ ଥିଲା । ସ୍ଥାନୀୟ ଦାରୋଗା ଇତ୍ୟାଦି ଶ୍ରୀମା'ଙ୍କୁ ସମ୍ମାନଦୃଷ୍ଟିରେ ଦେଖୁଥିଲେ ।

ଶରତ ମହାରାଜଙ୍କର ଇଚ୍ଛା ଶ୍ରୀମା'ଙ୍କୁ କଲିକତା ନେଇଯିବେ । କିନ୍ତୁ ସେ ରାଜି ହେଲେ ନାହିଁ । କୋଆଲପଡ଼ାର ଭକ୍ତମାନଙ୍କ ଅନୁରୋଧରେ ସେ ସେଠାକାର ଜଗଦମ୍ବା ଆଶ୍ରମରେ ପ୍ରାୟ ବର୍ଷେ କାଳ କଟାଇଲେ । ସେଠାରେ ସ୍ୱାସ୍ଥ୍ୟର ମଧ୍ୟ ସାମାନ୍ୟ ଉନ୍ନତି ହୋଇଥିଲା । ଦିନେ ଜୟରାମବାଟୀରୁ ବରଦା ମହାରାଜ ଆସି ଦେଖିଲେ ଯେ ସେଠାରେ ଏକ ଚାଞ୍ଚଲ୍ୟର ଭାବ । ଖବର

ନେଇ ଜାଣିଲେ ଶ୍ରୀମା'ଙ୍କର ଭାବ-ସମାଧି ହୋଇଛି । ମା' ସେଦିନ କିଛି ନ କହିଲେ ସୁଦ୍ଧା କଲିକତାରେ ପରେ କହିଥିଲେ, ''ଦିନେ ଦ୍ୱିପ୍ରହରରେ ବାରଣ୍ଡାରେ ବସିଛି । ଦେଖିଲି ଯେପରିକି ସଦର ଦରଜା ଦେଇ ଆସି ଠାକୁର ବାରଣ୍ଡା ଉପରେ ବସିପଡ଼ିଲେ । ସେତେବେଳେ ବାହାରେ ଭାରୀ ଖରା — ଚାରିଆଡ଼େ ଝାଞ୍ଜିପବନ ବହୁଛି । ମୁଁ ଶୀଘ୍ର ଉଠିଯାଇ ଠାକୁରଙ୍କ ଶୋଇବା ପାଇଁ କିଛି ପାରି ଦେବାକୁ ଗଲି । ସେହି ଅବସ୍ଥାରେ କିପରି କ'ଣ ହୋଇଗଲି । ସେମାନେ ସବୁ ପାଟିତୁଣ୍ଡ କରିବାକୁ ଲାଗିଲେ । ତେଣୁ ସେମାନଙ୍କୁ କହିଲି, କିଛି ହୋଇ ନାହିଁ ।'' କୋଆଲପଡ଼ାରେ ସେ ଶ୍ରୀଶ୍ରୀଠାକୁରଙ୍କର ଦର୍ଶନ ବହୁଥର ପାଇଥିଲେ । ପରେ ଜଣେ ଶିଷ୍ୟକୁ ସେ କହିଥିଲେ, ''କୋଆଲପଡ଼ାରେ କେତେ ଜ୍ୱର ହେଉଥିଲା, ବେହୋସ୍ ହୋଇ ବିଛଣାରେ ପଡ଼ି ରହୁଥିଲି । କିନ୍ତୁ ହୋସ୍ ହେଲେ ଯେତେବେଳେ ତାଙ୍କୁ ସ୍ମରଣ କରୁଥିଲି ସେତେବେଳେ ତାଙ୍କ ଦର୍ଶନ ପାଉଥିଲି ।''

ପରେ ଶ୍ରୀମା'ଙ୍କର ଜ୍ୱର ବଢ଼ି ଭୀଷଣ ଆକାର ଧାରଣ କଲା । ଜ୍ୱର ଦ୍ୱିପ୍ରହରକୁ ୧୦୨ ଡିଗ୍ରୀ/୧୦୩ ଡିଗ୍ରୀ ପର୍ଯ୍ୟନ୍ତ ବଢୁଥିଲା ଏବଂ ତାଙ୍କର ହାତ ପୋଡ଼ାଜଳା ହେଉଥିଲା । ସେତେବେଳେ କାହାର ଥଣ୍ଡା ଦେହ ଉପରେ ହାତ ରଖିଲେ ସେ ବିଶେଷ ଆରାମ ବୋଧ କରୁଥିଲେ; ଶରତ ମହାରାଜଙ୍କୁ ମଧ୍ୟ ବହୁତ ଖୋଜିବାକୁ ଲାଗିଲେ । ଟେଲିଗ୍ରାମ୍ ପାଇ ଶରତ ମହାରାଜ ସେଦିନ ରାତିରେ ଦୁଇଜଣ ସାଧୁ ଓ ଡାକ୍ତର କାଞ୍ଜିଲାଲଙ୍କୁ କୋଆଲପଡ଼ା ପଠାଇଦେଲେ ଏବଂ ନିଜେ ୧୭ ଏପ୍ରିଲ ଦିନ (୧୯୧୮ ଖ୍ରୀଷ୍ଟାବ୍ଦ) ଦ୍ୱିପ୍ରହରରେ କୋଆଲପଡ଼ାରେ ଯାଇ ପହଞ୍ଚିଲେ । ସେ ଘୋଡ଼ାଗାଡ଼ିରୁ ଓହ୍ଲାଇ ସିଧା ମା'ଙ୍କ ବିଛଣା ନିକଟକୁ ଯାଇ ତାଙ୍କୁ ଦେଖିଲେ; ତା'ପରେ ଧୀରେ ଧୀରେ ଖଟ ଉପରେ ଗୋଟିଏ କଡ଼କୁ ଯାଇ ବସିଲେ । ସେତେବେଳେ ଜ୍ୱର ବଢ଼ି ଚାଲିଛି ଏବଂ ଶ୍ରୀମା' କିଛି ଧରିବା ପାଇଁ ହାତ ବଢ଼ାଉଛନ୍ତି । ଶରତ ମହାରାଜ ପଚାରି ଜାଣିଲେ ଯେ ଜ୍ୱର ବଢ଼ିଲେ ଶ୍ରୀମା' କୌଣସି ଥଣ୍ଡା ଜିନିଷ ଉପରେ ହାତ ରଖିବା ପାଇଁ ଏପରି କରିଥାଆନ୍ତି । ସେ ତତ୍‌କ୍ଷଣାତ୍ ମା'ଙ୍କ ହାତ ଦୁଇଟି ନିଜ ଦେହ ଉପରେ ରଖିଲେ ଏବଂ ଶ୍ରୀମା' ମଧ୍ୟ ଆଖି ଖୋଲି ଚାହିଁ ଦେଖିଲେ । ପରଦିନ ଜ୍ୱର ଛାଡ଼ିଗଲା ।

କ୍ରମେ ଶ୍ରୀମା'ଙ୍କ ଦେହ ଟିକେ ସୁସ୍ଥ ହେବାରୁ ଶରତ ମହାରାଜ ପ୍ରସ୍ତାବ ଦେଲେ, ''ମା' ! ଏଥର ଆଉ ଆପଣଙ୍କୁ ଛାଡ଼ି ଯିବୁ ନାହିଁ — ଆମ ସାଥିରେ କଲିକତା ନେଇଯିବୁ ।'' ଶ୍ରୀମା' ରାଜି ହେଲେ । କହିଲେ, ''କିନ୍ତୁ, ବାବା ଥରେ ଜୟରାମବାଟୀ ଯାଇ ଯାତ୍ରା ବଦଳାଇ ଆସିବି ।'' ୨୯ ତାରିଖ ଦିନ ଶରତ ମହାରାଜଙ୍କ ସହିତ ସେ ଜୟରାମବାଟୀ ଗଲେ । ଶ୍ରୀମା' ପହଞ୍ଚିବାରୁ ଗ୍ରାମବାସୀମାନେ ତାଙ୍କୁ ଦେଖିବା ପାଇଁ ସମବେତ ହେଲେ ଏବଂ କହିବାକୁ ଲାଗିଲେ, ''ମା', ଆମେ ଯେ ଆଉ ଆପଣଙ୍କୁ ଦେଖିପାରିବୁ, ଏ ଆଶା ଛାଡ଼ି

ଦେଇଥିଲୁ । ଆପଣ ଯେ ସମସ୍ତଙ୍କୁ ନେଇ ଆଜି ଏଠାକୁ ଆସିଲେ, ସେଥିପାଇଁ ଆମେ ସମସ୍ତେ ଖୁବ୍ ଆନନ୍ଦିତ ।'' ମା' କହିଲେ, ''ହଁ ଖୁବ୍ ରୋଗ ଭୋଗୁଥିଲି । ଶରତ, କାଞ୍ଜିଲାଲ ପ୍ରଭୃତି ଆସିଲେ—ମା' ସିଂହବାହିନୀଙ୍କ କୃପାରୁ ଏଥର ରକ୍ଷା ପାଇଗଲି । ଶରତ କହୁଛି, କଲିକତା ନେଇଯିବ । ତୁମେମାନେ ସବୁ ଯଦି ମତ ଦେବ ତା'ହେଲେ ଯିବି ।'' ସମସ୍ତେ ସମ୍ମତି ଦେଲେ । ସାତ ଆଠଦିନ ଗାଁରେ ରହି ମା' କଲିକତା ଗଲେ । ଯାତ୍ରାର ପୂର୍ବଦିନ ଭୋଜିର ବ୍ୟବସ୍ଥା ହେଲା । ମାମୁଁମାନଙ୍କ ଘରୁ ସମସ୍ତଙ୍କୁ ନିମନ୍ତ୍ରଣ କରାଗଲା । ସାଧୁମାନେ ଯେତେବେଳେ ଖାଇବାକୁ ବସିଲେ, ସେତେବେଳେ ବର୍ଷା ଆରମ୍ଭ ହେଲା—ବାରଣ୍ଡା ଯାଏ ପାଣିର ଛିଟିକା ଆସୁଥାଏ । ଶରତ ମହାରାଜ ସମସ୍ତଙ୍କ ପତର ନିଜ ପାଖକୁ ଟାଣିଆଣି ଏକତ୍ର ଭୋଜନର ବ୍ୟବସ୍ଥା କଲେ । ସାଧୁମାନଙ୍କର ପ୍ରଥମେ ପ୍ରଥମେ ଟିକିଏ ସଂକୋଚ ହେଲା । କିନ୍ତୁ ଶରତ ମହାରାଜଙ୍କ ଆଗ୍ରହ ଯୋଗୁଁ ସମସ୍ତେ ଗୋଟିଏ ପତ୍ରରେ ଆହାର କରିବାକୁ ରାଜି ହେଲେ ଏବଂ ମା' ପ୍ରସନ୍ନ ହୋଇ ପରିବେଷଣ କରିବାକୁ ଲାଗିଲେ । ପରଦିନ (ମେ ୫ ତାରିଖ) ଶ୍ରୀମା' କୋଆଲପଡ଼ା ଯାଇ ଗୋଟିଏ ରାତି ବିଶ୍ରାମ ନେଲେ ଏବଂ ପରେ ଘୋଡ଼ାଗାଡ଼ିରେ ବିଷ୍ଣୁପୁର ଯାତ୍ରା କଲେ । ୭ ତାରିଖ ଦିନ ସକାଳ ୧୦ଟାରେ ଉଦ୍‌ବୋଧନରେ ଯାଇ ପହଞ୍ଚିଲେ ।

ଜୁଲାଇ ୩୦ ତାରିଖ ଦିନ (୧୯୧୮) ସ୍ୱାମୀ ପ୍ରେମାନନ୍ଦଜୀ ଦେହତ୍ୟାଗ କଲେ । ଏହି ମର୍ମାନ୍ତିକ ଖବର ପାଇ ସେ କାନ୍ଦି କାନ୍ଦି କହିଲେ, ''ବାବୁରାମ ମୋର ଜୀବନ-ସଙ୍ଗାଳି ଥିଲା । ମଠର ଶକ୍ତି, ଭକ୍ତି, ଯୁକ୍ତି ସବୁ ମୋ ବାବୁରାମ ମୂର୍ତ୍ତି ଧରି ଗଙ୍ଗାତୀର ଆଲୋକିତ କରି ବୁଲୁଥିଲା ।'' ଠାକୁରଙ୍କ ବଡ଼ ଛବି ତଳେ ମୁଣ୍ଡ ରଖି କାତର କଣ୍ଠରେ ଶ୍ରୀମା' କହିଲେ, ''ଠାକୁରେ, ନେଇଗଲେ !'' ଉପସ୍ଥିତ ସମସ୍ତେ ଅଶ୍ରୁସମ୍ବରଣ କରିପାରିଲେ ନାହିଁ ।

## ରାଧୁ

ରାଧୁର ସ୍ୱଭାବ ପିଲାଦିନେ ଭଲ ଥିଲା । ତାହାର ସରଳ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରୁଥିଲା । ଭବିଷ୍ୟତ ପାଇଁ ତାର କୌଣସି ଚିନ୍ତା ନ ଥିଲା ଏବଂ ଟଙ୍କା ପଇସା ପାଇଁ ମଧ୍ୟ ତାହାର ସ୍ପୃହା ନ ଥିଲା । ଶ୍ରୀମା'ଙ୍କୁ ସେ 'ମା' ବୋଲି ଡାକୁଥିଲା ଏବଂ ନିଜ ଜନନୀଙ୍କୁ 'ନଣ୍ଡା-ମା' କହୁଥିଲା । ଶ୍ରୀମା' ଅନ୍ୟମାନଙ୍କୁ ଜିନିଷପତ୍ର ଦେଲେ ରାଧୁର ମା' ହିଂସାରେ ଜଳୁଥିଲେ । କେବେ କେବେ କହି ପକାଉଥିଲେ, ''ସବୁ ଦେଇ ଦେଲ, ପରେ ରାଧୁର କଅଣ ହେବ ?'' ରାଧୁ କିନ୍ତୁ ଏହିସବୁ କଥା ଶୁଣି ବିରକ୍ତ ହେଉଥିଲା । ତାହାର କୌଣସି ଜିନିଷର ଅଭାବ ନ ଥିଲା । ଶ୍ରୀମା' ତାକୁ ଯଥେଷ୍ଟ ଦେଉଥିଲେ । ପିଲାଦିନେ ତାର ସ୍ୱାସ୍ଥ୍ୟ ଭଲ ଥିଲା । କିନ୍ତୁ ପରେ ସେ ରୋଗ ଭୋଗିବାକୁ ଲାଗିଲା ଏବଂ ବିବାହ ପରେ ତାହା ଆହୁରି

ବଢ଼ିଯାଇଥିଲା । ସ୍ୱଭାବ ମଧ୍ୟ ରୁକ୍ଷ ହେବାକୁ ଲାଗିଲା । ଶ୍ରୀମା' ଦିନେ କେଦାର ବାବୁଙ୍କୁ କହିଲେ, ''କଅଣ ଜାଣିଛ ବାବା, ସେ ଆଗେ ବେଶ୍ ଥିଲା, ଆଜିକାଲି ନାନା ରୋଗ, ପୁଣି ବିବାହ ମଧ୍ୟ ହେଲା । ଏବେ ଭୟ ହୁଏ—ପାଗଳୀର ଝିଅ, ଶେଷରେ ଯେମିତି ପାଗଳୀ ନ ହୋଇଯାଏ । ମୁଁ କଅଣ ଗୋଟିଏ ପାଗଳୀକୁ ମଣିଷ କଲି !'' ଶ୍ରୀରାମକୃଷ୍ଣଙ୍କ ଆଦେଶରେ ମାନବ-ଲୀଳାର ଅବଲମ୍ବନସ୍ୱରୂପ ଏହି କନ୍ୟାକୁ ସର୍ବାନ୍ତଃକରଣରେ ଗ୍ରହଣ କରିଥିଲେ ମଧ୍ୟ ଏଥିପାଇଁ ଶ୍ରୀମା'ଙ୍କୁ ଅଶେଷ ଯନ୍ତ୍ରଣା ସହିବାକୁ ପଡ଼ିଥିଲା । ମା'ଙ୍କର ବିଭିନ୍ନ ଉକ୍ତିରୁ ଏହାର ଆଭାସ ମିଳିଥାଏ । ଜଣେ ସ୍ତ୍ରୀ-ଭକ୍ତ ଗୋଟିଏ ଶିଶୁକୁ ପୁଅ କରିବାକୁ ଚାହିଁବାରୁ ଶ୍ରୀମା' ନିଜ ଅବସ୍ଥାର ଉଲ୍ଲେଖ କରି ତାଙ୍କୁ କହିଲେ, ''ସେପରି କାମ କର ନାହିଁ । ଯାହା ପ୍ରତି ଯେଉଁ କର୍ତ୍ତବ୍ୟ ତାହା କରିବ; କିନ୍ତୁ ଏକମାତ୍ର ଭଗବାନଙ୍କୁ ଛାଡ଼ି ଆଉ କାହାକୁ ଭଲ ପାଇବ ନାହିଁ । ମଣିଷକୁ ଭଲ ପାଇଲେ ଅନେକ ଦୁଃଖ ।'' ଆଉ ଦିନେ କହିଥିଲେ, ''ଦେଖୁନା ! ମୁଁ ରାଧୁ ପାଇଁ ମାୟାରେ ପଡ଼ି କେତେ ଭୋଗୁଛି ?'' ଦିନେ ଆହୁରି ଗଭୀର ଦୁଃଖ ପ୍ରକାଶ କରି କହିଥିଲେ, ''ଠାକୁରଙ୍କର ଲୀଳା ଦେଖୁଛ ତ ମା ! କିପରି ବଂଶ ଆମର ଦେଇଛନ୍ତି ଦେଖୁଛ ତ ! କିପରି କୁସଂସର୍ଗ କରୁଛି ଦେଖ । ଏ (ଛୋଟ ମାଈଁ) ପାଗଳୀ, ଆଉ ଜଣେ (ନଳିନୀ) ପାଗଳ ହେବାକୁ ବସିଛି । ଆଉ ଏଇ ଦେଖ, ଆଉ ଗୋଟିଏ (ରାଧୁ), ଯାହାକୁ ମଣିଷ କରିଥିଲି, ମା' , ଟିକିଏ ହେଲେ ବୁଦ୍ଧି ନାହିଁ । ବାରଣ୍ଡାରେ ରେଲିଂ ଧରି ଠିଆ ହୋଇଛି କେତେବେଳେ ସ୍ୱାମୀ ଫେରିବ ! ମନରେ ଭୟ—ଏହି ଗୀତ-ନାଚ ଯେଉଁଠି ହେଉଛି, ହୁଏତ ସେଠାକୁ ଚାଲିଯିବ । ଦିନରାତି ତାକୁ ଜଗି ବସିଛି—କିପରି ଆସକ୍ତି ଦେଖୁଛ ମା' ! ତା'ର ଯେ ଏତେ ଆସକ୍ତି ହେବ, ତାହା ମୁଁ ଜାଣି ନ ଥିଲି ।''

ରାଧୁ ଯେପରି ଶ୍ରୀମା'ଙ୍କ ଦେହଧାରଣର ଗୋଟିଏ ଅବଲମ୍ବନ, ସେପରି ତାଙ୍କ ଜୀବନର ଗୋଟିଏ ଦିଗ ପ୍ରକାଶର ଉପଲକ୍ଷ୍ୟ ମଧ୍ୟ । ବିଭିନ୍ନ ସଂଘର୍ଷ ମଧ୍ୟ ଦେଇ ଏହି ଜୀବନରେ ଯେଉଁ ମହତ୍ତ୍ୱଗୁଡ଼ିକ ଫୁଟି ଉଠିଥିଲା, ସାଧାରଣ ଲୋକ ତାହାର ପ୍ରକୃତ ମର୍ମ ଏହି ପ୍ରତିକୂଳ ଅବସ୍ଥାକୁ ବାଦ୍ ଦେଇ କେବେହେଲେ ବୁଝିପାରି ନ ଥାନ୍ତେ । ଅନୁକୂଳ ପରିବେଶ ଭିତରେ ଯେଉଁ ଚରିତ୍ରମାଧୁର୍ଯ୍ୟ ବିକଶିତ ହୁଏ, ସେ ବିଷୟରେ ଗୃହୀମାନେ ସହଜରେ କହିପାରନ୍ତି—ଏପରି ଜୀବନରେ ସେମାନଙ୍କର କିଛି ଶିଖିବାର ନାହିଁ; କାରଣ ଏପରି ଆଦର୍ଶ ପରିବେଶ ଭିତରେ ବାସ କରିବା ସେମାନଙ୍କର ସାଧ୍ୟାୟତ୍ତ ନୁହେଁ । ପୁଣି ସନ୍ନ୍ୟାସୀଙ୍କ ମୁହଁରୁ ବୈରାଗ୍ୟର କଥା ଶୁଣି ଅନେକ ବୁଦ୍ଧିମାନ ବ୍ୟକ୍ତି ମନେ ମନେ ହସି କହନ୍ତି, ''ଏମାନେ ସଂସାରର ଆନନ୍ଦ କିଛି ନ ଜାଣି ଅଯଥା ଗୋଟିଏ କାଳ୍ପନିକ ଦୁଃଖମୟ ଛବି ଆଙ୍କି ସଂସାରର ସୁଖକୁ ଅବଜ୍ଞା କରୁଛନ୍ତି ।'' ଏହି ଉଭୟ ଶ୍ରେଣୀର ଲୋକଙ୍କ ପକ୍ଷରେ ଶ୍ରୀମା'ଙ୍କ ଜୀବନ

ଅତି ଶିକ୍ଷାପ୍ରଦ । ସେ ସଂସାରକୁ ପୂର୍ଣ୍ଣରୂପେ ଗ୍ରହଣ କରି ତାଙ୍କ ଦିବ୍ୟ ଜୀବନର ଲୀଳା ଦେଖାଇଛନ୍ତି । ତାଙ୍କର ପ୍ରତ୍ୟେକ କଥା ନିଜ ଅଭିଜ୍ଞତାରୁ ସ୍ପଷ୍ଟ, ଅଥଚ ତାଙ୍କର ପ୍ରତି ପଦକ୍ଷେପରେ ବୈରାଗ୍ୟ ମଧ୍ୟ ସ୍ପଷ୍ଟ ପ୍ରକାଶିତ ହୋଇଛି ।

ଦିନେ ବେଲୁଡ଼ ମଠରେ (ଡିସେମ୍ବର ୧୯୧୮) ସ୍ୱାମୀ ଶିବାନନ୍ଦଜୀ ଖବର ପାଇଲେ ଯେ, ଶ୍ରୀମା' ସେହିଦିନ ଉପରଓଳି ରାଧୁକୁ ନେଇ ମଠକୁ ଆସିବେ ଏବଂ ଉତ୍ତର ଦିଗରେ ଥିବା ଉଦ୍ୟାନବାଟୀରେ ରହିବେ, ତେଣୁ ଘରଟି ଯେପରି ସଫାସୁତରା କରି ରଖାହୁଏ । ରାଧୁ ସେତେବେଳେ ଅନ୍ତଃସତ୍ତ୍ୱା । ତାହାର ଦେହମନର ଅବସ୍ଥା ଏପରି ହୋଇଛି ଯେ କୌଣସି ଶବ୍ଦ ସହିପାରେ ନାହିଁ । କଲିକତା ସହର ବାହାରେ ରହିବା ଆବଶ୍ୟକ ବୋଧ କରି ଶ୍ରୀମା'ଏଠାକୁ ଆସିବାକୁ ଚାହିଁଥିଲେ, କିନ୍ତୁ ସେହିଦିନ ଉପରଓଳି ଖବର ଆସିଲା, ସେ ଆସିବେ ନାହିଁ; କାରଣ ରାଧୁ ମତ ପରିବର୍ତ୍ତନ କରିଛି । ଅପେକ୍ଷା କୃତ ନିର୍ଜନ ସ୍ଥାନ, ନିବେଦିତା ବିଦ୍ୟାଳୟର ଛାତ୍ରାବାସରେ ଶ୍ରୀମା' ରାଧୁ ସହିତ ରହିଲେ । ବ୍ରହ୍ମଚାରୀ ବରଦା ମା'ଙ୍କ ଖବର ନେବା ପାଇଁ ଆସିବାରୁ ମା' ଦୁଃଖ କରି କହିଲେ, ''ଏହି ଦରିଆକୁ (ସମୁଦ୍ର ଅର୍ଥାତ୍ ରାଧୁ) ନେଇ ଏଠାରେ ଆସି ପଡ଼ିଛି । କ'ଣ ଯେ ହେବ ବରଦା ! ଦେଖ, ଏଠାରେ କେତେ ଦିନ ରହିବ ! ରାଧୁ ସବୁ ସମୟରେ ଶୋଇଥାଏ । କୌଣସି ଶବ୍ଦ ସହିପାରେ ନାହିଁ । ଏ ଯେ କି ରୋଗ ହେଲା ! କିପରି ଉଦ୍ଧାର ହେବ ଠାକୁରେ ଜାଣନ୍ତି ।'' କେତେ ଦିନ ପରେ ଶ୍ରୀମା' କହିଲେ, ''ଶୁଣିଛ ? ରାଧୁକୁ ଆଉ ଏଠାରେ ଭଲ ଲାଗୁନାହିଁ । କହୁଛି, 'ଗାଁକୁ ଯିବା ।' କିନ୍ତୁ ଏଇ ତ ଅବସ୍ଥା !'' ଶ୍ରୀମା' ବ୍ରହ୍ମଚାରୀ ବରଦାଙ୍କୁ ସାଥିରେ ନେଇ ଗାଁକୁ ଗଲେ; କାରଣ ଏମାନେ ଗାଁରେ ଶ୍ରୀମା'ଙ୍କର ଏକମାତ୍ର ଭରସା । ସାରଦାନନ୍ଦଜୀଙ୍କ ଇଚ୍ଛାନୁଯାୟୀ ବରଦା ଶେଷ ଯାଏ ଶ୍ରୀମା'ଙ୍କର ସେବା କରିଥିଲେ ।

ଜାନୁଆରୀ ମାସ, ଦିନେ ସକାଳେ ଛଅଟି ଶଗଡ଼ଗାଡ଼ିରେ ବିଷ୍ଣୁପୁର ଛାଡ଼ି ଆଠମାଇଲ ଦୂରରେ ଥିବା ଜୟପୁର ଗ୍ରାମର ଗୋଟିଏ ଚଟିଘରେ ରନ୍ଧାବଢ଼ାର ବ୍ୟବସ୍ଥା ହେଲା । ରନ୍ଧା ପ୍ରାୟ ଶେଷ ହେଲାଣି, ଏପରି ସମୟରେ ପେଜ ଗାଳିବା ପାଇଁ ଭାତହାଣ୍ଡିଟା ଉଠାଇବା ମାତ୍ରେ ହଠାତ୍ ଭାଙ୍ଗିଗଲା । ଭାତ ଚାରିଆଡ଼େ ବିଛେଇ ହୋଇଗଲା । ପୁଣିଥରେ ରୋଷେଇ କରିବାକୁ ବହୁତ ସମୟ ଲାଗିବ । ଶ୍ରୀମା' କିନ୍ତୁ ବିଚଳିତ ହେଲେ ନାହିଁ । ସେ ଆସ୍ତେ ଆସ୍ତେ ଉପରର ଭାତଗୁଡ଼ିକ ଅଲଗା କରି ରଖିଲେ । ତା'ପରେ ହାତ ଧୋଇ ବାକ୍ସରୁ ଠାକୁରଙ୍କ ଛବି ବାହାର କରି ଗୋଟିଏ ଜାଗାରେ ବସାଇଲେ । ଶାଳପତ୍ର ଉପରେ କିଛି ଭାତ, ଡାଲି ଓ ତରକାରୀ ସଜାଇ ହାତଯୋଡ଼ି ଠାକୁରଙ୍କୁ କହିଲେ, ''ଆଜି ଏହା ଜୁଟାଇଛି— ଶୀଘ୍ର ଶୀଘ୍ର ଗରମ ଗରମ ଦିଟା ଖାଇନିଅ ।'' ଏହା ଦେଖି ସମସ୍ତେ ହସି ଉଠିଲେ; କିନ୍ତୁ ଶ୍ରୀମା' କହିଲେ, ''ଯେତେବେଳେ ଯେପରି, ସେତେବେଳେ ସେପରି ।

ନିଅ, ତୁମେମାନେ ସବୁ ବସି ଏଠାରେ ଖାଇନିଅ ।'' ଆହାର ଶେଷ ହେବା ପରେ ସମସ୍ତେ ଶଗଡ଼ରେ ବସିଲେ ଏବଂ ରାତି ଏଗାରଟାରେ କୋଆଲପଡ଼ାରେ ପହଞ୍ଚିଲେ ।

ପଲ୍ଲୀର ନୀରବତା ରାଧୁକୁ ଭାରୀ ଭଲ ଲାଗିଲା । ତେଣୁ ଜୟରାମବାଟୀ ନ ଯାଇ ଏଠାରେ ରହିବାକୁ ଶ୍ରୀମା'ମନସ୍ଥ କଲେ । ଶ୍ରୀମା'ଙ୍କ ପାଇଁ ନିର୍ଦ୍ଦିଷ୍ଟ ଘର — ଜଗଦମ୍ବା ଆଶ୍ରମ — ବଡ଼ ରାସ୍ତାରୁ ପ୍ରାୟ ଗୋଟିଏ ଫର୍ଲଙ୍ଗ ଦୂର । ଏହି ଘରଟି ବଡ଼ ନିର୍ଜନ ଓ ଚାରିଆଡ଼େ ପାଚେରୀ ଘେରା । ମା'ଙ୍କ ବଖରାଟି ବେଶ୍ ବଡ଼; ଘରର ଚଟାଣ ସିମେଣ୍ଟକରା, ପାଖରେ ରୋଷେଇ ଘର । ଅନ୍ୟ ଗୋଟିଏ ବଡ଼ ବଖରାରେ ସାତ ଆଠଜଣ ସ୍ତ୍ରୀଭକ୍ତ ରହନ୍ତି । ଆଉ ଗୋଟିଏ ବଖରାରେ ପୁରୁଷ ଭକ୍ତମାନେ ଦେଖା କରିବାକୁ ଆସିଲେ ବସନ୍ତି । ଭିତରର ବାରଣ୍ଡାରେ ଢିଙ୍କି ଅଛି । ଏହି ଘରର ଦକ୍ଷିଣକୁ ପ୍ରାୟ ଶହେ ହାତ ଦୂରରେ କେଦାର ବାବୁଙ୍କ ଘର । ଶ୍ରୀମା' କୋଆଲପଡ଼ାକୁ ପ୍ରଥମେ ଆସି ସେଠାରେ ରହିଥିଲେ ।

ଏଥର ମା' ଏହି ଘରେ ପ୍ରାୟ ଛ'ମାସ କାଳ ଥିଲେ । ବହୁ ସାଧୁ ଓ ଭକ୍ତ ମା'ଙ୍କ ଦର୍ଶନ ପାଇଁ ଏଠାକୁ ଆସୁଥିଲେ । କୌଣସି କୌଣସି ଦିନ ଚାଳିଶଜଣଙ୍କ ପାଇଁ ଆହାରର ବ୍ୟବସ୍ଥା ହେଉଥିଲା । ଏଠାରେ ପାଞ୍ଚ ସାତ ଦିନ ରହିବା ପରେ ଶ୍ରୀମା' ବରଦା ମହାରାଜଙ୍କୁ କହିଲେ, ''ଆଜିକାଲି (ମୋର) ମନର ଯେ କଅଣ ହୋଇଛି — ଯେଉଁ ଚିନ୍ତା ଉଠେ, ତାହା ଆସି ଉପସ୍ଥିତ ହୁଏ — ତା'ଭଲ ହେଉ ବା ମନ୍ଦ ହେଉ । ରାଧୁର ତ ଏହି ଜଙ୍ଗଲରେ ରହିବା ପସନ୍ଦ ହେଲା ନିର୍ଜନ ବୋଲି ! ମୋର କିନ୍ତୁ ମନେ ହେଉଛି, ତୁମେ ସାରାଦିନ କାମଦାମରେ ଯିବା ଆସିବା ଯାହା କର ନା କାହିଁକି, ସନ୍ଧ୍ୟା ହେଲେ ଏଠାକୁ ଆସି ମୋ ନିକଟରେ ରୁହ ଏବଂ ଖାଇବା ପିଇବା ଏଠି କର । ବଡ଼ ଭୟ ଲାଗେ, ବାବା !'' ସେହି ଦିନଠାରୁ ବରଦା ମହାରାଜ ସନ୍ଧ୍ୟାରୁ ରାତି ଏଗାରଟା ଯାଏ ରାଧୁର ଘର ସାମନାରେ ଗଛତଳେ ଖଟରେ ବସିରହୁଥିଲେ । ଶ୍ରୀମା' ସେଠାକୁ ଯାଇ ଆସ୍ତେ ଆସ୍ତେ କଥାବାର୍ତ୍ତା କରୁଥିଲେ । ଶ୍ରୀମା' ଦିନେ କହିଲେ, ''ଦେଖ, ଯେପରି ଜଙ୍ଗଲ — କେବେ ଭାଲୁ ହୁଏତ ବାହାରିବ ।'' ବରଦା ମହାରାଜ କହିଲେ ଯେ, ଏହି ଅଞ୍ଚଳରେ ଭାଲୁ କେବେ ବାହାରି ନାହିଁ । ମା' ତଥାପି କହିଲେ, ''କିଏ ଜାଣିଛି ବାବା, ଯେପରି ଅନ୍ଧାର — ଭୟ ହୁଏ ।'' ଦିନେ ଦୁଇ ଦିନ ପରେ ଖବର ଆସିଲା, ମାଇଲିଏ ଦୂରରେ ଭୟଙ୍କର ଭାଲୁଟାଏ ଆସି ଜଣକୁ ମାରି ଦେଇଛି — ଭାଲୁକୁ ମଧ୍ୟ ଗୁଳି କରି ମାରିଦିଆଯାଇଛି ।

ବିଷ୍ଣୁପୁରଠାରେ ଜଣେ ଯୁବକ ଜ୍ୟୋତିଷୀ ମାକୁର ହାତ ଦେଖି କହିଥିଲେ ଯେ, ତାହାର ଲାଗ ଲାଗ କେତୋଟି ସନ୍ତାନଙ୍କର ପରସ୍ପର ଦେଖା ହେବ ନାହିଁ । ଏହି କଥା ଶୁଣି ମାକୁ ଅତ୍ୟନ୍ତ ଭୀତ ହେବାରୁ ଜ୍ୟୋତିଷୀ ବିଘ୍ନ ଅପସାରଣର

ଉପାୟ କହିଦେଲେ । ଜ୍ୟୋତିଷୀଙ୍କ ନିର୍ଦ୍ଦେଶ ଅନୁଯାୟୀ ମାକୁର ବିଘ୍ନ ଅପସାରଣ ପାଇଁ ସାତ ଦିନ ଧରି ଯଥାବିଧି ଶାନ୍ତି ସ୍ୱସ୍ତ୍ୟୟନ ସମାଧାନ ହେବାରୁ ଶ୍ରୀମା' କହିଲେ, ''ଠାକୁରଙ୍କ ସେବା କରିବା ପାଇଁ ନହବତଖାନାରେ କିପରି କଷ୍ଟରେ ରହିବାକୁ ହେଉଥିଲା—ତଥାପି କୌଣସି କଷ୍ଟ ମନକୁ ସ୍ପର୍ଶ କରୁ ନ ଥିଲା—କେତେ ଆନନ୍ଦରେ ଦିନ କଟି ଯାଉଥିଲା । ଆଉ ଏବେ ଏମାନଙ୍କ ପାଇଁ କିପରି କଷ୍ଟରେ ପଡ଼ିଛି ! ମାକୁର ମାନସିକ ଶାନ୍ତି ପାଇଁ ଏତକ କାମ ଆଜି ଶେଷ ହେଲା । ଜଙ୍ଗଲରେ ତୁମମାନଙ୍କୁ ନେଇ ବସିଛି—ଧର୍ମକର୍ମ, ଜପତପ ସବୁ ଗଲା । ଏବେ ଭଲରେ ରାଧୁ ଉଦ୍ଧାର ହେଲେ ହେଲା ।'' କଥା ଚାଲିଛି, ଏପରି ସମୟରେ ଜଣେ ସ୍ତ୍ରୀଲୋକ ଆସି କହିଲା, ''ଭାଇ, ଶୁଣିଛ ? ଆଜି ଖରାବେଳେ ମୁଁ ଓ ମା' ଏଠାରେ ବସିଥିଲୁ—ବେଶ୍ ନିର୍ଜନ । ମା' କହିଲେ, 'ଯୋଡ଼ିଏ କାଉ ପ୍ରତିଦିନ ଏହି ସମୟରେ ଆସି ଭାରୀ ରାବୁଥିଲେ । ରାଧୁ ମଧ୍ୟ ଖୁବ୍ ବିରକ୍ତ ହେଉଥିଲା । କିନ୍ତୁ, କେତେଦିନ ହେଲା ଆଉ ସେମାନଙ୍କୁ ଦେଖୁନାହିଁ ।' ମା' ଏ କଥା କହି ନ ସାରୁଣୁ କାଉ ଦୁଇଟି ଆସି ରାବିବାକୁ ଲାଗିଲେ ।''

କିଛିଦିନ ଧରି ଖୁବ୍ ବର୍ଷା ହେଉଛି । ରାତି ପ୍ରାୟ ୧୦ଟା ସମୟରେ କେତେଜଣ ଗଛତଳେ ବସିଛନ୍ତି । ଶ୍ରୀମା' ଅକସ୍ମାତ୍ କହିଲେ, ''ଦେଖ, ସେ ପାଗଳଟା କାହିଁ ଅନେକ ଦିନ ହେଲା ଆସିନି । ବଦ୍ଧ ପାଗଳ । ବେଶ୍ ଭଲ ଗୀତ ଗାଏ । କିନ୍ତୁ ଡର ଲାଗେ କେତେବେଳେ ଆସି ପାଟି ତୁଣ୍ଡ କରିବ ।'' ନବାସନର ବୋହୂ ଆପତ୍ତି କରି କହିଲେ, ''ଆଉ ତା' ନାଁ ଧରୁଛ କାହିଁକି ମା' ? ଯଦି ବର୍ତ୍ତମାନ ଏତେ ରାତିରେ ଆସିଯାଏ ?'' ମା' କହିଲେ, ''କିଏ ଜାଣିଛି ମା' ? ହଁ, ଯାହା କହିଲ, କିନ୍ତୁ ଏହି ବର୍ଷାରେ ନଦୀ ପାରି ହୋଇ କିପରି ଆସିବ ?'' କଥା ଶେଷ ନ ହେଉଣୁ ପାଗଳ ଗୋଟିଏ ତାଳପତ୍ରର ପଖିଆ ମୁଣ୍ଡରେ ଦେଇ ବୋଝେ ସଜନା ଶାଗ ନେଇ ଆସି ହାଜର ହେଲା ଓ ଶ୍ରୀମା'ଙ୍କୁ କହିଲା, ''ତୁମ ପାଇଁ ସଜନା ଶାଗ ନେଇ ଆସିଛି ।'' ନବାସନର ବୋହୂ ଡରି ଘର ଭିତରକୁ ଚାଲିଗଲେ ! ମା' କହିଲେ, ''ଚାଲିଯାଅ, ଏତେ ରାତିରେ ପାଟିତୁଣ୍ଡ କରନା ।'' ସେ ଉତ୍ତର ଦେଲା, ''ବର୍ତ୍ତମାନ ଯିବି କିପରି ?'' ନଈରେ ବଢ଼ି ଆସିଛି ।'' ବରଦା ମହାରାଜ ପ୍ରଶ୍ନ କଲେ—''ତା' ହେଲେ ଆସିଲୁ କିପରି ?'' ସେ କହିଲା, ''ପହଁରି ପହଁରି ନଦୀ ପାରି ହୋଇଛି ।'' ମା' ତାକୁ ଅତି କୋମଳ ସ୍ୱରରେ କହିଲେ, ''ମୋ ସୁନା ପିଲାଟି ପରା, ପାଟିତୁଣ୍ଡ କରନା ।'' ପାଗଳ ଧୀରେ ଧୀରେ ସେଠାରୁ ଚାଲିଗଲା ।

ଏଣେ ରାଧୁର ରୋଗ ବଢ଼ି ଚାଲିଛି । ସହାନୁଭୂତିସମ୍ପନ୍ନ ଅନେକ ଲୋକ ଆସି ନାନା ଉପାୟ ବତାଉଛନ୍ତି । ଶ୍ରୀମା' ସବୁ ଶୁଣୁଥିଲେ—ସମ୍ଭବ ହେଲେ, ଚେଷ୍ଟାରେ ବି ତ୍ରୁଟି କରୁ ନ ଥିଲେ । ଯେପରି କାହାରି ମନରେ କ୍ଷୋଭ ନ ହୁଏ !

ନଳିନୀ ଦେବୀ କହିଲେ, ତିରୋଲ ଗାଁର କାଳୀଙ୍କ ଖଡୁ ପିନ୍ଧିଲେ ଭଲ ହେବ । ୧୭ ମାଇଲ ଦୂରକୁ ଲୋକ ପଠାଇ ପୂଜା ଇତ୍ୟାଦି କରି ଖଡୁ ଅଣାଗଲା । ସନ୍ଧ୍ୟାବେଳେ ଆଣି ଗଛଡ଼ାଳରେ ଝୁଲାଇ ଦିଆଗଲା, କାରଣ ମାଟିରେ ରଖିବା ନିଷେଧ । ପରିଦିନ ସକାଳେ ବିଧିପୂର୍ବକ ରାଧୁ ଖଡୁ ପିନ୍ଧିଲା । କିନ୍ତୁ କୌଣସି ଉପକାର ହେଲା ନାହିଁ । ରାଧୁର ମା' ପାଗଳୀ ମାଈଁ କହିଲେ—ଭାରୀ ଗରମ ପଡ଼ିଛି । ମୁଣ୍ଡରେ କିଛି ବରଫ ଲଦି ଦେଲେ ଭଲ ହେବ । ଶ୍ରୀମା' ପାଗଳୀକୁ ଶାନ୍ତ କରିବା ପାଇଁ ବିଷ୍ଣୁପୁରରୁ ବରଫ ଆଣିଲେ । କାଳୀମାମୁଁ ବରଫ ଦେବା ଦେଖି କହିଲେ, "ଦେଇ ! ତୁମେ ପାଗଳୀ କଥା ଶୁଣି ଆସନ୍ନପ୍ରସବାର ମୁଣ୍ଡରେ ବରଫ ଦେଉଛ, ଥଣ୍ଡା ଲାଗି ପୁଣି କ'ଣ ଗୋଟାଏ ହେବ । ମୋର ମନେ ହେଉଛି କୌଣସି ଭୂତ ଲାଗିଛି । ଜଣେ ଚଣ୍ଡାଳ ତାନ୍ତ୍ରିକ ସାଧକ ଅଛି, ତାକୁ ଥରେ ଆଣି ଦେଖାଅ, ସେ କଅଣ କରିବ ?" କାଳୀମାମୁଁ ଓ ବରଦା ମହାରାଜ ସେଠାରେ ଉପସ୍ଥିତ ହେବାରୁ ସାଧକ କିଛି ସୋରିଷ ତାଙ୍କ ଦେହରେ ଛାଟି ଦେଇ ଗମ୍ଭୀର ଭାବରେ କହିଲେ, "ହଁ, ମୁଁ ସବୁ ବୁଝିପାରିଛି । ଦିନେ ଦୁଇଦିନ ଭିତରେ ମୋତେ ସେଠାକୁ ଯିବାକୁ ହେବ—ଆଦେଶ ପାଇଲି !"

ପରଦିନ ଉପରବେଳା ସାଧକ ଆସିବାରୁ ଶ୍ରୀମା' ଗଳବସ୍ତ୍ର ହୋଇ ତାଙ୍କୁ ପ୍ରଣାମ କଲେ ଏବଂ ରାଧୁର ଅବସ୍ଥା ସଜଳ ନୟନରେ ଏପରି ବର୍ଣ୍ଣନା କଲେ ଯେ ଯେପରିକି ସେ ଖୁବ୍ ବିପଦରେ ପଡ଼ିଛନ୍ତି ଏବଂ ଏହି ସମୟରେ କେବଳ ସାଧକ ହିଁ ତାଙ୍କର ଏକମାତ୍ର ଭରସା । ସାଧକ ରୋଗିଣୀକୁ ଦେଖି ନିଃସନ୍ଦେହ ହେଲେ ଯେ, ଏହା ଏକ ଭୌତିକ ଘଟଣା । କିନ୍ତୁ ସେ ଏପରି ସବୁ ଔଷଧ କଥା କହିଲେ ଯେ, ଯାହା କାହାରି ପକ୍ଷରେ ସଂଗ୍ରହ କରିବା ସମ୍ଭବ ନୁହେଁ । ପାଞ୍ଚସେର ରାଶି ଘଣାରେ ପେଡ଼ି ଏହି ତେଲ ସହିତ ଅଧମହଣ ଓଜନର ଗୋଟିଏ ରୋହି ମାଛର ତେଲ ଓ ପିତ୍ତ, ନାନା ଦୁର୍ଗମ ସ୍ଥାନରୁ ସଂଗୃହୀତ ହୋଇଥିବା ଲୁହା ଓ ବିବିଧ ଗନ୍ଧଦ୍ରବ୍ୟ ଇତ୍ୟାଦି ଏବଂ ଷଣ୍ଢର ଗୋମୟ ଏକାଠି ମିଶାଇ ଘସିନିଆଁରେ ରାନ୍ଧିଲେ ଯେଉଁ ତେଲ ପ୍ରସ୍ତୁତ ହେବ, ତାହା ମାଲିସ୍ କରିବାକୁ ହେବ । ଅଧିକନ୍ତୁ ତେଉଁରିଆ ଇତ୍ୟାଦି ଧାରଣ କରିବାକୁ ହେବ । ଶ୍ରୀମା' ପ୍ରଥମେ ଖୁବ୍ ଆଗ୍ରହ ଦେଖାଇଲେ, କିନ୍ତୁ ପରେ ଯେତେବେଳେ ବୁଝିଲେ ଯେ ଏହା ସମ୍ପୂର୍ଣ୍ଣ ଅସମ୍ଭବ, ସେତେବେଳେ ହତାଶ ହୋଇ କହିଲେ, "ମୁଁ ତ ସବୁ ଦେବତାଙ୍କୁ ମାନ୍ୟ କରି ଆସୁଛି, ପ୍ରାର୍ଥନା କରୁଛି; କିନ୍ତୁ କେହି ମୁହଁ ଉଠାଇ ଚାହୁଁ ନାହାନ୍ତି । ରାଧୁର କପାଳରେ ଯାହା ଅଛି, ତାହା ହେବ । ଠାକୁର, ତୁମେ ଏକମାତ୍ର ରକ୍ଷାକର୍ତ୍ତା ।" ଗୋଟିଏ ଦିଗରେ ସମ୍ପୂର୍ଣ୍ଣ ଈଶ୍ୱରନିର୍ଭରତା, ଅନ୍ୟ ଦିଗରେ ରୋଗ ନିବାରଣ ପାଇଁ ତାଙ୍କର ଆନ୍ତରିକ ପ୍ରାର୍ଥନା—ଉଭୟର ମିଶ୍ରଣରେ ଏହି ଦୃଶ୍ୟଟି ବିଶେଷ ଚିତ୍ତାକର୍ଷକ । ରାଧୁ ଭଲ ହେବା ପାଇଁ ବିଭିନ୍ନ ଚେଷ୍ଟା ସତ୍ତ୍ୱେ ସେ ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି

ଅନାସକ୍ତ ଥିଲେ । ଦିନେ ରାଧୁର ସୁଖ-ପ୍ରସବ ପାଇଁ ଚିକିତ୍ସକ ଆଣିବା କଥା ଉଠିବାରୁ ସେ ନିଜ କଥା ସ୍ପଷ୍ଟ କରି କହିଲେ, ''କୁକୁର ବିଲୁଆ ତ ବଣରେ ରହନ୍ତି, ସେମାନଙ୍କର କଅଣ ପ୍ରସବ ହୁଏ ନାହିଁ ?''

ଶ୍ରୀମା'ଙ୍କ ସେବିକା ନବାସନର ବୋହୂଙ୍କ ବୃଦ୍ଧମାତା ଅସୁସ୍ଥ ହୋଇ ପଡ଼ିଲେ । ମା' ଖବର ପାଇଲେ ଯେ ତାଙ୍କର ବଞ୍ଚିବାର ଆଶା ନାହିଁ ଏବଂ ଦେଖାଶୁଣା କରିବା ପାଇଁ ମଧ୍ୟ ଲୋକ ନାହାନ୍ତି । ଶ୍ରୀମା' ବୃଦ୍ଧାଙ୍କୁ କୋଆଲପଡ଼ା ଆଣି ଦୂରବର୍ତ୍ତୀ ଆରାମବାଗରୁ ଡାକ୍ତର ଅଣାଇଲେ; କିନ୍ତୁ ବୃଦ୍ଧାଙ୍କର ଆୟୁ ନିଃଶେଷିତ ହୋଇଥିଲା—ଦିନେ ଦୁଇ ଦିନ ଭିତରେ ସେ ଇହଲୋକ ତ୍ୟାଗ କଲେ । ଆହୁରି ଗୋଟିଏ ଘଟଣା । ମାକୁର ପୁଅ ନେଡ଼ା ଏପ୍ରିଲ୍ ୨୦ ତାରିଖ ଦିନ (୧୯୧୯) ମୃତ୍ୟୁମୁଖରେ ପଡ଼ିଲା । ଏହି ସଦ୍‌ଗୁଣବାନ ପିଲାଟି ଶ୍ରୀମା'ଙ୍କର ଅତି ପ୍ରିୟପାତ୍ର ଥିଲା । ତେଣୁ ତା'ର ମୃତ୍ୟୁରେ ଶ୍ରୀମା' ମର୍ମାନ୍ତିକ ଶୋକ ପାଇଥିଲେ ।

ଦୀର୍ଘକାଳବ୍ୟାପୀ ସ୍ନାୟୁବିକ ଅବସାଦରୁ କଷ୍ଟ ପାଉଥିବାରୁ ଡାକ୍ତରମାନେ ଠିକ୍ କରିଥିଲେ ଯେ ଅସ୍ତ୍ରୋପଚାର କରି ରାଧୁର ସନ୍ତାନ ପ୍ରସବ କରାଇବେ । ବାଙ୍କୁଡ଼ାରୁ ଡାକ୍ତର ଆସିଥିଲେ ଏବଂ କଲିକତାରୁ ଶରତ ମହାରାଜ ଧାତ୍ରୀବିଦ୍ୟା-କୁଶଳା ସରଳାଦେବୀଙ୍କୁ ପଠାଇଥିଲେ । ବିନା ଅସ୍ତ୍ରୋପଚାରରେ ରାଧୁର ପୁଅ ହେଲା, କିନ୍ତୁ ରାଧୁର ଅବସ୍ଥାର ଆହୁରି ଅବନତି ଘଟିଲା । ଶ୍ରୀମା' ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ନବାସନର ବୋହୂଙ୍କ ମା' ଦେହତ୍ୟାଗ କରିବାରୁ ଆରାମବାଗ୍‌ର ଡାକ୍ତର ଶ୍ରୀମା'ଙ୍କୁ କହିଲେ, ''ମା' ସଂସାରରେ ବଡ଼ ଯନ୍ତ୍ରଣା । କଅଣ କରିବି—ମୁଁ ସଂସାର କରିଛି । ମା' ଆମେ କିପରି ଶାନ୍ତି ପାଇବୁ ? ସଂସାର ମୋଟେ ଭଲ ଲାଗୁନାହିଁ ।'' ଶ୍ରୀମା' ଆଖି ଛଳ ଛଳ କରି ସହାନୁଭୂତି ଜଣାଇଲେ—''ଠିକ୍ କଥା ବାବା, ସଂସାରରେ କୌଣସି ଶାନ୍ତି ନାହିଁ । ଠାକୁର ଅଛନ୍ତି, ତୁମମାନଙ୍କୁ ରକ୍ଷା କରିବେ । ସଂସାର କରିବା ବାବା, ଆତ୍ମୀୟସ୍ୱଜନଙ୍କୁ ନେଇ ସଂସାରରେ ରହିବା ମହାପାପ । ରାଧୁର ବିବାହ ଦେଇ ବଡ଼ ଅନ୍ୟାୟ କରିଛି, ବର୍ତ୍ତମାନ ଭୋଗୁଛି ।''

ରାଧୁକୁ ନେଇ ଶ୍ରୀମା' ଜୟରାମବାଟୀକୁ ଗଲେ (୭ ଶ୍ରାବଣ ୧୩୨୬) । ସନ୍ତାନ ହେବା ପରଠାରୁ ରାଧୁ ଅତ୍ୟନ୍ତ ଦୁର୍ବଳ, ସିଧା ଠିଆ ମଧ୍ୟ ହୋଇପାରେ ନାହିଁ । ଏହା ମଧ୍ୟରେ ପୁଣି ଅଫିମ ଖାଇବା ଅଭ୍ୟାସ କରିଛି ଏବଂ ଏହାର ପରିମାଣ ବଢ଼ାଇବା ପାଇଁ ମା'ଙ୍କୁ ସର୍ବଦା କଷ୍ଟ ଦିଏ । ଶ୍ରୀମା'ଙ୍କର ଶରୀର ସେତେବେଳେ ଭଲ ନ ଥିଲା—ପ୍ରାୟ ଜ୍ୱର ହୁଏ । ତା' ଉପରେ ପୁଣି ଏ ଅତ୍ୟାଚାର । ଦିନେ ମା' ପରିବା କାଟୁଛନ୍ତି । ରାଧୁ ଅଫିମ ପାଇଁ ଜିଦ୍ ଧରିଲା । ଶ୍ରୀମା' କହିଲେ, ''ତୋତେ ଆଉ ମୁଁ ଦେଇପାରୁନାହିଁ । ତୋ ପାଇଁ ମୋର ଧର୍ମ, କର୍ମ ଅର୍ଥ ସବୁ ଗଲା । ତୋ ପାଇଁ ଏତେ ଖର୍ଚ୍ଚ କରିବି କେମିତି ?'' ରାଧୁ ରାଗିଯାଇ ଡାଲାରୁ

ଗୋଟିଏ ବଡ଼ ବାଇଗଣ ନେଇ ଶ୍ରୀମା'ଙ୍କ ପିଠି ଉପରେ ଜୋର୍‌ରେ ପିଟିଦେଲା । ଯନ୍ତ୍ରଣାରେ ଶ୍ରୀମା'ଙ୍କ ପିଠି ବଙ୍କା ହୋଇଗଲା ଏବଂ ବାଜିଥିବା ସ୍ଥାନଟି ନାଲି ହୋଇ ଫୁଲି ଉଠିଲା । ଶ୍ରୀମା' ଠାକୁରଙ୍କୁ ହାତ ଯୋଡ଼ି କହିଲେ, ''ଠାକୁରେ, ତା'ର ଅପରାଧ ନିଅ ନାହିଁ, ସେ ଅବୋଧ ।'' ଏହା କହି ନିଜ ପଦଧୂଳି ନେଇ ରାଧୁର ମୁଣ୍ଡରେ ବୋଳି ଦେଲେ ଓ କହିଲେ, ''ରାଧୀ, ଏହାଙ୍କୁ (ମୋତେ) ଠାକୁର କେବେ ହେଲେ ଟିକିଏ କଡ଼ା କଥା ମଧ୍ୟ କହି ନାହାନ୍ତି, ଏବେ ତୁ ଏତେ କଷ୍ଟ ଦେଉଛୁ ? ତୁ କିପରି ବୁଝିବୁ ମୋର ସ୍ଥାନ କେଉଁଠାରେ ? ତୁମମାନଙ୍କୁ ନେଇ ପଡ଼ିଛି ବୋଲି ତୁମେମାନେ କ'ଣ ମନେକର ?'' ରାଧୁ ଏହି କଥା ଶୁଣି କାନ୍ଦି ପକାଇଲା । ମା' ପୁନର୍ବାର କହିଲେ, ''ରାଧୀ, ମୁଁ ଯଦି ରୁଷ୍ଟ ହୁଏ; ତ୍ରିଭୁବନରେ ତୋର ଆଶ୍ରୟ ନାହିଁ । ଠାକୁରେ ତା'ର ଅପରାଧ ନିଅ ନାହିଁ ।''

ସନ୍ତାନ ହେବା ପୂର୍ବରୁ ରାଧୁର ଆଚରଣରେ ଏକ ଅଦ୍ଭୁତ ପରିବର୍ତ୍ତନ ଆସିଥିଲା । ମାତାଠାକୁରାଣୀଙ୍କର ମର୍ତ୍ତ୍ୟ-ଲୀଳା ମଧ୍ୟ ପ୍ରାୟ ସମାପ୍ତ ହୋଇ ଆସୁଛି, ଆଉ ମାତ୍ର ଦୁଇ ବର୍ଷ ବାକି ଅଛି । ଭକ୍ତମାନେ ଶୁଣିଥିଲେ ଯେ, ଶ୍ରୀମା'ଙ୍କ ମନ ଯେଉଁଦିନ ରାଧୁ ଉପରୁ ଛାଡ଼ିଯିବ, ସେଦିନ ଶ୍ରୀମା'ଙ୍କ ଊର୍ଦ୍ଧ୍ୱଗାମୀ ମନକୁ ଏହି ଜଗତରେ ବାନ୍ଧି ରଖିବାର କୌଣସି ଉପାୟ ରହିବ ନାହିଁ । ଲୀଳାମୟୀଙ୍କର ଲୀଳା ସେଦିନ ଶେଷ ହୋଇଯିବ । ବିଧିର ବିଧାନରୁ କ୍ରମେ କ୍ରମେ ସେହି ସ୍ନେହବନ୍ଧନ ଯେପରିକି ଆପଣା ଛାଏଁ ଫିଟିଯାଉଥିଲା ।

ରାଧୁ ଉପରୁ ଶ୍ରୀମା'ଙ୍କର ମନ ଧୀରେ ଧୀରେ ଛାଡ଼ି ଯାଉଛି । ରାଧୁ ରୋଗରୁ ଭଲ ହେଉ ନାହିଁ—ସ୍ୱଭାବ ରୁକ୍ଷ ହୋଇଯାଇଛି । ଶ୍ରୀମା' ଦିନେ ଦୁଃଖ କରି କହିଲେ, ''ରାଧୀ ଉପରେ ମୋର ଟିକିଏ ହେଲେ ମନ ନାହିଁ । ରୋଗ ଘାଣ୍ଟି ଘାଣ୍ଟି ବିତୃଷ୍ଣା ଆସିଗଲାଣି । ଜୋର୍ କରି ମନକୁ ଟାଣି ରଖେ । ପ୍ରାର୍ଥନା କରେ, ହେ ଠାକୁର, ରାଧୀ ଉପରେ ଟିକିଏ ମନ ଦିଅ, ନ ହେଲେ ତାକୁ କିଏ ଦେଖିବ ? ଏପରି ରୋଗ ଦେଖିନାହିଁ । ଜନ୍ମାନ୍ତରୀଣ ରୋଗ ନେଇ ମରିଥିଲା—ପ୍ରାୟଶ୍ଚିତ କରିନାହିଁ ।''

ଶ୍ରୀମା' ରାଧୁକୁ ସତ୍‌ଶିକ୍ଷା ଦେଇ ମଣିଷ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ତାହାର ସେ ଶିକ୍ଷା ଗ୍ରହଣ କରିବାର କ୍ଷମତା ନ ଥିଲା । ଶ୍ରୀମା'ଙ୍କ ସ୍ନେହ ତା'ର ଚରିତ୍ରରେ କୋମଳତା ନ ଆଣି ବରଂ ଔଦ୍ଧତ୍ୟ ବଢ଼ାଇ ଦେଇଥିଲା । ଅଧିକନ୍ତୁ ନିଜ ଜନନୀଙ୍କ ମସ୍ତିଷ୍କ-ବିକୃତି ରାଧୁର ଚରିତ୍ରରେ ସଂକ୍ରମିତ ହୋଇ ଶ୍ରୀମା'ଙ୍କ ପ୍ରତି ତାହାର ବ୍ୟବହାର ବଡ଼ ବିଷଦୃଶ ହୋଇଯାଇଥିଲା । ଶ୍ରୀମା'ଙ୍କୁ ସେ ତୁଚ୍ଛ-ତାଚ୍ଛଲ୍ୟ କରୁଥିଲା, ଗାଳି ଦେଉଥିଲା । ଏପରିକି ଶ୍ରୀଅଙ୍ଗରେ ହସ୍ତକ୍ଷେପ ମଧ୍ୟ କରୁଥିଲା । ଶ୍ରୀମା' ରାଧୁର ଚରିତ୍ରର ଏହି ପରିଣତି ଦେଖି ଦିନେ କହିଲେ, ''ରାଧୀ, ତୁ ସିଂହର ଦୁଧ ପିଇ ମଧ୍ୟ ବିଲୁଆ ହୋଇ ରହିଲୁ । ମୁଁ ତୋତେ ଏତେ

କରି ମଣିଷ କଲି, ଅଥଚ ତୁ ମୋର କୌଣସ ଭାବ ନେଲୁ ନାହିଁ—ତୋ ମା'ର ସବୁ ସ୍ୱଭାବ ନେଲୁ ?'' ରାଧୁ ରାଗି ମୁହଁ ଫେରାଇ ମୁଣ୍ଡରେ ଓଢ଼ଣା ଦେଲା । ମା' ହସି କହିଲେ, ''ମୁଁ ନ ଥିଲେ ତୁ ଚଳିପାରିବୁ ନାହିଁ—ମୋତେ ଦେଖି ତୁ ମୁଣ୍ଡରେ ଓଢ଼ଣା ଦେଉଛୁ ?''

କେବଳ ଏତିକି ନୁହେଁ । ଥରେ ଶ୍ରୀମା' ବିଷ୍ଣୁପୁରରୁ ଶଗଡ଼ଗାଡ଼ିରେ ଗାଁକୁ ଯାଉଥିଲେ । ରାଧୁ ଶ୍ରୀମା'ଙ୍କୁ ଗୋଡ଼ରେ ଠେଲି କହିଲା, ''ତୁ ଘୁଞ୍ଚିଯା, ତୁ ଗାଡ଼ିରୁ ଓହ୍ଲେଇ ଯା ।'' ଶ୍ରୀମା' ଯଥାସମ୍ଭବ ଗାଡ଼ିର ପଛଆଡ଼କୁ ଘୁଞ୍ଚିଯାଇ କହିଲେ, ''ମୁଁ ଯଦି ଯିବି ତୋତେ ନେଇ କିଏ ତପସ୍ୟା କରିବ ?'' ଆଉଥରେ ରାଧୁ ଶ୍ରୀମା'ଙ୍କୁ ଗୋଇଠା ମାରିବାରୁ ଶ୍ରୀମା' ବ୍ୟସ୍ତ ହୋଇ 'କ'ଣ କଲୁ, କ'ଣ କଲୁ ରାଧୀ !'' କହି ନିଜ ପଦଧୂଳି ନେଇ ତା' ମୁଣ୍ଡରେ ଦେଲେ । ରାଧୁର ଅତ୍ୟାଚର କ୍ରମେ ବଢ଼ିଚାଲିଛି । ମା'ଙ୍କ ମନ ମଧ ତା' ଉପରୁ ଛାଡ଼ି ଯାଉଛି । ସ୍ନେହର ସ୍ଥାନରେ ଆସିଛି ବୈରାଗ୍ୟ । କଲିକତା ଯିବା ପୂର୍ବରୁ ରାଧୁକୁ ଗ୍ରାମରୁ ଅଣାଇଲେ ଏବଂ ରାଧୁ ପାଲିଙ୍କିରୁ ଓହ୍ଲାଇବା ମାତ୍ରେ ତାକୁ ପୂର୍ବପରି ''ଆ, ମା', ରାଧୁ !'' ବୋଲି କହି ଆଲିଙ୍ଗନ କଲେ । କିନ୍ତୁ ସେ ଜାଣିଥିଲେ ଯେ, ରାଧୁର ବ୍ୟକ୍ତିତ୍ୱ କ୍ରମେ ପ୍ରକାଶ ପାଉଛି—ସେ ସ୍ୱେଚ୍ଛାରେ ଶ୍ରୀମା'ଙ୍କୁ କୋଆଲପଡ଼ାରେ ଛାଡ଼ି ଶ୍ୱଶୁରାଳୟକୁ ଯାଇଥିଲା । ରାଧୁ ଅଶ୍ରୁସିକ୍ତ ହୋଇ ମା'ଙ୍କ ଗୋଡ଼ ତଳେ ପଡ଼ି ପ୍ରଣାମ କଲା । ମା'କିନ୍ତୁ ଟିକିଏ ହେଲେ ବିଚଳିତ ନ ହୋଇ ପ୍ରଶାନ୍ତଭାବରେ ଆଶୀର୍ବାଦ କଲେ—ଯେପରି ସମସ୍ତଙ୍କୁ କରିଥାଆନ୍ତି । ରାଧୁ ସହିତ ତାଙ୍କର ଯେ କୌଣସି ବିଶେଷ ସମ୍ପର୍କ ଅଛି, ତାହାର କୌଣସି ଆଭାସ ମିଳିଲା ନାହିଁ ।

ଦିନେ ରାଧୁର ଉତ୍ପୀଡ଼ନରେ ଉତ୍ତ୍ୟକ୍ତ ହୋଇ ଶ୍ରୀମା' କହିଲେ, ''ହଁ, ମୋ ପରେ ତୋର ଅବସ୍ଥା କ'ଣ ହେବ ତା' ଶୀଘ୍ର ବୁଝିପାରିବୁ ।'' ପ୍ରସଙ୍ଗତଃ କହି ରଖିବା ଭଲ ଯେ, ଶ୍ରୀମା'ଙ୍କ ଦେହତ୍ୟାଗର ନ'ମାସ ପରେ ରାଧୁର ସ୍ୱାମୀ ଦ୍ୱିତୀୟ ବିବାହ କଲା ଏବଂ ରାଧୁ ଆଶ୍ରୟହୀନା ହୋଇ ଜୟରାମବାଟୀରେ ଆଶ୍ରୟ ନେଲା । ତା' ଶ୍ୱଶୁରଘରର ଆର୍ଥିକ ଅବସ୍ଥା ମଧ ସେତେବେଳେ ଖୁବ୍ ଖରାପ ହୋଇପଡ଼ିଥିଲା । ତେଣୁ ପୂଜ୍ୟପାଦ ଶରତ ମହାରାଜ ରାଧୁପାଇଁ ଯେଉଁ ଆର୍ଥିକ ସାହାଯ୍ୟ ଦେଉଥିଲେ, ସେଥିରୁ ଭାଗ ପାଇବା ପାଇଁ ତା' ସ୍ୱାମୀ ପ୍ରାୟ ଜୟରାମବାଟୀକୁ ଆସୁଥିଲା ।

## ଗୃହିଣୀ

ପୂର୍ବ ଅଧ୍ୟାୟ ପାଠ କରୁ କରୁ ପାଠକ ନିଶ୍ଚୟ ଦୀର୍ଘ ନିଃଶ୍ୱାସ ଛାଡ଼ି ଭାବିଥିବେ, ''ଜୀବମଙ୍ଗଳ ପାଇଁ ଭୂତଳେ, ସହିଲ କେତେ ଯାତନା !'' ସେହି ମର୍ମାନ୍ତିକ ଦୁଃଖ ଭୁଲିବା ପୂର୍ବରୁ କର୍ତ୍ତବ୍ୟ ଦୃଷ୍ଟିରୁ ଆମମାନଙ୍କୁ ଆଉ ଏକ ଅତି

ବେଦନାଦାୟକ ବିଷୟ ଅନୁଧ୍ୟାନ କରିବାକୁ ପଡ଼ିବ । ସତ୍ୟ ଯେତେ କଷ୍ଟଦାୟକ ହେଲେ ସୁଦ୍ଧା ତାହା ପ୍ରକାଶ କରିବାକୁ ପଡ଼ିବ । ଆହୁରି ଆମ୍ଭମାନଙ୍କୁ ଏହା ସ୍ମରଣ ରଖିବାକୁ ହେବ ଯେ, ଯେଉଁମାନେ ବର୍ତ୍ତମାନ ଯୁଗରେ ଯୁଗଧର୍ମ-ପ୍ରବର୍ତ୍ତନ ପାଇଁ ଅବତୀର୍ଣ୍ଣ ହୋଇଛନ୍ତି, ସେମାନଙ୍କର ଆଚରଣ ଓ ଲୀଳାବିଳାସ କେବଳ ପ୍ରାଚୀନଯୁଗର ମହାପୁରୁଷମାନଙ୍କ ସହିତ ତୁଳନା କଲେ ଆମେ ଏହି ଜୀବନଗୁଡ଼ିକର ତାତ୍ପର୍ଯ୍ୟ ଗ୍ରହଣ କରିବାରେ ସମର୍ଥ ହେବା ନାହିଁ । ଏମାନଙ୍କ ଚରିତ୍ରରେ ବୈରାଗର ଚରମ ଉତ୍କର୍ଷ ଯେପରି ଫୁଟି ଉଠୁଥିଲା, ସେପରି ପ୍ରକାଶିତ ହେଉଥିଲା ମାନବ ପାଇଁ କଲ୍ୟାଣସ୍ପୃହା । ଏମାନଙ୍କ ଜୀବନରେ ତିତିକ୍ଷାଦି ଗୁଣସମୂହ ପର୍ବତ-କନ୍ଦରରେ ଅନୁସୃତ ନ ହୋଇ ନଗରର ବାସ୍ତବ ଜୀବନରେ ପ୍ରକଟିତ ହୋଇଥିଲା । ଶ୍ରୀରାମକୃଷ୍ଣ ତ୍ୟାଗର ମୂର୍ତ୍ତି ବିଗ୍ରହ ହୋଇ ସୁଦ୍ଧା ନିଜ ଜନନୀଙ୍କ ସେବା ପରିତ୍ୟାଗ କରିନାହାନ୍ତି; ଭ୍ରାତୃଷ୍ପୁତ୍ର ଅକ୍ଷୟର ମୃତ୍ୟୁରେ ଅଧୀର ହୋଇ ଉଠିଥିଲେ; ସମୀପାଗତ ସହଧର୍ମିଣୀଙ୍କୁ ସାଦରେ ଗ୍ରହଣ କରି ଶିକ୍ଷାଦୀକ୍ଷା ଦେଇ ନିଜର ଉତ୍ତରାଧିକାରୀଣୀରୂପେ ଗଢ଼ିଥିଲେ ଏବଂ ମାନବକଲ୍ୟାଣ ପାଇଁ ଜୀବନପାତ କରାଇଥିଲେ । ସ୍ୱାମୀ ବିବେକାନନ୍ଦ ସର୍ବତ୍ୟାଗୀ ସନ୍ନ୍ୟାସୀ ହୋଇ ମଧ୍ୟ ମାତାଙ୍କ ସେବା ଓ ସମାଜର ହିତ ପାଇଁ ହୃଦୟର ରକ୍ତ କ୍ଷୟ କରିଥିଲେ । ଶ୍ରୀମା'ଙ୍କ ମନ ସଂସାରରେ ନିର୍ଲିପ୍ତ ଥିଲା, କିନ୍ତୁ ପାରିବାରିକ ଘାତପ୍ରତିଘାତରେ ତାଙ୍କ ଜୀବନରେ ଏକ ମାତୃସୁଲଭ ଅପୂର୍ବ ସହାନୁଭୂତି, ଧୈର୍ଯ୍ୟଶୀଳତା, କରୁଣା ଓ କ୍ଷମା ବିକଶିତ ହୋଇଥିଲା, ଯାହାର ପ୍ରୟୋଜନ ଆମ ନିକଟରେ ସମ୍ପୂର୍ଣ୍ଣ ବୋଧଗମ୍ୟ ନ ହେଲେ ସୁଦ୍ଧା ନବଯୁଗ ପାଇଁ ତାହାର ନିଶ୍ଚୟ କୌଣସି ଗୂଢ଼ ଉଦ୍ଦେଶ୍ୟ ଅଛି ।

ଯୋଗୀନ୍ ମା'ଙ୍କ ମନରେ ଥରେ ସନ୍ଦେହ ହେଲା, ''ଠାକୁର ଥିଲେ ସର୍ବତ୍ୟାଗୀ, କିନ୍ତୁ ମା'ଙ୍କୁ ଦେଖୁଛି ଘୋର ସଂସାରୀ—ଦିନରାତି ତାଙ୍କ ଭାଇ, ପୁତୁରା ଓ ଝିଆରୀମାନଙ୍କୁ ନେଇ ବ୍ୟସ୍ତ ଅଛନ୍ତି ।'' ଦିନେ ଗଙ୍ଗାତୀରରେ ବସି ଜପ କରୁଛନ୍ତି, ଏପରି ସମୟରେ ଭାବଚକ୍ଷୁରେ ଦେଖିଲେ, ଶ୍ରୀରାମକୃଷ୍ଣ ଆସି କହୁଛନ୍ତି, ''ଦେଖ, ଗଙ୍ଗାରେ କଅଣ ଭାସି ଯାଉଛି ।'' ଯୋଗୀନ୍-ମା' ଦେଖିଲେ, ଗୋଟିଏ ରକ୍ତାକ୍ତ ନବଜାତ ଶିଶୁ ଭାସି ଯାଉଛି । ଠାକୁର କହିଲେ, ''ଗଙ୍ଗା କଅଣ କେବେ ଅପବିତ୍ର ହୁଏ ? ତାକୁ ମଧ୍ୟ (ଶ୍ରୀମା'ଙ୍କୁ) ସେପରି ଚିନ୍ତା କରିବ । କେବେ ଏପରି ସନ୍ଦେହ କରିବ ନାହିଁ । ତାକୁ ଆଉ ଏହାକୁ (ନିଜକୁ ଦେଖାଇ) ଅଭିନ୍ନ ଜାଣିବ ।''

ଶ୍ରୀମା'ଙ୍କ ପାରିବାରିକ ଜୀବନ ଆଲୋଚନା କଲେ ଆମେ ଦେଖିବା ଯେ ସେ ସମ୍ପୂର୍ଣ୍ଣ ଅନାସକ୍ତ । ନିଜ କର୍ତ୍ତବ୍ୟ କର୍ମ କରୁଛନ୍ତି, ବେଳେବେଳେ ମନେ ହୁଏ ସେ ସାଧାରଣ ମନୁଷ୍ୟ-ପରି ଶୋକତାପରେ ଜର୍ଜରିତ; କିନ୍ତୁ ପର ମୁହୂର୍ତ୍ତରେ

ତାଙ୍କ ଚରିତ୍ର ନିର୍ଲିପ୍ତ ମେଘମୁକ୍ତ ପୂର୍ଣ୍ଣଚନ୍ଦ୍ର ପରି ପ୍ରକାଶିତ ହୁଏ । ଦିନେ ଶୀତଦିନେ ସକାଳେ କାଳୀମାମୁଁ ଓ ବରଦାମାମୁଁଙ୍କ ଅମାରକୁ ଧାନ ଆସୁଛି । ଧାନ ଆଣିବା ରାସ୍ତା ଉପରକୁ ମାଡ଼ି କାଳୀମାମୁଁ ବାଡ଼ ଦେଉଛନ୍ତି, ଯେଉଁଥିଲାଗି ବରଦାମାମୁଁଙ୍କୁ ଧାନ ଆଣିବାରେ ଅସୁବିଧା ହେଉଛି । ଏହାକୁ କେନ୍ଦ୍ର କରି ପ୍ରଥମେ କଳିତକରାଳ ଏବଂ ପରେ ମାରଧର ହେବାର ଉପକ୍ରମ ହେଲା । ଏହା ଦେଖି ଶ୍ରୀମା' ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ବୟସରେ ଅନେକ ବଡ଼ । ଉଭୟଙ୍କୁ ନିଜ କୋଳରେ ମଣିଷ କରିଛନ୍ତି । ତେଣୁ ସେ ଯାଇ ମଧ୍ୟସ୍ଥତା କରିବାରୁ ମାରଧର ହେଲା ନାହିଁ । ଇତିମଧ୍ୟରେ ସାଧୁମାନେ ମଧ୍ୟ ଆସି ପହଞ୍ଚିବାରୁ ଦୁଇଭାଇ ଗର୍ଜନ କରି କରି ଘରକୁ ଫେରିଗଲେ । ଏଣେ ଶ୍ରୀମା' ମଧ୍ୟ ଉତ୍ତେଜିତ ହୋଇ ବାରଣ୍ଡାରେ ବସିଲେ । ମୁହୂର୍ତ୍ତକ ଭିତରେ ସମସ୍ତ କ୍ରୋଧ କୁଆଡ଼େ ଚାଲିଗଲା । କ୍ରୀଡ଼ାଭୂମି ତୁଲ୍ୟ ଏହି ସଂସାରର ସ୍ୱାର୍ଥସଂଘର୍ଷର ଊର୍ଦ୍ଧ୍ୱରେ ଯେଉଁ ଶାଶ୍ୱତ ଶାନ୍ତି ରହିଛି, ତାହା ଅନୁଭବ କରି ସେ ହସି ହସି କହିବାକୁ ଲାଗିଲେ, "ମହାମାୟାଙ୍କର କି ମାୟା ! ଅନନ୍ତ ପୃଥବୀ ପଡ଼ି ରହିଛି—ଏସବୁ ମଧ୍ୟ ପଡ଼ି ରହିବ—ଜୀବ ଏହା ବୁଝିପାରୁନାହିଁ ।" ମା' ହସି ହସି ଗଡ଼ିଗଲେ ।

ମାକୁ'ର ପୁଅ 'ନେଡ଼ା'ର ମୃତ୍ୟୁସମ୍ବାଦ ପାଇ ଶ୍ରୀମା' ସାଧାରଣ ଲୋକଙ୍କ ପରି ଡାକ ଛାଡ଼ି କାନ୍ଦିବାକୁ ଲାଗିଲେ । କ୍ରମେ ଠାକୁରଙ୍କୁ ଭୋଗ ଦେବାର ସମୟ ଉପସ୍ଥିତ ହେଲା । କର୍ତ୍ତବ୍ୟ ଦୃଷ୍ଟିରୁ ଜଣେ ଭକ୍ତ ତାଙ୍କୁ ଭୋଗକଥା ସ୍ମରଣ କରାଇ ଦେବାରୁ ବିଳାପ କରୁଥିବା ଶ୍ରୀମା' ଅନ୍ୟ ପ୍ରକାର ହୋଇଗଲେ—ଯେପରିକି କିଛି ହୋଇନାହିଁ । ସେ ଯଥାରୀତି ଭୋଗ ନିବେଦନ କଲେ ।

ସଂସାରୀ ଲୋକଙ୍କ ପକ୍ଷରେ ପରିବାର ପ୍ରତିପାଳନ ପ୍ରଧାନ କର୍ତ୍ତବ୍ୟ ହେଲେ ସୁଦ୍ଧା ନିରପେକ୍ଷ ଦ୍ରଷ୍ଟାଙ୍କ ଦୃଷ୍ଟିରେ ଏହିସବୁ ଚେଷ୍ଟା ଅନେକ କ୍ଷେତ୍ରରେ ସ୍ୱାର୍ଥପରତା ବୋଲି ପ୍ରତିଭାତ ହୁଏ । କିନ୍ତୁ ଜ୍ଞାନୀ ବ୍ୟକ୍ତି ସେକଥା ବୁଝି ଦୁର୍ବଳଚିତ୍ତ ମନୁଷ୍ୟଙ୍କୁ ମଧ୍ୟ ବାଧା ଦିଅନ୍ତି ନାହିଁ, ବରଂ ତା'ର ଅଭାବ ଯଥାସମ୍ଭବ ମେଣ୍ଟାଇବାକୁ ଚେଷ୍ଟା କରନ୍ତି । ଶ୍ରୀମା'ଙ୍କ ଜୀବନରେ ଏପରି ବହୁ ଦୃଷ୍ଟାନ୍ତ ରହିଛି ।

କାଳୀମାମୁଁଙ୍କ ସଂସାରରେ ଭାରୀ ଅଭାବ । ଶ୍ରୀମା' ତାହା ଜାଣି ତାଙ୍କୁ ଯଥାସମ୍ଭବ ସାହାଯ୍ୟ କରୁଥିଲେ । ଦିନେ କାଳୀମାମୁଁଙ୍କ ସମ୍ବନ୍ଧରେ ଶ୍ରୀମା' କହିଲେ, "ସେ କେବଳ ଟଙ୍କା ଟଙ୍କା କରି ଅସ୍ଥିର—'ଅନ୍ନଚିନ୍ତା ଚମତ୍କାରା, ବୁଦ୍ଧିମାନ ହୁଏ ଦିଶାହରା !'' ଦେଇଙ୍କୁ ଭାବିଛି ଗୋଟିଏ ଟଙ୍କାର ଗଛ । ତେବେ ତାହାର ଟିକିଏ ଭକ୍ତିଶ୍ରଦ୍ଧା ମଧ୍ୟ ଅଛି । ବିପଦ ଆପଦରେ ଏକମାତ୍ର କାଳୀ ଆସି ପାଖରେ ଛିଡ଼ା ହୁଏ ! ବାକି ସମସ୍ତେ ତ କେବଳ ନେଇ ପାରିଲେ ହେଲା ।" କୌଣସି ଉତ୍ସବ ଅନୁଷ୍ଠାନ ପାଇଁ କାଳୀମାମୁଁଙ୍କୁ ବଜାର ସଉଦା କରିବାକୁ ପଠାଇଲେ ବେଶୀ ଖର୍ଚ୍ଚ

ହେବ ଜାଣି ସୁଦ୍ଧା ଶ୍ରୀମା' ତାଙ୍କୁ ସମୟେ ସମୟେ ବଜାରକୁ ପଠାଉଥିଲେ । ମା' କାହାକୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନ ଥିଲେ ।

କାଳୀମାମୁଁ ଭାରୀ ଗମ୍ଭୀର ବ୍ୟକ୍ତି — ସମସ୍ତେ ତାଙ୍କୁ ଶ୍ରଦ୍ଧାଭୟ କରୁଥିଲେ । ନଳିନୀଦେବୀ, ମାକୁ, ରାଧୁ, ରାଧୁର ମା' ସମସ୍ତେ ମାମୁଁଙ୍କୁ ଡରୁଥିଲେ । ପାଗଳୀ ମାଇଁଙ୍କ ପାଗଳାମି ଯେତେବେଳେ ବହୁତ ବଢ଼େ, ସେତେବେଳେ ଶ୍ରୀମା' କହୁଥିଲେ, 'କାଳୀକୁ ଡାକି ଆଣ ତ ।' ତତକ୍ଷଣାତ୍ ମାଇଁ ନିଜ ବଖରାଭିତରେ ପଶି ଯାଉଥିଲେ । କୌଣସି ଉତ୍ସବ ଉପଲକ୍ଷେ ବଜାର ହାଟ କରିବା ପାଇଁ କାଳୀମାମୁଁ ବହୁ ପୂର୍ବରୁ ନାନା ଛଳରେ ନିଜ ଇଚ୍ଛା ବ୍ୟକ୍ତ କରୁଥିଲେ । ଅନେକ ସମୟରେ ବରଦା ମହାରାଜ ବଜାରହାଟ କରନ୍ତି ବୋଲି ଜାଣି କାଳୀମାମୁଁ କହିଲେ, ''ବହୁତ ଲୋକ ହେବେ, ବଜାରହାଟ ସେହି ଅନ୍ଦାଜରେ କରିବାକୁ ହେବ । ବରଦା ପିଲାଲୋକ, ସେ ପାରିବ ନାହିଁ ।'' ଶ୍ରୀମା' କହିଲେ, ''ଏଠି ସବୁବେଳେ ଭକ୍ତମାନଙ୍କର ଭିଡ଼ ଲାଗି ରହିଛି — ବଜାରହାଟ ଦେଖିଶୁଣି କରିବାକୁ ହେବ ।''

ଶ୍ରୀମା'ଙ୍କ ପରିବାର ଅନେକ ବଡ଼ । ଜଣେ ରାନ୍ଧୁଣୀଙ୍କ ପକ୍ଷରେ ଏତେଜଣଙ୍କୁ ରୋଷେଇ କରି ଦେବା ସମ୍ଭବପର ନୁହେଁ । ତେଣୁ ଶ୍ରୀମା'ଙ୍କର ଦୁଇଜଣ ବାଳକ ଭକ୍ତ ଭାତ ଇତ୍ୟାଦି ରାନ୍ଧିବାରେ ସାହାଯ୍ୟ କରୁଥିଲେ । ସେମାନେ ଅବ୍ରାହ୍ମଣ, ତେଣୁ ମା'ଙ୍କର ଚିନ୍ତା — ଏହି ବିଷୟକୁ କେନ୍ଦ୍ର କରି କୌଣସି ଗ୍ରାମ୍ୟ ବିବାଦ ଯେପରି ସୃଷ୍ଟି ନ ହୁଏ । ଦିନେ ବରଦାମାମୁଁ ଏହି ବିଷୟ ଉତ୍ଥାପନ କରି ସମସ୍ୟାର ସମାଧାନ କଲେ । ସେ କହିଲେ, ''ଏହି ବ୍ରହ୍ମଚାରୀମାନେ ତୁମର ଶିଷ୍ୟ, କେତେ ଶୁଦ୍ଧ; ଏମାନଙ୍କ ହାତର ରନ୍ଧା ଭାତ କେତେ ପବିତ୍ର !'' ବରଦାମାମୁଁ ଓ ପ୍ରସନ୍ନମାମୁଁ ଏହିସବୁ ବିଷୟରେ ଉଦାର ଥିଲେ । ସୁତରାଂ ମା' ସେମାନଙ୍କ ବିଷୟରେ ଅନେକ ନିଶ୍ଚିତ ଥିଲେ ।

ଥରେ ଶ୍ରୀମା'ଙ୍କ ଜନ୍ମତିଥି ଭକ୍ତମାନେ ଆନନ୍ଦସହକାରେ ପାଳନ କରୁଥିଲେ । ସାଧୁ ଓ ଭକ୍ତମାନେ ପୂଜାର ଆୟୋଜନ, ଭୋଗ ପାଇଁ ରନ୍ଧାବଢ଼ା, ଭଜନ-କୀର୍ତ୍ତନରେ ବ୍ୟସ୍ତ । ଏହି ସମୟରେ ଗୋପେଶ ମହାରାଜ ଭିତରକୁ ଯାଇ ଦେଖିଲେ ଶ୍ରୀମା' ଜଣେ ମାଇଁଙ୍କ ପାଇଁ ପଥ୍ୟ ପ୍ରସ୍ତୁତି କରୁଛନ୍ତି । ମାଇଁଙ୍କ ଦେହ ଅସୁସ୍ଥ, ଅଥଚ ତାଙ୍କର ଦେଖାଶୁଣା କରିବା ପାଇଁ ଘରେ କେହି ସ୍ତ୍ରୀ ଲୋକ ନାହାନ୍ତି । ଅତଏବ ଯାହାକୁ କେନ୍ଦ୍ର କରି ଏହି ଉତ୍ସବ ଚାଲିଛି ସେ ସେଥିପ୍ରତି ଦୃଷ୍ଟି ନ ଦେଇ ରୋଗୀର ସେବାରେ ନିଜକୁ ନିଯୁକ୍ତ କରିଛନ୍ତି । ଶ୍ରୀମା' ଶାନ୍ତ ଓ ଧୀରଭାବରେ ପଥ୍ୟ ପ୍ରସ୍ତୁତ କରି ମାଇଁଙ୍କ ଘରେ ଦେଇ ଆସିଲେ । ଏହିସବୁ କାମ ପାଇଁ ତାଙ୍କ ମୁହଁରେ କୌଣସି ବିରକ୍ତିର ଚିହ୍ନ ଦେଖାଗଲା ନାହିଁ ।

ଶ୍ରୀମା'ଙ୍କ ଜନ୍ମସ୍ଥାନ ଉପରେ ସାଧୁ ଓ ଭକ୍ତମାନେ ଗୋଟିଏ ମନ୍ଦିର ନିର୍ମାଣ କରିବାକୁ ଉତ୍ସୁକ ଥିଲେ । ଜମି କିନ୍ତୁ ତିନିମାମୁଁଙ୍କ ନାମରେ ଥିଲା । ଯଦିଓ କାଳୀମାମୁଁଙ୍କ ଅଂଶର ଜମି କୌଣସି ବିଶେଷ କାମରେ ଲାଗୁ ନ ଥିଲା—ତଥାପି ସେ ତାହା ଦେବାକୁ ନାରାଜ ଥିଲେ । ଦିନେ ତାଙ୍କ ମନରେ ଶୁଭ ବୁଦ୍ଧିର ଉଦୟ ହେଲା ଏବଂ ଶ୍ରୀମା'ଙ୍କୁ ସେ ଏ ବିଷୟରେ ତାଙ୍କର ମତ ଦେଲେ । ଶ୍ରୀମା' ସାଧାରଣଭାବରେ ସବୁ ଶୁଣି ଶରତ ମହାରାଜଙ୍କୁ ଏ ବିଷୟ ଜଣାଇ ଦେବାକୁ କହିଲେ । ଶରତ ମହାରାଜ ସୁଯୋଗ ବୁଝି ଜମିତକ ଶୀଘ୍ର ରେଜିଷ୍ଟ୍ରି କରାଇ ନେଲେ । ଅନ୍ୟ ମାମୁଁମାନେ ଆପତ୍ତି କଲେ ନାହିଁ; ଯଦିଓ ସମସ୍ତେ ତାଙ୍କ ପାଉଣା ଅପେକ୍ଷା ବେଶୀ ଅର୍ଥ ଆଦାୟ କରିବାକୁ ଛାଡ଼ିଲେ ନାହିଁ ।

ଶ୍ରୀମା'ଙ୍କୁ ତିନିସ୍ତରର ଆତ୍ମୀୟବର୍ଗଙ୍କ ସହିତ ଆଦାନପ୍ରଦାନ କରିବାକୁ ହେଉଥିଲା—ପ୍ରଥମ ଭାଇମାନେ, ଦ୍ୱିତୀୟ ଝିଆରୀ ଓ ଭାଉଜମାନେ, ତୃତୀୟ ପୁତୁରା ଓ ଝିଆରୀମାନଙ୍କ ସନ୍ତାନବୃନ୍ଦ । ଭାଇମାନେ ଉପାର୍ଜନକ୍ଷମ । ତଥାପି ଶ୍ରୀମା'ଙ୍କ ଅର୍ଥସାହାଯ୍ୟର ପ୍ରତ୍ୟାଶା ରଖୁଥିଲେ । ତିନିଜଣ ଝିଆରୀ–ନଳିନୀ, ମାକୁ, ରାଧୁ ଏବଂ ଭାଉଜ ସୁରବାଳା ଶ୍ରୀମା'ଙ୍କ ପରିବାରଭୁକ୍ତ । ତୃତୀୟ ସ୍ତରର ସମସ୍ତେ ସେତେବେଳେ ଅଳ୍ପବୟସ୍କ । ପୂର୍ବୋକ୍ତ ସମସ୍ତଙ୍କ ସହିତ ତାଙ୍କର ଅଚାରବ୍ୟବହାର ସେମାନଙ୍କ ବୟସ ଅନୁଯାୟୀ ଥିଲା । ବୟସ୍କମାନଙ୍କ ସହିତ ଅତି ପ୍ରତିକୂଳ ଅବସ୍ଥାରେ ମଧ୍ୟ ଶ୍ରୀମା' ସହାନୁଭୂତି ସହକାରେ ନିଜ କର୍ତ୍ତବ୍ୟ ପାଳନ କରୁଥିଲେ । କିନ୍ତୁ ତାଙ୍କର ସ୍ୱାଭାବିକ କୋମଳ ହୃଦୟର ସ୍ଫୁରଣ ହେଉଥିଲା ବାଳକବାଳିକାମାନଙ୍କ ସହିତ ତାଙ୍କ ଆଚରଣରେ ।

ପ୍ରସନ୍ନମାମୁଁଙ୍କ ପ୍ରଥମ ସ୍ତ୍ରୀ ରାମପ୍ରିୟା ଦେବୀଙ୍କର ଦୁଇଟି ଝିଅ—ନଳିନୀ ଓ ମାକୁ (ସୁଶୀଳା) । ବିଭିନ୍ନ ପାରିବାରିକ କାରଣରୁ ଶ୍ରୀମା' ଏମାନଙ୍କର ଦାୟିତ୍ୱ ନିଜେ ଗ୍ରହଣ କରିଥିଲେ । ଗ୍ରାମ୍ୟ ସଂକୀର୍ଣ୍ଣତାରେ ନଳିନୀଦେବୀଙ୍କର ମନ ପୂର୍ଣ୍ଣ ଥିଲା । ଥରେ ଡମ ଜାତିର ଲୋକେ ନଡ଼ା ନେଇ ଆସିବାରୁ ତାହା କେଉଁଠାରେ ରଖିବାକୁ ହେବ ଶ୍ରୀମା' ତାହା କହିଲେ । ସେମାନେ ଖୁବ୍ ସାବଧାନରେ ତାହା ରଖିଲେ, କିନ୍ତୁ ନଳିନୀଦେବୀ ଚିତ୍କାର କରି କହିଲେ, ''ସବୁ ଛୁଆଁ ହୋଇଗଲା, ଫୋପାଡ଼ି ଦିଅ'' ଏବଂ ଗାଳି ଦେଇ କହିଲେ, ''ତୁମେମାନେ ଡମ ହୋଇ କେଉଁ ସାହସରେ ଏପରି କଲ ।'' ସେମାନେ ଭୟରେ ଥରହର । ଶ୍ରୀମା' କିନ୍ତୁ ସାନ୍ତ୍ୱନା ଦେଇ କହିଲେ, ''ଡର ନାହିଁ, ତୁମର କିଛି ହେବ ନାହିଁ ।'' ସେମାନଙ୍କୁ ମୁଢ଼ି ଖାଇବା ପାଇଁ ପଇସା ଦେଇ ବିଦାୟ ଦେଲେ ।

ପାଗଳୀ ମାଈଙ୍କ ସହିତ ନଳିନୀଦେବୀଙ୍କର ଅହିନକୁଳ ସମ୍ପର୍କ । ଉଭୟଙ୍କୁ ନେଇ ସଂସାର ଚଳାଇବା ଶ୍ରୀମା'ଙ୍କର ସ୍ୱେଚ୍ଛାକୃତ କର୍ତ୍ତବ୍ୟ । ସେ କହୁଥିଲେ, ''ଯାହା କର ନା କାହିଁକି, ସମସ୍ତଙ୍କର ପରାମର୍ଶ ଶୁଣିବାକୁ ହୁଏ । ସମସ୍ତଙ୍କୁ

ସ୍ୱାଧୀନତା ଦେଇ ଦୂରରୁ ଲକ୍ଷ୍ୟ କରିବାକୁ ହୁଏ । ମୁଁ ରାଧୁର ଶ୍ୱଶୁରଘରକୁ ଭାର ପଠାଇବି, ସେ ବିଷୟରେ ନଳିନୀ ସହିତ ପରାମର୍ଶ କରେ । ତା' ସହିତ ରାଧୁ ମା'ର ଅହିନକୂଳ ସମ୍ପର୍କ । ସେମାନେ ପରସ୍ପର ଭଲ ଦେଖିପାରନ୍ତି ନାହିଁ । ମୁଁ ଯେତେବେଳେ ନଳିନୀର ପରାମର୍ଶ ନିଏ, ସେତେବେଳେ ସେ ଉଦାରତାବଶତଃ ଆହୁରି ବେଶୀ ଭାର ପଠାଇବାକୁ କହେ । ମୁଁ ମନେ ମନେ ହସେ । ଅଥଚ ଯଦି ତାକୁ ନ ଜଣାଇ ଭାର ପଠାଇବି, ତାହାହେଲେ ଘର କୁରୁକ୍ଷେତ୍ରରେ ପରିଣତ ହେବ । ଦେଖ, ସମସ୍ତଙ୍କୁ କିଛି କିଛି ସ୍ୱାଧୀନତା ଦେଇ ନିଜେ ଟିକେ ସଂଯତଭାବରେ ଚଳିବାକୁ ହୁଏ । ମୁଁ ସେମାନଙ୍କ ସହିତ କେତେ ସାବଧାନରେ ରହେ । ତଥାପି କେବେ କେବେ ସେମାନଙ୍କ ଭିତରେ କଳିକଜିଆ ହୁଏ—ତାହା ହେଉଛି ସେମାନଙ୍କର ସ୍ୱଭାବ ! କଅଣ କରିବି କୁହ ? ତାଙ୍କର (ଠାକୁରଙ୍କର) ସଂସାର, ସେ ଦେଖୁଛନ୍ତି ।''

ମାକୁ'ର ଦାୟିତ୍ୱ ଶ୍ରୀମା' ଗ୍ରହଣ କରିଥିଲେ । ତାହାର କଲ୍ୟାଣ ପାଇଁ ସେ ତା'ର ଶ୍ୱଶୁରଘର ସହିତ ଭଲ ସମ୍ପର୍କ ରଖିଥିଲେ—କହୁଥିଲେ, ''ସେମାନଙ୍କର ଆଦର ଯତ୍ନ ନ କଲେ ସେମାନେ କ୍ଷତି କରିବେ ।'' ମାକୁ ରାଧୁ ଅପେକ୍ଷା ବୟସରେ ବଡ଼ । ଶ୍ରୀମା' ଯେତେବେଳେ କୋଆଲପଡ଼ାରେ ରାଧୁ ସହିତ ଥିଲେ (୧୯୧୯ ଖ୍ରୀଷ୍ଟାବ୍ଦ), ସେତେବେଳେ ନଳିନୀଦେବୀ ଈର୍ଷାବଶତଃ ମାକୁକୁ ଜୟରାମବାଟୀ ପଠାଇଦେଲେ । ବିନା ଅନୁମତି ନେଇ ମାକୁ ଚାଲିଯିବାରୁ ମା' ଭାରୀ ଦୁଃଖ ପାଇଥିଲେ—ବିଶେଷ କରି ତାଙ୍କ ପୁଅ ନେଡ଼ା ପାଇଁ । ମା' କିନ୍ତୁ ଅଭିମାନ ନ କରି ପ୍ରତିଦିନ ବରଦା ମହାରାଜଙ୍କୁ ଜୟରାମବାଟୀ ପଠାଉଥିଲେ ସେମାନଙ୍କର ଖବର ନେବା ପାଇଁ । ନେଡ଼ା ଅସୁସ୍ଥ ହେବାରୁ ତା' ପାଇଁ ଚିକିତ୍ସାର ବ୍ୟବସ୍ଥା କରିଥିଲେ । ନେଡ଼ାର ମୃତ୍ୟୁସମ୍ବାଦ ପାଇ ଶ୍ରୀମା' ସଂସାରୀ ଲୋକଙ୍କ ପରି କାନ୍ଦିଥିଲେ । ବହୁଦିନ ଧରି ତାହାର ଚିନ୍ତାରେ ଶ୍ରୀମା'ଙ୍କ ଆଖି ଅଶ୍ରୁସିକ୍ତ ହେଉଥିଲା । ନେଡ଼ା ବିଷୟରେ ସେ କହିଥିଲେ, ''ପିଲାଟା ଯୋଗଭ୍ରଷ୍ଟ ସାଧକ ବା ମହାପୁରୁଷ ଥିଲା । ସାମନ୍ୟ କର୍ମ ବାକି ଥିଲା । ତାହା ଶେଷ ହେବାରୁ ସେ ଚାଲିଗଲା । ଏହା ତାହାର ଶେଷ ଜନ୍ମ । ଏତେ ଅଳ୍ପ ବୟସର ପିଲାଙ୍କ ଭିତରେ ଏପରି ଶୁଭ ସଂସ୍କାର ଦେଖାଯାଏ ନାହିଁ । ପ୍ରତିଦିନ ଚମ୍ପାଫୁଲ ଆଣି ମୋ ଗୋଡ଼ରେ ରଖି ପୂଜା କରୁଥିଲା ।'' ନେଡ଼ାର ମୃତ୍ୟୁର ଆଠ ଦଶଦିନ ପରେ ମଧ୍ୟ ତା' କଥା ଭାବି ଶ୍ରୀମା'ଙ୍କ ଆଖିରେ ଅଶ୍ରୁ ଦେଖି ଜଣେ ଭକ୍ତ କହିଲେ, ''ସଂସାରୀ ଲୋକଙ୍କର ସନ୍ତାନ ବିୟୋଗରେ କିପରି କଷ୍ଟ ହୁଏ, ତାହା ବୋଧହୁଏ ଆପଣ ବୁଝିପାରିଛନ୍ତି ।'' ଶ୍ରୀମା' ଉତ୍ତର ଦେଲେ, ''ତାହା କଅଣ ଆଉ କହି ବୁଝାଇବାକୁ ହେବ ! ଯାହା କଷ୍ଟ ହେଉଛି ମାକୁ'ର ପୁଅକୁ ମଣିଷ କରି ତାହା ଭୁଲିପାରୁନାହିଁ !''

ବହୁଦିନ ପୂର୍ବର ଘଟଣା । ନେଡ଼ାର ବୟସ ସେତେବେଳେ ବର୍ଷେ ହୋଇଥାଏ । ଶ୍ରୀମା' ସକାଳେ ଶ୍ରୀଶ୍ରୀଠାକୁରଙ୍କ ପାଇଁ ନୈବେଦ୍ୟ ସଜାଉଥାନ୍ତି । ନେଡ଼ା ଗୁରୁଣ୍ଡି ଗୁରୁଣ୍ଡି ଆସି ଗୋଟିଏ କଦଳୀ ନେବାକୁ ଚାହିଁଲା । ଶ୍ରୀମା' କୋମଳ ସ୍ୱରରେ କହିଲେ, ''ଟିକିଏ ବସ ବାବା, ଠାକୁରଙ୍କ ଭୋଗ ହେଲେ ପାଇବୁ ।'' ସେ ଶାନ୍ତ ନ ହେବାରୁ ମା' ତାକୁ ହାତରେ ଠେଲିଦେଲେ; କିନ୍ତୁ ସେ ମଧ୍ୟ ମା'ଙ୍କ ହାତ ଠେଲି ଆସିବାକୁ ଲାଗିଲା, ସେତେବେଳେ ସେବକ ତାକୁ ଧରି ଅନ୍ୟତ୍ର ନେବାକୁ ଚାହିଁଲେ । କିନ୍ତୁ ଶ୍ରୀମା' ବାଧା ଦେଇ ନିଜ ହାତରୁ ଗୋଟିଏ କଦଳୀ ନେଡ଼ା ମୁହଁରେ ଦେଇ କହିଲେ, ''ଖା, ଗୋପାଳ, ଖା !'' ସେତେବେଳେ ଶ୍ରୀମା'ଙ୍କ ମୁହଁ ଏକ ଦିବ୍ୟସ୍ନେହରେ ଆଲୋକିତ ହୋଇଉଠିଥିଲା । ନେଡ଼ା ଶ୍ରୀମା'ଙ୍କୁ ଡାକୁଥିଲା 'ସୀତା' । ସେତେବେଳେ ତା'ର ଦାନ୍ତ ପଡ଼ିଯାଇଥିଲା; ନେଡ଼ା ଦିନେ ଶିଡ଼ି ଉପରେ ବସି ଗୋଡ଼ ହଲାଇ ହଲାଇ କହିଲା, ''ମୋତେ ଦୁଇଟା ଦାନ୍ତ ଦିଅ ।''

କୋଆଲପଡ଼ାର ବଣରେ ରାଧୁର ପୁଅ ଜନ୍ମ ହୋଇଥିଲା ବୋଲି ଶ୍ରୀମା' ତା' ନାମ ରଖିଥିଲେ ବନବିହାରୀ । ଶ୍ରୀମା' ସକାଳେ ତାକୁ ଉଠାଇବା ପାଇଁ ସ୍ୱର କରି କରି ଗାଉଥିଲେ—

''ଉଠ ଲାଲଜୀ, ଭୋରଭୟୋ ସୁର-ନର-ମୁନି-ହିତକାରୀ ।
ସ୍ନାନ କରୋ, ଦାନ ଦେହୁ ଗୋ-ଜନ-କନକ-ସୁପାରି ।।

ଜଗଦ୍ଧାତ୍ରୀପୂଜାର ପୂର୍ବଦିନ ସୁବାସିନୀ ଦେବୀଙ୍କ ଛୋଟ ଝିଅ ବିମଳାର ଗୋଡ଼ ଫୁଲି ଜ୍ୱର ହେଲା । ଡାକ୍ତର ବୈକୁଣ୍ଠ ମହାରାଜ (ସନ୍ନ୍ୟାସ ନାମ ମହେଶ୍ୱରାନନ୍ଦ) ଔଷଧ ଦେଇ ମା'ଙ୍କୁ କହିଲେ, ''ଆପଣ କହିବାରୁ ଗୋଟିଏ ଦାଗ ଔଷଧ ଦେଲି, ଚେତା ନାହିଁ, ଔଷଧ ମୁହଁରୁ ଗଡ଼ିପଡ଼ିଲା । ଏହି ସମ୍ବାଦ ପାଇ ଶ୍ରୀମା' ତାକୁ ଦେଖିବାକୁ ଗଲେ । ସୁବାସିନୀ ଶ୍ରୀମା'ଙ୍କ ଗୋଡ଼ ଧରି କାନ୍ଦିବାକୁ ଲାଗିଲେ ଏବଂ ପଦରଜ ପାଣିରେ ମିଶାଇ ବିମଳାର ମୁହଁରେ ଦେଲେ । ଶ୍ରୀମା' ବିମଳା ଦେହରେ ହାତ ଆଉଁସି ଦେଲେ ଏବଂ ଜଗଦ୍ଧାତ୍ରୀ ପ୍ରତିମା ସମ୍ମୁଖରେ ହାତ ଯୋଡ଼ି ପ୍ରାର୍ଥନା କଲେ, ''କାଲି ତୁମର ପୂଜା ହେବ ମା', ଆଉ ବଡ଼ ବୋହୂ ହାଉ ହାଉ କରି କାନ୍ଦିବ ?'' ରାତିରେ ବିମଳାର ଚେତା ଫେରିଲା ।

ଇନ୍ଦୁମତୀ ଦେବୀ ଓ ନଳିନୀ ଦେବୀ ସେତେବେଳେ ଖୁବ୍ ଛୋଟ । ରୋଷେଇ କରିବା ଜାଣି ନ ଥିଲେ । ତେଣୁ ଶ୍ରୀମା' ସେମାନଙ୍କୁ କହୁଥିଲେ, ''ମୋ ପାଖକୁ ଆସ, ରୋଷେଇ କରିବା ଶିଖି ନିଅ । ମୁଁ କ'ଣ ତୁମ ସଂସାରରେ ବାରମାସ ରୋଷେଇ କରି ପାରିବି ?'' ପରବର୍ତ୍ତୀ କାଳରେ ଇନ୍ଦୁମତୀ ଯେତେବେଳେ ପକ୍‌କା ଗୃହିଣୀ, ଶ୍ରୀମା' ସେତେବେଳେ ତାଙ୍କ ନୂତନ ଘରେ ରହୁଥିଲେ । ଯେଉଁ ଯେଉଁ ତରକାରୀ ଶ୍ରୀମା'ଖାଇବାକୁ ଭଲ ପାଉଥିଲେ—ତାହା

ରାନ୍ଧି ଦେଇ ଯିବାକୁ ଇନ୍ଦୁମତୀଙ୍କୁ କହୁଥିଲେ । ଥରେ କଲିକତାରେ ଇନ୍ଦୁମତୀ ଦେବୀଙ୍କର ଉଦରାମୟ ହେବାରୁ ଶ୍ରୀମା' କହିଥିଲେ, ''ଦେଖ, ଟିକିଏ ଧ୍ୟାନ, ଜପ କର । ତେବେ ଦେହର ରୋଗ ଯିବ ।'' ଆଉ ଦିନେ କହିଥିଲେ, ''ଦେଖ, ତୁମେମାନେ ପିଲା ଲୋକ । ଖୁବ୍ ସାବଧାନରେ କାମ କରିବ । ଆମ ଠାକୁରଙ୍କର ହାତଗୋଡ଼ ଅଛି । ଅସାବଧାନ ହେଲେ ଅପରାଧ ହେବ ।''

ପ୍ରସନ୍ନମାମୁଁଙ୍କ ଦ୍ୱିତୀୟ ସ୍ତ୍ରୀ ସୁବାସିନୀ ଦେବୀ ଶ୍ରୀମା'ଙ୍କର ମନ୍ତ୍ରଶିଷ୍ୟା । ଥରେ ଶ୍ରୀମା' କାମାରପୁକୁରରେ ଥିବା ସମୟରେ ସୁବାସିନୀ ଦେବୀ କିଛି ପଦ୍ମଫୁଲ ଓ ମିଠା ଶ୍ରୀମା'ଙ୍କ ନିକଟକୁ ପଠାଇଥିବାରୁ ମା' ଆନନ୍ଦିତ ହୋଇଥିଲେ । ଶ୍ରୀମା' ପ୍ରଥମେ ସୁବାସିନୀଙ୍କୁ ଦୀକ୍ଷା ଦେବା ପାଇଁ ରାଜି ହେଲେ ନାହିଁ; କହିଥିଲେ, ''ଘରେ ମନ୍ତ୍ର ଦେବି ନାହିଁ ।'' କିନ୍ତୁ ଗୌରୀ-ମା' କହିଲେ, ''କଅଣ କହୁଛ ମା', ତୁମର ଏଇ ଜଣକ ଆଉ ।'' ସୁବାସିନୀ ଦେବୀଙ୍କ ପରେ ମାକୁ, ଭୂଦେବ ଓ ତା' ସ୍ତ୍ରୀ ଏବଂ ରାଧୁ ଓ ତାହାର ସ୍ୱାମୀକୁ ଦୀକ୍ଷା ଦେଇଥିଲେ ।

ଶ୍ରୀମା' ଯେଉଁମାନଙ୍କୁ ସ୍ନେହ କରୁଥିଲେ, ସେମାନେ ତାଙ୍କୁ କିଛି ଦେଲେ ସେ ଅତି ଆନନ୍ଦିତ ହେଉଥିଲେ ଏବଂ ସେହି ଦାନକୁ ଶହେଗୁଣ ବଢ଼ାଇ ଦେଖୁଥିଲେ । ଦିନେ ସୁବାସିନୀ କହିଲେ ଯେ ''ମନ୍ତ୍ର ନେଇ ସୁଦ୍ଧା ତାଙ୍କର ସାଧନ ଭଜନ ହେଉନାହିଁ ।'' ଶ୍ରୀମା' କହିଲେ, ''ତୁ ଯେଉଁ କାମ କରୁଛୁ, ତାହା ହିଁ ସାଧନା—ଏହାଠାରୁ ବଳି ଆଉ କଅଣ ସାଧନଭଜନ ଅଛି ? ଠାକୁରଙ୍କୁ ପ୍ରାର୍ଥନା କର ଯେପରିକି ଭକ୍ତିଲାଭ ହୁଏ ।''

ସୁଖ, ଦୁଃଖ, ଆପଦ ବିପଦକୁ ନେଇ ସଂସାର । ଶ୍ରୀମା' ଚାହୁଁଥିଲେ ସମସ୍ତେ ଆନନ୍ଦରେ ରହନ୍ତୁ । କିନ୍ତୁ ବିରୁଦ୍ଧ ଶକ୍ତି ବହୁ ସ୍ଥଳରେ ସେ ଚେଷ୍ଟାକୁ ପ୍ରତିହତ କରୁଥିଲା । ଘରେ ସମୟ ସମୟରେ ଯେଉଁ ଅବର୍ଣ୍ଣନୀୟ ପରିସ୍ଥିତିର ସୃଷ୍ଟି ହେଉଥିଲା ସେହି ପରିସ୍ଥିତିରେ କେବଳ ଶ୍ରୀମା'ଙ୍କ ପକ୍ଷରେ ହିଁ ଶାନ୍ତଭାବରେ ରହି ସଂସାରକର୍ମ କରିବା ସମ୍ଭବ ।

ପାଗଳୀ ସୁରବାଳାଙ୍କ ଧାରଣା ଶ୍ରୀମା' ଔଷଧପତ୍ର ସାହାଯ୍ୟରେ ରାଧୁକୁ ବଶ କରି ରଖିଛନ୍ତି । ଅଥଚ ରାଧୁ ପାଇଁ କିଛି କରୁନାହାନ୍ତି । ଏଥିପାଇଁ ସେ ଶ୍ରୀମା'ଙ୍କୁ ଅବିରାମ ଗାଳିଗୁଲଜ କରନ୍ତି । ଦିନେ ଶ୍ରୀମା' ଉତ୍ୟକ୍ତ ହୋଇ କହିଲେ, ''ତୁ କ'ଣ ମୋତେ ସାଧାରଣ ଲୋକ ମନେ କରୁଛୁ ? ତୁ ମୋତେ ଏତେ ଗାଳି ଦେଉ, ମୁଁ ତୋର ଅପରାଧ ନିଏନା ବୋଲି । ମୁଁ ଯଦି ତୋର ଅପରାଧ ନେବି, ତାହାହେଲେ ତୋର ରକ୍ଷା ନାହିଁ । ...ମୋର କୌଣସି ମାୟା ନାହିଁ । ବର୍ତ୍ତମାନ ସବୁ ମାୟା କାଟି ଦେଇପାରେ । କର୍ପୂର ପରି କେବେ ଦିନେ ଉଭେଇ ଯିବି ତାହା ଜାଣି ବି ପାରିବ ନାହିଁ ।'' ଏ କଥା ଶୁଣି ମାଇଁଙ୍କ ସ୍ୱରରେ ପରିବର୍ତ୍ତନ ହେଲା ।

ପରବର୍ତ୍ତୀ ଘଟଣା ବଡ଼ ମର୍ମନ୍ତୁଦ । ସେଥିରେ ଅସୀମ ସହନଶୀଳା ଶ୍ରୀମା'ଙ୍କର ମଧ୍ୟ ଧୈର୍ଯ୍ୟଚ୍ୟୁତି ହୋଇଥିଲା । ହୁଏତ ଏହା ଆମର ବୁଝିବାର ଭୁଲ, କାରଣ ଜଗଦମ୍ବା ଧୈର୍ଯ୍ୟହରା ହୋଇ ନ ପାରନ୍ତି । ବୋଧହୁଏ ଲୀଳାସମ୍ବରଣ ପାଇଁ ଉନ୍ମୁଖ ହୋଇ ସେ ପାଗଳୀକୁ ନିଜ ପାଖକୁ ଟାଣି ନେବାର ବ୍ୟବସ୍ଥା କରୁଥିଲେ । ଦିନେ ସନ୍ଧ୍ୟାବେଳେ ଶ୍ରୀମା' ରୋଷେଇ ପାଇଁ ପରିବା କାଟୁଥିଲେ । ଶ୍ରୀମା'ଙ୍କ ଦେହ ସେତେବେଳେ ଖୁବ୍ ଖରାପ । ହଠାତ୍ ପାଗଳୀ ଆସି କହିଲେ, ''ତୁମେ ରାଧୁକୁ ଅଫିମ ଖୁଆଇ ପଙ୍ଗୁ କରି ନିଜ ବଶରେ ରଖିଛ । ମୋ ନାତିକୁ, ମୋ ଝିଅକୁ ମୋ ନିକଟକୁ ଆସିବାକୁ ଦିଅ ନାହିଁ ।'' ଭକ୍ତମାନେ ବିଶ୍ୱାସ କରିବାକୁ ନ ଚାହିଁଲେ ମଧ୍ୟ ଶ୍ରୀମା' ସେତେବେଳେ ସବୁ ବନ୍ଧନ କଟାଇବାକୁ ଉଦ୍ୟତ । ତେଣୁ ନିର୍ବିକାର ଭାବରେ କହିଲେ, ''ନେଇ ଯାଉନୁ ତୋ ଝିଅକୁ—ମୁଁ କଅଣ ଲୁଚାଇ ରଖିଛି ?'' ଏହି ଉଦାସୀନତା ଦେଖି ମାଇଁ ଅତ୍ୟନ୍ତ କ୍ରୁଦ୍ଧ ହେଲେ, ଗାଳିମନ୍ଦ କରିବାକୁ ଲାଗିଲେ ଏବଂ ତାଙ୍କର ଏ ଉଗ୍ରତା ଯାଇ ଚରମ ସୀମାରେ ପହଞ୍ଚିଲା । ଶ୍ରୀମା'ଙ୍କୁ ମାରିବା ପାଇଁ ସେ ଗୋଟିଏ ଜଳନ୍ତା କାଠ ନେଇ ଆସିଲେ । ସେ ଭୟଙ୍କର ମୂର୍ତ୍ତି ଦେଖି ମା' ଡାକ ପକାଇଲେ; ବରଦା ମହାରାଜ ଦଉଡ଼ିଆସି ଏହି ଅବସ୍ଥା ଦେଖି ମାଇଁଙ୍କୁ ଧକ୍କା ଦେଇ ଘରୁ ବାହାର କରିଦେଲେ ଏବଂ ଘରେ ଆଉ କେବେ ପ୍ରବେଶ ନ କରିବାକୁ କହିଲେ । ଏଣେ ଶ୍ରୀମା' ମଧ୍ୟ ଏହି ଉତ୍ତେଜନାରେ ସମ୍ପୂର୍ଣ୍ଣ ବଦଳି ଯାଇଛନ୍ତି; ଅକସ୍ମାତ୍ କହି ପକାଇଲେ, ''ପାଗଳୀ ତୁ କ'ଣ କରିବାକୁ ଯାଉଥିଲୁ ? ତୋର ଏହି ହାତ ଖସି ପଡ଼ିବ ।'' ପର ମୁହୂର୍ତ୍ତରେ ସେ ଦୁଃଖରେ ଜିଭ କାମୁଡ଼ି ପକାଇଲେ ଏବଂ ହାତ ଯୋଡ଼ି ପ୍ରାର୍ଥନା କଲେ—''ଠାକୁର କଅଣ କଲି ? ମୁଁ ତ କେବେ କାହାକୁ ଅଭିଶାପ ଦେଇ ନାହିଁ; ଶେଷରେ ତାହା ମଧ୍ୟ ହେଲା ? ଆଉ କାହିଁକି ?'' ଶ୍ରୀମା'ଙ୍କ ଆଖି ସେତେବେଳେ ଅଶ୍ରୁପୂର୍ଣ୍ଣ । ସେହି କରୁଣାର ମୂର୍ତ୍ତି ଦେଖି ବରଦା ମହାରାଜ ସ୍ତମ୍ଭିତ ହେଲେ; ମାଇଁଙ୍କ ଉପରେ ତାଙ୍କର କ୍ରୋଧ କୁଆଡ଼େ ମିଳାଇଗଲା ।

ଶ୍ରୀମା'ଙ୍କ ଦେହତ୍ୟାଗର କିଛିଦିନ ପରେ ମାଇଁଙ୍କର ଗଳିତ କୁଷ୍ଠରୋଗ ହେଲା, ହାତର ଆଙ୍ଗୁଳି ଖସି ପଡ଼ିଲା ଏବଂ ଅଳ୍ପକାଳ ପରେ ସେ ଶ୍ରୀମା'ଙ୍କ ପାଦପଦ୍ମରେ ମିଳିତ ହେଲେ ।

## ସଂଘମାତା

୧୮୯୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଶ୍ରୀମା' ବୁଦ୍ଧଗୟା ଯାଇଥିଲେ । ସେଠାରେ ମଠଗୁଡ଼ିକର ଐଶ୍ୱର୍ଯ୍ୟ ଏବଂ ତାଙ୍କ ତ୍ୟାଗୀ ସନ୍ତାନମାନଙ୍କର ସ୍ଥାୟୀ ଆଶ୍ରମର ଅଭାବ, ଅନ୍ନବସ୍ତ୍ରର ଅବର୍ଣ୍ଣନୀୟ କଷ୍ଟ ଏବଂ ମଠ-ପରିଚାଳନା ପାଇଁ ଅସୀମ ଦୈହିକ କ୍ଳେଶ ଇତ୍ୟାଦି କଥା ଭାବି ଶ୍ରୀମା' ବଡ଼ ବିଚଳିତ ହୋଇ ପଡ଼ିଥିଲେ

ଏବଂ ଏହି ନବୀନ ସନ୍ନ୍ୟାସୀ-ସଂଘକୁ ସୁପ୍ରତିଷ୍ଠିତ ଦେଖିବା ପାଇଁ ତାଙ୍କ ମନରେ ଏକ କରୁଣ ପ୍ରାର୍ଥନା ଉଠିଥିଲା । ସେ ପରେ କହିଥିଲେ, ''ଆହାଃ, ଏଥିପାଇଁ ଠାକୁରଙ୍କ ନିକଟରେ କେତେ କାନ୍ଦିଛି, କେତେ ପ୍ରାର୍ଥନା କରିଛି, ସେଥିଯୋଗୁଁ ତାଙ୍କ କୃପାରୁ ଆଜି ଏହି ମଠ ସ୍ଥାପିତ ହୋଇପାରିଛି । ଠାକୁର ଦେହ ରକ୍ଷା କରିବା ପରେ ପିଲାମାନେ ସଂସାର ତ୍ୟାଗ କରି କେତେ ଦିନ ଗୋଟିଏ ଆଶ୍ରମରେ ଏକାଠି ଥିଲେ । ତା'ପରେ ଜଣ ଜଣ ହୋଇ ସ୍ୱାଧୀନଭାବରେ ବାହାରି ପଡ଼ି ଏଣେ ତେଣେ ବୁଲିବାକୁ ଲାଗିଥିଲେ । ସେତେବେଳେ ମୋ ମନରେ ଖୁବ୍ ଦୁଃଖ ହେଲା । ଠାକୁରଙ୍କ ନିକଟରେ ପ୍ରାର୍ଥନା କଲି, 'ଠାକୁର, ତୁମେ ଆସିଲ, ଏହି କେତେଜଣଙ୍କୁ ନେଇ ଲୀଳା କଲ, ଆନନ୍ଦ କରି ଚାଲିଗଲ; ଆଉ ସବୁ ଶେଷ ହୋଇଗଲା ? ତା'ହେଲେ ଏତେ କଷ୍ଟ କରି ଆସିବାର ପ୍ରୟୋଜନ କଅଣ ଥିଲା ? କାଶୀ ବୃନ୍ଦାବନରେ ଦେଖିଛି, ଅନେକ ସାଧୁ ଭିକ୍ଷା କରନ୍ତି, ଗଛତଳେ ରହନ୍ତି, ଆଉ ଚାରିଆଡ଼େ ଘୂରିବୁଲନ୍ତି । ସେହିପରି ସାଧୁଙ୍କର ଅଭାବ ନାହିଁ । ତୁମ ପାଇଁ ଯେଉଁମାନେ ସବୁ ଛାଡ଼ି ଚାଲିଆସିଛନ୍ତି, ସେମାନେ ମୁଠାଏ ଅନ୍ନ ପାଇଁ ଘୂରି ବୁଲିବେ, ତାହା ମୁଁ ଦେଖି ପାରିବି ନାହିଁ । ମୋର ପ୍ରାର୍ଥନା, ତୁମ ପାଇଁ ଯେଉଁମାନେ ଆସିବେ ସେମାନଙ୍କର ସାଧାରଣ ଅନ୍ନବସ୍ତ୍ରର ଅଭାବ ଯେପରି ନ ହୁଏ । ସେମାନେ ତୁମକୁ ଏବଂ ତୁମର ଭାବ ଓ ଉପଦେଶକୁ ଆଶ୍ରୟ କରି ଏକତ୍ର ରହିବେ । ସଂସାରର ପାପଦଗ୍ଧ ଲୋକମାନେ ସେମାନଙ୍କ ନିକଟକୁ ଯାଇ ତୁମ କଥା ଶୁଣି ଶାନ୍ତି ପାଇବେ । ସେଥିପାଇଁ ତ ତୁମେ ଆସିଥିଲ ! ସେମାନେ ଘୂରି ବୁଲୁଛନ୍ତି ଦେଖି ମୋତେ ଭାରି କଷ୍ଟ ଲାଗେ । ତାପରେ ନରେନ୍ କ୍ରମେ ଏହିସବୁ କଲା ।''

ପୂର୍ବୋକ୍ତ କଥାଗୁଡ଼ିକରୁ ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଅସୀମ ମାତୃସ୍ନେହ ଓ ସଂଘପ୍ରୀତି, ସଂଘର ବୈଶିଷ୍ଟ୍ୟ ଓ ସମ୍ଭାବନା ଇତ୍ୟାଦି ବିଷୟରେ ତାଙ୍କର ଦୃଢ଼ନିଶ୍ଚୟ ଏବଂ ସ୍ଥାୟୀ ମଠ ସ୍ଥାପନ ପାଇଁ ଗଭୀର ଆଗ୍ରହର ପରିଚୟ ଆମେ ପାଇଥାଉ । ଏହିସବୁ ଆଶା ଆକାଙ୍‌କ୍ଷା କେବଳ ତାଙ୍କର ମନୋରାଜ୍ୟରେ ଉଦୟ ହୋଇ ସେଠାରେ ହିଁ ବିଲୀନ ହୋଇନାହିଁ; ସେ ଶେଷପର୍ଯ୍ୟନ୍ତ ସଂଘ ଯେପରି ସୁପ୍ରତିଷ୍ଠିତ ଓ ସୁପରିଚାଳିତ ହୁଏ, ସେଥିପ୍ରତି ଖୁବ୍ ସଚେଷ୍ଟ ଥିଲେ । ତାଙ୍କ ମତରେ ପ୍ରେମ ହିଁ ସଂଘର ପ୍ରାଣ । ସଂଘର ପ୍ରତି ଅଙ୍ଗ ଯେପରି ତାଙ୍କର ସ୍ନେହର ପ୍ରତ୍ୟାଶା ରଖୁଥିଲେ, ସେପରି ସେ ମଧ୍ୟ ଚାହୁଁଥିଲେ ଯେପରିକି ସଂଘର ସାଧୁ ବ୍ରହ୍ମଚାରୀ ସମସ୍ତଙ୍କ ମଧ୍ୟରେ ଅତୁଟ ଭ୍ରାତୃତ୍ୱ ସ୍ଥାପିତ ହୁଏ । କୋଆଲପଡ଼ା ଆଶ୍ରମର ଅଧ୍ୟକ୍ଷ, ବ୍ରହ୍ମଚାରୀମାନଙ୍କ ନିକଟରୁ କେବଳ କାମର ପ୍ରତ୍ୟାଶା ରଖୁଥିଲେ । କିନ୍ତୁ ବିନିମୟରେ ସେମାନଙ୍କୁ ଆଦର ଯତ୍ନ କରୁ ନ ଥିଲେ କିମ୍ବା ଆଶ୍ରମରେ ଆହାରାଦିର ମଧ୍ୟ ସୁବ୍ୟବସ୍ଥା ନ ଥିଲା । ଅତଏବ କେହି କେହି ଏହି ଆଶ୍ରମ ଛାଡ଼ି ଶ୍ରୀମା' କିମ୍ବା

ସ୍ୱାମୀ ସାରଦାନନ୍ଦଜୀଙ୍କ ନିକଟରେ ଆଶ୍ରୟ ଗ୍ରହଣ କଲେ । କିନ୍ତୁ ଆଶ୍ରମ ଅଧ୍ୟକ୍ଷ ନିଜର ତ୍ରୁଟି ସଂଶୋଧନ ନ କରି ବରଂ ମା'ଙ୍କ ନିକଟରେ ଅଭିଯୋଗ କଲେ ଯେ, ''ମା', ଏମାନେ ସବୁ ପୂର୍ବେ ଖୁବ୍ ଆଜ୍ଞାବହ ଥିଲେ । କିନ୍ତୁ ଏବେ ମୋର ସବୁ କଥା ସେମାନେ ମାନିବାକୁ ରାଜି ନୁହନ୍ତି । ଶରତ ମହାରାଜ କିମ୍ବା ଆପଣଙ୍କ ପାଖକୁ ଗଲେ ଆପଣମାନେ ଆଦରଯତ୍ନ କରି ସେମାନଙ୍କୁ ପାଖରେ ରଖନ୍ତି, ସେମାନେ ଭଲ ଖାଇବା ପିଇବାର ମଧ୍ୟ ସୁବିଧା ପାଆନ୍ତି । ଆପଣ ଯଦି ସ୍ଥାନ ନ ଦିଅନ୍ତେ, ବୁଝାଇ ପଠାଇ ଦିଅନ୍ତେ, ତେବେ ସେମାନେ ମୋର ଅନୁଗତ ହୋଇ ରହନ୍ତେ ।'' ଶ୍ରୀମା' ଏ କଥା ଶୁଣି ଅବାକ୍ ହୋଇ କହିଲେ, ''ସେ କି କଥା, ସ୍ନେହ ଆମର ଅସଲ (ବସ୍ତୁ); ସେହି ସ୍ନେହ ଆଦରରୁ ତାଙ୍କର ସଂସାର (ସଂଘ) ଗଢ଼ିଉଠିଛି । ମୁଁ ମା', ମୋ ପାଖରେ ତୁମେ ମୋ ପିଲାମାନଙ୍କ ଖାଇବା ପିନ୍ଧିବା ବିଷୟରେ ଏପରି ମନ୍ତବ୍ୟ କିପରି ପ୍ରକାଶ କରୁଛ ?''

ଆଶ୍ରମର ଅଧ୍ୟକ୍ଷ ବ୍ରହ୍ମଚାରୀମାନଙ୍କର ସ୍ୱାସ୍ଥ୍ୟରକ୍ଷା ପାଇଁ ଉପଯୁକ୍ତ ଅର୍ଥ ବ୍ୟୟ କରୁ ନ ଥିଲେ । କଠୋର ପରିଶ୍ରମ ଏବଂ ବାରମ୍ବାର ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ହୋଇ ଆଶ୍ରମବାସୀଙ୍କ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଲା । ଏହା ଜାଣି ଶ୍ରୀମା' ତାଙ୍କୁ ବାରମ୍ବାର କହି ଆଶ୍ରମରେ ପୁଷ୍ଟିକର ଖାଦ୍ୟର ବ୍ୟବସ୍ଥା କରାଇଥିଲେ । ଅଧ୍ୟକ୍ଷଙ୍କର କର୍ତ୍ତୃତ୍ୱ ପ୍ରୟୋଗ ବିଷୟରେ ମଧ୍ୟ ସେ ଅସନ୍ତୋଷ ପ୍ରକାଶ କରି କହିଥିଲେ, ''କଥା କ'ଣ, ପେଞ୍ଚୁଆ ବୁଦ୍ଧି ନେଇ ଏତେ ହୁକୁମ ଚଳାଇଲେ ଆଶ୍ରମ କିପରି ଚଳିବ ? ପିଲାମାନେ ସବୁ ଛାତ୍ର, ସେଥିରେ କ୍ଷତି କଅଣ ? ନିଜ ପୁଅକୁ ଟିକିଏ କଡ଼ା କଥା କହିଲେ ଛଡ଼ାଛଡ଼ି ହୋଇଯାଏ !'' ଆଶ୍ରମର ଅଧ୍ୟକ୍ଷଙ୍କୁ ଶ୍ରୀମା' ବହୁତ ସ୍ନେହ କରୁଥିଲେ ଏବଂ ଶ୍ରୀମା'ଙ୍କ ପ୍ରତି ମଧ୍ୟ ତାଙ୍କର ଗଭୀର ଭକ୍ତି ଥିଲା । କିନ୍ତୁ ତା' ବୋଲି ଶ୍ରୀମା' ଅନ୍ୟାୟକୁ ପ୍ରଶୟ ଦେଉ ନ ଥିଲେ । ଦିନେ ଅଧ୍ୟକ୍ଷ ତାଙ୍କୁ ଜଣାଇଲେ ଯେ, ବ୍ରହ୍ମଚାରୀମାନେ ସେଠାରେ ରହିବାକୁ ଚାହୁଁ ନାହାଁନ୍ତି, ଅନ୍ୟତ୍ର ଚାଲି ଯାଉଛନ୍ତି । ତେଣୁ ସେ ଏପରି ବ୍ୟବସ୍ଥା କରିଦିଅନ୍ତୁ ଯେ ସେମାନେ ଅନ୍ୟ କୌଣସି ଆଶ୍ରମରେ ଯେପରି ସ୍ଥାନ ନ ପାଆନ୍ତି । ଶ୍ରୀମା' କ୍ରୁଦ୍ଧ ହୋଇ କହିଲେ, ''ତୁମେ ମୋ ଦ୍ୱାରା କଅଣ କୁହାଇ ନେବାକୁ ଚାହଁ ? ତୁମେ କ'ଣ ଭାବିଛ, ମୁଁ କହିବି ଯେ ସେମାନେ କେଉଁଠାରେ ସ୍ଥାନ ପାଇବେ ନାହିଁ । ସେମାନେ ସବୁ ମୋର ସନ୍ତାନ, ଠାକୁରଙ୍କ ପାଖକୁ ଆସିଛନ୍ତି; ସେମାନେ ଯେଉଁ ସ୍ଥାନକୁ ଯାଆନ୍ତୁ ନା କାହିଁକି ସେଠାରେ ସେମାନଙ୍କୁ ଠାକୁର ଯତ୍ନ କରିବେ । ଆଉ ତୁମେ ମୋ ମୁହଁ ଦେଇ କୁହାଇ ନେବାକୁ ଚାହୁଁଛ ଯେ ସେମାନେ ଯେପରି କେଉଁଠାରେ ସ୍ଥାନ ନ ପାଆନ୍ତି ! ଏ କଥା ମୁଁ କହିପାରିବି ନାହିଁ ।'' ଶ୍ରୀମା'ଙ୍କର ଉଚ୍ଚ ସ୍ୱର ଓ ଆରକ୍ତିମ ମୁଖମଣ୍ଡଳ ଦେଖି ସମସ୍ତେ ଆତଙ୍କିତ ହୋଇ ଉଠିଲେ । ଆଶ୍ରମର ଅଧ୍ୟକ୍ଷ ତତ୍କ୍ଷଣାତ୍ ତାଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ ।

ପ୍ରୟୋଜନସ୍ଥଳରେ ଆଶ୍ରମ-ଅଧ୍ୟକ୍ଷଙ୍କୁ ଶାସନ କଲେ ସୁଦ୍ଧା ଶ୍ରୀମା' ଆଶ୍ରମବାସୀମାନଙ୍କୁ ସଦୁପଦେଶ ଦେଉଥିଲେ । ପୂର୍ବୋକ୍ତ ଘଟଣାର କିଛିଦିନ ପୂର୍ବେ ଆଶ୍ରମର ଜଣେ ବ୍ରହ୍ମଚାରୀଙ୍କୁ ସେ କହିଥିଲେ, ''ଦେଖ, ମିଳିମିଶି ଚଳିବାକୁ ହୁଏ । ଠାକୁର କହୁଥିଲେ, 'ଶ, ଷ, ସ ।' ସବୁ ସହିଯାଅ, ସେ (ଠାକୁର) ଅଛନ୍ତି । ଆଶ୍ରମ-ଜୀବନରେ ବହୁ ଅସୁବିଧା ସତ୍ତ୍ୱେ ସେ ସନ୍ତାନମାନଙ୍କୁ ସଂଘବଦ୍ଧ ହୋଇ ଆଶ୍ରମରେ ରହିବାକୁ ଉପଦେଶ ଦେଉଥିଲେ ।''

ସ୍ୱାମୀ ବିଶୁଦ୍ଧାନନ୍ଦଜୀ, ଶାନ୍ତାନନ୍ଦଜୀ ଓ ଗିରିଜାନନ୍ଦଜୀ ବୈରାଗ୍ୟର ପ୍ରେରଣାରେ ଗୃହ ତ୍ୟାଗ କରି ଚାଲି ଚାଲି ଜୟରାମବାଟୀରେ ଉପସ୍ଥିତ ହେଲେ । ସେମାନଙ୍କର ଇଚ୍ଛା—ଶ୍ରୀମା'ଙ୍କର ଆଶୀର୍ବାଦ ନେଇ ପରିବ୍ରାଜକଭାବେ ଅବଶିଷ୍ଟ ଜୀବନ ତୀର୍ଥଦର୍ଶନ ଓ ତପସ୍ୟାରେ କଟାଇବେ—କୌଣସି ମଠ ବା ଆଶ୍ରମରେ ରହିବେ ନାହିଁ । ଶ୍ରୀମା' ସେମାନଙ୍କୁ ସ୍ନେହ ସହକାରେ ଗ୍ରହଣ କଲେ ଏବଂ ସବୁ କଥା ଶୁଣିଲେ । ପରଦିନ ସକାଳେ ସେ କହିଲେ, ''ଆଜି ତୁମେ ତିନିଜଣ ମସ୍ତକ ମୁଣ୍ଡନ କର ଓ ବସ୍ତ୍ର ଗେରୁଆ ରଙ୍ଗ କର, କାଲି ତୁମମାନଙ୍କୁ ସନ୍ନ୍ୟାସ ଦେବି ।'' ପରଦିନ (୨୯ ଜୁଲାଇ ୧୯୦୭) ତିନିଜଣଙ୍କ ହାତରେ ଗୈରିକ ବସନ ଓ କୌପୀନ ଦେଇ ଠାକୁରଙ୍କୁ ପ୍ରାର୍ଥନା କଲେ, ''ଠାକୁର, ଏମାନଙ୍କର ସନ୍ନ୍ୟାସ ରକ୍ଷା କର । ପାହାଡ଼ ପର୍ବତ, ବଣ ଜଙ୍ଗଲ, ଯେଉଁଠାରେ ଏମାନେ ଥାଆନ୍ତୁ ନା କାହିଁକି, ଏମାନଙ୍କୁ ଦୁଇ ମୁଠା ଖାଇବାକୁ ଦିଅ ।'' ଏମାନେ ଘୁରି ବୁଲିବେ, ଏହା ମା'ଙ୍କର ଇଚ୍ଛା ନ ଥିଲା; ତେଣୁ ବିଦାୟ ଦେବା ପୂର୍ବରୁ କହିଲେ, ''ତୁମ ପକ୍ଷରେ ଏତେ କଠୋରତା କରିବା ପ୍ରୟୋଜନ ନାହିଁ । ତୁମେମାନେ ଠାକୁରଙ୍କ ଆଶ୍ରୟରେ ପଡ଼ି ରହିଛ । କିନ୍ତୁ ଯେହେତୁ ତୁମେମାନେ ପରିବ୍ରାଜକ ହୋଇ ଭ୍ରମଣ କରିବାର ସଂକଳ୍ପ କରିଛ, ଅତଏବ ମୁଁ ତୁମକୁ ଅନୁମତି ଦେଉଛି; ତୁମେମାନେ କାଶୀ ପର୍ଯ୍ୟନ୍ତ ପଦବ୍ରଜରେ ଯାଅ । ତାରକଙ୍କୁ (ସ୍ୱାମୀ ଶିବାନନ୍ଦ) ମୁଁ ଚିଠି ଲେଖିଦେଉଛି; ସେ ତୁମମାନଙ୍କୁ ପାଖରେ ରଖିବ । ତା' ଠାରୁ ସନ୍ନ୍ୟାସନାମ ଗ୍ରହଣ କର ଏବଂ ତା' ପାଖରେ ରହି ତୁମମାନଙ୍କର ସନ୍ନ୍ୟାସଜୀବନ ଗଠନ କର ।'' ତାଳପୋଖରୀ ଯାଏ ଆସି ଶ୍ରୀମା' ଅଶ୍ରୁସିକ୍ତ ନୟନରେ ସନ୍ତାନମାନଙ୍କୁ ବିଦାୟ ଦେଲେ ।

୧୯୧୧ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସର କଥା । ଜଣେ ତ୍ୟାଗୀ ସନ୍ତାନ ଗୋଟିଏ ଗୁରୁତର ଅପରାଧ କରି ଉଦ୍‌ବୋଧନ ଭବନରେ ଅଛନ୍ତି । ତାଙ୍କୁ ପୂଜ୍ୟପାଦ ସ୍ୱାମୀ ବ୍ରହ୍ମାନନ୍ଦ ଓ ଅନ୍ୟାନ୍ୟ ଅନେକ ପ୍ରବୀଣ ସନ୍ନ୍ୟାସୀ ବେଲୁଡ଼ ମଠରେ ରହିବାକୁ କହିଥିଲେ । କିନ୍ତୁ ସେ ତାହା କରିବାକୁ ଅରାଜି । ଦିନେ ସାରଦାନନ୍ଦଜୀ ଶ୍ରୀମା'ଙ୍କୁ କହିଲେ, ''ମହାରାଜଙ୍କ (ସ୍ୱାମୀ ବ୍ରହ୍ମାନନ୍ଦଙ୍କ) କଥା, ଆମମାନଙ୍କର କଥା କଅଣ ଶୁଣିବା ଉଚିତ ନୁହେଁ ? ମଠକୁ ଯାଇ ଅନ୍ତତଃ ଦୁଇ ଦିନ ପାଇଁ ମହାରାଜଙ୍କର ମାନ ରଖିବା ଉଚିତ ।'' ଶ୍ରୀମା' ବାରମ୍ବାର କହିବା ସତ୍ତ୍ୱେ ସେ ତାଙ୍କର ମତ

ପରିବର୍ତ୍ତନ କରି ନ ଥିଲେ । ଶ୍ରୀମା' ଆକ୍ଷେପ କରି କହିଲେ, ''ଗୁରୁଜନମାନଙ୍କର କଥା, କିନ୍ତୁ କ'ଣ ହେବ, ତାହାର କାମ କରିବାକୁ ଇଚ୍ଛା ନାହିଁ । କାମ ନ କଲେ କଅଣ ମନ ଭଲ ରହେ ? ଚବିଶ ଘଣ୍ଟା ଧ୍ୟାନ କରିବା କଅଣ ସମ୍ଭବ ? ତେଣୁ କାମରେ ବ୍ୟସ୍ତ ରହିଲେ ମନ ଭଲ ରହେ ।'' ତାଙ୍କର ଅବାଧ୍ୟତା ସତ୍ତ୍ୱେ ଶ୍ରୀମା' ତାଙ୍କ ପ୍ରତି ସ୍ନେହ ପ୍ରକାଶରେ କୁଣ୍ଠିତ ହୋଇ ନ ଥିଲେ ।

ଜଣେ ଶିଷ୍ୟ ଶ୍ରୀମା'ଙ୍କୁ କହିଲେ ଯେ ସେବାଶ୍ରମ (ଡାକ୍ତରଖାନା) ପରିଚାଳନା କରିବା, ବହି ବିକ୍ରି କରିବା, ହିସାବ ନିକାଶ କରିବା ପ୍ରଭୃତି କାମ ସାଧୁଙ୍କ ପକ୍ଷରେ ଅନୁପଯୁକ୍ତ । ଶ୍ରୀଶ୍ରୀଠାକୁର ମଧ୍ୟ ଏହି ଧରଣର କୌଣସି କାମ କରି ନାହାନ୍ତି । ପୂଜା, ଜପ, ଧ୍ୟାନ, କୀର୍ତ୍ତନ ଇତ୍ୟାଦି ସାଧୁଙ୍କ ପକ୍ଷରେ ପ୍ରକୃଷ୍ଟ କାମ; ଅନ୍ୟ ସବୁ କର୍ମ ସାଧୁର ମନକୁ ଈଶ୍ୱର-ବିମୁଖ କରେ । ଶ୍ରୀମା' ସବୁ ଶୁଣି ଦୃଢ଼ଭାବରେ କହିଲେ, ''କାମ କରିବ ନାହିଁ ତ, ଦିନ ରାତି ସମୟ କିପରି କଟାଇବ ? ଚବିଶ ଘଣ୍ଟା ଧ୍ୟାନ ଜପ କରିବା କଅଣ ସମ୍ଭବ ?...କାମ କରୁଛ ବୋଲି ତ ଦୁଇଓଳି ଖାଦ୍ୟ ଜୁଟୁଛି, ନ ହେଲେ ଘର ଘର ବୁଲି ମୁଠାଏ ଭିକ୍ଷା ପାଇଁ ହାତ ପତାଉଥାନ୍ତ ।...ଠାକୁର ଯେପରି ଚଳାଉଛନ୍ତି ସେପରି ଚଳିବ । ମଠ ଏହି ଭାବରେ ହିଁ ଚାଲିବ । ଯେଉଁମାନେ ପାରିବେ ନାହିଁ ସେମାନେ ଚାଲିଯିବେ ।''

କାଶୀ ସେବାଶ୍ରମ ପରିଚାଳିତ ନିରାଶ୍ରୟ ବୃଦ୍ଧାମାନଙ୍କର ଆଶ୍ରମ ଦେଖିବାକୁ ଶ୍ରୀମା' ଯାଇଥିଲେ ଏବଂ ମନ୍ତବ୍ୟ କରିଥିଲେ, ''ଏହି ନିରାଶ୍ରୟ ବୃଦ୍ଧାମାନଙ୍କୁ ସେବା କଲେ ନାରାୟଣଙ୍କ ସେବା କରାହୁଏ । ଆହା ! ଏହିସବୁ ପିଲାମାନେ କିଭଳି କାମ କରୁଛନ୍ତି !'' ଏହି ବିଷୟରେ ଅନ୍ୟ ଦିନେ କହିଥିଲେ, ''ସବୁ ତାଙ୍କରି ଇଚ୍ଛା ମା' ! କିପରି ଭାବରେ କ'ଣ କରୁଛନ୍ତି କେବଳ ତାଙ୍କୁ ହିଁ ଜଣା ।''

ଜୟରାମବାଟୀରେ ଦିନେ ଜପଧ୍ୟାନ ପ୍ରସଙ୍ଗରେ ମା' କହିଥିଲେ, ''ସବୁ ସମୟରେ ଜପ ଧ୍ୟାନ କରିପାରିବେ କେତେଜଣ ? ମନଟାକୁ ଚାରିଆଡ଼େ ବିକ୍ଷିପ୍ତ ନ କରି ମନ ଲଗାଇ କାମ କରିବା ଅନେକ ଭଲ । ମନ କାମରେ ନ ରହିଲେ ସବୁ ପ୍ରକାର ଗୋଳମାଳ ସୃଷ୍ଟି କରେ । ନରେନ୍ଦ୍ର (ସ୍ୱାମୀ ବିବେକାନନ୍ଦ) ଏହିସବୁ କଥା ଚିନ୍ତା କରି ନିଷ୍କାମ କର୍ମର ପ୍ରବର୍ତ୍ତନ କଲା ।''

ଶ୍ରୀମା'ଙ୍କର ବିଶ୍ୱାସ ସଂଘ ମାଧ୍ୟମରେ ଠାକୁର ତାଙ୍କର ନୂତନ ଭାବଧାରା ପ୍ରଚାର କରିବେ । ଜଣେ ମଠାଧ୍ୟକ୍ଷ ଦିନେ ଦୁଃଖ କରି କହିଲେ ଯେ, ଲୋକମାନଙ୍କର ମତିଗତି ଅନୁକୂଳ ନ ହେବାରୁ କାମ ଆଶାନୁରୂପ ଅଗ୍ରସର ହେଉ ନାହିଁ । କାରଣ, ଦେଶର ଲୋକମାନେ କେବଳ ଭାଙ୍ଗିବା ଜାଣନ୍ତି — ଗଢ଼ିବାରେ ସାହାଯ୍ୟ କରନ୍ତି ନାହିଁ । ଶ୍ରୀମା' ତାଙ୍କୁ ଆଶ୍ୱାସ ଦେଇ କହିଲେ, ''ବାବା, ଠାକୁର କହିଥିଲେ, 'ମଳୟ ପବନ ସ୍ପର୍ଶରେ ଯେଉଁସବୁ ଗଛରେ ସାର ପଦାର୍ଥ ଅଛି ସେହିସବୁ ଗଛ

ଚନ୍ଦନ ପାଲଟି ଯିବ ।' ଏବେ ମଳୟର ସ୍ପର୍ଶ ଲାଗିଛି, କେବଳ ବାଉଁଶ କଦଳୀ ଛଡ଼ା ଆଉସବୁ ଚନ୍ଦନରେ ପରିଣତ ହେବ ।''

ଆଶ୍ରମ ଓ ଆଶ୍ରମବାସୀଙ୍କର ବହୁ ସମସ୍ୟା ତାଙ୍କର ଦୃଷ୍ଟିକୁ ଆସୁଥିଲା ଏବଂ ସେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ଉପଯୁକ୍ତ ବିଧାନ ବା ଉପଦେଶ ଦେଉଥିଲେ । କୋଆଲପଡ଼ା ଆଶ୍ରମର ଦାତବ୍ୟ ଚିକିତ୍ସାଳୟକୁ ଏପରି ଅନେକ ଲୋକ ଆସୁଥିଲେ ଯେଉଁମାନେ ଅର୍ଥ ବ୍ୟୟ କରି ଅନ୍ୟତ୍ର ଔଷଧ ସଂଗ୍ରହ କରିପାରିଥାଆନ୍ତେ । ଏହି କଥା ଆଶ୍ରମାଧ୍ୟକ୍ଷ ଶ୍ରୀମା'ଙ୍କ ନିକଟରେ ଉପସ୍ଥାପିତ କରିବାରୁ ସେ କହିଲେ, ''ଅର୍ଥୀ ହୋଇ ଯେ କେହି ଆସୁନା କାହିଁକି ତାଙ୍କୁ ଅଭାବଗ୍ରସ୍ତ ବୋଲି ଧରିନେବାକୁ ହେବ । ସୁତରାଂ ଔଷଧାଳୟର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ରହିବ ।''

କୋଆଲପଡ଼ା ଆଶ୍ରମ ଶ୍ରୀରାମକୃଷ୍ଣ ମଠର ଅନ୍ତର୍ଭୁକ୍ତ ହେବା ପୂର୍ବରୁ ଆଶ୍ରମବାସୀମାନେ ସ୍ୱଦେଶୀ ଆନ୍ଦୋଳନ ଚର୍ଚ୍ଚାରେ ଖୁବ୍ ମାତିଥିଲେ, ଅଥଚ ଗଠନମୂଳକ କୌଣସି କାର୍ଯ୍ୟ କରୁ ନ ଥିଲେ । ଏହା ଦେଖି ଶ୍ରୀମା' କହିଥିଲେ, ''ଦେଖ, କେବଳ 'ବନ୍ଦେ ମାତରମ୍' ବୋଲି ଚିତ୍କାର କଲେ ଚଳିବ ନାହିଁ । ତନ୍ତ ତିଆରି କର, ଲୁଗା ବୁଣ । ମୋର ଇଚ୍ଛା ଚରଖାରେ ସୂତା କାଟିବି । ତୁମେମାନେ କାମ କର ।'' ଆଶ୍ରମକୁ ଧର୍ମମୁଖୀ କରିବା ପାଇଁ ସେ ସେଠାରେ ସ୍ୱହସ୍ତରେ ଶ୍ରୀରାମକୃଷ୍ଣଙ୍କର ଛବି ସ୍ଥାପନ କରିଥିଲେ । ବ୍ରହ୍ମଚାରୀମାନଙ୍କର ଜ୍ଞାନାର୍ଜନସ୍ପୃହା ବଢ଼ାଇବାପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ତାଙ୍କ ସେବାରେ ଥିବା ବ୍ରହ୍ମଚାରୀମାନଙ୍କୁ ସେ ଦିନେ କହିଥିଲେ, ''ଦେଖ, ପାଶ୍ଚାତ୍ୟରୁ ଅନେକ ସାହେବ ଭକ୍ତ ଆସିବେ, ତୁମେମାନେ ଇଂରେଜୀ ଭାଷା ଲେଖିବା ପଢ଼ିବା ଶିଖ ।''

କର୍ମରେ ଉତ୍ସାହ ଦେଲେ ମଧ୍ୟ କର୍ମର ଅପକାର ସମ୍ବନ୍ଧରେ ସେ ଅବହିତ ଥିଲେ । ସଦୁଦ୍ଦେଶ୍ୟରେ ଆଶ୍ରମ କରି ସୁଦ୍ଧା କାହାରି କାହାରି ମନ ବିଷୟ ଚିନ୍ତା ହେତୁ ସଂକୀର୍ଣ୍ଣତା ଦୋଷରେ ଜର୍ଜରିତ ହେଉଥିଲା । ସୁତରାଂ ଜଣେ ସାଧୁଙ୍କୁ ସାବଧାନ କରି ଶ୍ରୀମା' କହିଥିଲେ, ''ଖଟା ଭୟରେ ପଳାଇଆସି ତେନ୍ତୁଳି ଗଛ ମୂଳେ ବାସ କରିବାର ଅର୍ଥ କଅଣ ? ସଂସାର ତ୍ୟାଗ କରି କିପରି ଭଗବାନଙ୍କର ନାମ କରିବ, ନା କେବଳ କର୍ମ । ଆଶ୍ରମ ହେଲା ଦ୍ୱିତୀୟ ସଂସାର ? ଲୋକ ସଂସାର ଛାଡ଼ି ଆଶ୍ରମକୁ ଆସେ, କିନ୍ତୁ ଏପରି ମୋହ ହୁଏ ଯେ ଆଉ ଆଶ୍ରମ ଛାଡ଼ିପାରେ ନାହିଁ ।''

ଶ୍ରୀମା'ଙ୍କ ଜୀବନରେ ଆଉ ଗୋଟିଏ ଲକ୍ଷ୍ୟ କରିବାର ବିଷୟ ଏହି ଯେ ବୈରାଗ୍ୟ ସହିତ ତାଙ୍କର ମାତୃସ୍ନେହର ଅପୂର୍ବ ସମ୍ମିଶ୍ରଣ । ସେ ସର୍ବାନ୍ତଃକରଣରେ ସନ୍ତାନମାନଙ୍କର ମଙ୍ଗଳଚିନ୍ତା କରୁଥିଲେ । ଜୟରାମବାଟୀରେ ଥରେ ଦୁର୍ଗୋତ୍ସବ ସମୟରେ ଅନେକ ଭକ୍ତ ତାଙ୍କ ପାଦରେ ପଦ୍ମଫୁଲ ଅଞ୍ଜଳି ଦେଇ ଯିବା ପରେ ସେ ଜଣେ ବ୍ରହ୍ମଚାରୀଙ୍କୁ ଡାକି କହିଲେ, ''ଆହୁରି ଫୁଲ ଆଣ । ବ୍ରହ୍ମାନନ୍ଦ,

ସାରଦାନନ୍ଦ, ଯୋଗାନନ୍ଦ, ଗୋଲାପ-ମା' —ଏମାନଙ୍କର ନାମରେ ଫୁଲ ଦିଅ । ମୋର ଜଣା ଅଜଣା ସବୁ ସନ୍ତାନମାନଙ୍କ ପକ୍ଷରୁ ଫୁଲ ଦିଅ ।'' ପୂଜା ଗ୍ରହଣ କରି ସେ ହାତଯୋଡ଼ି ଠାକୁରଙ୍କର ଛବିକୁ ଚାହିଁ କହିଲେ, ''ସମସ୍ତଙ୍କର ଇହକାଳ ଓ ପରକାଳରେ ମଙ୍ଗଳ ହେଉ ।''

ଦୁର୍ଭାଗ୍ୟବଶତଃ ଜଣେ ସାଧୁଙ୍କୁ ରାମକୃଷ୍ଣ ସଂଘ ତ୍ୟାଗ କରିବାକୁ ପଡ଼ିଲା । ବିଦାୟ କାଳରେ ଦେଖାଗଲା ଶ୍ରୀମା' କାନ୍ଦୁଛନ୍ତି । ଭକ୍ତମାନେ ମଧ୍ୟ କାନ୍ଦୁଛନ୍ତି । ମା' କାନିପଣତରେ ଆଖି ପୋଛି କହିଲେ, ''ମୋତେ ଭୁଲିବୁ ନାହିଁ । ଭୁଲିବୁନି ଜାଣିଛି—ତଥାପି କହୁଛି ।'' ଭକ୍ତ ପଚାରିଲେ, ''ମା' ଆପଣ ?'' ମା' କହିଲେ, ''ମା' କଅଣ କେବେ ଭୁଲିପାରିବ ? ଜାଣିବୁ ମୁଁ ସବୁବେଳେ ତୋ ପାଖରେ ଅଛି । କୌଣସି ଭୟ ନାହିଁ ।'' ଶିଷ୍ୟ ରାସ୍ତାକୁ ଆସିବାରୁ ମା' ଝରକା ଦେଇ ଯେତେଦୂର ସମ୍ଭବ ସେତେଦୂର ପର୍ଯ୍ୟନ୍ତ ଚାହିଁ ରହିଥିଲେ ।

ଥରେ କୋଆଲପଡ଼ା ଆଶ୍ରମର ଅଧ୍ୟକ୍ଷ ମନ୍ତବ୍ୟ କଲେ, ''ବ୍ରହ୍ମଚାରୀମାନେ ଖାଇବା ଲୋଭରେ ଏ ଆଶ୍ରମ ସେ ଆଶ୍ରମ ଘୂରି ବୁଲୁଛନ୍ତି ।'' ଏ କଥାର ଉତ୍ତରରେ ଶ୍ରୀମା' ପରେ କହିଥିଲେ, ''କିପରି କଥା ଦେଖୁଛ ? ମୋର ପିଲାମାନଙ୍କର, ଠାକୁରଙ୍କର ପିଲାମାନଙ୍କର ଖାଇବାକଷ୍ଟ କାହିଁକି ହେବ ? କେବେ ତାହା ହେବ ନାହିଁ । ମୁଁ ନିଜେ ଠାକୁରଙ୍କ ନିକଟରେ ପ୍ରାର୍ଥନା କରିଛି, 'ହେ ଠାକୁର, ତୁମର ପିଲାମାନଙ୍କର ଯେପରି ଖାଇବାକଷ୍ଟ କେବେ ନ ହୁଏ !' କହୁଛି କଅଣ ନା, ଖାଇବା ଲୋଭରେ ପିଲାମାନେ ଘୂରୁଛନ୍ତି !''

ଏହି ସ୍ନେହମୟୀ ଜନନୀ କେତେ ଭକ୍ତଙ୍କୁ ସନ୍ନ୍ୟାସ ଓ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେଇ ଗୃହତ୍ୟାଗୀ କରାଇଛନ୍ତି । ଅବଶ୍ୟ ସେ ନିର୍ବିଚାରରେ ବୈରାଗ୍ୟ ଉପଦେଶ ଦେଉ ନ ଥିଲେ । ବିବାହ ଦେବା ନ ଦେବା କଥା ଅଧିକାରୀ ବୁଝି ବିଭିନ୍ନ ସ୍ଥଳରେ ବିଭିନ୍ନ ଉପଦେଶ ଦେଉଥିଲେ । ଦିବ୍ୟ ଚକ୍ଷୁରେ ଭବିଷ୍ୟତ ଦେଖି କେତେବେଳେ ହୁଏତ କହୁଥିଲେ, ''ସଂସାରୀମାନଙ୍କର କେତେ କଷ୍ଟ ! ସେମାନେ ନିଶ୍ଚିନ୍ତ ହୋଇ ଶୋଇ ମଧ୍ୟ ପାରନ୍ତି ନାହିଁ ।'' ଅନ୍ୟ ସମୟରେ ହୁଏତ କହୁଥିଲେ, ''ମୁଁ ବିବାହ ବିଷୟରେ କିଛି କହିପାରିବି ନାହିଁ । ବିବାହ ଯଦି ଭଲ ନ ହୁଏ ମୋତେ ଦୋଷ ଦେବେ ।'' କୌଣସି ଭକ୍ତ ହୁଏତ କହୁଥିଲେ, ''ମା, ମୁଁ ବିବାହ କରିବି ନାହିଁ ।'' ଉତ୍ତରରେ ଶ୍ରୀମା' କହୁଥିଲେ, ''ସେ କି କଥା, ସଂସାରରେ ସବୁ ଦୁଇଟି ଦୁଇଟି । ଦେଖୁନ ଆଖି ଦୁଇଟି, କାନ ଦୁଇଟି, ଗୋଡ଼ ଦୁଇଟି, ଠିକ୍ ସେହିଭଳି ପ୍ରକୃତି ଓ ପୁରୁଷ ଦୁଇଟି ।'' ସେହି ଭକ୍ତ ପରେ ବିବାହ କରିଥିଲେ । ଥରେ ଜଣେ ଭକ୍ତ ଲେଖିଲେ, ''ମୋର ବିବାହ କରିବାକୁ ଇଚ୍ଛା ନାହିଁ । ଘରେ ବାପା, ମା' ଜୋର୍ କରି ବିବାହ ଦେବାକୁ ଚାହାଁନ୍ତି ।'' ଶ୍ରୀମା' ଏକଥା ଜାଣି କହିଲେ, ''ଦେଖ, ଦେଖ, କିଭଳି ଅତ୍ୟାଚାର !'' ଥରେ ଜଣେ ଭକ୍ତ ଶ୍ରୀମା'ଙ୍କୁ କହିଲେ, ''ମା, ମୁଁ

ଏତେ ଦିନ ବିବାହ ନ କରି ରହିବାକୁ ଚେଷ୍ଟା କରିଛି । କିନ୍ତୁ ଏବେ ଦେଖୁଛି, ଆଉ ପାରିବି ନାହିଁ ।'' ଶ୍ରୀମା' ଅଭୟ ଦେଇ କହିଲେ, ''ଭୟ କଅଣ ? ଠାକୁରଙ୍କର କେତେ ଗୃହସ୍ଥ ଭକ୍ତ ଥିଲେ । ତୁମେ କିଛି ଭାବ ନାହିଁ । ବିବାହ କର !''

ଶ୍ରୀମା'ଙ୍କର ମନୋଭାବ ବୁଝିବା ଖୁବ୍ ସହଜସାଧ୍ୟ ନ ଥିଲା । ଜଣେ ମହିଳା ଭକ୍ତ ଦିନେ ଅଭିଯୋଗ କରି କହିଲେ, ''ମା' ! ଆପଣଙ୍କର ସବୁ ସନ୍ତାନ ସମାନ । ଯେଉଁ ବ୍ୟକ୍ତି ବିବାହ କରିବାକୁ ଇଚ୍ଛୁକ ଆପଣ ସେଥିପାଇଁ ତାକୁ ଅନୁମତି ଦେଉଛନ୍ତି, ଅଥଚ ଯେ ସଂସାର ତ୍ୟାଗ କରିବାକୁ ଚାହୁଁଛି, ତା' ନିକଟରେ ତ୍ୟାଗର ପ୍ରଶଂସା କରି ଉପଦେଶ ଦେଉଛନ୍ତି । ଆପଣଙ୍କର ଉଚିତ ଯେଉଁ ପଥ ଭଲ ସେଥିରେ ସମସ୍ତଙ୍କୁ ନେଇଯିବା ।'' ମା' କହିଲେ, ''ଯାହାର ଭୋଗବାସନା ପ୍ରବଳ ମୁଁ ନିଷେଧ କଲେ କଅଣ ସେ ଶୁଣିବ ? ଯେ ବହୁ ସୁକୃତି ଫଳରେ ଏହି ମାୟାର ଖେଳ ବୁଝିପାରି କେବଳ ଈଶ୍ୱରଙ୍କୁ ଏକମାତ୍ର ସାର ପଦାର୍ଥ ବୋଲି ଠିକ୍ କରିଛି, ତାକୁ ମୁଁ ସେ ପଥରେ ସାହାଯ୍ୟ କରିବି ନାହିଁ ? ସଂସାରରେ କଅଣ ଦୁଃଖର ଅନ୍ତ ଅଛି !''

ତ୍ୟାଗୀକୁ ତ୍ୟାଗର ପଥରେ ସାହାଯ୍ୟ କରିବା ଅବଶ୍ୟ କର୍ତ୍ତବ୍ୟ ହେଲେ ସୁଦ୍ଧା ସେହି ତ୍ୟାଗୀକୁ ଚିହ୍ନି ଉପଯୁକ୍ତ ସାହାଯ୍ୟ କରିବ କିଏ ? ଜଣେ ତ୍ୟାଗୀ ଓ ଜଣେ ଗୃହୀର ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ସମାନ ହୋଇପାରିବ ନାହିଁ—ଏ କଥା ଶ୍ରୀମା'ଙ୍କର ଅବଗତ ଥିଲା । ସଂସାରରେ ରହି ଯଥାର୍ଥ ଅଧିକାରୀକୁ ତ୍ୟାଗର ପଥରେ ଆଗେଇ ନେବା—ଏହା କେତେଜଣ ପାରିବେ ! ଶ୍ରୀମା' ଶେଷଥର ଜୟରାମବାଟୀରେ ରହିବା ସମୟରେ ଜଣେ ଉଚ୍ଚ ଶିକ୍ଷିତ ଯୁବକ ତାଙ୍କ ନିକଟକୁ ଆସି କହିଲେ ଯେ, ସେ ଏକ ଦ୍ୱିଧାରେ ପଡ଼ିଛନ୍ତି—ତାଙ୍କର ସାଧୁ ହେବାର ଇଚ୍ଛା ଅଛି ଜାଣି ବେଲୁଡ଼ ମଠର ସ୍ୱାମୀ ଶିବାନନ୍ଦଜୀ ତାଙ୍କୁ ଖୁବ୍ ଉତ୍ସାହ ଦେଇଛନ୍ତି । କିନ୍ତୁ ତାଙ୍କ ଜନନୀଙ୍କର ମନକଷ୍ଟ ହେବ ଭାବି ପ୍ରତିବେଶୀ ମାଷ୍ଟର ମହାଶୟ (ଶ୍ରୀମ) ଏ ବିଷୟରେ ବିଳମ୍ବ କରିବାକୁ କହିଛନ୍ତି । ଶ୍ରୀମା' ସବୁ ଶୁଣିଲେ, କିନ୍ତୁ କୌଣସି ଉତ୍ତର ଦେଲେ ନାହିଁ । ପରେ ବରଦା ମହାରାଜଙ୍କୁ କହିଲେ, ''ମାଷ୍ଟର ସେମାନଙ୍କର ପ୍ରତିବେଶୀ, ଘରେ ମା' ଓ ଭାଇ ଅଛନ୍ତି । ସାଧୁ ହେବା କଥା ଶୁଣି ମାଷ୍ଟର ବିଳମ୍ବ କରିବାକୁ କହୁଛି । କିନ୍ତୁ ମଠରେ ତାରକ (ସ୍ୱାମୀ ଶିବାନନ୍ଦ) ଖୁବ୍ ଉତ୍ସାହିତ କରିଛି । ହଜାରେ ହେଲେ ବି ମାଷ୍ଟର ସଂସାରୀ; ତାରକ କିନ୍ତୁ ଖୁବ୍ ସରଳ, ସାଧୁ ଲୋକ, ଠାକୁରଙ୍କର ତ୍ୟାଗର ଆଦର୍ଶ ଗ୍ରହଣ କରିବା କେତେ ସୌଭାଗ୍ୟ ଥିଲେ ହୁଏ ! ତାରକ ଠିକ୍ କଥା କହିଛି । ସଂସାରରେ ପଡ଼ିଲେ କେତେଜଣ ସେଥିରୁ ଉଠିପାରିବେ ? ପିଲାଟିର ମନରେ ଖୁବ୍ ଜୋର ଅଛି ।'' ପରଦିନ ସେ ଶ୍ରୀମା'ଙ୍କୁ ପ୍ରଣାମ କରି ନିଜର ମନ କଥା ଜଣାଇଲେ । ମା'

ଆଶୀର୍ବାଦ କରି କହିଲେ, ''ମନୋବାଞ୍ଛା ପୂର୍ଣ୍ଣ ହେଉ । ତାରକ ଯାହା କହିଛି ତାହା ଖାଣ୍ଟି କଥା ।''

ରାମମୟଙ୍କର ବୟସ ଅଧିକ ନୁହେଁ । ଆଇ. ଏ. ପରୀକ୍ଷା ଦେଇ ବି. ଏ. ପାଇଁ ପଢ଼ାପଢ଼ି କରୁଥିଲେ । ତାଙ୍କର ସାଧୁ ହେବାର କଥା ଜୟରାମବାଟୀରେ ସମସ୍ତେ ଜାଣନ୍ତି । ଦିନେ ଖରାବେଳେ ଶ୍ରୀମା' ଦାନ୍ତ ଘଷୁଥିଲେ । ନଳିନୀଦେବୀ ହଠାତ୍ କହିଉଠିଲେ, ''ଦେଖୁଛ ପିଉସୀ ! କିପରି ସୁନାପିଲାଟି, ଦୁଇଟା ପାସ୍ କରି ତିନିଟା ପାସ୍ ପାଇଁ ପଢୁଛି । ବାପା, ମା' କେତେ କଷ୍ଟ କରି ମଣିଷ କରିଛନ୍ତି । ପଢ଼ିବାର ଖରଚ ଯୋଗାଉଛନ୍ତି; କିନ୍ତୁ ପିଲା କୁଆଡ଼େ ସାଧୁ ହେବ ! କିପରି ରୋଜଗାର କରି ବାପା ମା'ଙ୍କୁ ଖୁଆଇବ ତା' ନାହିଁ ।'' ମା କହିଲେ, ''ତୁ ସେ କଥା କଅଣ ବୁଝିବୁ ? ସେମାନେ କାଉର ଛୁଆ ନୁହନ୍ତି, ସେମାନେ କୋଇଲିର ଛୁଆ । ବଡ଼ ହେଲେ ଅସଲ ମା'ଙ୍କୁ ବୁଝିପାରିବେ । ଲାଳନପାଳନ କରିଥିବା ମା'ଙ୍କୁ ଛାଡ଼ି ଅସଲ ମା' ନିକଟକୁ ଉଡ଼ିଯିବେ ।'' ରାମମୟ ପରେ ସାଧୁ ହୋଇଥିଲେ ।

ଶ୍ରୀମା' ଶେଷଥର ଜୟରାମବାଟୀରେ ରହିବା ସମୟରେ ମନସା ନାମକ ଜଣେ ଯୁବକଙ୍କୁ ଗୈରିକ ବସନ ପ୍ରଦାନ କରିଥିଲେ । ସଂଧ୍ୟାବେଳେ ଯୁବକ ଖୁବ୍ ଆନନ୍ଦିତ ହୋଇ କାଳୀମାମୁଁଙ୍କ ବୈଠକଖାନାରେ ବସି ଶ୍ୟାମାସଙ୍ଗୀତ ଗାଉଥିଲେ । ରାଧୁ, ମାକୁ ଇତ୍ୟାଦି ବସି ସେହି ସୁନ୍ଦର ଗୀତ ଶୁଣୁଥିଲେ । ଜଣେ କହିଲେ, ''ମା ! ଏହି ପିଲାଟିକୁ ସାଧୁ କରି ଦେଇଛନ୍ତି ।'' ମାକୁ ମଧ୍ୟ ମନ୍ତବ୍ୟ କଲା, ''ଏହି ପିଲାଟିର ବାପା, ମା' କେତେ ଆଶା କରି ତାକୁ ମଣିଷ କରିଥିଲେ । ଏବେ ସବୁ ବୃଥାମାର ହୋଇଗଲା । ବିବାହ କରିବା ମଧ୍ୟ ଗୋଟାଏ ସଂସାରଧର୍ମ ! ପିଉସୀ ଏହି ଭାବରେ ସମସ୍ତଙ୍କୁ ସାଧୁ କରାଇଲେ ମହାମାୟା ତାଙ୍କ ଉପରେ କ୍ରୁଦ୍ଧା ହେବେ । ଯେଉଁମାନେ ସାଧୁ ହେବାକୁ ଚାହାଁନ୍ତି, ସେମାନେ ନିଜେ ହୁଅନ୍ତୁ, ପିଉସୀ ସେଥିପାଇଁ ନିମିତ୍ତ ହେବେ କାହିଁକି ?'' ସବୁ ଶୁଣି ଶ୍ରୀମା' କହିଲେ, ''ମାକୁ, ଏମାନେ ସବୁ ଦେବଶିଶୁ, ସଂସାରରେ ଏମାନେ ଫୁଲ ପରି ପବିତ୍ର ହୋଇ ରହିବେ । ଏହାଠାରୁ ସୁଖର ବିଷୟ ଆଉ କଅଣ ଅଛି ? ସଂସାରରୁ ଯେ କେତେ ସୁଖ ମିଳେ ତାହା ତ ତୁ ଅନୁଭବ କରିଛୁ । ତୁମମାନଙ୍କର ସଂସାର ଜ୍ୱାଳାରେ ମୋର ହାଡ଼ ପର୍ଯ୍ୟନ୍ତ ଜଳିଯାଇଛି ।''

ସନ୍ନ୍ୟାସ ପ୍ରତି ସ୍ୱାଭାବିକ ଅନୁରାଗ ଥିଲେ ମଧ୍ୟ ଶ୍ରୀମା' ଗୈରିକ ବସ୍ତ୍ର ପ୍ରଦାନ ବିଷୟରେ ଖୁବ୍ ସାବଧାନ ଥିଲେ । ସ୍ୱାମୀ କେଶବାନନ୍ଦ ତାଙ୍କ ମା'ଙ୍କର ଏକମାତ୍ର ପୁତ୍ର ବୋଲି ଶ୍ରୀମା' ପ୍ରଥମେ ତାଙ୍କୁ ସନ୍ନ୍ୟାସ ଦେବା ପାଇଁ ସମ୍ମତ ହେଲେ ନାହିଁ । କିନ୍ତୁ ପରେ ଯେତେବେଳେ ଜାଣିଲେ ଯେ ସେ ମାତାଙ୍କ ଅନୁମତି ପାଇଛନ୍ତି, ସେତେବେଳେ ମା' ଆନନ୍ଦ ସହକାରେ ସମ୍ମତି ପ୍ରଦାନ କରିଥିଲେ । ସ୍ୱାମୀ କେଶବାନନ୍ଦଙ୍କର ସ୍ୱାସ୍ଥ୍ୟ ଭଲ ନ ଥିଲା; ଶ୍ୱାସରୋଗରେ କଷ୍ଟ ପାଉଥିଲେ ।

ତେଣୁ ତାଙ୍କ ମାତା ପୁତ୍ରର ସନ୍ନ୍ୟାସଗ୍ରହଣ ପୂର୍ବରୁ ଶ୍ରୀମା'ଙ୍କୁ ପ୍ରାର୍ଥନା କରିଥିଲେ — ଯେପରିକି ସେ ପୁତ୍ରଶୋକ ନ ପାଆନ୍ତି । ଶ୍ରୀମା' ସେହି ବର ପ୍ରଦାନ କରିଥିଲେ ଏବଂ ଯଥାକାଳରେ ଏହା ଫଳବତୀ ହୋଇଥିଲା ।

୧୯୧୩ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମକାଳରେ ବ୍ରହ୍ମଚାରୀ ଦେବେନ୍ଦ୍ର କାଶୀଧାମରୁ ଜୟରାମବାଟୀ ଆସି ଶ୍ରୀମା'ଙ୍କ ନିକଟରେ ସନ୍ନ୍ୟାସପ୍ରାର୍ଥୀ ହେଲେ । ଶ୍ରୀମା' ଘର ଅବସ୍ଥାଦି ବିଷୟରେ ଖବର ନେଇ ଯେତେବେଳେ ନିଶ୍ଚିତରୂପେ ବୁଝିଲେ ଯେ, ଦେବେନ୍ଦ୍ର ସନ୍ନ୍ୟାସ ନେଲେ ଘରେ କାହାରି ଭରଣପୋଷଣ ଅଭାବ ହେବ ନାହିଁ, ସେତେବେଳେ ତାଙ୍କୁ କୋଆଲପଡ଼ା ଆଶ୍ରମରୁ ନୂତନ ବସ୍ତ୍ର ଗେରୁଆ କରି ଆଣିବାକୁ କହିଲେ ଏବଂ ପରଦିନ ତାଙ୍କୁ ସନ୍ନ୍ୟାସ ଦେଲେ । ଶେଷଥର ଯେତେବେଳେ ଉଦ୍‌ବୋଧନରେ ମା' ଥିଲେ, ସେତେବେଳେ ଜଣେ ତ୍ୟାଗୀ ଯୁବକଙ୍କର ପିତୃବିୟୋଗ ସମ୍ବାଦ ପାଇ ସେ ତାଙ୍କ ଘରର ସବୁ ଖବର ନେଲେ ଏବଂ ତାଙ୍କୁ କହିଲେ, "ଆଜି ଯେ ତୁମର ଘର କଥା ଏତେ ପଚାରିଲି, କାହିଁକି ଜାଣିଛ ? ପ୍ରଥମେ ଜଣଙ୍କ ନିକଟରୁ ତୁମ ପିତାଙ୍କ ମୃତ୍ୟୁସମ୍ବାଦ ପାଇ ଖବର ନେଲି ତୁମର ମା'ଙ୍କୁ ଦେଖିବା ପାଇଁ କିଏ ଅଛି କି ନାହିଁ; ଖାଇବା ପିଇବାର ସଂସ୍ଥାନ ଅଛି କି ନାହିଁ; ତୁମେ ନ ଥିଲେ ସେମାନେ ଚଳିବେ କି ନାହିଁ । ଯେତେବେଳେ ଜାଣିଲି ଯେ ତୁମେ ନ ଥିଲେ ସେମାନଙ୍କର ଚଳିଯିବ, ସେତେବେଳେ ମନେ ହେଲା, ଯାହାହେଉ, ପିଲାଟାର ଯେତେବେଳେ ଟିକିଏ ସଦ୍‌ବୁଦ୍ଧି ହୋଇଛି, ଠାକୁରଙ୍କ ଇଚ୍ଛାରେ ତା'ର ସତ୍‌ପଥରେ ରହିବାରେ ବିଶେଷ ବାଧା ହେବ ନାହିଁ ।"

ସବୁ ଦେଖିଶୁଣି ସନ୍ନ୍ୟାସ ଦେବା ପରେ ଶ୍ରୀମା' ଅନ୍ୟମାନଙ୍କର ସମାଲୋଚନା, ଏପରିକି କ୍ରନ୍ଦନରେ ମଧ୍ୟ ବିଚଳିତ ହେଉ ନ ଥିଲେ । କାରଣ ସେ ଜାଣିଥିଲେ ଯେ ଈଶ୍ୱରଲାଭ ପାଇଁ ଯିଏ ସର୍ବସ୍ୱ ତ୍ୟାଗ କରେ, ସେ ଧନ୍ୟ । ଥରେ ଜଣେ ଜୟରାମବାଟୀକୁ ଆସି ସନ୍ନ୍ୟାସ ନେଇ ଚାଲିଯିବା ପରେ ତାଙ୍କ ମାତା ଓ ପତ୍ନୀ ଆସି ଉପସ୍ଥିତ ହେଲେ । ମାତା ପାଗଳ ପରି ଛୁଟି ଆସି ଶ୍ରୀମା'ଙ୍କୁ ପଚାରିଲେ, "ମୋର ପୁଅ କାହିଁ ? ପୁଅ କାହିଁ ?" ପୁଅ କିନ୍ତୁ ସନ୍ନ୍ୟାସ ନେଇ ସେତେବେଳକୁ ଚାଲିଯାଇଛି । ତେଣୁ ଶ୍ରୀମା'ଙ୍କୁ ଅଭିଯୋଗ କରି କହିଲେ, "ଉପାର୍ଜନଶୀଳ ପୁଅର ଅଭାବରେ ପରିବାର ବିପର୍ଯ୍ୟସ୍ତ ହୋଇଛି । ଆମ ଦୁଃଖର ଅନ୍ତ ନାହିଁ ।" ଶ୍ରୀମା' ଦୃଢ଼କଣ୍ଠରେ କହିଲେ, "ସେ ତ କୌଣସି ଅନ୍ୟାୟ କରି ନାହିଁ । ଭଲ ପଥରେ ଯାଇଛି । ମୁଁ ଶୁଣିଛି ପୁଅ ତୁମର ଭରଣପୋଷଣର ବ୍ୟବସ୍ଥା କରିଯାଇଛି ।" ଶ୍ରୀମା'ଙ୍କ ସ୍ନେହ ଆଦର ପାଇ ସେମାନଙ୍କର ପ୍ରାଣ ଶୀତଳ ହୋଇଥିଲା ଏବଂ ଶାନ୍ତ ହୋଇ ସେମାନେ ଘରକୁ ଫେରି ଯାଇଥିଲେ ।

କ୍ଷେତ୍ରବିଶେଷରେ ସେ ଦୃଢ଼ଭାବରେ ସନ୍ନ୍ୟାସ ପାଇଁ ଅସମ୍ମତି ପ୍ରକାଶ କରୁଥିଲେ । ଥରେ ଜଣେ ଶିଷ୍ୟା ତାଙ୍କୁ ପତ୍ର ମାଧ୍ୟମରେ ଜଣାଇଲେ ଯେ ସ୍ୱାମୀ

ତାଙ୍କୁ ବାରମ୍ବାର କହୁଛନ୍ତି, ''ତୁମେ ପିଲାମାନଙ୍କୁ ନେଇ ବାପଘରେ ରୁହ । ମୁଁ ଆଉ ସଂସାର କରିବି ନାହିଁ । ସନ୍ନ୍ୟାସୀ ହେବି ।'' ନିରୁପାୟା ନାରୀଙ୍କ ପତ୍ର ଶ୍ରୀମା'ଙ୍କ ପ୍ରତି କାତର ଅନୁନୟରେ ପୂର୍ଣ୍ଣ । ପତ୍ର ପାଠ କରି ଶ୍ରୀମା' ଉତ୍ତେଜିତ ହୋଇ କହିଲେ, ''ଦେଖିଲ, କିପରି ଅନ୍ୟାୟ କଥା ! ବିଚାରୀ ପିଲାଛୁଆଙ୍କୁ ନେଇ କୁଆଡ଼େ ଯିବ ? ସେ ପୁଣି ସନ୍ନ୍ୟାସୀ ହେବେ ! କାହିଁକି ସଂସାର କରିଥିଲେ ? ଯଦି ସଂସାର ତ୍ୟାଗ କରିବାକୁ ଚାହଁ, ପ୍ରଥମେ ଏମାନଙ୍କର ଭରଣପୋଷଣର ବ୍ୟବସ୍ଥା କର ।''

ଥରେ ଆଶ୍ୱିନ ମାସରେ ଦୁର୍ଗାପୂଜା ସପ୍ତମୀଦିନ ଦୁଇଜଣ ଭକ୍ତିମାନ ଯୁବକ ଆସି ପଦ୍ମଫୁଲ ଦେଇ ଶ୍ରୀମା'ଙ୍କ ପାଦପୂଜା କଲେ ଏବଂ ସନ୍ନ୍ୟାସ ପାଇଁ ପ୍ରାର୍ଥନା କଲେ । ସେମାନଙ୍କର କଥାବାର୍ତ୍ତାରେ ଏପରି ଏକ ଭାବପ୍ରବଣ ଅସ୍ୱାଭାବିକତା ଥିଲା ଯାହା ଦେଖି ଶ୍ରୀମା' ସସ୍ନେହ ହସିବାକୁ ଲାଗିଲେ ଏବଂ ସେମାନଙ୍କର ସନ୍ନ୍ୟାସ ପାଇଁ ବାରମ୍ବାର ଆଗ୍ରହ ସତ୍ତ୍ୱେ, 'ହେବ ବାବା', 'ହେବ ବାବା' କହି କଥା ଏଡ଼ାଇ ଗଲେ । ଶେଷ ପର୍ଯ୍ୟନ୍ତ ସେମାନଙ୍କୁ ସନ୍ନ୍ୟାସ ନ ନେଇ ଫେରିବାକୁ ପଡ଼ିଲା ।

ତାଙ୍କ ଦୃଷ୍ଟିରେ ସନ୍ନ୍ୟାସର ଆଦର୍ଶ ଖୁବ୍ ଉଚ୍ଚ । ଥରେ ସେ କହିଥିଲେ, ''ଅସୁସ୍ଥ ହେଲେ ଚିକିତ୍ସା ପାଇଁ ଗୃହସ୍ଥ ଘରେ ସନ୍ନ୍ୟାସୀ ରହିବ କାହିଁକି ? ମଠ, ଆଶ୍ରମ ରହିଛି । ସନ୍ନ୍ୟାସୀ ତ୍ୟାଗର ଆଦର୍ଶ । କାଠର ସ୍ତ୍ରୀ-ମୂର୍ତ୍ତି ଯଦି ରାସ୍ତାରେ ଓଲଟି ପଡ଼ିଥାଏ, ସନ୍ନ୍ୟାସୀ କେବେହେଲେ ଗୋଡ଼ରେ ତାଙ୍କୁ ସିଧା କରି ଦେଖିବ ନାହିଁ । ସନ୍ନ୍ୟାସୀ ନିକଟରେ ଅର୍ଥ ରହିବା ଅତ୍ୟନ୍ତ ଖରାପ । ଟଙ୍କାଦ୍ୱାରା ନ ହେବ, ଏପରି କିଛି ନାହିଁ—ପ୍ରାଣ-ସଂଶୟ ପର୍ଯ୍ୟନ୍ତ ଘଟିପାରେ ।'' ସମୟ ବିଶେଷରେ ଶ୍ରୀମା' ନିଜ ସନ୍ତାନମାନଙ୍କ ପ୍ରତି ଏ ବିଷୟରେ କଠୋର ବ୍ୟବସ୍ଥା କରୁଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ରାମେଶ୍ୱରରୁ ଫେରି ଜଣେ ସାଧୁଙ୍କ ବିଷୟରେ ଖବର ନେଇ ଜାଣିଲେ ଯେ, ସେ ଶ୍ରୀମା'ଙ୍କ ପାଇଁ ତିନି ଚାରି ମାସ ହେଲା ଭାରି ବ୍ୟାକୁଳ । ଏଥିରେ ଆନନ୍ଦିତ ନ ହୋଇ ବିରକ୍ତି ସହକାରେ ଶ୍ରୀମା' କହିଲେ, ''ଏ କି କଥା ! ସାଧୁ ସବୁ ମାୟା କଟାଇବ । ସୁନାର ଶିକୁଳି ମଧ୍ୟ ବନ୍ଧନ । ...ସାଧୁ ମାୟାରେ ବଦ୍ଧ ହେବ ନାହିଁ । 'ମା'ଙ୍କ ସ୍ନେହ ପାଇଲି ନାହିଁ' ଇତ୍ୟାଦି କଥା ଭଲ ନୁହେଁ । ପୁରୁଷ ଲୋକ ସର୍ବଦା ସାଙ୍ଗରେ ରହିବା ମୋର ପସନ୍ଦ ନୁହେଁ—ଆକୃତି ତ ମଣିଷର ? ଭଗବାନ ପରର କଥା । ମୋତେ କୂଳବଧୂ ଓ କନ୍ୟାମାନଙ୍କୁ ନେଇ ରହିବାକୁ ହୁଏ । ଆଶୁ (ଜଣେ ବ୍ରହ୍ମଚାରୀ) ଉପରକୁ ଯିବା ଆସିବା କରୁଥିଲା—ଚନ୍ଦନ ଘୋରିବା ଓ ଅନ୍ୟାନ୍ୟ କାମ ପାଇଁ—ମୁଁ ତାକୁ ଆସିବାକୁ ନିଷେଧ କଲି ।''

ଗୃହତ୍ୟାଗ କରି ନିଶ୍ଚିନ୍ତ ମନରେ ଭଗବାନଙ୍କୁ ଡାକିବା ହିଁ ସାଧୁମାନଙ୍କର କର୍ତ୍ତବ୍ୟ । ହୃଷୀକେଶରୁ ଜଣେ ସାଧୁ ଲେଖିଲେ, "ମା, ତୁମେ କହିଥିଲ, 'ସମୟ ହେଲେ ଠାକୁରଙ୍କ ଦେଖା ପାଇବ ।' କିନ୍ତୁ ତାହା ତ ହେଲା ନାହିଁ ।" ଶ୍ରୀମା' ପତ୍ର ପାଇ କହିଲେ, "ତାକୁ ଲେଖିଦିଅ ତ, 'ତୁମେ ହୃଷୀକେଶ ଯାଇଛ ବୋଲି କ'ଣ ଠାକୁର ସେଠାରେ ତୁମକୁ ଅପେକ୍ଷା କରି ବସିଛନ୍ତି ? ସାଧୁ ହୋଇଛ, ଭଗବାନଙ୍କୁ ଡାକିବନି ତ ଆଉ କଅଣ କରିବ ? ତାଙ୍କର ଯେତେବେଳେ ଇଚ୍ଛା ସେ ଦେଖା ଦେବେ ।"

ସାଧୁଙ୍କୁ ତାଙ୍କର ଆଚାର ମର୍ଯ୍ୟାଦା ଠିକ୍ ରଖି ଚଳିବାକୁ ହୁଏ । ଥରେ ଠାକୁରଙ୍କର ଜଣେ ବିଶିଷ୍ଟ ଭକ୍ତଙ୍କ ସହିତ ସ୍ୱାମୀ ଶାନ୍ତାନନ୍ଦଙ୍କର କାଶୀ ଯିବା କଥା ଉଠିବାରୁ ଶ୍ରୀମା' କହିଲେ, "ତୁମେ ସାଧୁ, ତୁମର କଅଣ ଆଉ ଯିବାର ଭଡ଼ା ଜୁଟିବ ନାହିଁ ? ସେମାନେ ଗୃହସ୍ଥ — ତାଙ୍କ ସହିତ ତୁମେ କାହିଁକି ଯିବ ? ଗୋଟିଏ ଗାଡ଼ିରେ ଯାଉଛ; ହୁଏତ କହିଲା, 'ଏଇଟା କର, ସେଇଟା କର ।' ତୁମେ ସନ୍ନ୍ୟାସୀ; ତୁମେ କାହିଁକି ସେସବୁ କାମ କରିବାକୁ ଯିବ ?" ଶ୍ରୀମା'ଙ୍କର ଜଣେ ଦୀକ୍ଷିତ ବ୍ରହ୍ମଚାରୀ ଗେରୁଆ ବସ୍ତ୍ର ଛାଡ଼ି ଧଳା ଲୁଗା ପିନ୍ଧୁଛନ୍ତି ଶୁଣି ଶ୍ରୀମା' କହିଲେ, "ମାଟିହାଣ୍ଡିରେ ସିଂହର ଦୁଧ ରଖା ଯାଏ ନାହିଁ । ଗୃହସ୍ଥର ଅନ୍ନ ଖାଇ ଖାଇ ତାର ବୁଦ୍ଧି ମଳିନ ହୋଇଯାଇଛି ।"

ନିଜେ ସନ୍ନ୍ୟାସୀମାନଙ୍କ ପ୍ରତି ସମ୍ମାନ ଦେଖାଇ ଶ୍ରୀଶ୍ରୀମା' ଏହି ବିଷୟରେ ଅନ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । କୋଆଲପଡ଼ା ଆଶ୍ରମର ଅନ୍ୟ ସମସ୍ତେ ସନ୍ନ୍ୟାସ ଗ୍ରହଣ କରିଥିଲେ ସୁଦ୍ଧା ଅଳ୍ପବୟସ୍କ ସେବକ ବ୍ରହ୍ମଚାରୀ ବରଦାଙ୍କୁ ସେ ଗେରୁଆ ବସ୍ତ୍ର ଦେଇ ନ ଥିଲେ; କାରଣ ତାଙ୍କୁ ଶ୍ରୀମା' ଓ ରାଧୁ ଇତ୍ୟାଦିଙ୍କର ଅନେକ କାମ କରିବାକୁ ହେଉଥିଲା । କୌଣସି କାମ ପାଇଁ ଆଦେଶ ଦେଇ ଶ୍ରୀମା' କହୁଥିଲେ, "ବାବା, ଗେରୁଆ ପିନ୍ଧିଲେ ଏ କଥା କଅଣ କହିପାରିଥାନ୍ତି । ମୋ ପାଦ ସ୍ପର୍ଶ କଲେ ସଙ୍କୋଚ ହୁଅନ୍ତା ।" ସନ୍ନ୍ୟାସ ହେବାର ବିଳମ୍ବ ହେତୁ ଶ୍ରୀମା' ସାନ୍ତ୍ୱନା ଦେଇ କହିଥିଲେ, "ତୁମମାନଙ୍କର ଚିନ୍ତା କଅଣ ? ପରେ ଯେତେବେଳେ ଇଚ୍ଛା ହେବ, ଶରତକୁ କହିଲେ ସବୁ ବ୍ୟବସ୍ଥା କରିଦେବ ।" ଠିକ୍ ଏହି କାରଣରୁ ବାଳକ ଭକ୍ତ ହରିକୁ ମଧ୍ୟ ସନ୍ନ୍ୟାସ ଦେଇ ନ ଥିଲେ ।

ଥରେ ବେଲୁଡ଼ ମଠରେ ଶ୍ରୀଶ୍ରୀଠାକୁରଙ୍କ ଉତ୍ସବରେ ଶ୍ରୀମା' ଉପସ୍ଥିତ ଥିଲେ । ମଧ୍ୟାହ୍ନ ଆହାର ପରେ ବ୍ରହ୍ମଚାରୀ ରାସବିହାରୀ ହାତ ଧୋଇବା ପାଇଁ ପାଣି ଦେଲେ । ହାତ ଧୋଇବା ପରେ ଶ୍ରୀମା' ଗୋଡ଼ ଧୁଅନ୍ତି, ଅଥଚ ଆଣ୍ଠୁରେ ବାତ ଯୋଗୁଁ ନଇଁବାରେ କଷ୍ଟ ହୁଏ । ତେଣୁ ବ୍ରହ୍ମଚାରୀ ଗୋଡ଼ରେ ପାଣି ଢାଳି ନିଜ ହାତ ଦେଇ ପାଦ ପୋଛିବାକୁ ଉଦ୍ୟତ ହେଲେ । ଶ୍ରୀମା' ଅତ୍ୟନ୍ତ ସଙ୍କୁଚିତ ହୋଇ କହି ଉଠିଲେ, "ନା ନା, ବାବା ! ତୁମେ ସବୁ ଦେବତାଙ୍କର ଆରାଧ ଧନ ।' ଏହା

କହି ନିଜେ ଗୋଡ଼ ପୋଛିଲେ । ରାସବିହାରୀ ମହାରାଜ ସେତେବେଳେ କଛାମାରି ଧଳା ଲୁଗା ପିନ୍ଧୁଥିଲେ ।

ଶ୍ରୀମା'ଙ୍କ ସହିତ ଉଦ୍‌ବୋଧନ ଭବନରେ ରାଧୁ ଓ ଅନ୍ୟାନ୍ୟ ସ୍ତ୍ରୀ–ଭକ୍ତମାନେ ରହୁଥିଲେ ! ରାଧୁର ଅସଂଯତ ବ୍ୟବହାର ଦେଖିଲେ ମା' ଖୁବ୍ ଅସନ୍ତୁଷ୍ଟ ହେଉଥିଲେ ଏବଂ ସେ ବିଷୟରେ ଭବିଷ୍ୟତରେ ସାବଧାନ ହେବା ପାଇଁ କହୁଥିଲେ । ଥରେ ବିରକ୍ତ ହୋଇ ଶ୍ରୀମା' ରାଧୁକୁ କହିଲେ, ''ଏଠାରେ ଯେଉଁମାନେ ଅଛନ୍ତି, ସେମାନେ ତାମସା ଦେଖିବା ପାଇଁ ଆସି ନାହାନ୍ତି । ସମସ୍ତେ ସାଧନ ଭଜନ କରନ୍ତି । ଏମାନଙ୍କର ଭଜନରେ ବ୍ୟାଘାତ ହେଲେ କ'ଣ ହେବ ଜାଣିଛୁ ?'' ଏହି ଜାତୀୟ ବ୍ୟବହାର ବିଷୟରେ ସାଧୁମାନେ ଉଦାସୀନ ରହିଲେ ସୁଦ୍ଧା ଶ୍ରୀମା' ସେମାନଙ୍କ ପ୍ରୟୋଜନ ଦୃଷ୍ଟିରୁ ଗୋଟିଏ ସଂଯମର ଭାବ ରକ୍ଷା କରିବା ପାଇଁ ଖୁବ୍ ଯତ୍ନବାନ ଥିଲେ ।

ସାଧୁଭକ୍ତି ଓ ସଂଯମାଦି ପ୍ରତି ଶ୍ରୀମା' ବିଶେଷ ଲକ୍ଷ୍ୟ ରଖୁଥିଲେ । ଥରେ କୋଆଲପଡ଼ାରେ ରହିବା ସମୟରେ ଦିନେ ବ୍ରହ୍ମଚାରୀ ବରଦା ବସି ବଜାର ସଉଦାର ହିସାବ ଲେଖୁଥିଲେ । ଏପରି ସମୟରେ ଜଣେ ସ୍ତ୍ରୀ–ଭକ୍ତ ତାଙ୍କ ପାଖ ଦେଇ ଯିବା ସମୟରେ ତାଙ୍କର ଲୁଗାକାନି ବ୍ରହ୍ମଚାରୀଙ୍କୁ ସ୍ପର୍ଶ କରିଥିଲା । ବ୍ରହ୍ମଚାରୀ କିଛି ଜାଣିପାରି ନ ଥିଲେ; କିନ୍ତୁ ଶ୍ରୀମା' ଏହା ଲକ୍ଷ୍ୟ କରି ସ୍ତ୍ରୀ–ଭକ୍ତ ଜଣଙ୍କୁ ବିରକ୍ତି ସହ କହିଲେ, ''କି ଗୋ ! ମୋ ପୁଅ ସାମନାରେ ବସି ଲେଖୁଛି, ପୁରୁଷ ଲୋକ; ତୁମର ଟିକିଏ ହେଲେ ହୋସ୍ ନାହିଁ ? ତା' ଦେହରେ ପଣତକାନି ବଜାଇ ଯାଉଛ ? ସେମାନେ ବ୍ରହ୍ମଚାରୀ, ତୁମେମାନେ ସ୍ତ୍ରୀ-ଲୋକ, ସେମାନଙ୍କୁ ସମ୍ମାନ ଦେଖାଇ ଚଳିବାକୁ ହୁଏ । ଲୁଗାକାନି ମାଟିରେ ଲଗାଅ, ପ୍ରଣାମ କର ।''

ତ୍ୟାଗୀ ଓ ଗୃହସ୍ଥ ଭକ୍ତମାନେ ତାଙ୍କଠାରୁ ସମାନ ଆଦର ପାଇଲେ ମଧ୍ୟ ତ୍ୟାଗୀ ଭକ୍ତମାନେ ତାଙ୍କର ବିଶେଷ ଆପଣାର ଥିଲେ—ଏହା ସ୍ୱୀକାର କରିବାକୁ ହେବ । ଶ୍ରୀମା' କହୁଥିଲେ, ''ବାବା, ତ୍ୟାଗୀ ଭକ୍ତମାନେ ନ ଥିଲେ —କାହା ସହିତ ରହନ୍ତି ?'' ଉଦ୍‌ବୋଧନ ଘରେ ଜଣେ ବୟୋଜ୍ୟେଷ୍ଠା ସ୍ତ୍ରୀ–ଭକ୍ତ ଜଣେ ସାଧୁଙ୍କ ସହିତ କଳିଗୋଳ କରି ଚାଲିଯିବା ସମୟରେ କହିଲେ, ''ସେ ଏଠାରେ ରହିଲେ ମୁଁ ଆସିବି ନାହିଁ ।'' ଅନେକ ଅନୁନୟ ବିନୟ କରି ମଧ୍ୟ କିଛି ଫଳ ହେଲା ନାହିଁ । ଶ୍ରୀମା' ଏ କଥା ଶୁଣି ଉତ୍ତେଜିତ ହୋଇ କହିଲେ, ''ସେ କିଏ ? ଗୃହସ୍ଥ ! ଯଦି ଯିବାକୁ ଚାହୁଁଛି ଯାଉନା ! ସାଧୁ ମୋ ପାଇଁ ସବୁ ଛାଡ଼ି ଏଠାରେ ପଡ଼ିରହିଛି !'' ଆଉ ଦିନେ ଜଣେ ତ୍ୟାଗୀ ଭକ୍ତ ଶ୍ରୀମା'ଙ୍କୁ ପଚାରିଲେ, ''ମା' ! ଜଣେ ସନ୍ନ୍ୟାସୀ ହେଉ ବା ଗୃହସ୍ଥ ହେଉ, ଠାକୁରଙ୍କୁ ଯେଉଁମାନେ ଆଶ୍ରୟ କରିଛନ୍ତି, ସେମାନେ ସମସ୍ତେ ସମାନ; କାରଣ ସେମାନେ ସମସ୍ତେ ମୁକ୍ତ ହେବେ ।'' ଶ୍ରୀମା' ଉତ୍ତର ଦେଲେ, ''କଅଣ କହୁଛ ? ତ୍ୟାଗୀ

ଆଉ ଗୃହସ୍ଥ କଅଣ ସମାନ ହୋଇପାରିବେ ? ଗୃହସ୍ଥମାନଙ୍କର କେତେ କାମନା ବାସନା ଅଛି ! ଆଉ ଏମାନେ ତାଙ୍କ ପାଇଁ ସବୁ ଛାଡ଼ି ଆସିଛନ୍ତି । ତାଙ୍କ ଭିନ୍ନ ସାଧୁମାନଙ୍କର ଆଉ କିଏ ଅଛି ? ସାଧୁମାନଙ୍କ ସହିତ ଗୃହସ୍ଥମାନଙ୍କର କିପରି ତୁଳନା ହେବ ?''

ଶ୍ରୀମା' ସାଧୁମାନଙ୍କୁ ଯେପରି ସମ୍ମାନ ଦେଖାଇବାକୁ କହୁଥିଲେ, ଅନ୍ୟ ଦିଗରେ ସେପରି ସାଧୁମାନଙ୍କୁ ଅଭିମାନ ବିଷୟରେ ସତର୍କ କରାଇ ଦେଉଥିଲେ । ସ୍ୱାମୀ ଅରୂପାନନ୍ଦ ଯେତେବେଳେ ତାଙ୍କୁ କହିଲେ, ''ମା' ! ସନ୍ନ୍ୟାସ ନେଲେ ବେଶ୍ ଅଭିମାନ ହୁଏ''; ଶ୍ରୀମା' ସେତେବେଳେ ତାଙ୍କୁ ସମର୍ଥନ କରି କହିଲେ, ''ହଁ ଭାରୀ ଅଭିମାନ ହୁଏ—ମୋତେ ପ୍ରଣାମ କଲା ନାହିଁ, ମାନ୍ୟ ଚଲା ନାହିଁ, ଇତ୍ୟାଦି ! ତା'ଠାରୁ ବରଂ (ନିଜର ଧଳା ଲୁଗା ଦେଖାଇ) ଏହା ଭଲ, (ଅର୍ଥାତ୍ ଅନ୍ତରରେ ତ୍ୟାଗ) !'' ଶ୍ରୀମା' ବାହାର ପୋଷାକ ଅପେକ୍ଷା ଅନ୍ତରର ବୈରାଗ୍ୟକୁ ଉଚ୍ଚତର ଆସନ ଦେଉଥିଲେ । ସାଧନ ମହାରାଜ ତାଙ୍କ ନିକଟରୁ ଗୈରିକ ବସନ ପାଇ ସନ୍ନ୍ୟାସର ବିଧି ଅନୁଷ୍ଠାନ ବିଷୟ ପଚାରିବାକୁ ଶ୍ରୀମା' ଗମ୍ଭୀର ଭାବରେ କହିଲେ, ''ବିଶ୍ୱାସ ନିଷ୍ଠା ହେଉଛି ମୂଳ କଥା, ବିଶ୍ୱାସ ନିଷ୍ଠା କେବଳ ଥିଲେ ହେଲା ।''

ସାଧନାର ଅଙ୍ଗ ହିସାବରେ ଗୈରିକ ବସନ ଧାରଣ କରିବା ଓ ବିରଜାହୋମ କରି ଚିରକାଳ ପାଇଁ ସର୍ବସ୍ୱ ତ୍ୟାଗ କରିବା ମଧ୍ୟରେ ବୋଧହୁଏ ଶ୍ରୀମା' ଗୋଟିଏ ପାର୍ଥକ୍ୟ ରଖୁଥିଲେ । ଜଣେ ବ୍ରାହ୍ମଣ ଯୁବକ ବିହାର ସରକାରଙ୍କ ଅଧୀନରେ କାମ କରୁଥିଲେ । ବୈରାଗ୍ୟ ଆସିବାରୁ ଚାକିରୀ ଛାଡ଼ି ମା'ଙ୍କ ନିକଟକୁ ଆସିଲେ । ଶ୍ରୀମା' ତାଙ୍କ ପ୍ରାର୍ଥନା ଅନୁଯାୟୀ ଗେରୁଆ ବସନ ପ୍ରଦାନ କଲେ । ଉତ୍ତରାଖଣ୍ଡରେ କିଛି କାଳ ତପସ୍ୟା କରିବା ପରେ ସେଠାକାର ଅନ୍ୟାନ୍ୟ ସନ୍ନ୍ୟାସୀମାନେ ତାଙ୍କୁ ବିରଜାହୋମ କରିବାକୁ କହିଲେ । କିନ୍ତୁ ଏ ବିଷୟରେ ଶ୍ରୀମା'ଙ୍କ ମତାମତ ଜାଣିବାକୁ ପତ୍ର ଦେବାରୁ, ଶ୍ରୀମା' ଜଣାଇଲେ, ''ବିରଜାହୋମ ଅତ୍ୟନ୍ତ କଠିନ ବ୍ୟାପାର । ତେଣୁ ମୁଁ ତୁମକୁ ସେ କଥା କହିନାହିଁ ।'' ଦୀର୍ଘକାଳ ତପସ୍ୟା କରି ଏହି ଭକ୍ତ ପୁନର୍ବାର ଘରକୁ ଫେରି ଯାଇଥିଲେ । ଶ୍ରୀମା' ସମ୍ଭବତଃ ଏହାଙ୍କ ଅନ୍ତରର କଥା ଜାଣିଥିଲେ ବୋଲି ଚରମ ତ୍ୟାଗର ଅନୁମତି ଦେଇ ନ ଥିଲେ ।

ଅନେକ କ୍ଷେତ୍ରରେ ସେ ନିଜେ ଗେରୁଆ ବସ୍ତ୍ର ନ ଦେଇ ସନ୍ନ୍ୟାସୀମାନଙ୍କ ନିକଟକୁ ପ୍ରାର୍ଥୀମାନଙ୍କୁ ପ୍ରେରଣ କରୁଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ସୁରେନ୍ଦ୍ର ବିଜୟ ନାମକ ଜଣେ ଯୁବକକୁ ସ୍ୱାମୀ ରାମକୃଷ୍ଣାନନ୍ଦଜୀ ଉଦ୍‌ବୋଧନରେ ଶ୍ରୀମା'ଙ୍କ ନିକଟକୁ ଆଣି କହିଲେ, ''ମା ! ଏହି ପିଲାଟି ମୋ ସହିତ ମାନ୍ଦ୍ରାଜ ଯିବ । ଏହାକୁ କୃପା କରି ଆପଣ ସନ୍ନ୍ୟାସ-ଦୀକ୍ଷା ଦେବେ କି ?'' ଶ୍ରୀମା' କହିଲେ, ''ଶରତକୁ କୁହ, ସେ ଦେଉ ।'' ଶରତ ମହାରାଜ କହିଲେ, ''ମୁଁ ଜଣଙ୍କର ମନର କି ଭାବ

ଜାଣିପାରେ ନାହିଁ । ତା'ଛଡ଼ା ସନ୍ୟାସ ଇତ୍ୟାଦି ତ ମହାରାଜ (ସ୍ୱାମୀ ବ୍ରହ୍ମାନନ୍ଦ) ଦିଅନ୍ତି ।'' ଏ କଥା ଶୁଣି ମା' କହିଲେ, ''ତାହାହେଲେ ପୁରୀରେ ରାଖାଲ (ବ୍ରହ୍ମାନନ୍ଦ) ନିକଟରୁ ସେ ଯେପରି ସନ୍ୟାସ ନିଏ ।''

ସ୍ୱାମୀ ଜଗଦାନନ୍ଦ ସନ୍ୟାସପ୍ରାର୍ଥୀ ହେବାରୁ ଶ୍ରୀମା' ଗେରୁଆ ବସ୍ତ୍ର ଠାକୁରଙ୍କ ଶ୍ରୀଚରଣରେ ଛୁଆଁଇ ଓ ମସ୍ତକରେ ଲଗାଇ ତାଙ୍କ ହାତରେ ଦେଲେ ଓ କହିଲେ, ''ମୁଁ ଗେରୁଆ ଦେଲି; କିନ୍ତୁ ମଠକୁ ଯାଇ ରାଖାଲ ନିକଟରେ ବିରଜାହୋମ କରି ସନ୍ୟାସ-ନାମ ନେବ ।'' ବ୍ରହ୍ମଚର୍ଯ୍ୟବ୍ରତ ସମ୍ବନ୍ଧରେ ମଧ୍ୟ ଶ୍ରୀମା'ଙ୍କର ଏକ ବିଶେଷ ଦୃଷ୍ଟିଭଙ୍ଗୀ ଥିଲା । ରାମକୃଷ୍ଣ ସଂଘର ଅନ୍ତର୍ଭୁକ୍ତ ନୁହଁନ୍ତି, ଏପରି କୌଣସି କୌଣସି ବ୍ୟକ୍ତିଙ୍କୁ ସେ ବ୍ରହ୍ମଚର୍ଯ୍ୟ ପାଳନରେ ସାହାଯ୍ୟ କରୁଥିଲେ । ଏଥିରେ ଆନୁଷ୍ଠାନିକ କିଛି ନ ଥିଲା—ଥିଲା କେବଳ ଗୁରୁଙ୍କର ଶୁଭେଚ୍ଛା ଏବଂ ଶିଷ୍ୟର ଶ୍ରଦ୍ଧା ଓ ଦୃଢ଼ ସଂକଳ୍ପ । ଏପରି ଭାବରେ ବ୍ରହ୍ମଚର୍ଯ୍ୟ-ଦୀକ୍ଷିତ କେହି କେହି ପରେ ରାମକୃଷ୍ଣ ସଂଘରେ ଯୋଗ ଦେଇ ସନ୍ୟାସ ନେଇଥିଲେ ।

ଶ୍ରୀ ସୁରେନ୍ଦ୍ରନାଥ ଗୁପ୍ତ ଗୋପେଶ ମହାରାଜଙ୍କ ସହିତ ଜୟରାମବାଟୀକୁ ଆସିଥିଲେ । ଭକ୍ତଙ୍କ ମନରେ ବ୍ରହ୍ମଚର୍ଯ୍ୟ—ଗ୍ରହଣର ତୀବ୍ର ଆକାଙ୍କ୍ଷା ହେବାରୁ ସେ ନୂତନ ବସ୍ତ୍ର ନେଇ ମା'ଙ୍କ ନିକଟରେ ଉପସ୍ଥିତ ହେଲେ । ଶ୍ରୀମା' ତାଙ୍କ ଘରର ଆର୍ଥିକ ଅବସ୍ଥା ଇତ୍ୟାଦିର ଖବର ନେଇ ସେଥିପାଇଁ ସମ୍ମତ ହେଲେ । ବସ୍ତ୍ରକୁ ଠାକୁରଙ୍କ ଶ୍ରୀଚରଣରେ ଛୁଆଇଁ ତତ୍‌ସହିତ କୌପୀନ ଓ ବହିର୍ବାସ ମଧ୍ୟ ପ୍ରଦାନ କରିଥିଲେ । ସୁରେନ୍ଦ୍ରବାବୁ ସେତେବେଳେ ଚାକିରୀ କରୁଥିଲେ । ଚାକିରୀ ଛାଡ଼ିବା ବିଷୟ ପଚାରିବାରୁ ଶ୍ରୀମା' ନିଷେଧ କରି କହିଲେ, ''ଉପାର୍ଜିତ ଟଙ୍କାଦ୍ୱାରା ଭକ୍ତମାନଙ୍କୁ ଧର୍ମ କାର୍ଯ୍ୟରେ ସାହାଯ୍ୟ କରିବା ଭଲ ।'' ଭକ୍ତ ମଧ୍ୟ ଏହି ଉପଦେଶ ପାଳନ କରିଥିଲେ । ବହୁ ବର୍ଷ ପରେ ସଂସାରର କର୍ତ୍ତବ୍ୟଭାରରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ସେ ସନ୍ୟାସ ଅବଲମ୍ବନ କରିଥିଲେ ଓ ସଂଘରେ ଯୋଗ ଦେଇଥିଲେ । ତ୍ୟାଗୀ ପୁରୁଷମାନଙ୍କ ପରି ସଦ୍‌ଗୁଣସଂପନ୍ନ ତ୍ୟାଗୀ ସ୍ତ୍ରୀ-ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ଥିଲେ ସେମାନେ ମଧ୍ୟ ଆକୁମାରୀ ବ୍ରହ୍ମଚାରିଣୀ ରହିପାରିବେ—ଏହି ବିଷୟରେ ଶ୍ରୀମା'ଙ୍କର ପୂର୍ଣ୍ଣ ସମ୍ମତି ଥିଲା । ମହୀଶୂରର ଶ୍ରୀଯୁକ୍ତ ନାରାୟଣ ଆୟେଙ୍ଗାରଙ୍କ କନ୍ୟା ବ୍ରହ୍ମଚର୍ଯ୍ୟବ୍ରତ ଗ୍ରହଣ କରିବାକୁ ଚାହିଁବାରୁ ଶ୍ରୀମା' ସାରଦାନନ୍ଦଜୀଙ୍କ ଦ୍ୱାରା ଆୟେଙ୍ଗାର ମହାଶୟଙ୍କୁ ଏକ ପତ୍ର ଲେଖି ନିଜର ସମ୍ମତି ଜଣାଇଥିଲେ । ଆଉ ଗୋଟିଏ ଘଟଣା । ଜଣେ ଭକ୍ତଙ୍କ କନ୍ୟା ବିବାହ କରିବାକୁ ଅସମ୍ମତ ହେବାରୁ କନ୍ୟାର ମାତା ଶ୍ରୀମା'ଙ୍କୁ ଅନୁରୋଧ କଲେ, ସେ ଯେପରି ତାକୁ ବିବାହ ପାଇଁ ଆଦେଶ ଦିଅନ୍ତି । ଶ୍ରୀମା' ଉତ୍ତରରେ ଲେଖିଲେ, ''ସାରା ଜୀବନ ଅନ୍ୟର ଦାସତ୍ୱ କରିବା, ଅପରର ମନ ମୁତାବକ ଚଳିବା, ଏହା କ'ଣ କମ୍ କଷ୍ଟର କଥା ! ଆହୁରି ମଧ୍ୟ ଲେଖିଲେ ଯେ, ଅବିବାହିତ ଜୀବନରେ

ବିପଦର ସମ୍ଭାବନା ଥିଲେ ମଧ୍ୟ ଯାହାର ବିବାହର ଇଚ୍ଛା ନାହିଁ ତାକୁ ବିବାହ ଦେଇ ଭୋଗରେ ଲିପ୍ତ କରାଇବା ଅନ୍ୟାୟ ।''

ଶ୍ରୀମା' ପ୍ରତ୍ୟକ୍ଷ ଭାବରେ ଶ୍ରୀରାମକୃଷ୍ଣ ସଂଘ ପରିଚାଳନାରେ ଯୁକ୍ତ ନ ଥିଲେ ମଧ୍ୟ ପରାମର୍ଶଦ୍ୱାରା ଆଧ୍ୟାତ୍ମିକ ପ୍ରଭାବ ବିସ୍ତାର କରି ଏବଂ ସ୍ନେହର ବନ୍ଧନ ଦୃଢ଼ତର କରି ସଂଘର ଗତି ନିୟମିତ କରୁଥିଲେ । ସଂଘର ସାଧୁ ବ୍ରହ୍ମଚାରୀମାନଙ୍କ ସହିତ ତାଙ୍କର ସମ୍ବନ୍ଧ ବିଶେଷ ଅନୁଧ୍ୟାନଯୋଗ୍ୟ । ଏମାନଙ୍କ ମଧ୍ୟରୁ ଅନେକେ ତାଙ୍କର ବା ଠାକୁରଙ୍କର ଶିଷ୍ୟ ଅଥବା ଏହି ସନ୍ତାନମାନଙ୍କର ଶିଷ୍ୟ । କାର୍ଯ୍ୟକ୍ଷେତ୍ରରେ ମାତା ଓ ପୁତ୍ରଙ୍କ ମଧ୍ୟରେ ଯେଉଁ ସମ୍ବନ୍ଧ ରୂପାୟିତ ହେଉଥିଲା, ତାହା ଆମ ପକ୍ଷରେ ଶିକ୍ଷାପ୍ରଦ ।

୧୮୮୯ ଖ୍ରୀଷ୍ଟାବ୍ଦରେ ଶେଷ ଭାଗରେ ସ୍ୱାମୀ ବ୍ରହ୍ମାନନ୍ଦଜୀଙ୍କ ମନରେ ତପସ୍ୟାର ଆକାଙ୍‌କ୍ଷା ଜାଗିଲା । କିନ୍ତୁ ଏଥିପାଇଁ ସର୍ବାଗ୍ରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଅନୁମତି ବିଶେଷ ପ୍ରୟୋଜନ । ଶ୍ରୀମା' ସେତେବେଳେ ଜୟରାମବାଟୀରେ ଥିଲେ । ସେ ବ୍ରହ୍ମାନନ୍ଦଜୀ ମହାରାଜଙ୍କର ଅଭିପ୍ରାୟ ଶୁଣି ବଳରାମବାବୁଙ୍କୁ ଲେଖିଲେ, ''ଶୁଣିଲି ରାଖାଲ ପଶ୍ଚିମକୁ ଯିବ । ପୂର୍ବଥର ଜଗନ୍ନାଥଧାମରେ (ପୁରୀଧାମରେ) ଶୀତ ପାଇଁ କଷ୍ଟ ପାଇଥିଲା । ଶୀତ ପରେ ଗଲେ ଭଲ ହୁଅନ୍ତା । ତେବେ ଯଦି ଏକାନ୍ତ ଇଚ୍ଛା ଥାଏ, ତା'ହେଲେ ଆଉ କଅଣ କହିବି ?'' ଅନୁମତି ପାଇ ବ୍ରହ୍ମାନନ୍ଦଜୀ କୃତାର୍ଥ ହେଲେ, କିନ୍ତୁ ଶୀତ ଶେଷ ଯାଏ ଅପେକ୍ଷା ନ କରିପାରି ଡିସେମ୍ବର ମାସରେ ଯାତ୍ରା କଲେ ।

ସ୍ୱାମୀ ବିବେକାନନ୍ଦଙ୍କ ମନରେ ଆମେରିକା ଯିବାର ସଂକଳ୍ପ ସ୍ଥିର କରିବା ପୂର୍ବରୁ ଏ ବିଷୟରେ ସମ୍ପୂର୍ଣ୍ଣ ସନ୍ଦେହମୁକ୍ତ ହେବା ପାଇଁ ସେ ଶ୍ରୀମା'ଙ୍କୁ ଏକ ପତ୍ର ଲେଖିଲେ । ଦୀର୍ଘକାଳ ପରେ ସ୍ନେହାସ୍ପଦର ପତ୍ର ପାଇ ମାତାଠାକୁରାଣୀ ଖୁବ୍ ଆନନ୍ଦିତ ହେଲେ; କିନ୍ତୁ ଏକ ବିଷମ ସମସ୍ୟାରେ ପଡ଼ିଲେ—ସେ ନରେନ୍ଦ୍ରକୁ ଏଥିପାଇଁ ଅନୁମତି ଦେବେ କି ନାହିଁ । ଠାକୁରଙ୍କ ଲୀଳାସମ୍ବରଣ ପରେ ସେ ଯେଉଁସବୁ ଦର୍ଶନ ପାଇଥିଲେ ସେଥିରୁ ସେ ନରେନ୍ଦ୍ରର ଭବିଷ୍ୟତ ବିଷୟରେ ବିଶେଷଭାବରେ ଅବହିତ ଥିଲେ ସୁଦ୍ଧା ମାତୃସ୍ନେହ ଓ ସିଦ୍ଧାନ୍ତ-ଗ୍ରହଣ ବିଷୟରେ ଦ୍ୱନ୍ଦ୍ୱରେ ପଡ଼ିଲେ । ମା' ହୋଇ ସେ ପୁଅକୁ ସାଗରପାରି ପାଇଁ କିପରି ଛାଡ଼ିବେ, ଏପରି ଚିନ୍ତା କରି କରି ସେ ରାତ୍ରିରେ ସ୍ୱପ୍ନ ଦେଖିଲେ, ଠାକୁର ଯେପରିକି ତରଙ୍ଗ ଉପର ଦେଇ ଚାଲିଯାଉଛନ୍ତି ଏବଂ ନରେନ୍ଦ୍ରକୁ ଅନୁସରଣ କରିବା ପାଇଁ କହୁଛନ୍ତି । ଏହି ଦର୍ଶନ ପରେ ମା'ଙ୍କ ମନରେ କୌଣସି ଚିନ୍ତା ରହିଲା ନାହିଁ । ଶ୍ରୀମା' ଆଶୀର୍ବାଦ କରି ସ୍ୱାମୀଜୀଙ୍କୁ ପତ୍ର ଲେଖିଲେ । ସ୍ୱାମୀଜୀ ମଧ୍ୟ ପତ୍ର ପାଇ ଉଲ୍ଲସିତ ହୋଇ ଆମେରିକା ଯିବା କଥା ସ୍ଥିର କରିଥିଲେ ।

କେତେ ବର୍ଷ ପରେ (ମାର୍ଚ୍ଚ ୧୮୯୬) ସ୍ୱାମୀ ସାରଦାନନ୍ଦଜୀ ଆମେରିକା ଯିବା ପୂର୍ବରୁ ଜୟରାମବାଟୀରେ ଉପସ୍ଥିତ ହୋଇ ଶ୍ରୀମା'ଙ୍କର ଆଶୀର୍ବାଦ କାମନା କଲେ । ଶ୍ରୀମା' ଆନ୍ତରିକ ଶୁଭେଚ୍ଛା ଜଣାଇ କହିଲେ, ''ଠାକୁର ତୁମମାନଙ୍କୁ ସର୍ବଦା ରକ୍ଷା କରୁଛନ୍ତି ବାବା ! କୌଣସି ଭୟ ନାହିଁ ।'' ଦିନେ ବ୍ରହ୍ମାନନ୍ଦଜୀ ମାତୃଭବନରେ (୧୮୯୮ ଖ୍ରୀଷ୍ଟାବ୍ଦ) ଯୋଗାନନ୍ଦଜୀଙ୍କ ପରାମର୍ଶକ୍ରମେ ଆମେରିକାରେ ପ୍ରଚାରରତ ସ୍ୱାମୀ ଅଭେଦାନନ୍ଦଙ୍କ ପାଇଁ ଆଧ୍ୟାତ୍ମିକ ଜୀବନ ଓ ସ୍ୱାସ୍ଥ୍ୟ ବିଷୟରେ ଏକ ପତ୍ର ଲେଖି ଶ୍ରୀମା'ଙ୍କ ଅନୁମୋଦନ ପାଇଁ ତାଙ୍କ ପାଖକୁ ପଠାଇଲେ । ଚିଠିଟି ଶ୍ରୀମା'ଙ୍କ ନାମରେ ଲିଖିତ ହୋଇଥିଲା । ଶ୍ରୀମା' ସବୁ ଶୁଣି କହିଲେ, ''ରାଖାଲ ଓ ଯୋଗେନକୁ କୁହ, ଚିଠିଟି ଖୁବ୍ ସୁନ୍ଦର ହୋଇଛି; ମୋର ବକ୍ତବ୍ୟ ଏଥିରେ ସଠିକ୍ ଭାବରେ ପ୍ରକାଶିତ ହୋଇଛି ।''

ସ୍ୱାମୀ ପ୍ରେମାନନ୍ଦଜୀଙ୍କୁ ମାଲଦହ ନେଇଯିବା ପାଇଁ ଜଣେ ଭକ୍ତ ବେଲୁଡ଼ମଠକୁ ଆସିଥିଲେ (ମେ, ୧୯୧୪ ଖ୍ରୀ:) । ଭକ୍ତଙ୍କ ଆଗ୍ରହ ଦେଖି ପ୍ରେମାନନ୍ଦଜୀ ବ୍ୟକ୍ତିଗତ ସମ୍ମତି ଜଣାଇଲେ । କିନ୍ତୁ ଯାତ୍ରା ପୂର୍ବରୁ ଶ୍ରୀମା'ଙ୍କର ଅନୁମତି ନେବା ପାଇଁ ଉଦ୍‌ବୋଧନକୁ ଯିବାରୁ ମା' ଅନୁମତି ଦେଲେ ନାହିଁ; କାରଣ ତାଙ୍କ ଦେହ ସୁସ୍ଥ ନ ଥିଲା । ପ୍ରେମାନନ୍ଦଜୀ ମା'ଙ୍କ ନିର୍ଦ୍ଦେଶକୁ ଅବନତ ମସ୍ତକରେ ମାନିନେଲେ । କିନ୍ତୁ ଭକ୍ତ ପ୍ରମାଦ ଗଣିଲେ; କାରଣ ଉତ୍ସବ ପାଇଁ ସବୁ ବ୍ୟବସ୍ଥା ହୋଇ ରହିଛି । ସୁତରାଂ ମା'ଙ୍କ ନିକଟରେ ଉପସ୍ଥିତ ହୋଇ ସବୁ ବିଷୟ ବୁଝାଇ କହିଲେ । ମା' ସେତେବେଳେ ପ୍ରେମାନନ୍ଦଜୀଙ୍କୁ ଡାକି କହିଲେ, ''ବାବୁରାମ, ଏମାନେ ଏତେକରି କହୁଛନ୍ତି; ତା'ହେଲେ ତୁମେ କଅଣ ଯିବ ?'' ମାତୃଭକ୍ତ ଉତ୍ତର ଦେଲେ, ''ମୁଁ କଅଣ ଜାଣେ ମା' ? ଯାହା ଅଦେଶ କରିବେ ତାହା ହେବ ।'' ଶେଷରେ ମା' କହିଲେ, ''ତା' ହେଲେ ଯାଅ, କିନ୍ତୁ ବେଶୀ ଦିନ ଯେପରି ନ ରୁହ ।'' ପୁନର୍ବାର ଯିବା ସ୍ଥିର ହେଲା ।

ସ୍ୱାମୀ ଶିବାନନ୍ଦ ବେଲୁଡ଼ ମଠର ତତ୍ତ୍ୱାବଧାରକ । ଦିନେ ବ୍ରହ୍ମଚାରୀ ଅକ୍ଷୟଚୈତନ୍ୟ ଏକ ଅନ୍ୟାୟ କର୍ମ କରିବାରୁ ସମବୟସୀମାନେ ତାଙ୍କୁ ଭୟ ଦେଖାଇଲେ ଯେ, ଶିବାନନ୍ଦଜୀ ତାଙ୍କୁ ମଠରୁ ବାହାର କରିଦେବେ । ଭୀତ ବ୍ରହ୍ମଚାରୀ କାହାକୁ କିଛି ନ କହି ଏକ ବସ୍ତ୍ରରେ ଚାଲି ଚାଲି ଜୟରାମବାଟୀରେ ଯାଇ ପହଞ୍ଚିଲେ । ତାଙ୍କର ଜୀର୍ଣ୍ଣ ବସ୍ତ୍ର ଓ ରୁକ୍ଷ ଚେହେରା ଦେଖି ଶ୍ରୀମା' ଆସିବାର ଅଭିପ୍ରାୟ ପଚାରିଲେ ଏବଂ ତାଙ୍କୁ ଦୁଇଖଣ୍ଡ ନୂଆ ବସ୍ତ୍ର ଓ ଖଣ୍ଡିଏ ଚଦର ଦେଇ ଶିବାନନ୍ଦଜୀଙ୍କୁ ଗୋଟିଏ ପତ୍ର ଲେଖିଲେ—''ବାବାଜୀବନ ତାରକ, ଛୋଟ ନଗେନ୍ (ଅକ୍ଷୟଚୈତନ୍ୟ) ସେଠାରେ କଅଣ ଅପରାଧ କରିଛି—ତୁମେ ତାକୁ ମଠରୁ ବାହାର କରିଦେବ ଭାବି ସମସ୍ତ ରାସ୍ତା ଚାଲି ଚାଲି ମୋ ପାଖକୁ ଆସିଛି । ମା'ର ଦୃଷ୍ଟିରେ ସନ୍ତାନ କଅଣ ବା ଅପରାଧ କରିପାରେ ? ତୁମେ ତାକୁ କିଛି

କହିବ ନାହିଁ ।'' ଉତ୍ତର ନ ଆସିବା ଯାଏ ସେ ବ୍ରହ୍ମଚାରୀଙ୍କୁ ନିଜ ପାଖରେ ରଖିଲେ । ଫେରନ୍ତ ଡାକରେ ଉତ୍ତର ଆସିଲା, ''ଛୋଟ ନଗେନ୍ ଆପଣଙ୍କ ନିକଟକୁ ଯାଇଛି ଶୁଣି ନିଶ୍ଚିନ୍ତ ହେଲି । ଆମେ ଖୋଜାଖୋଜି କରିଥିଲୁ— କୁଆଡ଼େ ଗଲା ? ତାହାକୁ ପଠାଇ ଦିଅନ୍ତୁ । ଏଠାରେ ପୂଜା ପାଇଁ ଲୋକ ଅଭାବ । ମୁଁ ତାକୁ କିଛି କହିବି ନାହିଁ ।'' ମା' ଜଣେ ଭକ୍ତଙ୍କୁ କହି ବ୍ରହ୍ମଚାରୀଙ୍କ ପାଇଁ ପଞ୍ଜାବୀ ଓ ବାଟଖର୍ଚ୍ଚ ଦେଇ ବେଲୁଡ଼ମଠକୁ ପଠାଇ ଦେଲେ । ବ୍ରହ୍ମଚାରୀ ମଠରେ ପହଞ୍ଚିବାରୁ ଶିବାନନ୍ଦଜୀ ତାକୁ ଆଲିଙ୍ଗନ କରି କହିଲେ, ''ହଇରେ, ତୁ ମୋ ନାମରେ ହାଇକୋର୍ଟରେ ନାଲିସ୍ କରିବାକୁ ଯାଇଥିଲୁ ?''

ଶ୍ରୀମା' ଯେତେବେଳେ କାଶୀରେ ଥିଲେ (୧୯୧୨ ଖ୍ରୀ:) ଜଣେ ସ୍ତ୍ରୀଲୋକ ତାଙ୍କୁ ନିଜର ଦୁଃଖଦାରିଦ୍ର୍ୟ ବିଷୟ କହି ଅନୁରୋଧ କଲେ ଯେ, ସେ ଯେପରି ସେବାଶ୍ରମର ଅଧ୍ୟକ୍ଷଙ୍କୁ କହି ତାଙ୍କ ପାଇଁ ସାହାଯ୍ୟର ବ୍ୟବସ୍ଥା କରନ୍ତି । ମା' ଉତ୍ତର ଦେଲେ, ''ମୁ କହିବି, କିନ୍ତୁ ସେମାନେ ତ ମା' ଭିକ୍ଷା କରି ଆଣନ୍ତି । କେତେ ଲୋକଙ୍କୁ ଯେ ସାହାଯ୍ୟ ଦେଉଛନ୍ତି ତାହାର କଅଣ ହିସାବ ଅଛି ? ସେମାନେ ଯାହା ଉଚିତ ମନେ କରିବେ ତାହା ଦେବେ ।''

ଶ୍ରୀମା' ଯେପରି ଅନ୍ୟର ସ୍ୱାଧୀନତାକୁ ମର୍ଯ୍ୟାଦା ଦେଉଥିଲେ, ସେପରି ପ୍ରୟୋଜନ ହେଲେ ଶାସନ ମଧ୍ୟ କରୁଥିଲେ । ଥରେ ଉଦ୍‌ବୋଧନରେ ରାନ୍ଧୁଣିଆ ବ୍ରାହ୍ମଣକୁ ବାହାର କରିଦେବାର କଥା ହେଲା । କିନ୍ତୁ ଶ୍ରୀମା'ଙ୍କର ଅସୁବିଧା ହେବ ଭାବି କାର୍ଯ୍ୟ-ପରିଚାଳକ ତାହା କଲେ ନାହିଁ । ଶ୍ରୀମା' ଏ କଥା ଜାଣିପାରି କହିଲେ, ''ତୁମେମାନେ ତ ସନ୍ନ୍ୟାସୀ ! ତୁମର ଲକ୍ଷ ତ୍ୟାଗ, ଜଣେ ଚାକରକୁ ତୁମେ ତ୍ୟାଗ କରିପାରିବ ନାହିଁ ?'' ପୁଣି ବେଲୁଡ଼ ମଠରେ ଜଣେ କର୍ମଚାରୀ ଅବାଧ୍ୟ ହେବାରୁ ଜଣେ ସାଧୁ ତାକୁ ଗୋଟିଏ ଚାପୁଡ଼ା ମାରିଛନ୍ତି ଶୁଣି ଶ୍ରୀମା' କହିଲେ, ''ସେମାନେ ତ ସନ୍ନ୍ୟାସୀ, ଗଛତଳେ ରହିବେ; ସେମାନଙ୍କର ପୁଣି ମଠ, କୋଠାବାଡ଼ି, ଚାକର— ପୁଣି ସେ ଚାକରକୁ ମାରିବା !''

ପ୍ରୟୋଜନ ସ୍ଥଳରେ କଠୋର ହେଲେ ମଧ୍ୟ ସ୍ନେହ ହିଁ ତାଙ୍କ ଚରିତ୍ରର ବିଶେଷତ୍ୱ ଥିଲା । ସେଥିରେ ଯାହାର ଯେତେ ଆପତ୍ତି ଥାଉନା କାହିଁକି ! ଜଣେ ବ୍ରହ୍ମଚାରୀ ବେଲୁଡ଼ରୁ କଲିକତା ବଡ଼ବଜାରକୁ ସଉଦା କରିବାକୁ ଯାଉଥିଲେ ଏବଂ ଫେରିବା ସମୟରେ ଡଙ୍ଗା ନ ପାଇଲେ ଉଦ୍‌ବୋଧନରେ ରହୁଥିଲେ ଓ ମଧ୍ୟାହ୍ନରେ ପ୍ରସାଦ ପାଉଥିଲେ । ଯିବା ଆସିବାର ଅସୁବିଧା ଓ ଅନିଶ୍ଚିତତା ହେତୁ ପୂର୍ବରୁ ସମ୍ବାଦ ନ ଦେଇ ମଧ୍ୟ ସେ ଉଦ୍‌ବୋଧନରେ ଉପସ୍ଥିତ ହେଉଥିଲେ । ଏପରି ବାରମ୍ବାର ହେବାରୁ ଗୋଲାପ-ମା' ବିରକ୍ତ ହେଲେ । ଦିନେ ଉଚ୍ଚସ୍ୱରରେ ସେ ବ୍ରହ୍ମଚାରୀଙ୍କୁ ତିରସ୍କାର କରୁଥିଲେ । ଏପରି ସମୟରେ ଶ୍ରୀମା' ଘରୁ ବାହାରି ଆସି ଗୋଲାପ-ମା'ଙ୍କୁ କହିଲେ, ''ଏବେ ଠାକୁରଙ୍କ ସଂସାର ଦିନକୁ ଦିନ ବଢୁଛି,

ଏପରି ଜଣେ ଦୁଇଜଣ ତ ଆସିବେ ।'' ଗୋଲାପ-ମା' ତଥାପି କହିଲେ, ''ସେ ତ ସଦାସର୍ବଦା ଆସୁଛି । ଦିନେ ହେଲେ ପୂର୍ବରୁ ସମ୍ବାଦ ଦିଏ ନାହିଁ ।'' ଶ୍ରୀମା' ସେ କଥାର ଉତ୍ତର ନ ଦେଇ କହିଲେ, ''ଯାହା ହେଉ ପଛେ, ବର୍ତ୍ତମାନ ତୁମେ ତାକୁ ଶୀଘ୍ର ଖାଇବାକୁ ଦିଅ —ଅନେକ ବେଳ ହେଲାଣି; ପୁଅ ମୋର ବୁଲି ବୁଲି ଆସିଛି ।'' ଗୋଲାପ-ମା' ବ୍ୟଙ୍ଗ କରି କହିଲେ, ''ତା' ଉପରେ ତୁମର ଏତେ ଦରଦ କାହିଁକି ? ସେ କଅଣ ତୁମର ଶ୍ୱଶୁର ?'' ମା' କହିଲେ, ''ହଁ, ତାହା ନୁହେଁ ତ କଅଣ ? ସେମାନେ ମୋର ଶ୍ୱଶୁର, ମୋର ସବୁ ।''

ଦୁର୍ଗାପୂଜାର କେତେଦିନ ପୂର୍ବେ (୧୯୧୯ ଖ୍ରୀଷ୍ଟାବ୍ଦ) ବେଲୁଡ଼ ମଠରୁ ଚାରିଜଣ ବ୍ରହ୍ମଚାରୀ ଚାଲି ଚାଲି ଜୟରାମବାଟୀରେ ଆସି ପହଞ୍ଚିଲେ । ଶ୍ରୀମା'ଙ୍କୁ ପ୍ରଣାମ କରିବାରୁ ସେ ମଠର ସମ୍ବାଦ ନେଲେ ଓ ଜାଣିପାରିଲେ ଯେ ଏମାନେ ମଠରୁ ବିନା ଅନୁମତିରେ ବାହାରି କାଶୀଧାମକୁ ଯାଉଛନ୍ତି । ସେମାନେ କହିଲେ, ''ପଅରଦିନ ଉପରଓଳି ଆମେ ମଠରୁ ବାହାରିଥିଲୁ । ଗ୍ରାଣ୍ଡ ଟ୍ରଙ୍କ୍ ରୋଡ୍ ଦେଖି ଆମ ଭିତରୁ ଜଣେ କହିଲେ, 'ଏହି ରାସ୍ତା ଧରି ଚାଲି ଚାଲି ଗଲେ କାଶୀରେ ପହଞ୍ଚି ହେବ ।' ଏହି କଥା ଶୁଣି ଆମେ ସଂକଳ୍ପ କଲୁ, 'ତେବେ ଚାଲ, ଆଉ ମଠକୁ ନ ଫେରି ଏହି ରାସ୍ତା ଧରି କାଶୀ ଅଭିମୁଖେ ଯାତ୍ରା କରିବା ।' ତେଣୁ ଆମେ ମଠକୁ ନ ଫେରି କୌଣସି ଖବର ନ ଦେଇ ଚାଲିବାକୁ ଆରମ୍ଭ କଲୁ ଏବଂ କିଛି ଦୂର ଆସି ସ୍ଥିର କଲୁ ଯେ କାଶୀ ଯିବା ପଥରେ ଜୟରାମବାଟୀକୁ ଯାଇ ଆପଣଙ୍କ ନିକଟରୁ ଗେରୁଆ ବସ୍ତ୍ର ନେଇ କାଶୀକୁ ଯିବୁ ଏବଂ ସେଠାରେ କିଛି ଦିନ ମାଧୁକରୀ ଭିକ୍ଷା ଏବଂ ତପସ୍ୟା କରିବୁ । ସେହି ଉଦ୍ଦେଶ୍ୟ ନେଇ ଆପଣଙ୍କ ପାଖକୁ ଆସିଛୁ ।'' ଶ୍ରୀମା' ସବୁ କଥା ଶୁଣି ଟିକେ ଚିନ୍ତା କରି କହିଲେ, ''ଦେଖ ବାବା, ମୋର ଇଚ୍ଛା ତୁମେମାନେ ବର୍ତ୍ତମାନ ମଠକୁ ଫେରିଯାଅ । ଆଉ କେତେଟା ଦିନ ପରେ ଦୁର୍ଗାପୂଜା । ତୁମେ ନ ଥିଲେ ମଠର କାମଦାମ ପାଇଁ ଅସୁବିଧା ହେବ ।...ତୁମେମାନେ ତାରକଙ୍କୁ (ସ୍ୱାମୀ ଶିବାନନ୍ଦଙ୍କୁ) ନ କହି ଆସିଥିବାରୁ ଭଲ କାମ କରିନାହଁ । ଏଠାରେ ବର୍ତ୍ତମାନ ମ୍ୟାଲେରିଆ ଜ୍ୱର ହେବାର ସମୟ, ଶରତକୁ (ସ୍ୱାମୀ ସାରଦାନନ୍ଦଙ୍କୁ) ମଧ୍ୟ କିଛି କହିଲ ନାହିଁ । ତାକୁ ଜଣାଇଥିଲେ ଏହି ସମୟରେ ସେ ଆସିବାକୁ ଦେଇ ନ ଥାନ୍ତା । ଯାହା ହେଉ ମୁଁ ତାରକଙ୍କୁ ଚିଠି ଲେଖି ଦେଉଛି, ସେ ତୁମମାନଙ୍କୁ କିଛି କହିବ ନାହିଁ । ...ମଠରେ ବାସ କରିବା କଅଣ କମ୍ ତପସ୍ୟା ? ଏହି ଅଳ୍ପ ଦିନ ହେଲା ମଠକୁ ଆସିଛ; କିଛି ଦିନ ମଠରେ ରହି ସେମାନଙ୍କର ସଙ୍ଗ କର, ତା'ପରେ ଧୀରେ ଧୀରେ ସବୁ ହେବ ।'' କିନ୍ତୁ ବ୍ରହ୍ମଚାରୀମାନେ ସନ୍ନ୍ୟାସ ପାଇଁ ବାରମ୍ବାର କହିବାକୁ ଲାଗିଲେ ଏବଂ କହିଲେ ଯେ, ସେମାନେ 'ମନ୍ତ୍ରର ସାଧନ କିମ୍ବା ଶରୀରପାତନ' ଏହି ଉଦ୍ଦେଶ୍ୟରେ କାଶୀରେ ଦୀର୍ଘ କାଳ ତପସ୍ୟା କରିବେ । ଶ୍ରୀମା' ସେମାନଙ୍କର

କଥା ଶୁଣି ଦୁଃଖିତ ହେଲେ । କିନ୍ତୁ ସେମାନଙ୍କର ବାରମ୍ବାର ଅନୁରୋଧ ଦେଖି ଜଣକୁ ଗୈରିକ ବସ୍ତ୍ର ଦେଲେ । ପୂର୍ବେ ସର୍ବକନିଷ୍ଠ ଭୋଳାନାଥଙ୍କୁ ପତ୍ର ଦେଇ ମା' ବେଲୁଡ଼କୁ ଯିବାକୁ କହିଥିଲେ । ସେଥିପାଇଁ ଅନ୍ତତଃପକ୍ଷେ ସେ ଯେପରି ମଠକୁ ଫେରିଯାଏ ସେଥିପାଇଁ ଶ୍ରୀମା' ଚେଷ୍ଟା କରିଥିଲେ । କିନ୍ତୁ ଦଳର ଅନୁରୋଧରେ ଭୋଳାନାଥ ମଧ୍ୟ କାଶୀକୁ ଗଲେ ।

ଶିବାନନ୍ଦଜୀ ଅନୁମାନ କଲେ ଯେ ବ୍ରହ୍ମଚାରୀମାନେ ଜୟରାମବାଟୀ ଯାଇଥିବେ । ତେଣୁ ଶ୍ରୀମା'ଙ୍କୁ ପତ୍ର ଲେଖି ସବୁ ଖବର ଜାଣିଲେ ଏବଂ କାଶୀ ଅଦ୍ୱୈତ ଆଶ୍ରମକୁ ଲେଖି ପଠାଇଲେ ଯେ ଏହି ଅବାଧ୍ୟ ସାଧୁ ବ୍ରହ୍ମଚାରୀମାନେ ଯେପରି ସେଠାରେ ସ୍ଥାନ ନ ପାଆନ୍ତି । ଅନ୍ୟମାନେ ଏହି ଆଦେଶ ମାନିନେଲେ, କିନ୍ତୁ ସର୍ବକନିଷ୍ଠ ଭୋଳାନାଥ ଶ୍ରୀମା'ଙ୍କର ଶରଣାପନ୍ନ ହୋଇ ଅଦ୍ୱୈତ ଆଶ୍ରମରେ ରହିବାକୁ ଚାହିଁଲେ । ଚିଠି ପାଇ ଶ୍ରୀମା' କହିଲେ, ''ଆହା, ସେ ମଧ୍ୟ ଏମାନଙ୍କ ଦଳରେ ପଡ଼ିଯାଇଛି । ବର୍ତ୍ତମାନ କିନ୍ତୁ ବୁଝୁଛି କେତେ କଷ୍ଟ ! ଯାହା ହେଉ, ଚନ୍ଦ୍ରକୁ (ଅଦ୍ୱୈତ ଆଶ୍ରମର ଅଧ୍ୟକ୍ଷ) ଲେଖିଦିଅ ସେ ଯେପରି ତାକୁ ସେଠାରେ ରହିବାକୁ ଅନୁମତି ଦିଏ ।'' ଏଣେ ଭୋଳାନାଥଙ୍କୁ ମଧ୍ୟ ଚିଠି ଲେଖିଲେ, ''ଚନ୍ଦ୍ରଙ୍କୁ ଲେଖି ଦେଇଛି ତୁମ କଥା ଏବଂ ତୁମକୁ ଜଣାଉଛି, କାଶୀକୁ ଯେହେତୁ ଯାଇଛ, ଠାକୁରଙ୍କ ଆଶ୍ରମରେ ରହି ଆଜୀବନ ଚନ୍ଦ୍ର ଓ ଅନ୍ୟାନ୍ୟ ସାଧୁମାନଙ୍କର ସେବା ଯଦି କରିପାରିବ, ତେବେ ସବୁ ଦିଗରୁ କଲ୍ୟାଣ ହେବ ।'' ସ୍ୱାମୀ ଶିବାନନ୍ଦଙ୍କୁ ଏହି ସମ୍ବାଦ ଜଣାଇ ଦିଆହେଲା ଏବଂ ସେ ମଧ୍ୟ ଏହି ବିଧାନ ନିର୍ବିଚାରରେ ମାନିନେଲେ । ଭୋଳାନାଥ ଶ୍ରୀମା'ଙ୍କ ଆଦେଶ ଅନୁଯାୟୀ ଆଜୀବନ ଅଦ୍ୱୈତ ଆଶ୍ରମରେ ରହି ୧୯୪୮ ଖ୍ରୀଷ୍ଟାବ୍ଦ ଫେବୃଆରୀ ୪ ତାରିଖ ଦିନ ସେଠାରେ ଦେହତ୍ୟାଗ କଲେ ।

ବର୍ତ୍ତମାନ ଶ୍ରୀଶ୍ରୀଠାକୁରଙ୍କ ଜନ୍ମସ୍ଥାନର ରକ୍ଷଣାବେକ୍ଷଣ ଓ ସେଠାରେ ମନ୍ଦିର ନିର୍ମାଣ ଇତ୍ୟାଦି ବିଷୟରେ ଆଲୋଚନା କରିବା । ଶ୍ରୀମା' ଯେତେବେଳେ ଶେଷଥର ଉଦ୍‌ବୋଧନରେ ଥିଲେ, ସେତେବେଳେ ଦିନେ ରାମଲାଲ ଦାଦା ଓ ଲକ୍ଷ୍ମୀଦିଦି ଦକ୍ଷିଣେଶ୍ୱରରୁ ଶ୍ରୀମା'ଙ୍କ ସହିତ ଦେଖା କରିବା ପାଇଁ ଆସିଥିଲେ । କଥା ପ୍ରସଙ୍ଗରେ ଠାକୁରଙ୍କ ଜନ୍ମସ୍ଥାନ ଓ ମନ୍ଦିରାଦି ବିଷୟରେ କଥା ଉଠିଲା । ଲକ୍ଷ୍ମୀଦିଦି ଜାଣିବାକୁ ଚାହିଁଲେ ଯେ ସେଠାରେ ମନ୍ଦିର ହେଲେ ତାହା ସେମାନଙ୍କର ତତ୍ତ୍ୱାବଧାନରେ ରହିବ କି ନାହିଁ ? ଶ୍ରୀମା' କହିଲେ, ''ତାହା କିପରି ହେବ ? ଏମାନେ ସବୁ ସାଧୁ, ଏମାନଙ୍କର କଅଣ ଜାତି ବିଚାର ଅଛି ? କେତେ ଦେଶର ଲୋକ, ସାହେବ ଇତ୍ୟାଦି ସେଠାକୁ ଯିବେ ଓ ପ୍ରସାଦ ପାଇବେ; କିନ୍ତୁ ତୁମମାନଙ୍କର ତ ସମାଜ ଅଛି, ତୁମେମାନେ କ'ଣ ସେମାନଙ୍କ ସହିତ ରହିପାରିବ ?'' ଶ୍ରୀମା' ଏହା ମଧ୍ୟ କହିଲେ ଯେ ବେଲୁଡ଼ମଠରେ ସାଧୁମାନେ ଠାକୁରଙ୍କ ଜନ୍ମସ୍ଥାନ ଓ ଭାବୀ

ମନ୍ଦିରର ତତ୍ତ୍ୱାବଧାନ କରିବେ ଏବଂ ରାମଲାଲ ଦାଦା ପ୍ରଭୃତିଙ୍କ ପାଇଁ ଭିନ୍ନ ଘର ତିଆରି କରିଦେବେ । ରଘୁବୀର ଓ ଶୀତଳାଙ୍କ ମନ୍ଦିର ମଠ ତରଫରୁ ପକ୍‌କା କରାହେବ ଓ ଏହି ଗୃହଦେବତାଙ୍କର ପୂଜା ଅର୍ଚ୍ଚନାର ଭାର ରାମଲାଲ ଦାଦାଙ୍କ ଉପରେ ନ୍ୟସ୍ତ କରାଯିବ । ଲକ୍ଷ୍ମୀଦିଦି ଇତ୍ୟାଦି ଯେବେ କାମାରପୁକୁର ଯିବେ, ସେତେବେଳେ ସାଧୁମାନଙ୍କ ସହିତ ରହିବେ ଓ ମନ୍ଦିରରୁ ପ୍ରସାଦ ପାଇବେ । ଶ୍ରୀମା'ଙ୍କ ଏହି ପ୍ରସ୍ତାବଗୁଡ଼ିକ ସମସ୍ତେ ସର୍ବାନ୍ତକରଣରେ ମାନିନେଲେ । ସ୍ୱାମୀ ସାରଦାନନ୍ଦଜୀ ମଧ୍ୟ ଏହା ଶୁଣି ଖୁବ୍ ଆନନ୍ଦିତ ହେଲେ ।

ଏହି ବ୍ୟବସ୍ଥା ଅନୁଯାୟୀ ଶ୍ରୀଶ୍ରୀଠାକୁରଙ୍କ ଜନ୍ମସ୍ଥାନ ୨୭ ଜୁଲାଇ ୧୯୧୮ ଖ୍ରୀ:ରେ ବେଲୁଡ଼ମଠର ଟ୍ରଷ୍ଟିମାନଙ୍କ ହାତରେ ଅର୍ପିତ ହେଲା ଏବଂ ଦଲିଲପତ୍ରରେ ଶ୍ରୀମା' ଓ ଅନ୍ୟମାନଙ୍କର ସ୍ୱାକ୍ଷର ରହିଲା । ପରେ ୧୯୪୬ ଖ୍ରୀଷ୍ଟାବ୍ଦ ୧୬ ଜୁଲାଇରେ ଶ୍ରୀଶ୍ରୀଠାକୁରଙ୍କ ଗୃହ ଓ କିଛି ଜମି ଏହି ଜମି ସହିତ ଯୁକ୍ତ ହେଲା ଏବଂ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ୧୯୫୧ ଖ୍ରୀ: ମେ ମାସ ୧୧ତାରିଖ ଦିନ ଶ୍ରୀଶ୍ରୀଠାକୁରଙ୍କର ପ୍ରସ୍ତର ନିର୍ମିତ ମନ୍ଦିରର ଯଥାବିଧି ପ୍ରତିଷ୍ଠା ହେଲା ।

## ଭକ୍ତଜନନୀ

ଶ୍ରୀମା'ଙ୍କୁ ଦିନେ ଅଇଁଠା ପରିଷ୍କାର କରୁଥିବାର ଦେଖି ନଳିନୀଦେବୀ କହିଲେ, ''ମା' ଛତିଶ ଜାତିର ଅଇଁଠା ଉଠାଉଛନ୍ତି !'' ମା' ତାହା ଶୁଣି କହିଲେ, ''ସବୁ ଯେ ମୋର, ଛତିଶ କେଉଁଠି ?'' ଯେ ସମସ୍ତଙ୍କୁ ନିଜର ସନ୍ତାନ ରୂପେ ଦେଖନ୍ତି, ତାଙ୍କ ନିକଟରେ ଜାଗତିକ ଭେଦ ସ୍ଥାନ ପାଇବ କିପରି ? ସେହି ସ୍ନେହର ପ୍ଲାବନରେ ଉଚ୍ଚନୀଚ ସବୁ ବୁଡ଼ିଯାଇ ଏକାକାର ହୋଇଯାଇଥିଲା ।

ଏହି ଅଇଁଠା ପରିଷ୍କାର କରିବା ଶ୍ରୀମା'ଙ୍କର ନିତ୍ୟକର୍ମ ଥିଲା କହିଲେ ଚଳେ । ଭକ୍ତମାନଙ୍କୁ ସେ ତାହା କରିବାକୁ ଦେଉ ନ ଥିଲେ; କହୁଥିଲେ, ''ସେସବୁ କରିବା ପାଇଁ ଲୋକ ଅଛି ।'' ପରେ ନିଜେ ଏହିସବୁ କାମ କରୁଥିଲେ । ଜୟରାମବାଟୀରେ ଦିନେ ଆହାର କରିବାପରେ ସ୍ୱାମୀ ବିଶ୍ୱେଶ୍ୱରାନନ୍ଦ ଅଇଁଠା ଉଠାଉଥିବାର ଦେଖି ଶ୍ରୀମା' ତାଙ୍କ ହାତ ଧରି ବାଧା ଦେଲେ ଏବଂ ଥାଳିଟି ନିଜେ ନେଇଗଲେ । ସାଧୁ କହିଲେ, ''ଆପଣ କାହିଁକି ? ମୁଁ ନିଜେ ନେଉଛି ।'' ଶ୍ରୀମା' କହିଲେ, ''ମୁଁ ତୁମ ପାଇଁ ଆଉ କଅଣ କରିଛି ? ମାଆ କୋଳରେ ପୁଅ ମଳ ତ୍ୟାଗ ଠାରୁ ଆରମ୍ଭକରି କେତେ ବା କଅଣ ନ କରେ ? ତୁମେମାନେ ସବୁ ଦେବତାଙ୍କ ଦୁର୍ଲଭ ଧନ ।'' ଶ୍ରୀମା'ଙ୍କ ସହିତ ଅନ୍ୟ ଯେଉଁ ସବୁ ସ୍ତ୍ରୀଲୋକମାନେ ଥିଲେ, ସେମାନେ ନିଜେ ତ ଏହି କାମ କରୁ ନ ଥିଲେ, ଉପରନ୍ତୁ ଅଭିଯୋଗ କରି ମା'ଙ୍କୁ କହୁଥିଲେ, ''ତୁମେ ବ୍ରାହ୍ମଣ-କନ୍ୟା; ପୁଣି ଗୁରୁ—ଏମାନେ ତୁମର ଶିଷ୍ୟ । ତୁମେ ଏମାନଙ୍କର ଅଇଁଠା ଉଠାଅ କାହିଁକି ? ଏପରି କଲେ ଏମାନଙ୍କର

ଅମଙ୍ଗଳ ହେବ ।'' ମା' ସହଜଭାବରେ ଉତ୍ତର ଦେଲେ, ''ମୁଁ ଯେ ମା' ! ମା' ସନ୍ତାନ ପାଇଁ କରିବ ନାହିଁ ତ କିଏ କରିବ ?''

ଜଣେ ଭକ୍ତ ଜାତିରେ ଥିଲା ନିମ୍ନ ଶ୍ରେଣୀର । ତେଣୁ ଚଲାବୁଲାରେ ଭାରୀ ସଙ୍କୋଚ କରୁଥିଲା । ଶ୍ରୀମା' ଦିନେ ତାକୁ କହିଲେ, ''ତୁମେ ନୀଚ ଜାତି ବୋଲି ସଙ୍କୋଚ କରୁଛ ? ସେଥିରେ କଅଣ ଅଛି ବାବା ? ତୁମେ ଯେ ଠାକୁରଙ୍କ ନିଜ ଲୋକ—ଘରର ପିଲା ଘରକୁ ଆସିଛ ।'' ଶ୍ରୀମା' ତାଙ୍କୁ ବୁଝାଇ କହିଲେ ଯେ, ଦୀକ୍ଷା ଦେବା ସମୟରେ ସେ ଜାତିକଥା ପଚାରି ନ ଥିଲେ, ତେଣୁ ଏଥିରୁ ବୁଝିବା ଉଚିତ ଯେ ସେ ମା'ଙ୍କ ଘରର ଲୋକ ।

ଦୁର୍ଗାପୂଜା ମହାଷ୍ଟମୀ ଦିନ ଭକ୍ତମାନେ ଶ୍ରୀମା'ଙ୍କ ଚରଣରେ ପୁଷ୍ପାଞ୍ଜଳି ଦେଉଥିଲେ । ମା' ଲକ୍ଷ୍ୟକଲେ ଯେ ଜଣେ ବ୍ୟକ୍ତି ବାହାରେ ଛିଡ଼ା ହୋଇଛି । ସେ ଜାତିରେ ନୀଚ ବୋଲି ଭିତରକୁ ଆସିବାକୁ ସଙ୍କୋଚ କରୁଛି । ଶ୍ରୀମା' ସବୁକଥା ବୁଝି ତାକୁ ଭିତରକୁ ଆସିବାକୁ କହିଲେ ଏବଂ ସେ ଚରଣପୂଜା କରି ଖୁସି ମନରେ ଚାଲିଗଲା ।

ଭକ୍ତ ମା'ଙ୍କ ପାଖକୁ ଆସିଲେ ମୁହୂର୍ତ୍ତକ ଭିତରେ ତାହାର ସବୁ ସଙ୍କୋଚ ଦୂର କରି ତାକୁ ଆପଣାର କରି ନେଉଥିଲେ—ଏପରି ଥିଲା ତାଙ୍କ ମାତୃତ୍ୱର ଅଦ୍ଭୁତ ପ୍ରଭାବ । ରାସବିହାରୀ ମହାରାଜ ଅଳ୍ପ ବୟସରେ ମାତୃହରା ହୋଇଥିଲେ । ତେଣୁ ମା' କହିବାକୁ ସଙ୍କୋଚ ବୋଧ କରୁଥିଲେ । ଦିନେ ଶ୍ରୀମା' ତାଙ୍କ ଦ୍ୱାରା ଏକ ସମ୍ବାଦ ପଠାଇବା ସମୟରେ ପଚାରିଲେ, ''କଅଣ କହିବ କହିଲ ?'' ରାସବିହାରୀ ମହାରାଜ କହିଲେ, ''ସେ (ମା') ଆପଣଙ୍କୁ ଏଇ ଏଇ କଥା କହିବାକୁ କହିଲେ ।'' ମା' ସଂଶୋଧନ କରି କହିଲେ, ''କହିବ, ମା' କହିଲେ—'' 'ମା' କଥାଟି ଜୋର୍ ଦେଇ କହିଲେ ।

ମା' ସେତେବେଳେ କୋଆଲପଡ଼ାରେ ଅସୁସ୍ଥ ହୋଇ ରହିଥିଲେ । ଜୟରାମବାଟୀରେ ରହୁଥିବା ଜଣେ ବ୍ରହ୍ମଚାରୀ ଆହାରାଦି ବିଷୟରେ ଭାରୀ ଉଦାସୀନ ବୋଲି ମା' ଜାଣିଥିଲେ । ଦିନେ ତାଙ୍କୁ କୋଆଲପଡ଼ାକୁ ଡାକି ଭଲକରି ଖାଇବା ପିଇବା କରିବାକୁ କହିଲେ । ବ୍ରହ୍ମଚାରୀ ଅଳ୍ପ ବୟସ୍କ ହେଲେ ମଧ୍ୟ ଶ୍ରୀମା'ଙ୍କ ସହିତ ମିଶିବାରେ ସଙ୍କୋଚବୋଧ କରୁଥିଲେ ଏବଂ ସେ ନିଜେ ଅସୁସ୍ଥ ଥିବାରୁ ମନରେ ଭୟ ମଧ୍ୟ ଥିଲା ଯେ ଏହି ଅସୁସ୍ଥତା ଶ୍ରୀମା'ଙ୍କ ଦେହରେ ଯେପରି ସଂକ୍ରମିତ ନ ହୁଏ । ତେଣୁ ସେ ଟିକିଏ ଦୂରରେ ଛିଡ଼ା ହୋଇ ମା'ଙ୍କ ସହିତ କଥା କହୁଥିଲେ । କିନ୍ତୁ ମା' ତାଙ୍କୁ ପାଖକୁ ଆସିବାକୁ କହିଲେ । ପାଖକୁ ଆସି ମଧ୍ୟ ସେ ଟିକିଏ ଦୂରେଇ ରହିଛନ୍ତି ଦେଖି କହିଲେ, ''ଆରେ । ମୋ ଦେହରେ ହାତ ଦେଇ ଦେଖ କିପରି ଅଛି ?'' ବ୍ରହ୍ମଚାରୀ ପାଖରେ ବସି ମା'ଙ୍କ ସେବା କରିବାକୁ ଲାଗିଲେ । ଶ୍ରୀମା' ମଧ୍ୟ ସ୍ନେହ ସହକାରେ ନାନା କଥା କହିବାକୁ ଲାଗିଲେ ।

ଜୟରାମବାଟୀରୁ ସେଠାକୁ ପ୍ରତିଦିନ ଦୁଧ ଆସୁଥିଲା । ମା' କହିଲେ, ''ଏଠାକୁ ବହୁତ ଦୁଧ ଆସେ । ଦୁଧ ଆଉ ପଠାଇବାର ପ୍ରୟୋଜନ ନାହିଁ । ତୁମେମାନେ ଭଲଭାବରେ ଖିଆପିଆ କର ।''

ଆଗତ ଭକ୍ତମାନଙ୍କ ସହିତ ଶ୍ରୀମା'ଙ୍କର ସମ୍ବନ୍ଧ ଏକ ଦୈବ ପ୍ରେରଣାଦ୍ୱାରା ନିୟନ୍ତ୍ରିତ ହେଉଥିଲା ଏବଂ ତାହାର ପ୍ରକାଶ ମଧ୍ୟ ଥିଲା ଅପୂର୍ବ । ସେଥିରେ ସଂସାରୀସୁଲଭ ଆତ୍ମୀୟତା ଓ ଆନ୍ତରିକତା ଥିଲା, ମାତ୍ର ମାୟିକ ବନ୍ଧନ ଓ ଆକର୍ଷଣ ନ ଥିଲା । ସେଥିରେ ଯେପରି ଅଶ୍ରୁ ଓ ଆନନ୍ଦର ତରଙ୍ଗ ଥିଲା, ସେପରି ଥିଲା ବିକ୍ଷେପହୀନ ପ୍ରଶାନ୍ତି । ଦ୍ୱାରକାନାଥ ମଜୁମ୍‌ଦାର ମହାଶୟ ଜୟରାମବାଟୀରେ ଦୀକ୍ଷା ନେଇ କୋଆଲପଡ଼ାରେ ରହୁଥିଲେ । ସେଠାରେ କଠିନ ଆମାଶୟ ରୋଗରେ ଆକ୍ରାନ୍ତ ହୋଇ ଶ୍ରୀଶ୍ରୀଠାକୁରଙ୍କ ନାମ ଉଚ୍ଚାରଣ କରି କରି ଦେହତ୍ୟାଗ କଲେ । କେତେଦିନ ପରେ ଶ୍ରୀମା' ଏ ସମ୍ବାଦ ପାଇ ପୁତ୍ର ଶୋକାତୁରା ମାତାଙ୍କ ପରି ଅବିରତ ଅଶ୍ରୁ ବର୍ଷଣ କରି କହିଲେ, ''ମୋର ଗୋଟିଏ ସୁନା ପୁଅ ଚାଲିଗଲା । ଆହା, ପୁଅର ମୋର ଶେଷ ଜନ୍ମ !'' ସନ୍ନ୍ୟାସୀମାନଙ୍କୁ ସେ ନାମ ଧରି ଡାକୁ ନ ଥିଲେ; କାରଣ ପଚାରିବାରୁ କହିଲେ, ''ମୁଁ ଯେ ମା' ! ସନ୍ନ୍ୟାସ ନାମ ଧରି ଡାକିଲେ କଷ୍ଟ ହୁଏ ।'' ତାଙ୍କର ଏପରି ସାଧାରଣ ବ୍ୟବହାର ଦେଖି ସ୍ୱାମୀ ବିଶ୍ୱେଶ୍ୱରାନନ୍ଦ ଦିନେ ପଚାରିଲେ, ''ଆପଣ ଆମମାନଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି ?'' ମା' ଉତ୍ତର ଦେଲେ, ''ନାରାୟଣ ଭାବରେ ଦେଖେ ।'' ପୁଣି ପ୍ରଶ୍ନ ହେଲା, ''ଆମେ ଆପଣଙ୍କର ସନ୍ତାନ; ନାରାୟଣ ଭାବରେ ଦେଖିଲେ ତ ସନ୍ତାନ ଭାବରେ ଦେଖିବା ସମ୍ଭବ ନୁହେଁ !'' ଉତ୍ତରରେ ମା' କହିଲେ, ''ନାରାୟଣ ଭାବରେ ଦେଖେ ପୁଣି ସନ୍ତାନ ଭାବରେ ବି ଦେଖେ ।'' ଜଣେ ଭକ୍ତ ଦିନେ ପ୍ରଶ୍ନ କଲେ, ''ମୁଁ ଜାଣିବାକୁ ଚାହେଁ, ତୁମକୁ ଯେ ମୁଁ ମା' ବୋଲି ଡାକେ—ତୁମେ କଅଣ ମୋର ଆପଣାର ମା' ?'' ମା' ଉତ୍ତର ଦେଲେ, ''ଆପଣା ମା' ନୁହେଁ ତ ଆଉ କ'ଣ ? ଆପଣାର ମା' ।'' ଭକ୍ତ ପୁର୍ନବାର ପ୍ରଶ୍ନ କଲେ, ''ତୁମେ ତ କହିଲ, ମୁଁ କିନ୍ତୁ ଭଲ ଭାବରେ ବୁଝିପାରୁନାହିଁ । ଗର୍ଭଧାରିଣୀ ମା'ଙ୍କୁ ଯେପରି ମା' ବୋଲି ଜାଣେ, ସେପରି ତ ତୁମକୁ ମନେ ହେଉନାହିଁ ।'' ମା' ଆକ୍ଷେପ କରି କହିଲେ, ''ଆହା, ତାହା ସତ !'' ପରମୁହୂର୍ତ୍ତରେ କହିଲେ, ''ସେ ନିଜେ ବାପା ମା' ହୋଇଛନ୍ତି ।'' ଭକ୍ତ ଏହି କଥାର ତାତ୍ପର୍ଯ୍ୟ ନ ବୁଝିବା ଦୁର୍ଭାଗ୍ୟର ବିଷୟ ହେଲେ ମଧ୍ୟ ଶ୍ରୀମା'ଙ୍କ ନିକଟରେ ବିଶ୍ୱମାତୃତ୍ୱ ଦିବାଲୋକପରି ପ୍ରତ୍ୟକ୍ଷ ବିଷୟ ଥିଲା । 'ୟା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା'—ଏହି ଶାଶ୍ୱତ ମାତୃତ୍ୱର ଆଂଶିକ ସ୍ଫୁରଣ ଲୌକିକ ମାତାଙ୍କ ଭିତରେ ପାଇ ସନ୍ତାନମାନେ ତୁଷ୍ଟ ହୁଅନ୍ତି । ଶ୍ରୀମା'ଙ୍କର ଏହି ମାତୃତ୍ୱ ପ୍ରତ୍ୟେକ କଥା ଓ କାର୍ଯ୍ୟରେ ଏପରିଭାବରେ ବିକଶିତ ହେଉଥିଲା ଯେ, ତାହାର ସ୍ନେହସ୍ପର୍ଶରେ ପାଷାଣ ମଧ୍ୟ ବିଗଳିତ ହେବ ।

ରାଧୁ ଗୋଟିଏ ବିଲେଇ ପୋଷିଥିଲା; ତାହା ପାଇଁ ମା' ପ୍ରତ୍ୟେକ ଦିନ କିଛି ଦୁଧର ବନ୍ଦୋବସ୍ତ କରିଥିଲେ । ସେ ନିର୍ଭୟରେ ମା'ଙ୍କ ପାଦତଳେ ଶୋଇ ରହୁଥିଲା । ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ମା' କେବେ କେବେ ବାଡ଼ି ନେଇ ଭୟ ଦେଖାଇଲେ ମଧ୍ୟ ବିଲେଇଟି ତାଙ୍କରି ପାଦ ତଳେ ଆଶ୍ରୟ ନେଉଥିଲା । ତାହା ଦେଖି ମା' ବାଡ଼ି ଫୋପାଡ଼ି ଦେଉଥିଲେ ଏବଂ ଅନ୍ୟମାନେ ମଧ୍ୟ ହାସ୍ୟ ସମ୍ବରଣ କରିପାରୁ ନ ଥିଲେ । ବିଲେଇର ସ୍ୱଭାବ ଚୋରୀ କରି ଖାଇବା । ସେଥିରେ ମା' ବିରକ୍ତ ହେଉ ନ ଥିଲେ, କହୁଥିଲେ, ''ଚୋରୀ କରିବା ତ ସେମାନଙ୍କର ଧର୍ମ; କିଏ ସେମାନଙ୍କୁ ଆଦର କରି ଖାଇବାକୁ ଦେବ ?'' କିନ୍ତୁ ଜ୍ଞାନ ମହାରାଜ ଏହି ବିଲେଇ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ସେ ଦିନେ ତାକୁ ଦୂରକୁ ଫୋପାଡ଼ି ଦେବାର ଦେଖି ଶ୍ରୀମା'ଙ୍କ ମୁହଁ କଷ୍ଟରେ କଳା ପଡ଼ିଗଲା । ସୁଯୋଗ ପାଇଲେ ସେ ବିଲେଇକୁ ମାରଧର ମଧ୍ୟ କରୁଥିଲେ । ଜ୍ଞାନ ମହାରାଜଙ୍କ ଅଯତ୍ନ ସତ୍ତ୍ୱେ ଶ୍ରୀମା'ଙ୍କ ସ୍ନେହଯତ୍ନରୁ ବିଲେଇଟି ବେଶ୍ ଭଲରେ ଥାଏ । ଶ୍ରୀମା'ଙ୍କର କଲିକତା ଯିବା ସ୍ଥିର ହେବାରୁ ଜ୍ଞାନ ମହାରାଜଙ୍କୁ ଡାକି ମା' କହିଲେ, ''ଜ୍ଞାନ, ବିଲେଇ ଓ ତାହାର ଛୁଆମାନଙ୍କ ପାଇଁ ଅଧିକା ଚାଉଳ ନେବୁ; ଯେପରି ସେମାନେ ଅନ୍ୟ ଘରେ ନ ପଶନ୍ତି—ସେମାନେ ଗାଳି ଦେବେ ।'' ଏହା ଲୌକିକ ଯୁକ୍ତି; କିନ୍ତୁ ଶ୍ରୀମା' ଜାଣିଥିଲେ କେବଳ ଏତିକି କଥାରେ ବିଲେଇର ଦୁର୍ଭାଗ୍ୟ ଘୁଞ୍ଚିବ ନାହିଁ । ତେଣୁ ସେ ପୁନର୍ବାର କହିଲେ, ''ଦେଖ ଜ୍ଞାନ, ବିଲେଇଗୁଡ଼ିକୁ ମାରିବ ନାହିଁ । ସେମାନଙ୍କ ଭିତରେ ମଧ୍ୟ ମୁଁ ଅଛି ।'' ଏହି କଥା ଶୁଣିବା ପରଠାରୁ ଜ୍ଞାନ ମହାରାଜଙ୍କର ହାତ ଆଉ ବିଲେଇ ଉପରକୁ ଉଠିଲା ନାହିଁ । ସେ ନିଜେ ନିରାମିଷ ଖାଇଲେ ମଧ୍ୟ ସେହି ଦିନଠାରୁ ପ୍ରତିଦିନ ବୂନାମାଛ ଭାଜି ଭାତ ସହିତ ତାହା ମିଶାଇ ସେମାନଙ୍କୁ ଦେଉଥିଲେ ।

ସେ ଯେ କେବଳ ଭକ୍ତମାନଙ୍କର ମା' ତାହା ନୁହେଁ, ତାଙ୍କର ବିଶ୍ୱବ୍ୟାପୀ ମାତୃତ୍ୱରୁ କେହି ବାଦ ପଡ଼ି ନ ଥିଲେ । ରାସବିହାରୀ ମହାରାଜ ଶ୍ରୀମା'ଙ୍କୁ ପଚାରିଥିଲେ, ''ତୁମେ କଅଣ ସମସ୍ତଙ୍କର ମା' ? ମା' ଉତ୍ତର ଦେଲେ, ''ହଁ ?'' ପୁଣି ପ୍ରଶ୍ନ ହେଲା, ''କଅଣ ଏହିସବୁ ଇତର ଜୀବଜନ୍ତୁଙ୍କର ମଧ୍ୟ ?'' ମା' ଉତ୍ତର ଦେଲେ, ''ହଁ, ଏମାନଙ୍କର ମଧ୍ୟ ।''

ଏତେ ସନ୍ତାନ ପାଇ ମଧ୍ୟ ମା'ଙ୍କର ତୃପ୍ତି ନ ଥିଲା । ମଝିରେ ମଝିରେ ନିଜକୁ ନିଜେ କହୁଥିଲେ, ''ପିଲାମାନେ ତୁମେ ଆସ ।'' ସ୍ୱାମୀ ବିଶ୍ୱେଶ୍ୱରାନନ୍ଦ ଜୟରାମବାଟୀରେ ପହଞ୍ଚିବାରୁ ଶ୍ରୀମା' ଆଗ୍ରହ ସହକାରେ କହିଲେ, ''ଆସିଛ, ବେଶ୍ କରିଛ । ମୁଁ କେତେ ଦିନ ଧରି ତୁମକୁ ଡାକିଛି; ଅନ୍ୟକୁ ଡାକିବାକୁ ଯାଇ ତୁମ ନାମ ମୁହଁରୁ ବାହାରି ଆସିଛି ।'' ମା' ନିଜେ ମନର ଭାବ ଗୋପନ କରି

ରଖୁଥିଲେ । ତେଣୁ ସନ୍ତାନ ପାଇଁ ଏ ଉତ୍କଣ୍ଠା ପ୍ରାୟ ପ୍ରକାଶ ପାଉ ନ ଥିଲା; କିନ୍ତୁ ଯାହା ମଝିରେ ମଝିରେ ବ୍ୟକ୍ତ ହେଉଥିଲା ତାହା ଆମକୁ ଚମତ୍କୃତ କରେ ।

ଶ୍ରୀମା'ଙ୍କ ନିକଟରେ ବିଭୂତିବାବୁ ତୃପ୍ତି ସହକାରେ ଖାଉଥିବାର ଦେଖି ତାଙ୍କ ଜନନୀ କହିଲେ, ''ବିଭୂତି ଏଠାରେ ତ ବେଶ୍ ଖାଉଛି, ମୁଁ ଦେଲେ ଅଳ୍ପ ଟିକିଏ ଖାଏ ।'' ଶ୍ରୀମା' ତତ୍‌କ୍ଷଣାତ୍ କହିଲେ, ''ମୋ ପିଲାର ଖାଇବା ବିଷୟରେ ତୁମେ ଦୃଷ୍ଟି ଦିଅ ନାହିଁ । ମୁଁ ଭିକାରୀ ବ୍ରାହ୍ମଣୀ । ମୋ ପିଲାମାନଙ୍କୁ ମୁଁ ଯାହା ଖାଇବାକୁ ଦିଏ ପିଲାମାନେ ତାହା ଆନନ୍ଦରେ ଖାଆନ୍ତି ।''

କଥାବାର୍ତ୍ତା ଓ ବ୍ୟବହାରରେ ତାଙ୍କର ଏପରି ଏକ ସ୍ୱାଭାବିକତା ଥିଲା ଯେ, ସେ ଆଗନ୍ତୁକ ବ୍ୟକ୍ତିଙ୍କୁ ମୁହୂର୍ତ୍ତକ ମଧ୍ୟରେ ନିଜର କରି ନେଉଥିଲେ । ଜଣେ ସ୍ତ୍ରୀ-ଭକ୍ତ କଲିକତାରେ ମା'ଙ୍କ ଘରେ ଉପସ୍ଥିତ ହେବାରୁ ମା' କହିଲେ, ''ଭଲ ଅଛ ତ, ବୋହୂ ମା' କିପରି ଅଛି ?—ଏତେ ଦିନ ଆସି ନାହଁ । ଭାବୁଥିଲି ଦେହ ଖରାପ ହୋଇଛି କି କ'ଣ !'' ମହିଳା ବିସ୍ମିତ ହୋଇ ଭାବିଲେ ପୂର୍ବରୁ ଦିନେ ମାତ୍ର ପାଞ୍ଚ ମିନିଟ୍‌ର ପରିଚୟରେ ଏତେ ଘନିଷ୍ଠ ହେଲେ କିପରି ? କେବଳ ଏତିକି ନୁହେଁ—ମା' ଆଦର କରି ଖଟ ଉପରେ ନିଜ ପାଖରେ ବସାଇ କହିଲେ, ''ତୁମକୁ ଯେପରି ଆହୁରି କେତେଥର ଦେଖିଛି ମା'—ଯେପରି କେତେ ଦିନରୁ ଜଣାଶୁଣା ।'' ଘରକୁ ଫେରିବା ସମୟ ହେବାରୁ ଶ୍ରୀମା' ପ୍ରସାଦ ଆଣି ମହିଳାଙ୍କ ମୁହଁ ନିକଟରେ ଧରି କହିଲେ—''ଖାଅ !'' ଏତେ ଲୋକଙ୍କ ସାମନାରେ ତାଙ୍କୁ ଲାଜ ଲାଗୁଥିବ ଭାବି କହିଲେ, ''ଲାଜ କାହିଁକି କରୁଛ, ଖାଅ !'' ବିଦାୟ ସମୟରେ ମା' ପଚାରିଲେ, ''ଏକା ଶିଡ଼ିଦେଇ ଓହ୍ଲାଇପାରିବ ତ, ନା ମୁଁ ଆସିବି ?'' ଏହା କହି ଶିଡ଼ିଯାଏ ଗଲେ । ଆଉ ଦିନେ ଖରାବେଳେ ଏହି ଭକ୍ତ ମହିଳା ଶ୍ରୀମା'ଙ୍କୁ ଦେଖା କରିବାକୁ ଆସିଥିଲେ । ତାଙ୍କୁ କ୍ଳାନ୍ତ ଓ ଘର୍ମାକ୍ତ ଦେଖି ଶ୍ରୀମା' ବ୍ୟସ୍ତ ହୋଇ କହିଲେ, ''ଶୀଘ୍ର ଦେହର ଜାମା ଖୋଲି ଦିଅ । ଦେହରେ ପବନ ଲାଗୁ''—ଏତିକି କହି ନିଜେ ପଙ୍ଖା ଆଣି ବିଞ୍ଚିବାକୁ ଲାଗିଲେ । ମହିଳା ଜଣକ ଯେତେ ଆପତ୍ତି କଲେ ବି ମା' ଶୁଣିଲେ ନାହିଁ; କହିଲେ, ''ଟିକିଏ ଦେହ ଶୀତଳ ହେଉ ।''

ଏହି ସ୍ତ୍ରୀ-ଭକ୍ତ ଦିନେ ଉଦ୍‌ବୋଧନରେ ପ୍ରସାଦ ଖାଇ ଶ୍ରୀମା'ଙ୍କୁ ପଙ୍ଖା କରୁଥିଲେ । ମା' କହିଲେ, ''ସେଠାରୁ ଗୋଟିଏ ତକିଆ ଆଣି ମୋ ପାଖରେ ଶୁଅ । ଆଉ ପଙ୍ଖା ଦରକାର ନାହିଁ ।'' ମା'ଙ୍କ ତକିଆରେ ଶୋଇବା ଅନ୍ୟାୟ ମନେକରି ରାଧୁ ଘରୁ ଗୋଟିଏ ତକିଆ ଆଣିବାରୁ ମା' ହସିହସି କହିଲେ, ''ସେଇଟା ପାଗଳୀର ତକିଆ । ତୁମେ ଏଇ ତକିଆଟା ଆଣ, କୌଣସି ଦୋଷ ହେବ ନାହିଁ ।'' ରାଧୁକୁ ଡାକି କହିଲେ, ''ରାଧୁ, ଆ, ତୋ ଦେଇ ପାଖରେ ଶୁଅ ।''

ଜଣେ ବୈଦ୍ୟବଂଶୀୟା ମହିଳା ଶ୍ରୀମା'ଙ୍କୁ କିଛି ଖୁଆଇବାକୁ ଚାହିଁବାରୁ ମା' ସେଥିପାଇଁ ଅନୁମତି ଦେଇଥିଲେ । ପରଦିନ ସେ ରନ୍ଧାବଢ଼ା କରି ଉଦ୍‌ବୋଧନକୁ ଆସିବାରୁ ମା' କହିଲେ, ''ଏଇ ଦେଖ, କେତେ କଷ୍ଟ କରି ଏଇସବୁ ନେଇ ଆସିଛି !'' ନଳିନୀଦେବୀ କହିଲେ, ''ତୁମେ ଚାହଁ କାହିଁକି ? ସେଇଥିପାଇଁ ତ ସେମାନେ ନେଇ ଆସନ୍ତି ।'' ଶ୍ରୀମା' ଉତ୍ତର ଦେଲେ, ''ତାହା ସେମାନଙ୍କ ପାଖରୁ ଚାହିଁବି ନାହିଁ ? ସେ ତ ମୋର ଝିଅ !'' ସେହିଦିନ ରାତିରେ ଏହା ଖାଇ ଶ୍ରୀମା' ଖୁବ୍ ଖୁସୀ ହୋଇଥିଲେ; ଏପରିକି, ଶୁଚିବାଇଗ୍ରସ୍ତ ନଳିନୀଦେବୀ ମଧ୍ୟ କହିଲେ, ''ମୋତେ ତ କାହାରି ରୋଷେଇ ରୁଚେ ନାହିଁ; କିନ୍ତୁ ତା' ହାତରୁ ଖାଇବାକୁ ତ ଘୃଣା ହେଉନାହିଁ !'' ଏହି କଥା ଶୁଣି ଶ୍ରୀମା' ଗର୍ବ କରି କହିଲେ, ''କାହିଁକି ହେବ ? ସେ ତ ମୋର ଝିଅ ।''

ଜଣେ ଗୃହସ୍ଥ ଯୁବକ ଉଦ୍‌ବୋଧନରେ ମା'ଙ୍କ ଘରର ଉତ୍ତରପଟ ବାରଣ୍ଡାରେ ତାଙ୍କୁ କହିଲେ, ''ମା', ମୁଁ ସଂସାରରେ ବହୁତ ଦୁଃଖ ପାଇଛି; ତୁମେ ମୋର ଗୁରୁ, ତୁମେ ମୋର ଇଷ୍ଟ, ମୁଁ ଆଉ କିଛି ଜାଣି ନାହିଁ । ପ୍ରକୃତରେ ମୁଁ ଏତେ ଅନ୍ୟାୟ କାମ ସବୁ କରିଛି ଯେ ତୁମକୁ କହିବାକୁ ମଧ୍ୟ ଲାଜ ଲାଗୁଛି, ତଥାପି ତୁମର ଦୟାରୁ ବଞ୍ଚି ରହିଛି ।'' ମା' ସ୍ନେହ କରି ସନ୍ତାନର ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ, ''ମା' ପାଖରେ ପୁଅ ସର୍ବଦା ପୁଅ ହିଁ ରହିବ ।'' ସେହି ସ୍ନେହର ସ୍ପର୍ଶରେ ବିଗଳିତ ହୋଇ ଭକ୍ତ କହିଲେ, ''ହଁ ମା', କିନ୍ତୁ ଏତେ ଦୟା ତୁମ ପାଖରୁ ପାଇଛି ବୋଲି ଯେପରି କେବେ ମନେ ନ ହୁଏ ଯେ ତୁମର ଦୟା ପାଇବା ଭାରି ସହଜ କଥା ।'' ଜନ୍ମାଷ୍ଟମୀର ଛୁଟିରେ (୧୯୧୩ ଖ୍ରୀ:) କେତେଜଣ ଭକ୍ତ ସନ୍ଧ୍ୟାବେଳେ କୋଆଲପଡ଼ାରେ ପହଞ୍ଚି ସ୍ଥିର କଲେ ଯେ ଅନ୍ଧାର ହେବା ସତ୍ତ୍ୱେ ସେଠାରେ ନ ରହି ଜୟରାମବାଟୀକୁ ଯିବେ । ରାସ୍ତାରେ ଭାରୀ ଦୁର୍ଯୋଗ — ଭୀଷଣ ଅନ୍ଧାର ଓ ଅବିରାମ ବର୍ଷା ଚାଲିଥାଏ । ସେମାନେ ଅନେକ ରାତିରେ ଯାଇ ଜୟରାମବାଟୀରେ ପହଞ୍ଚିଲେ । ସେତେବେଳେ ଶ୍ରୀମା'ଙ୍କୁ ସମ୍ବାଦ ନ ଦେଇ ପରଦିନ ସକାଳେ ତାଙ୍କ ସହିତ ଦେଖା କଲେ । ମା' ସବୁ ଶୁଣି ଭର୍ତ୍ସନା କରି କହିଲେ, ''ବାବା, ଠାକୁର ରକ୍ଷା କରିଛନ୍ତି । ଅନ୍ଧାର ରାତିରେ ଏତେ ବର୍ଷା ଓ କାଦୁଅ ପଙ୍କ ଉପର ଦେଇ ଆସିଛ; ରାସ୍ତାରେ କେତେ ସାପ ମାଡ଼ି ଆସିଥିବ ! ଏପରି ଆସିଲେ, ମୋର ଭାରୀ କଷ୍ଟ ହୁଏ । ଏପରି ହଠକାରିତା କରିବା ଭଲ ନୁହେଁ ।'' ଭକ୍ତମାନେ ବୁଝାଇଲେ ଯେ ସେମାନଙ୍କର ଛୁଟି ଅଳ୍ପ ଏବଂ ମା'ଙ୍କୁ ଦେଖିବାର ଆଗ୍ରହ ପ୍ରବଳ ହୋଇଥିବାରୁ ସେମାନେ ଏପରି କରିବାକୁ ବାଧ୍ୟ ହୋଇଥିଲେ । ଶ୍ରୀମା' ତଥାପି କହିଲେ, ''ତୁମର ଏପରି ଇଚ୍ଛା ହେଲେ ହେଉ, କିନ୍ତୁ ଏଥିପାଇଁ ମୋତେ ଭାରୀ କଷ୍ଟ ହୁଏ ।'' ଏହି ଘଟଣାର ଅଢ଼େଇବର୍ଷ ପରେ ଉଦ୍‌ବୋଧନରେ ଏମାନଙ୍କ ଭିତରୁ ଜଣେ ଭକ୍ତ ଆସି ପ୍ରଣାମ କରିବାରୁ ଶ୍ରୀମା'

ସେହି ଘଟଣାର ଉଲ୍ଲେଖ କରି କହିଲେ, ''ସେପରି ହଠକାରିତା କରିବା ଭଲ ନୁହେଁ ।'' ଭକ୍ତ ଉତ୍ତର ଦେଲେ, ''ହଉ, ସେପରି ଆଉ କେବେ ଯିବୁ ନାହିଁ ।'' ମା' ଭାବିଲେ ଭକ୍ତ ବୋଧହୁଏ ଆଉ ଜୟରାମବାଟୀକୁ କେବେ ଯିବେ ନାହିଁ, ତେଣୁ ବ୍ୟସ୍ତ ହୋଇ କହିଲେ, ''ତୁମେମାନେ ଯିବ ନାହିଁ ତ କିଏ ଯିବ ? ବାବା, ତୁମ ଗୋଡ଼ରେ କଣ୍ଟା ଫୁଟିଲେ ମୋ ଛାତିରେ ବଜ୍ର ପଡ଼ିବା ପରି ବୋଧ ହୁଏ ।''

ଉଦ୍‌ବୋଧନର କଥା । ଛୋଟ ଝିଅଟିଏ ମା'ଙ୍କ ପାଖରେ ଶୋଇଥିଲା । କମ୍ବଳରେ ମଳତ୍ୟାଗ କରିବାରୁ ଝିଅର ମା' ବ୍ୟସ୍ତ ହୋଇ ତାହା ପରିଷ୍କାର କରିବାକୁ ଉଠିଲେ; କିନ୍ତୁ ଶ୍ରୀମା' କମ୍ବଳ ଛଡ଼ାଇ ନେଇ ନିଜେ ଧୋଇ ଆଣିଲେ । ଝିଅର ମା' ଆପତ୍ତି କରିବାରୁ ଶ୍ରୀମା' ଉତ୍ତର ଦେଲେ, ''କାହିଁକି ଧୋଇବି ନାହିଁ ? ସେ କଅଣ ମୋର ପର ?'' ଦିନକୁ ଦିନ ଭକ୍ତ ସଂଖ୍ୟା ବଢ଼ି ଚାଲିଛି । ସେମାନଙ୍କର ରୁଚି ବିଚିତ୍ର; ପ୍ରୟୋଜନ ମଧ୍ୟ ବିବିଧ । ମା'ଙ୍କର ବିଶ୍ରାମ ନାହିଁ । ଏହା ଲକ୍ଷ୍ୟ କରି ଦିନେ ଗୋଲାପ-ମା' କହିଲେ, ''ଯିଏ ଆସି କହିବ ମା', ତତ୍‌କ୍ଷଣାତ୍ ଗୋଡ଼ ବଢ଼ାଇ ଦେବ ।'' ମା' ଉତ୍ତର ଦେଲେ, ''କଅଣ କରିବି ଗୋଲାପ ? ମା' ବୋଲି କହିଲେ ମୁଁ ସ୍ଥିର ହୋଇ ରହିପାରେ ନାହିଁ ।''

ଶ୍ରୀମା'ଙ୍କର ଏହି ମାତୃତ୍ୱ ସକଳ ଜାଗତିକ ସମ୍ବନ୍ଧକୁ ଅତିକ୍ରମ କରି ସମସ୍ତଙ୍କ ହୃଦୟର ତୃଷ୍ଣା ମେଣ୍ଟାଉଥିଲା । ରାଧୁର ଖୁଡୁତାଶୁର ମହାଶୟଙ୍କୁ ପତ୍ର ଲେଖିବାକୁ ବସି ଶ୍ରୀମା' ନିଃସଂଙ୍କୋଚରେ କହିଲେ, ''ଲେଖ, 'ବାବା ଜୀବନ' !'' ରାଧୁର ମା' ବାଧା ଦେଇ କହିଲେ, ''ସେ କି କଥା ? ସେ ଯେ ତୁମର ସମୁଦୀ !'' ମା' ଅବିଚଳିତ ହୋଇ କହିଲେ, ''ତାହା ହେଉ, ସେ ମୋତେ ମା' ବୋଲି ଡାକି ଆନନ୍ଦ ପାଏ, ତେଣୁ ମୁଁ ତା' ନିକଟରେ ସେଇଆ ।'' ଶ୍ରୀମା'ଙ୍କର ଭ୍ରାତୃଜାୟା ଇନ୍ଦୁମତୀ ଓ ସୁବାସିନୀ ମଧ୍ୟ ତାଙ୍କୁ ମା' ବୋଲି ସମ୍ବୋଧନ କରୁଥିଲେ ।

ଥରେ ଶ୍ରୀମା' ରୋଗରୁ ସୁସ୍ଥ ହୋଇ ଉଠିବାରୁ ସମସ୍ତେ ସିଂହବାହିନୀ-ଦେବୀଙ୍କୁ ବୋଦା ବଳି ଦେବାକୁ ଚାହିଁଲେ, କିନ୍ତୁ ଶ୍ରୀମା' ତାହା ନ କରି କେତେ ଟଙ୍କାର ରସଗୋଲା ଭୋଗ ଦେଲେ । ଅପରାହ୍ଣରେ ଗ୍ରାମର ସମସ୍ତଙ୍କୁ ପ୍ରସାଦ ଦେବା ପାଇଁ ଦୁଇଥର ଘଣ୍ଟା ବଜାଇବାରୁ ଗ୍ରାମବାସୀମାନେ ଦଳକୁ ଦଳ ମା'ଙ୍କ ନୂତନ ଗୃହର ପଶ୍ଚିମ ଦିଗକୁ ଯେଉଁ ରାସ୍ତା ଅଛି, ତାହାର ଦୁଇକଡ଼ରେ ଲାଗି ଲାଗି ବସିଗଲେ । ସାଧୁମାନେ ପରିବେଷଣ କରିବାକୁ ଲାଗିଲେ ଏବଂ ଶ୍ରୀମା' ସ୍ଥିର ଦୃଷ୍ଟିରେ ସବୁ ଦେଖୁଥିଲେ । ତାଙ୍କର ମୁଖମଣ୍ଡଳ ଏକ ଅଲୌକିକ ପ୍ରସନ୍ନତାରେ ଭରିଉଠିଲା ।

ଘଟଣା ଛୋଟ ହେଉ କିମ୍ବା ବଡ଼ ହେଉ, ଭକ୍ତମାନେ ଶ୍ରୀମା'ଙ୍କର ଅନୁପମ ମାତୃତ୍ୱର ପରିଚୟ ସର୍ବଦା ପାଉଥିଲେ । ଯଥାର୍ଥ ମା' ପରି ପ୍ରତ୍ୟେକ ସନ୍ତାନର ରୁଚି ସହିତ ପରିଚିତ ହୋଇ ସେ ଠିକ୍ ସେହିପରି ବ୍ୟବସ୍ଥା କରୁଥିଲେ । ନଳିନବାବୁ

ଜୟରାମବାଟୀରେ ଉପସ୍ଥିତ ହୋଇ ପ୍ରାୟ ପନ୍ଦର ଜଣ ଭକ୍ତଙ୍କ ସହିତ ଆହାର କରିବାକୁ ବସିଲେ । ତାଙ୍କର ମନେ ହେଲା, ଯେପରିକି ଶ୍ରୀମା' ତାଙ୍କୁ ଅଧିକ ଆଦର ସହକାରେ ଖୁଆଉଛନ୍ତି । ସେଥିପାଇଁ ସେ ଟିକିଏ ଲଜ୍ଜିତ ବୋଧ କଲେ । କିନ୍ତୁ ଭୋଜନ ପରେ ଅନ୍ୟ ଭକ୍ତମାନଙ୍କ ସହ କଥାବାର୍ତ୍ତା କରି ବୁଝିଲେ ଯେ ଏ ବିଷୟରେ ସମସ୍ତଙ୍କର ଅନୁଭୂତି ପ୍ରାୟ ସମାନ ।

ପ୍ରସାଦ ବିତରଣ ସମୟରେ ଶ୍ରୀମା' ସନ୍ତାନମାନଙ୍କର ରୁଚି ଅନୁଯାୟୀ ସର୍ବୋତ୍ତମ ବସ୍ତୁଟି ସେମାନଙ୍କ ହାତରେ ଦେଉଥିଲେ । ତେଣୁ ସମସ୍ତଙ୍କର ଧାରଣା ହେଉଥିଲା ଯେ ମା' ତାଙ୍କୁ ସର୍ବାଧିକ ସ୍ନେହ କରନ୍ତି । ନିଜର ପ୍ରୟୋଜନ ଜଣାଇବା ପୂର୍ବରୁ ମା' ତାହା ପୂର୍ଣ୍ଣ କରି ଦେଉଥିଲେ । ଜଣେ ସାଧୁ ଯେତେବେଳେ ଜୟରାମବାଟୀରେ ପହଞ୍ଚିଲେ, ସେତେବେଳେ ମା' ଖାଇବସିଛନ୍ତି । ତାଙ୍କର ଇଚ୍ଛା ଥିଲା — ସେ ଦିନେ ମା'ଙ୍କ ଥାଳିରେ ପ୍ରସାଦ ପାଇବେ । ମା' ଅନ୍ୟମାନଙ୍କୁ ଖୁଆଇ ପରେ ନିଜେ ଖାଉଥିଲେ ଏବଂ ସେମାନଙ୍କୁ ଦୁଧଭାତ ପ୍ରସାଦ କରି ପଠାଇ ଦେଉଥିଲେ । ସୁତରାଂ ତାଙ୍କ ପତ୍ରରେ ପ୍ରସାଦ ପାଇବାର ସୌଭାଗ୍ୟ ସନ୍ତାନମାନଙ୍କର କେବେ ହେଉ ନ ଥିଲା । ସେଦିନ ସାଧୁ ଉପସ୍ଥିତ ହେବା ମାତ୍ରେ ଶ୍ରୀମା' ତାଙ୍କ ପାଇଁ ଜଳଖିଆ ଓ ହୁକାରେ ତମାଖୁ ସଜାଇ ପଠାଇଦେଲେ — ସେ ଯେ ତମାଖୁ ଖାଉଥିଲେ ମା'ଙ୍କୁ ତାହା ଜଣାଥିଲା । ପରେ ନିଜର ଖାଇବା ଶେଷ ହେବାରୁ ତାଙ୍କୁ ଡାକି ଗୋଟିଏ ପତର ଦେଖାଇ କହିଲେ, ''ବସିପଡ଼ ବାବା ! ଏହି ପତରରେ ମୁଁ ଖାଇଛି ।'' ମା' ଶାଳପତରରେ ଖାଇଥିଲେ ଏବଂ ପ୍ରସାଦୀ ଆହାର ସେଥିରେ ଥିଲା ।

କୌଣସି ମଣିଷ ନିର୍ଦ୍ଦୋଷ ନୁହେଁ ଜାଣି ସେ ସମସ୍ତଙ୍କୁ ସମଭାବରେ ଗ୍ରହଣ କରୁଥିଲେ । ଥରେ ଜଣେ ଭକ୍ତଙ୍କର କୌଣସି ଆଚରଣ ହେତୁ ଠାକୁରଙ୍କର ଜଣେ ବିଶିଷ୍ଟ ଶିଷ୍ୟ ଶ୍ରୀମା'ଙ୍କୁ ଅନୁରୋଧ କଲେ ଯେ, ସେ ଯେପରି ପୂର୍ବୋକ୍ତ ବ୍ୟକ୍ତିଙ୍କୁ ନିଜ ପାଖକୁ ଆସିବାକୁ ନ ଦିଅନ୍ତି । କିନ୍ତୁ ମା' ଉତ୍ତର ଦେଇଥିଲେ, ''ମୋର ପୁଅ ଯଦି କାଦୁଅ ବୋଳିହୁଏ, ତା'ହେଲେ ମୋତେ ତାହା ପରିଷ୍କାର କରି କୋଳକୁ ନେବାକୁ ହେବ ନାହିଁ କି ?''

ପାପତାପର ବୋଝ ନେଇ ଶତ ଶତ ଭକ୍ତ ଆସୁଥିଲେ । ସେମାନଙ୍କର କାହାରି କାହାରି ସ୍ପର୍ଶରେ ମା'ଙ୍କ ପାଦରେ ଅସହ୍ୟ ପୀଡ଼ା ହେଉଥିଲା, କିନ୍ତୁ ସେ ନୀରବରେ ସବୁ ସହୁଥିଲେ । ଦର୍ଶନାର୍ଥୀମାନଙ୍କର ପ୍ରଣାମ ପରେ ଦିନେ ରାସବିହାରୀ ମହାରାଜ ଦେଖିଲେ ଯେ, ଶ୍ରୀମା' ବାରଣ୍ଡାରେ ପାଦରୁ ଆଣ୍ଠୁଯାଏ ବାରମ୍ବାର ଧୋଉଛନ୍ତି । ପଚାରିବାରୁ କହିଲେ, ''ଆଉ କାହାକୁ ପାଦରେ ମୁଣ୍ଡ ଦେଇ ପ୍ରଣାମ କରିବାକୁ ଦେବ ନାହିଁ । ସବୁ ପାପ ଆସି ପଶେ, ଆଉ ଗୋଡ଼ ଜଳିପଡ଼ିଯାଏ, ଏଇଥିପାଇଁ ତ ବ୍ୟାଧି । ଦୂରରୁ ପ୍ରଣାମ କରିବା ପାଇଁ କହିବ ।

ଏସବୁ କଥା କିନ୍ତୁ ଶରତକୁ କହିବ ନାହିଁ । ତେବେ ସେ ପ୍ରଣାମ କରିବା ନିଷେଧ କରିଦେବ ।''

ପାପର ସ୍ପର୍ଶରେ କଷ୍ଟ ହୁଏ ଏହା ତାଙ୍କର ଜଣାଥିଲା; କିନ୍ତୁ ଜଣାଥିଲେ ମଧ୍ୟ ମା' ହୋଇ ସନ୍ତାନକୁ କିପରି ଫେରାଇବେ ? ସେ କାହାରି ଦୋଷ ଦେଖିପାରୁ ନ ଥିଲେ । ଦିନେ ସନ୍ଧ୍ୟାବେଳେ ସେ ବ୍ରହ୍ମଚାରୀ ବରଦାଙ୍କୁ କହିଲେ, ''କେତେ ଜଣ ଭକ୍ତ ଆଜି ସକାଳେ ଆସି ଜଣଙ୍କ ସମ୍ବନ୍ଧରେ ନାନା କଟାକ୍ଷ କଲେ; ତା'ପରେ କହିଲେ, 'ସେ ଆପଣଙ୍କର ଏତେ ସେବାସଙ୍ଗ କରି ମଧ୍ୟ ତାହାର ଏତେ କୁମତି ହେଉଛି କାହିଁକି ?' ମୁଁ କାହାରି ଦୋଷ ଦେଖିପାରେ ନାହିଁ ବାବା ! ପ୍ରାରବ୍ଧ କର୍ମ ଯାହାର ଯାହା ଅଛି—ଯେଉଁଠାରେ ବଡ଼ ଧରଣର ଆଘାତ ହୋଇଥାଆନ୍ତା ସେଠାରେ ଛୁଞ୍ଚିଟା ତ ଫୁଟିବ ! ମୋ ନିକଟରେ ତାହାର କେତେ ଦୋଷ କଥା ସେମାନେ କହିଲେ । ସେତେବେଳେ ସେମାନେ କେଉଁଠି ଥିଲେ ? ସେ ମୋର କେତେ ସେବା କରିଛି ! ସେତେବେଳେ ମୁଁ ଭାଇମାନଙ୍କ ଘରେ ଧାନ ଉଷୁଁଉଥିଲି, ସଂସାରର ସବୁ କାମ କରୁଥିଲି, ବୋହୂମାନେ ସବୁ ଛୋଟ । ସେ ଶୀତବର୍ଷା ଗ୍ରାହ୍ୟ ନ କରି ସକାଳଠାରୁ ମୋ ସହିତ ବଡ଼ ବଡ଼ ଧାନର ହାଣ୍ଡି ଓହ୍ଲାଉଥିଲା । ଏବେ ତ ବହୁତ ଭକ୍ତ ଆସିଲେଣି, ସେତେବେଳେ ମୋର କିଏ ଥିଲା ? ଆମେ କଅଣ ସେସବୁ କଥା ଭୁଲିଯିବୁ ? ଦେଖ, ଲୋକମାନଙ୍କର କ'ଣ ଦୋଷ ? ମୋର ମଧ୍ୟ ଆଗେ ଲୋକଙ୍କର କେତେ ଦୋଷ ଆଖିରେ ପଡୁଥିଲା । ତା'ପରେ ଠାକୁରଙ୍କ ନିକଟରେ କାନ୍ଦି କାନ୍ଦି ପ୍ରାର୍ଥନା କଲି, 'ଠାକୁର, ଆଉ ଦୋଷ ଦେଖିପାରିବି ନାହିଁ ।' ତା'ପରେ ଅନ୍ୟର ଦୋଷ ଦେଖିବା ଗଲା । ବୃନ୍ଦାବନରେ ଯେତେବେଳେ ଥିଲି, ବାଙ୍କ ବିହାରୀଙ୍କୁ ଦର୍ଶନ କରି କହୁଥିଲି, 'ତୁମର ରୂପ ବଙ୍କା; କିନ୍ତୁ ମନ ସିଧା— ମୋ ମନର ବାଙ୍କଟି ସିଧା କରିଦିଅ ।' ଦେଖ, ମଣିଷର ହଜାର ଉପକାର କରି ଟିକିଏ ଦୋଷ କର, ତତ୍‌କ୍ଷଣାତ୍ ତା'ର ଭାବର ପରିବର୍ତ୍ତନ ହେବ । ମଣିଷ କେବଳ ଦୋଷକୁ ଦେଖେ, ଗୁଣକୁ କିଏ ଦେଖେ ? ଗୁଣକୁ ହିଁ ଦେଖିବା କଥା ।''

ଚୋରୀ କରିବା ଅପରାଧରେ ବେଲୁଡ଼ମଠରୁ ଗୋଟିଏ ଚାକରକୁ ସ୍ୱାମୀଜୀ (ସ୍ୱାମୀ ବିବେକାନନ୍ଦ) ବହିଷ୍କାର କଲେ । ସେ ଗରିବ, ତାହାର ଆୟରେ ସଂସାର ଚଳେ । ନିରୂପାୟ ଚାକର କାନ୍ଦି କାନ୍ଦି ଶ୍ରୀମା'ଙ୍କର ଆଶ୍ରୟ ନେଲା । ଶ୍ରୀମା' ତାକୁ ଘରେ ରଖି ସ୍ନାନାହାର କରାଇଲେ । ସେହିଦିନ ସନ୍ଧ୍ୟାବେଳେ ପ୍ରେମାନନ୍ଦଜୀ ଶ୍ରୀମା'ଙ୍କୁ ପ୍ରଣାମ କରିବାକୁ ଯେତେବେଳେ ଆସିଲେ ସେତେବେଳେ ଶ୍ରୀମା' ତାଙ୍କୁ କହିଲେ, ''ଦେଖ ବାବୁରାମ, ଏଇ ଲୋକଟି ଭାରି ଗରିବ । ଅଭାବର ତାଡ଼ନାରେ ସେ ଏପରି କର୍ମ କରିଛି । କିନ୍ତୁ ନରେନ୍ଦ୍ର ତାକୁ ଗାଳି ମନ୍ଦ ଦେଇ ବାହାର କରିଦେଇଛି । ସଂସାରରେ ଭାରୀ କଷ୍ଟ; ତୁମେମାନେ ସନ୍ନ୍ୟାସୀ, ତୁମେ ତାହା ବୁଝିପାରିବ ନାହିଁ । ତାକୁ ଫେରାଇ ନେଇଯାଅ ।'' ପ୍ରେମାନନ୍ଦଜୀ କହିଲେ

ଯେ ସେପରି କଲେ ସ୍ୱାମୀଜୀ ରୁଷ୍ଟ ହେବେ । ମା' ସେତେବେଳେ ଉଚ୍ଚ କଣ୍ଠରେ କହିଲେ, ''ମୁଁ କହୁଛି, ନେଇ ଯାଅ ।'' ସନ୍ଧ୍ୟା ସମୟରେ ସେହି ଲୋକଟିକୁ ନେଇ ପ୍ରେମାନନ୍ଦଜୀ ମଠରେ ପ୍ରବେଶ କରିବା ମାତ୍ରେ ସ୍ୱାମୀଜୀ କହିଉଠିଲେ, ''ବାବୁରାମର କାଣ୍ଡ ଦେଖ, ତାକୁ ପୁଣି ନେଇ ଆସିଛି ।'' ପ୍ରେମାନନ୍ଦଜୀ ସବୁ କଥା କହିବାରୁ ସ୍ୱାମୀଜୀ କୌଣସି ଆପତ୍ତି କଲେ ନାହିଁ ।

ଶ୍ରୀମା'ଙ୍କର ଅପରାଜେୟ ମାତୃଶକ୍ତି ସମ୍ମୁଖରେ ବିଦ୍ରୋହୀ ମନ ମଧ୍ୟ ଅବନତ ହେଉଥିଲା । କୋଆଲପଡ଼ା ଜଗଦମ୍ବା ଆଶ୍ରମରେ ମା' ଅବସ୍ଥାନ କରୁଥିବା ସମୟରେ ଦିନେ ନିକଟସ୍ଥ ପଲ୍ଲୀର ଗୋଟିଏ ଡମ ଝିଅ ଆସି କାନ୍ଦି କାନ୍ଦି କହିଲା ଯେ, ତାହାର ଉପପତି ତାକୁ ହଠାତ୍ ତ୍ୟାଗ କରିଛି । ତାହାରି ପାଇଁ ସେ ସବୁ ଛାଡ଼ିଥିଲା, କିନ୍ତୁ ଏବେ ସେ ସମ୍ପୂର୍ଣ୍ଣ ନିରୁପାୟ । ଝିଅଟିର ଦୁଃଖର କାହାଣୀ ଶୁଣି ଶ୍ରୀମା' ସେହି ଡମକୁ ଡକାଇ ପଠାଇଲେ ଏବଂ ସ୍ନେହପୂର୍ଣ୍ଣ ମୃଦୁ ଭର୍ତ୍ସନା କରି କହିଲେ, ''ସେ ତୁମ ପାଇଁ ସବୁ ତ୍ୟାଗ କରିଛି । ବର୍ତ୍ତମାନ ତାକୁ ତ୍ୟାଗ କଲେ ତୁମର ମହା ଅଧର୍ମ ହେବ—ନରକରେ ମଧ୍ୟ ସ୍ଥାନ ପାଇବ ନାହିଁ ।'' ଶ୍ରୀମା'ଙ୍କ କଥାରେ ଲୋକଟିର ମନରେ ପରିବର୍ତ୍ତନ ଆସିଲା ଏବଂ ସେ ଝିଅଟିକୁ ଘରକୁ ଫେରାଇ ନେଇଗଲା ।

ଶ୍ରୀମା'ଙ୍କର ଅପାର ସ୍ନେହ ଜାତି, ବର୍ଣ୍ଣ, ଦୋଷଗୁଣ, ସାଂସାରିକ ଅବସ୍ଥାଦ୍ୱାରା ନିୟନ୍ତ୍ରିତ ହେଉ ନ ଥିଲା । ଯେ ତାଙ୍କ ନିକଟକୁ ଆସୁଥିଲା, ସେ ତାହାର ଦୋଷ ବା ଦୁର୍ବଳତାଦି ଜାଣି ସୁଦ୍ଧା ତାକୁ ସ୍ନେହଯତ୍ନ କରୁଥିଲେ, ବିଭିନ୍ନ ଭାବରେ ସାହାଯ୍ୟ ମଧ୍ୟ କରୁଥିଲେ; ତାହାର ଶୋକଦୁଃଖରେ ପ୍ରାଣସ୍ପର୍ଶୀ ସହାନୁଭୂତି ଦେଖାଉଥିଲେ ଏବଂ ଅନ୍ୟମାନଙ୍କୁ ଏପରି କରିବାକୁ ଶିଖାଉଥିଲେ । ତାଙ୍କର ସେହି ମାତୃତ୍ୱର ପ୍ରଭାବରେ ଦୁଶ୍ଚରିତ୍ର ଲୋକମାନଙ୍କର ମଧ୍ୟ ସ୍ୱଭାବରେ ପରିବର୍ତ୍ତନ ହେଉଥିଲା ।

ଜୟରାମବାଟୀ ନିକଟରେ ଶିରୋମଣିପୁର ଗାଁ । ସେଠାରେ ବହୁ ମୁସଲମାନ ବାସ କରୁଥିଲେ । ସେମାନେ ପୂର୍ବେ ରେଶମକୀଟର ଚାଷ କରି ଜୀବିକା ନିର୍ବାହ କରୁଥିଲେ । କିନ୍ତୁ ବିଦେଶୀ ପଶମ ଆସିବାରୁ ସେମାନଙ୍କର ବ୍ୟବସାୟ ନଷ୍ଟ ହୋଇଗଲା । ସେମାନେ ନିରୁପାୟ ହୋଇ ଦସ୍ୟୁବୃତ୍ତି ଆରମ୍ଭ କଲେ । ଜୟରାମବାଟୀରେ ଯେତେବେଳେ ଶ୍ରୀମା'ଙ୍କ ପାଇଁ ନୂତନ ଗୃହର ନିର୍ମାଣ ଚାଲିଥିଲା, ସେତେବେଳେ ସେହି ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଥାଏ । ସାଧୁମାନେ ଶିରୋମଣିପୁରର ଏହି ଦୁର୍ଭିକ୍ଷପୀଡ଼ିତ ମୁସଲମାନମାନଙ୍କୁ ଗୃହନିର୍ମାଣ କାମରେ ନିଯୁକ୍ତ କରିଥିଲେ । ଗ୍ରାମବାସୀମାନେ ପ୍ରଥମେ ବିରୋଧ କରିଥିଲେ । କିନ୍ତୁ ପରେ ସେମାନଙ୍କର ନିରୀହ ବ୍ୟବହାର ଦେଖି କହିବାକୁ ଲାଗିଲେ, ''ମା'ଙ୍କ କୃପାରେ ଡକାୟତମାନେ ମଧ୍ୟ ଭକ୍ତ ହୋଇଗଲେ !''

ଦିନେ ସେମାନଙ୍କ ଭିତରୁ ଜଣେ କେତୋଟି କଦଳୀ ଆଣି ମା'ଙ୍କୁ କହିଲା, "ଠାକୁରଙ୍କ ପାଇଁ ଏହା ଆଣିଛି, ତାହା କଅଣ ଆପଣ ଗ୍ରହଣ କରିବେ ?" ମା' ତାହା ନେବା ପାଇଁ ହାତ ବଢ଼ାଇ କହିଲେ, "ନିଶ୍ଚୟ ନେବି, ବାବା, ଦେ ! ଠାକୁରଙ୍କ ପାଇଁ ଆଣିଛୁ, କାହିଁକି ନେବି ନାହିଁ ?" ମା'ଙ୍କର ଜଣେ ସ୍ତ୍ରୀ-ଭକ୍ତ ସେଠାରେ ଥିଲେ; ସେ କହିଲେ, "ସେମାନେ ଚୋର, ମୁଁ ତାହା ଜାଣିଛି; ସେମାନଙ୍କର ଜିନିଷ ଠାକୁରଙ୍କୁ କିପରି ଦେବେ ?" ମା' କୌଣସି ଉତ୍ତର ନ ଦେଇ କଦଳୀ ଉଠାଇ ରଖିଲେ ଏବଂ ମୁସଲମାନ ଭକ୍ତଙ୍କୁ କିଛି ମିଠା ଇତ୍ୟାଦି ଦେବାକୁ କହିଲେ । ସେ ଯିବାପରେ ଶ୍ରୀମା' ସ୍ତ୍ରୀ-ଭକ୍ତଙ୍କୁ ତିରସ୍କାର କରି କହିଲେ, "କିଏ ଭଲ, କିଏ ମନ୍ଦ ତାହା ମୁଁ ଜାଣେ ।" ମା' ମନ୍ଦକୁ ଭଲ କରିବା ପାଇଁ ସର୍ବଦା ସଚେଷ୍ଟ ଥିଲେ । ସେ କହୁଥିଲେ, "ମଣିଷର ତ ଦୋଷ ରହିଛି; କିନ୍ତୁ କିପରି ତାକୁ ଭଲ କରିବାକୁ ହେବ, ତାହା କେତେ ଜଣ ଲୋକ ଜାଣନ୍ତି ?"

ଆମଜାଦ୍ ନାମକ ଜଣେ ମୁସଲମାନ ମା'ଙ୍କ ଘରର କାନ୍ଥ ନିର୍ମାଣ କରିଥିଲା । ଦିନେ ମା' ତାକୁ ଘରର ଭିତର ବାରଣ୍ଡାରେ ବସାଇ ଖୁଆଇଲେ । ନଳିନୀଦେବୀ ଅଗଣାରେ ଠିଆହୋଇ ଦୂରରୁ ହାତ ବଢ଼ାଇ ପରିବେଷଣ କରୁଥିଲେ । ମା' ତାହା ଦେଖି କହିଲେ, "ସେପରି ଭାବରେ ଦେଲେ ମଣିଷର କ'ଣ ଖାଇ ତୃପ୍ତି ହେବ ? ତୁ ନ ପାରିଲେ ମୁଁ ଦେବି ?" ଖାଇବା ପରେ ଆମଜାଦ୍ ଅଇଁଠାପତର ଉଠାଇ ନେଇଗଲା ଏବଂ ମା' ସେହି ସ୍ଥାନରେ ପାଣି ଢାଳି ପରିଷ୍କାର କଲେ । ନଳିନୀଦେବୀ ଏହା ଦେଖି ମନ୍ତବ୍ୟ କଲେ, "ପିଉସୀ ! ତୁମର ଜାତି ଗଲା ।" ମା' ତାକୁ ଧମକ ଦେଇ କହିଲେ, "ଶରତ (ସାରଦାନନ୍ଦଜୀ) ଯେପରି ମୋର ପୁଅ, ଆମଜାଦ୍ ମଧ୍ୟ ସେହିପରି ।"

ଏହାର ଅନେକ ଦିନ ପରର କଥା । ଶ୍ରୀମା' ଜୟରାମବାଟୀରେ ଅସୁସ୍ଥ ହୋଇ ଶଯ୍ୟାଗତା । ଅନେକ ଲୋକ ଆସି ତାଙ୍କୁ ଦେଖି ଯାଉଛନ୍ତି । ଦିନେ ସକାଳେ ତାଙ୍କର ସେବକ ବ୍ରହ୍ମଚାରୀ ଦେଖିଲେ କୃଷ୍ଣବର୍ଣ୍ଣ, ଶୀର୍ଣ୍ଣକାୟ, ଛିନ୍ନବସନ, ବିଷର୍ଣ୍ଣବଦନ ଜଣେ ଲୋକ ବାଡ଼ିରେ ଭରାଦେଇ ଘର ଭିତରେ ପ୍ରବେଶ କଲା । ସେ ସମ୍ପୂର୍ଣ୍ଣ ଅପରିଚିତ ହେଲେ ମଧ୍ୟ ଯେପରି ନିଃସଙ୍କୋଚଭାବରେ ଭିତରେ ପ୍ରବେଶ କଲା ସେଥିରୁ ବ୍ରହ୍ମଚାରୀ ବୁଝିଲେ ଯେ ସେ ଏଠାରେ ପୂର୍ବରୁ ପରିଚିତ । ସେ କୌତୂହଳୀ ହୋଇ ପଛେ ପଛେ ଗଲେ । ଶ୍ରୀମା' ଘର ଭିତରେ ଖଟରେ ଶୋଇଥିଲେ । କବାଟ ସାମନା ବାରଣ୍ଡା ତାଟିବନ୍ଧା ଥିଲା । ହଠାତ୍ ମା'ଙ୍କର ଦୃଷ୍ଟି ଏପଟେ ପଡ଼ିବାରୁ ସେ କ୍ଷୀଣ କଣ୍ଠରେ ସ୍ନେହ ସହକାରେ ଡାକିଲେ, "କିଏ ବାବା, ଆମଜାଦ୍ ? ଆସ !" ଆମଜାଦ୍ ଖୁସୀ ହୋଇ ବାରଣ୍ଡାକୁ ଉଠିଲା ଏବଂ କବାଟ ପାଖରେ ଠିଆ ହୋଇ ମା'ଙ୍କ ସହିତ କଥାବାର୍ତ୍ତା କରିବାକୁ ଲାଗିଲା । ମାତାପୁତ୍ରଙ୍କ ଭିତରେ ସୁଖଦୁଃଖ କଥା ହେଉଛି ଦେଖି ବ୍ରହ୍ମଚାରୀ ସେଠାରୁ ଚାଲିଗଲେ । କିଛି

ସମୟ ପରେ ଠାକୁରଙ୍କୁ ଭୋଗ ଦେବା ପାଇଁ ମା' ବ୍ରହ୍ମଚାରୀଙ୍କୁ ଡାକିଲେ । ବ୍ରହ୍ମଚାରୀ ଭୋଗ ନିବେଦନ କରିବା ପାଇଁ ଆସି ଭାରୀ ଅସୁବିଧାରେ ପଡ଼ିଲେ । ସେ ଜାତିରେ ବ୍ରାହ୍ମଣ ଏବଂ ଠାକୁରଙ୍କର ଭୋଗ ନିବେଦନ କରିବାକୁ ଯାଉଛନ୍ତି । ଏଣେ ଆମଜାଦ୍ ବାରଣ୍ଡାରେ ଠିଆ ହୋଇଛି । ତାକୁ ସେ ଘୁଞ୍ଚିଯିବା ପାଇଁ କହିବେ କିପରି ? ବ୍ରହ୍ମଚାରୀ ସ୍ଥିର କଲେ ଯେ ମା' ଆପତ୍ତି ନ କଲେ ଭୋଗ ନିବେଦନ ପାଇଁ ତାଙ୍କର ଯାହା କରଣୀୟ ତାହା ସେ କରିବେ । କିନ୍ତୁ ମା' କିଛି କହିଲେ ନାହିଁ—ଆମଜାଦ୍ ପାଖ ଦେଇ ସେ ଠାକୁରଘରୁ ପଞ୍ଚପାତ୍ର ରୋଷେଇଘରକୁ ନେଲେ ଏବଂ ଭୋଗ ନିବେଦନ କରି ତାହା ଫେରାଇ ଆଣିଲେ । ଉପରଓଳି ଆମଜାଦ୍ ଯେତେବେଳେ ଗାଁକୁ ଫେରିଲା ସେତେବେଳେ ବ୍ରହ୍ମଚାରୀ ଦେଖିଲେ ତାହାର ମୁହଁରେ ହସ, ଚେହେରା ଅନ୍ୟ ପ୍ରକାର । ସେ ଦେହରେ ଓ ମୁଣ୍ଡରେ ବହୁଦିନ ପରେ ତେଲ ଲଗାଇ ସ୍ନାନ କରିଛି, ପେଟଭରି ଖାଇଛି ଏବଂ ପାନ ଖାଇ ଖାଇ ଘରକୁ ଫେରୁଛି । ତାହାର ଗୋଟିଏ ହାତରେ କବିରାଜୀ ତେଲ ଏବଂ ପୁଟୁଳିରେ ଅନେକ ଜିନିଷପତ୍ର । ପରେ ମା' ବ୍ରହ୍ମଚାରୀଙ୍କୁ କହିଥିଲେ, ''ଔଷଧ ଖାଇ ଆମଜାଦ୍‌ର ମୁଣ୍ଡ ଗରମ ହୋଇଥିଲା, ରାତିରେ ନିଦ ହେଉ ନ ଥିଲା । କବିରାଜୀ ତେଲ ଲଗାଇଲେ ମୁଣ୍ଡ ଥଣ୍ଡା ହେବ ।'' ଆମଜାଦ୍ ଶୀଘ୍ର ସୁସ୍ଥ ହୋଇ ଉଠିଲା । କାମର କୌଣସି ସମ୍ବାଦ ପାଇଲେ ସେ ମା'ଙ୍କ ଘରକୁ ଆସି ସବୁ କାମ କରିଦେଇ ଯାଉଥିଲା । ଶ୍ରୀମା'ଙ୍କର ଖାଇବାରେ ଅରୁଚି ହେବାରୁ ଚିକିତ୍ସକ ସପୁରୀ ଖାଇବାର ନିର୍ଦ୍ଦେଶ ଦେଲେ । କିନ୍ତୁ ଗାଁଗଣ୍ଡାରେ ସପୁରୀ ମିଳିବ କେଉଁଠି ? ଆମଜାଦ୍‌କୁ ଖବର ପଠାହେଲା । ସେ ନାନା ସ୍ଥାନରେ ଅନୁସନ୍ଧାନ କରି ସପୁରୀ ଆଣିଦେଲା ।

ଆମଜାଦ୍ ମା'ଙ୍କର ସ୍ନେହ ପାଇଲେ ସୁଦ୍ଧା ଚୋରୀ, ଡକାୟତି ଛାଡ଼ିପାରିଲା ନାହିଁ । ଜୟରାମବାଟୀରେ ଲୋକେ ତାକୁ ଭାରି ଡରୁଥିଲେ । କିନ୍ତୁ ଅନ୍ୟାନ୍ୟ ଗାଁରେ ଡକାୟତି ହେଲେ ମଧ୍ୟ ଆମଜାଦ୍‌ର ପ୍ରଭାବରୁ ଜୟରାମବାଟୀ ମୁକ୍ତ ଥିଲା । ଥରେ ଜେଲରୁ ଛାଡ଼ ପାଇ ଆମଜାଦ୍ ଘରକୁ ଫେରି ଦେଖିଲା ଯେ ବଗିଚାରେ ବହୁତ ଲାଉ ଫଳିଛି । ଗୋଟିଏ ଝୁଡ଼ିରେ ଲାଉ ପୂରାଇ ଜୟରାମବାଟୀରେ ମା'ଙ୍କ ନିକଟକୁ ଗଲା । ମା' ପଚାରିଲେ, ''ଅନେକ ଦିନରୁ ଭାବୁଥିଲି ତୁମର ଖବର ନାହିଁ କାହିଁକି ? କେଉଁଠି ଥିଲ ?'' ଆମଜାଦ୍ ଜଣାଇଲା, ''ଗାଈ ଚୋରୀ କରିଥିବାରୁ ସେ ଧରାପଡ଼ି ଜେଲରେ ଥିଲା । ତେଣୁ ଆସିବା ସମ୍ଭବ ହେଲା ନାହିଁ । ଶ୍ରୀମା' ସେସବୁ କଥାପ୍ରତି ଦୃଷ୍ଟି ନ ଦେଇ ସହାନୁଭୂତି ସହିତ କହିଲେ, ''ତାହା ମୁଁ ଭାବୁଥିଲି, ଆମଜାଦ୍ ଆସିଲା ନାହିଁ କାହିଁକି ?'' ମା' ଯେତେବେଳେ କଲିକତାରେ ଶେଷ ଅସୁସ୍ଥତାର ସମ୍ମୁଖୀନ, ସେତେବେଳେ ଦିନେ ଚିଠି ଆସିଲା ଯେ ଆମଜାଦ୍ ଡକାୟତି କରି କିଛି ଦିନ ଫେରାର୍ ରହିବା ପରେ ଧରା ପଡ଼ିଛି ।

ମା' ଶୁଣି କହିଲେ, ''ଓଃ ବାବା, ଦେଖିଲ ! ମୁଁ ଜାଣିଥିଲି ସେ ଡକାୟତି କରେ ।'' ଶୁଣାଯାଏ ଶ୍ରୀମା'ଙ୍କ ଦେହତ୍ୟାଗ ପରେ ଡକାୟତି କରିବା ସମୟରେ ଆମଜାଦ୍ ତରବାରିର ଆଘାତ ପାଇଥିଲା ଏବଂ ତା'ଫଳରେ ତା'ର ମୃତ୍ୟୁ ହୋଇଥିଲା ।

କେବଳ ବିଦ୍ୱାନ୍, ବୁଦ୍ଧିମତୀ, ଧନୀ ଭକ୍ତମାନଙ୍କ ପ୍ରତି ମାଆଙ୍କ ସ୍ନେହର ଦୃଷ୍ଟାନ୍ତ ଦେଲେ କେହି କେହି ହୁଏତ ଭାବିବେ, 'ତାହା ଏପରି କିଛି ଅସାଧାରଣ କଥା ନୁହେଁ ।' ତେଣୁ ଆମେ ଦସ୍ୟୁ ଆମଜାଦ୍‌ର ବିବରଣୀ ଟିକିଏ ବିସ୍ତାରିତ କରି ଲେଖିଲୁ । ଶ୍ରୀମା' ତାହାର ଚରିତ୍ର ଜାଣିଥିଲେ ଏବଂ ଏପରି ଦସ୍ୟୁଠାରୁ ନିଜର ଓ ଆଶ୍ରିତ ଲୋକମାନଙ୍କର ନିରାପତ୍ତା ଯେ ଅତି ଆବଶ୍ୟକ ତାହା ମଧ୍ୟ ଜାଣିଥିଲେ । ଅଥଚ ସେଥିପାଇଁ ସେ ଲୋକବଳ ବା ଅସ୍ତ୍ରବଳ ଉପରେ ନିର୍ଭର ନ କରି ଏକମାତ୍ର ଅସୀମ ସ୍ନେହଦ୍ୱାରା ଦସ୍ୟୁର ହୃଦୟ ଜୟ କରିଥିଲେ ।

ମାତାଠାକୁରାଣୀଙ୍କର ମମତା ଇତର ଜୀବମାନଙ୍କ ମଧ୍ୟରେ ବି ପ୍ରସାରିତ ଥିଲା । ଦିନେ ଗୋଟିଏ ଛୋଟ ବାଛୁରୀ ଅସ୍ଥିର ଭାବରେ ବୋବାଉଥିଲା । ସମସ୍ତଙ୍କର ଅନୁମାନ ତା'ର ପେଟରେ କଷ୍ଟ ହେଉଥିଲା । ଅଳ୍ପରେ ସନ୍ତୁଷ୍ଟ ଶ୍ରୀମା' ଗାଈ କିଣି ସଂସାରର ଜଞ୍ଜାଳ ବଢ଼ାଇବାର ପକ୍ଷପାତୀ ନ ଥିଲେ; କେବଳ ପ୍ରସ୍ତାବକର ମନୋବାଞ୍ଛା ପୂର୍ଣ୍ଣ କରିବା ପାଇଁ ସେ ଶେଷ ପର୍ଯ୍ୟନ୍ତ ସମ୍ମତି ଦେଇଥିଲେ । ଯାହା ହେଉ, ଶ୍ରୀମା' ବାଛୁରୀର ବୋବାଇବା ଶୁଣି ତା' ନିକଟକୁ ଆସିଲେ ଏବଂ ତାକୁ ନିଜ ସନ୍ତାନ ପରି ଜାବୁଡ଼ି ଧରିଲେ ଓ ତା'ର ନାଭି ଓ ପେଟ ଆଉଁଷିଦେବାକୁ ଲାଗିଲେ । ଏପରି କିଛି ସମୟ କରିବା ପରେ ବାଛୁରୀ ଶାନ୍ତ ହେଲା ଏବଂ ସମସ୍ତେ ନିଶ୍ଚିନ୍ତ ମନରେ ଘରକୁ ଫେରିଲେ ।

ମା' ଗୋଟିଏ ଶୁଆ ପୋଷିଥିଲେ । ତା' ନାଁ ଗଙ୍ଗାରାମ । ମା' ତାକୁ ନିଜ ହାତରେ ପ୍ରତିଦିନ ଗାଧୋଇ ଦେଉଥିଲେ, ଆହାର ଦେଉଥିଲେ, ପିଞ୍ଜରା ସଫା କରି ଦେଉଥିଲେ ଏବଂ ସ୍ନେହରେ ତା' ସହିତ କଥା କହୁଥିଲେ । ପ୍ରତିଦିନ ସକାଳେ ଓ ସଂଧ୍ୟାବେଳେ ତା' ପାଖକୁ ଆସି ମା' କହୁଥିଲେ, ''ବାବା ଗଙ୍ଗାରାମ, ପଢ଼ ତ !'' ଶୁଆ କହୁଥିଲା, ''ହରେ କୃଷ୍ଣ ହରେ ରାମ, କୃଷ୍ଣ କୃଷ୍ଣ ରାମ ରାମ ।'' ଶ୍ରୀମା'ଙ୍କ ମୁହଁରୁ ଶୁଣି ବ୍ରହ୍ମଚାରୀମାନଙ୍କର ନାମ ଗୁଡ଼ିକ ମଧ୍ୟ ସେ ଭଲଭାବରେ ଶିଖିଥିଲା । ପୁଣି ମଝିରେ ମଝିରେ ଡାକୁଥିଲା, ''ମା', ଓ ମା' !'' ମା' ସଙ୍ଗେ-ସଙ୍ଗେ ଉତ୍ତର ଦେଉଥିଲେ, ''ଯାଉଛି ବାବା ଯାଉଛି ।'' ଏହା କହି ସେ ବୁଟ ଇତ୍ୟାଦି ଖାଇବାକୁ ଦେଉଥିଲେ । ଶୁଆର ମା' ବୋଲି ଡାକିବାର ଅର୍ଥ ତାକୁ ଭୋକ ହେଉଛି ।

ବାଲ୍ୟାବସ୍ଥାରେ ମା'ଙ୍କ ନିକଟକୁ ଆସି ତାଙ୍କୁ ଅବିକଳ ନିଜର ଜନନୀରୂପେ ଦେଖିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏପରି ଅନୁଭୂତି ଯେ ସର୍ବଦା ହେଉଥିଲା ତାହା ନୁହେଁ, କିନ୍ତୁ ଏହି ଦୃଷ୍ଟିର ପ୍ରଭାବରୁ ଯେଉଁମାନଙ୍କର ଏପରି ଅନୁଭବ ହେଉଥିଲା,

ସେମାନଙ୍କ ଜୀବନର ଗତିପଥକୁ ତାହା ନିୟନ୍ତ୍ରିତ ଓ ପରିବର୍ତ୍ତିତ କରୁଥିଲା । ସ୍ୱାମୀ ମହାଦେବାନନ୍ଦ ଯେତେବେଳେ ଜୟରାମବାଟୀରେ ଶ୍ରୀମା'ଙ୍କୁ ଦେଖିଲେ, ସେତେବେଳେ ତାଙ୍କର ମନେହେଲା ଯେପରିକି ତାଙ୍କର ଜନନୀ ସମ୍ମୁଖରେ ଉପସ୍ଥିତ । ଶ୍ରୀପଞ୍ଚାନନ ଘୋଷ ବାଲ୍ୟକାଳରେ ଶ୍ରୀମା'ଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ପ୍ରଣାମ କରିବାକୁ ଯାଇ ଦେଖିଲେ, ମା'ଙ୍କର ପାଦ ଓ ସୁନାଖଡୁ ପରିହିତ ହାତ ଦୁଇଟି ଅବିକଳ ତାଙ୍କ ମା'ଙ୍କ ପରି । ଅତୀତର ସ୍ମୃତି ତାଙ୍କୁ ବିହ୍ୱଳ କଲା । ସେ ମା'ଙ୍କ ଆକର୍ଷଣରେ ଅଜ୍ଞାତସାରରେ ଗୋଟିଏ ଗୋଟିଏ ପାଦ ଅଗ୍ରସର ହୋଇ ମା'ଙ୍କ ସମ୍ମୁଖକୁ ଆସିଲେ—ଚରଣରୁ ମା'ଙ୍କ ମୁହଁଯାଏ ଚାହିଁ ଦେଖିଲେ । ଶ୍ରୀମା' ତାଙ୍କର ଭାବାନ୍ତର ଦେଖି ସସ୍ନେହରେ କହିଲେ, ''ଆସ ବାବା ! ଆସ ।'' ପଞ୍ଚାନନ ସିଧା ମା'ଙ୍କ କୋଳ ନିକଟକୁ ଆଗେଇ ଗଲେ ଏବଂ ମା' ତାଙ୍କ ପିଠି ଆଉଁଶି ଦେଲେ । ପଞ୍ଚାନନ ସେ ଆନନ୍ଦ ସ୍ପର୍ଶରେ ଶିହରି ଉଠିଲେ । ତାଙ୍କର ମନେହେଲା ବହୁବର୍ଷ ପରେ ନିଜ ଜନନୀଙ୍କ ସହିତ ସେ ମିଳିତ ହୋଇଛନ୍ତି ।

ଜଣେ ଭକ୍ତ ଶ୍ରୀମା'ଙ୍କୁ ନିଜର ଜନନୀ ବୋଲି ଅନୁଭବ କଲେ ଏବଂ ଛୋଟିଆ ପିଲାଟି ପରି ଜିଦ୍ କରିବାକୁ ଲାଗିଲେ ଯେ ସେ ମା'ଙ୍କ ପାଖରେ ବସି ଖାଇବେ । କେବଳ ସେତିକି ନୁହେଁ, ମା' ତାଙ୍କୁ ନିଜ ହାତରେ ନ ଖୁଆଇଲେ ସେ ଖାଇବେ ନାହିଁ । ମା' ତାଙ୍କର ଇଚ୍ଛା ପୂରଣ କଲେ ।

ସ୍ୱାମୀ ପ୍ରଶାନ୍ତାନନ୍ଦ ଶ୍ରୀମା'ଙ୍କର ଛବି ଦେଖି ଅନୁଭବ କଲେ ଯେ ତାଙ୍କର ଜନନୀ ଓ ଶ୍ରୀମା' ଅଭିନ୍ନ । ଜୟରାମବାଟୀକୁ ଯାଇ ଯେତେବେଳେ ସେ ମା'ଙ୍କ ସହିତ ଦେଖା କଲେ, ସେତେବେଳେ ତାଙ୍କର ବୟସ ଅତି କମ୍ । ପ୍ରତିଦିନ ନିକଟବର୍ତ୍ତୀ ଗ୍ରାମରୁ ଡାକ୍ତର ଘୋଡ଼ାରେ ଚଢ଼ି ମା'ଙ୍କୁ ଦେଖିବା ପାଇଁ ଆସୁଥିଲେ । ପ୍ରଶାନ୍ତାନନ୍ଦ ଜିଦ୍ କଲେ ଯେ ସେ ତାଙ୍କର ଘୋଡ଼ାରେ ଚଢ଼ିବେ । ଘୋଡ଼ାଟା ଭାରୀ ଦୁଷ୍ଟ, ତେଣୁ ଶ୍ରୀମା' ଏହା ଶୁଣି ଆପତ୍ତି କଲେ । ବୀରଙ୍କ ପରି କଥା କହି ପ୍ରଶାନ୍ତାନନ୍ଦ ଶ୍ରୀମା'ଙ୍କର ଅନୁମତି ନେଲେ ଓ ଡାକ୍ତରଙ୍କୁ ରାଜି କରାଇ ଘୋଡ଼ାରେ ଚଢ଼ି ବସିଲେ । କିନ୍ତୁ ଅଶାନ୍ତ ଘୋଡ଼ାକୁ ସମ୍ଭାଳି ନ ପାରି କଣ୍ଟାବଣ ଓ ଜଙ୍ଗଲ ଭିତରୁ ଯେତେବେଳେ କୌଣସି ପ୍ରକାରେ ଫେରିଲେ, ସେତେବେଳେ ତାଙ୍କର ଦେହ ରକ୍ତାକ୍ତ ଓ ବସ୍ତ୍ର ଛିନ୍ନଭିନ୍ନ । ଶ୍ରୀମା' ଏତେ ସମୟ ଧରି ଆତଙ୍କିତ ହୋଇ ପଥ ଚାହିଁ ବସିଥିଲେ । ବର୍ତ୍ତମାନ ପୁଅ ଫେରି ଆସିବାରୁ ତାଙ୍କୁ ନିଷେଧ ଅମାନ୍ୟ କରିଥିବା ଯୋଗୁଁ ଧମକାଇବାକୁ ଲାଗିଲେ ।

ଦିନେ ଜଣେ ଯୁବକ ଅକସ୍ମାତ୍ ଆସି ଶ୍ରୀମା'ଙ୍କ ସହିତ ଦେଖା କରିବାକୁ ଚାହିଁଲା । ବ୍ରହ୍ମଚାରୀ ତାଙ୍କୁ ଶ୍ରୀମା'ଙ୍କ ନିକଟକୁ ନେଇଗଲେ । ପ୍ରଣାମ କରିସାରି ମା'ଙ୍କର ଦୁଇଗୋଡ଼ ଧରି ସେ ନିଜ ଆଡ଼କୁ ଟାଣିବାକୁ ଲାଗିଲେ । ତାହାର ଇଚ୍ଛା

ଚରଣଦ୍ୱୟକୁ ସେ ବକ୍ଷରେ ଧାରଣ କରିବ । ସୌଭାଗ୍ୟକ୍ରମେ ମା' ସେତେବେଳେ ଗୋଟିଏ ଖୁଣ୍ଟ ଧରି ଛିଡ଼ା ହୋଇଥିଲେ ନ ହେଲେ ପଡ଼ିଯାଇଥାଆନ୍ତେ । ବ୍ରହ୍ମଚାରୀ କ୍ଷିପ୍ର ହସ୍ତରେ ଯୁବକଙ୍କୁ ଧରି ବାହାରକୁ ନେଇଗଲେ ।

ଜଣେ ଝିଅ ଶ୍ରୀମା'ଙ୍କ ନିକଟରୁ ବିଦାୟ ନେବା ସମୟରେ ତାଙ୍କ ଗୋଡ଼ର ବୁଢ଼ା ଆଙ୍ଗୁଠିକୁ କାମୁଡ଼ି ପକାଇଲା । ମା' ଚିତ୍କାର କରି କହିଲେ, ''ଓ ମା, ଏ କି ପ୍ରକାର ଭକ୍ତି ! ପ୍ରଣାମ କରିବୁ ତ କର । ଆଙ୍ଗୁଠିଟା କାମୁଡ଼ି ଧରିଛୁ କାହିଁକି ?'' ଝିଅ କହିଲା, ''ଆପଣ ମନେ ରଖିବେ ବୋଲି ।'' ଆଉ ଦିନେ ଜଣେ ଭକ୍ତ ମା'ଙ୍କ ଗୋଡ଼ ଧରି କହିଲେ, ''ମା', ଆପଣ କଥା ଦିଅନ୍ତୁ, ଅନ୍ତତଃ ମୁଁ ମରିବା ସମୟରେ ଆପଣ ମୋତେ ଦେଖା ଦେବେ ।'' ମା' କହିଲେ, ''ଆଚ୍ଛା ଠାକୁରଙ୍କୁ କହିବି, ସେ ଯେପରି ଦର୍ଶନ ଦିଅନ୍ତି ।'' ଭକ୍ତ କିନ୍ତୁ ଛାଡ଼ିଲେ ନାହିଁ; ଶେଷରେ ଉପାୟାନ୍ତର ନ ଦେଖି ମା' କହିଲେ, ''ଆଚ୍ଛା ବାବା, ତାହା ହେବ ।''

ଦିନେ ସକାଳେ ଉଦ୍‌ବୋଧନ ଭବନରେ ଜଣେ ଭକ୍ତ ଶ୍ରୀମା'ଙ୍କ ପାଦରେ ଅର୍ଘ୍ୟ ନିବେଦନ କରିବାକୁ ଚାହିଁଲେ । ଅପରିଚିତ ଲୋକ ଦେଖି ଶ୍ରୀମା' ଚାଦର ଘୋଡ଼ାଇ ହୋଇ ଖଟରେ ବସିଲେ । ଭକ୍ତ ଅଞ୍ଜଳି ଦେଇ ପୂଜା କରିବାକୁ ବସିଲେ ଏବଂ ବିଧି ଅନୁଯାୟୀ ନ୍ୟାସ ଓ ପ୍ରାଣାୟାମ କରିବାକୁ ଲାଗିଲେ । ଗରମରେ ଶ୍ରୀମା' ଘର୍ମାକ୍ତ ହୋଇ ବସି ରହିଲେ । କିନ୍ତୁ କିଛି କହିଲେ ନାହିଁ । ଅନେକ ସମୟ ପରେ ଗୋଲାପ-ମା' ଫେରି ଆସି ଏ କାଣ୍ଡ ଦେଖି ଭକ୍ତଙ୍କୁ ଧରି ଟାଣି ଉଠାଇଲେ ଓ ଧମକାଇ କହିଲେ, ''କ'ଣ କାଠର ବିଗ୍ରହ ମନେ କରିଛ ଯେ ତାଙ୍କୁ ନ୍ୟାସ ପ୍ରାଣାୟାମ କରି ପ୍ରାଣପ୍ରତିଷ୍ଠା କରିବ ?''

ବିଭିନ୍ନ ରୁଚିର ଭକ୍ତ ମା'ଙ୍କ ନିକଟରେ ବିଭିନ୍ନ ପ୍ରକାରର ଅଳି କରୁଥିଲେ ଏବଂ କଳ୍ପତରୁସଦୃଶ ବାଞ୍ଛାପୂର୍ଣ୍ଣକାରିଣୀ ଶ୍ରୀମା' ସେହି ଅବୋଧ ଶିଶୁମାନଙ୍କର ସକଳ ଇଚ୍ଛା ଅମ୍ଳାନ ବଦନରେ ପୂରଣ କରୁଥିଲେ । ଏହି ଧରଣର ଅଧିକାଂଶ ଘଟଣା ପ୍ରାୟ ଜୟରାମବାଟୀରେ ଘଟୁଥିଲା; କାରଣ ଉଦ୍‌ବୋଧନରେ ସାଧୁମାନଙ୍କର ତୀକ୍ଷ୍ଣ ଦୃଷ୍ଟି ଏଡ଼ାଇ ଯିଏ ସିଏ ସମୟ ଅସମୟରେ ଶ୍ରୀମା'ଙ୍କ ନିକଟକୁ ଯାଇପାରୁ ନ ଥିଲେ । ଜୟରାମବାଟୀରେ ସେପରି ନିୟମ କଟକଣା ନ ଥିଲା । ଶ୍ରୀମା' ସେଠାରେ ପଲ୍ଲୀର ସ୍ୱାଧୀନତା ଯେପରି ସମ୍ପୂର୍ଣ୍ଣ ଉପଭୋଗ କରୁଥିଲେ, ଭକ୍ତମାନେ ମଧ୍ୟ ସେହିପରି ନଗରର କୃତ୍ରିମ ଭବ୍ୟତା ବାହାରେ ତାଙ୍କୁ ପାଉଥିଲେ । ତେଣୁ ସେମାନେ ଖବର ରଖୁଥିଲେ ଶ୍ରୀମା' କେବେ ଗାଁକୁ ଯିବେ ଏବଂ ସୁଯୋଗ ବୁଝି ପଥର ସବୁ କଷ୍ଟ ଉପେକ୍ଷା କରି ସେମାନେ ସେଠାରେ ଉପସ୍ଥିତ ହେଉଥିଲେ ।

ଶ୍ରୀମା'ଙ୍କର କଲିକତା ଓ ଜୟରାମବାଟୀରେ ରହିବା ଭିତରେ ଗୋଟିଏ ବିଶେଷ ପାର୍ଥକ୍ୟ ଥିଲା । କଲିକତାରେ ଭକ୍ତମାନଙ୍କର ତତ୍ତ୍ୱାବଧାନ ଓ ଦୈନନ୍ଦିନ

କର୍ମର ଭାର ସାଧୁମାନଙ୍କ ଉପରେ ଓ ଗୋଲାପ-ମା' ଇତ୍ୟାଦିଙ୍କ ଉପରେ ନ୍ୟସ୍ତ ଥିଲା । କିନ୍ତୁ ଜୟରାମବାଟୀରେ ସେ ନିଜେ ଗୃହକର୍ତ୍ତ୍ରୀ । ସୁତରାଂ ସବୁ ଦାୟିତ୍ୱ ତାଙ୍କ ଉପରେ । ଭକ୍ତମାନେ ଆସୁଥିଲେ ଦର୍ଶନ କରିବା ପାଇଁ କିମ୍ବା ଦୀକ୍ଷା ନେବା ପାଇଁ । କିନ୍ତୁ ଶ୍ରୀମା'ଙ୍କୁ ସେମାନଙ୍କର ରହିବା, ଖାଇବା, ସୁଖସୁବିଧା ପ୍ରଭୃତି ବିଷୟରେ ଲକ୍ଷ୍ୟ ରଖିବାକୁ ପଡୁଥିଲା ଓ ସେହି ଅନୁଯାୟୀ ବ୍ୟବସ୍ଥା କରିବାକୁ ମଧ୍ୟ ପଡୁଥିଲା । ଏହି ଭକ୍ତ ସେବା ତାଙ୍କ ଜୀବନରେ ଏକ ସ୍ୱାଭାବିକ ଦୈନନ୍ଦିନ ଘଟଣା । କିନ୍ତୁ ଆମେ ବିସ୍ମୟ ସହକାରେ ଭାବୁ, ଯିଏ ସହସ୍ର-ଭକ୍ତବନ୍ଦିତା, ଯାହାଙ୍କର ଦେହମନକୁ ଅବଲମ୍ବନ କରି ଏକ ମହାଶକ୍ତି ଉଦ୍‌ବୋଧିତ ହୋଇଛି, ତାଙ୍କ ଜୀବନ କେତେ ଅନାଡ଼ମ୍ବର ଓ କର୍ମବହୁଳ ଥିଲା ! ପଲ୍ଲୀର ସରଳତା ସହିତ ଜନନୀଙ୍କର ସନ୍ତାନବାତ୍ସଲ୍ୟ ମିଶ୍ରିତ ହୋଇ ସେହି ଜୀବନକୁ ଅତ୍ୟନ୍ତ ଚିତ୍ତାକର୍ଷକ କରିଛି । ବାସ୍ତବ ନିକଟରେ କଳ୍ପନା ପରାଜିତ ।

ଜୟରାମବାଟୀରେ ଜଣେ ବାଳକଭକ୍ତଙ୍କୁ (ସ୍ୱାମୀ ଗିରିଜାନନ୍ଦ) ଶ୍ରୀମା' କହିଥିଲେ, ''ଦେଖ, ଠାକୁରଙ୍କର ପ୍ରାୟ ସମାଧି ହେଉଥିଲା । ଦିନେ ଅନେକ ସମୟ ପରେ ସମାଧି ଭାଙ୍ଗିବାରୁ ମୋତେ କହିଲେ, 'ମୁଁ ଗୋଟିଏ ଦେଶକୁ ଯାଇଥିଲି—ସେଠାରେ ଲୋକମାନେ ସବୁ ଧଳା ଧଳା । ଆହା ସେମାନଙ୍କର କିପରି ଭକ୍ତି !' ସେତେବେଳେ କଅଣ ବୁଝିପାରିଥିଲି ଯେ, ଓଲି ବୁଲ୍ ଇତ୍ୟାଦି ସବୁ ଭକ୍ତ ହେବେ ! ମୁଁ ଅବାକ୍ ହେଲି, ମଣିଷ ଧଳା ଧଳା କାହିଁକି ହେବେ ?'' ଓଲି ବୁଲ୍ ସ୍ୱାମୀ ବିବେକାନନ୍ଦଙ୍କର ଶିଷ୍ୟା କଲିକତାରେ ଅବସ୍ଥାନ କାଳରେ ଶ୍ରୀମା'ଙ୍କୁ ଦର୍ଶନ କରିଥିଲେ ।

ବିଦେଶିନୀ ଭଗିନୀ ନିବେଦିତାଙ୍କୁ ଶ୍ରୀମା' ନିଜର କନ୍ୟା ପରି ସ୍ନେହ କରୁଥିଲେ ଏବଂ ସେ ଆସିଲେ ତାଙ୍କୁ ପାଖରେ ବସାଇ କୁଶଳପ୍ରଶ୍ନାଦି କରୁଥିଲେ । ଉଭୟେ ଉଭୟଙ୍କର ଭାଷା ଜାଣି ନ ଥିଲେ; କିନ୍ତୁ ଭାବର ଆଦାନପ୍ରଦାନରେ କୌଣସି ଅସୁବିଧା ହେଉ ନ ଥିଲା; କାରଣ ସ୍ନେହର ପ୍ରକାଶ କେବଳ ଭାଷା ଉପରେ ନିର୍ଭର କରେ ନାହିଁ । ଦିନେ ଶ୍ରୀଶ୍ରୀମା' ଗୋଟିଏ ପଶମରେ ତିଆରି ଛୋଟ ପଙ୍ଖା ଦେଇ କହିଲେ, ''ମୁଁ ଏଇଟି ତୁମ ପାଇଁ କରିଛି ।'' ନିବେଦିତା ତାହା ପାଇ ମୁଣ୍ଡରେ ଲଗାଇ କହିଲେ, ''କି ସୁନ୍ଦର, କି ଚମତ୍କାର !'' ଶ୍ରୀମା' କହିଲେ, ''ସାମାନ୍ୟ ଜିନିଷଟିଏ ପାଇ ତା'ର କେତେ ଆହ୍ଲାଦ ! ଆହା ! କିପରି ସରଳ ବିଶ୍ୱାସ ! ଯେପରିକି ସାକ୍ଷାତ୍ ଦେବୀ ! ନରେନ୍‌କୁ କେତେ ଭକ୍ତି କରେ ! ନରେନ୍ଦ୍ର ଏ ଦେଶରେ ଜନ୍ମିଛି ବୋଲି ସର୍ବସ୍ୱ ଛାଡ଼ି ମନ ପ୍ରାଣ ଦେଇ ତା'ର କାମ କରୁଛି । କିପରି ଗୁରୁଭକ୍ତି ! ଏ ଦେଶକୁ କେତେ ଭଲ ପାଏ !'' ଭଗିନୀ ନିବେଦିତା ଶ୍ରୀମା'ଙ୍କୁ ଜର୍ମାନ୍ ସିଲ୍‌ଭରରେ ନିର୍ମିତ ଗୋଟିଏ ଡବା ଦେଇଥିଲେ; ସେଥିରେ ଶ୍ରୀମା'ଠାକୁରଙ୍କ କେଶ ରଖୁଥିଲେ । ଶ୍ରୀମା' କହୁଥିଲେ, ''ପୂଜା କରିବା

ସମୟରେ ଏହି ଡବାଟିକୁ ଦେଖିଲେ ନିବେଦିତା କଥା ମନେପଡ଼େ ।'' ଆଉ କହୁଥିଲେ, ''ନିବେଦିତା କହିଥିଲା, 'ପୂର୍ବ ଜନ୍ମରେ ମୁଁ ହିନ୍ଦୁ ଥିଲି । ଠାକୁରଙ୍କର କଥା ସେ ଦେଶରେ ପ୍ରଚାର ହେବ ବୋଲି ସେଠାରେ ଜନ୍ମିଛି' ।'' ଶ୍ରୀମା' ତାଙ୍କ ସନ୍ତାନମାନଙ୍କର ଆଦରରେ ଦେଇଥିବା ଜିନିଷଗୁଡ଼ିକୁ ଅତି ଯତ୍ନସହକାରେ ରକ୍ଷା କରୁଥିଲେ; କହୁଥିଲେ, ''ଜିନିଷର ଆଉ କଅଣ ଦାମ୍, ସ୍ମୃତିର ହିଁ ଦାମ୍ ।'' ତାଙ୍କ ବାକ୍ସରୁ ଲୁଗାପଟା ବାହାର କରି ଖରାରେ ଦେବା ସମୟରେ ସ୍ୱାମୀ ଗୌରୀଶ୍ୱରାନନ୍ଦ ଖଣ୍ଡିଏ ଜୀର୍ଣ୍ଣ ଏଣ୍ଡି ଚାଦର ଲକ୍ଷ୍ୟ କରି କହିଲେ, ''ମା, ଏଇଟା ରଖି କ'ଣ ହେବ ? ଏହାକୁ ଫୋପାଡ଼ି ଦେବି ?'' ମା' କହିଲେ, ''ନା ବାବା, ସେହି ଚାଦରଟି ନିବେଦିତା କେତେ ଆଦର କରି ମୋତେ ଦେଇଥିଲା; ତାହା ସେପରି ଥାଉ ।'' ସେହି ଛିଣ୍ଡା ଏଣ୍ଡି ଚାଦରରେ କଳା ଜୀରା ଦେଇ ସାଇତି ରଖିଲେ ଓ କହିଲେ, ''ଏଇ ଚାଦରଟିକୁ ଦେଖିଲେ ନିବେଦିତାର କଥା ମନରେ ଜାଗିଉଠେ । କିପରି ଝିଅ ଥିଲା ସେ ! ମୋ ସହିତ ପ୍ରଥମେ ପ୍ରଥମେ କଥା କହିପାରୁ ନ ଥିଲା । ପିଲାମାନେ ବୁଝାଇ ଦେଉଥିଲେ । ପରେ ବଙ୍ଗଳା କହିବା ଶିଖିନେଲା । ମୋ ମା'ଙ୍କୁ ଖୁବ୍ ଭଲ ପାଉଥିଲା ।'' ନିବେଦିତାର ଦେହତ୍ୟାଗ ପରେ ଭଗିନୀ କ୍ରିଷ୍ଟୀନ୍ ଦିନେ ସଂଧ୍ୟାବେଳେ ମା'ଙ୍କ ଘରକୁ ଆସିଲେ । ମା' ନିବେଦିତା ସହିତ କ୍ରିଷ୍ଟୀନ୍‌ର ସଂପର୍କ ବିଷୟ ଶ୍ରୀମତୀ ସୁଧୀରାଦେବୀଙ୍କୁ କହିଲେ, ''ଆହା ! ଦି ଜଣ ଏକାଠି ଥିଲେ, ବର୍ତ୍ତମାନ ଏକୁଟିଆ ରହିଲେ କେତେ କଷ୍ଟ ହେବ । ତା' ପାଇଁ ଆମର ପ୍ରାଣ କେମିତି ଛଟପଟ ହେଉଛି, ତୁମର ତା'ଠାରୁ କେତେ ବେଶୀ ନ ହେଉଥିବ ! କିପରି ଝିଅ ଥିଲା ! ତା'ପାଇଁ ଆଜି କେତେ ଲୋକ କାନ୍ଦୁଛନ୍ତି !' ଏ କଥା କହି ମା' କାନ୍ଦିବାକୁ ଲାଗିଲେ ।

ମା'ଙ୍କ ସ୍ନେହ ଅନ୍ୟକୁ କିପରି ଆତ୍ମହରା କରୁଥିଲା, ତାହା ଶ୍ରୀମତୀ ମ୍ୟାକ୍‌ଲାଉଡ୍ ଓ ନିବେଦିତାଙ୍କ ବ୍ୟବହାର ଏବଂ ଚିଠିପତ୍ର ମାଧ୍ୟମରେ ଆମେ ବୁଝିଥାଉ । ମ୍ୟାକ୍‌ଲାଉଡ୍ ସ୍ୱାମୀଜୀଙ୍କର ଶିଷ୍ୟା । ଆଜୀବନ ଅବିବାହିତ ରହି ସେ ନାନାଭାବରେ ଦେଶ ବିଦେଶରେ ସ୍ୱାମୀଜୀଙ୍କର ବାଣୀ ପ୍ରଚାର କରିଥିଲେ । ତାଙ୍କ ଭଉଣୀ ମିସେସ୍ ଲେଗେଟ୍ ଓ ତାଙ୍କୁ ସ୍ୱାମୀଜୀ ଯଥାକ୍ରମେ ଜୟା ଓ ବିଜୟା ନାମ ଦେଇଥିଲେ । ସ୍ୱାମୀ ନିର୍ଭୟାନନ୍ଦ ଦିନେ ମ୍ୟାକ୍‌ଲାଉଡ୍‌ଙ୍କୁ ନୌକାଯୋଗେ ବେଲୁଡ଼ମଠରୁ ଉଦ୍‌ବୋଧନକୁ ନେଇ ଯାଇଥିଲେ । ସଂଧ୍ୟାବେଳେ ବେଲୁଡ଼ମଠକୁ ଫେରି ମ୍ୟାକ୍‌ଲାଉଡ୍ ଯେତେବେଳେ ଅତିଥିଭବନକୁ ଯିବାକୁ ବାହାରିଲେ, ସେତେବେଳେ ଜଣେ ବ୍ରହ୍ମଚାରୀ ଲଣ୍ଠନ ନେଇ ପଥ ଦେଖାଇବାକୁ ପଛେ ପଛେ ଆସିଲେ । ବ୍ରହ୍ମଚାରୀ ଶୁଣିଲେ ମ୍ୟାକ୍‌ଲାଉଡ୍ ଭାବର ପ୍ରାବଲ୍ୟରେ ମନକୁ ମନ ଅସ୍ପଷ୍ଟ ଭାବରେ କହୁଛନ୍ତି, ''ମୁଁ ତାଙ୍କୁ ଦେଖିଛି ।'' ଅକସ୍ମାତ ବ୍ରହ୍ମଚାରୀଙ୍କୁ ନିକଟରେ ପାଇ ସେ ତାଙ୍କ କାନରେ ଆସ୍ତେ ଆସ୍ତେ କହିଲେ, ''ପବିତ୍ରତାସ୍ୱରୂପିଣୀ ମା' !

ମୁଁ ତାଙ୍କୁ ଦେଖୁଛି ।'' ଦୁଇଶହ ଗଜ ରାସ୍ତା ସେ ଭାବର ଉଲ୍ଲାସରେ ଚାଲିଲେ— କେଉଁଠି ଗୋଡ଼ ପଡୁଛି ହୋସ୍ ନାହିଁ । କେବଳ ମଝିରେ ମଝିରେ 'ମା' ଶବ୍ଦ ଉଚ୍ଚାରଣ କରୁଥାନ୍ତି ।

କେମ୍ବ୍ରିଜ(ଆମେରିକା)ରୁ ମା'ଙ୍କ ନିକଟକୁ ପ୍ରେରିତ ପତ୍ରରେ ନିବେଦିତା ଲେଖୁଛନ୍ତି (ଡିସେମ୍ବର ୧୯୧୦)—''ମା' ! ଆଜି ଖୁବ୍ ସକାଳୁ ମୁଁ ଗୀର୍ଜାକୁ ଯାଇଥିଲି । ସେଠାରେ ଯେତେବେଳେ ସମସ୍ତେ ଯୀଶୁମାତା ମେରୀଙ୍କ କଥା ଭାବୁଥିଲେ, ସେତେବେଳେ ହଠାତ୍ ତୁମ କଥା ମୋର ମନେ ପଡ଼ିଲା, ତୁମର ମନମୁଗ୍ଧକାରୀ ମୁହଁଟି । ତୁମର ସ୍ନେହପୂର୍ଣ୍ଣ ଦୃଷ୍ଟି, ତୁମର ଶୁଭ୍ର ବସନ, ତୁମ ହାତର ବାଲା—ମୁଁ ସବୁ ପ୍ରତ୍ୟକ୍ଷ ଦେଖିବାକୁ ପାଇଲି ।...ସ୍ନେହମୟୀ ମା' ମୋର ! ତୁମର ସ୍ନେହରେ ଆମପରି ଉଚ୍ଛ୍ୱାସ ଓ ଉଗ୍ରତା ନାହିଁ; ଏ ଜଗତର ଭଲପାଇବା ତ ତାହା ନୁହେଁ, ସ୍ନିଗ୍ଧ ଶାନ୍ତି ପରି ତାହା ସମସ୍ତଙ୍କର କଲ୍ୟାଣ କରେ; ଏହାଦ୍ୱାରା କାହାର କୌଣସି ଅକଲ୍ୟାଣ ହୋଇ ନ ପାରେ—ଲୀଳାଚଞ୍ଚଳ, ସୁନେଲୀ ଆଲୁଅର ଆଭା ଯେପରି !''

ଶ୍ରୀମା' ଅନେକ କ୍ଷେତ୍ରରେ ଏହି ବିଦେଶିନୀମାନଙ୍କର ଆଚାର ବ୍ୟବହାର ମଧ୍ୟ ଅନୁକରଣ କରୁଥିଲେ । ଦିନେ ଅପରାହ୍ନରେ ଜଣେ ଅପରିଚିତା ମେମ୍ ସାହେବ ମା'ଙ୍କ ସହିତ ଦେଖା କରିବାରୁ ମା' ''ଆସ'' କହି ସାଦରେ କରମର୍ଦ୍ଦନ କରିବା ପାଇଁ ହସ୍ତ ପ୍ରସାରିତ କଲେ । ତା'ପରେ ମହିଳାଙ୍କ ଓଠରେ ହାତ ଦେଇ ଭାରତୀୟ ରୀତିରେ ଚୁମ୍ବନ ଦେଲେ । ସେହି ମହିଳାଙ୍କ କନ୍ୟା ଅସୁସ୍ଥ, ତେଣୁ ସେ ଶ୍ରୀମା'ଙ୍କର ଆଶୀର୍ବାଦ ଭିକ୍ଷା କରିବାକୁ ଆସିଛନ୍ତି । ମା' ପ୍ରାଣ ଖୋଲି ଆଶୀର୍ବାଦ କଲେ ଏବଂ ଗୋଟିଏ ପ୍ରସାଦୀ ବିଲ୍ୱପତ୍ର ଓ ପଦ୍ମଫୁଲ ଦେଇ କହିଲେ, ''ତୁମ କନ୍ୟାର ମସ୍ତକରେ ସ୍ପର୍ଶ କରାଇଦେବ ।'' ମହିଳା କୃତଜ୍ଞ ହୃଦୟରେ ଧନ୍ୟବାଦ ଦେଇ ବିଦାୟ ନେଲେ । କନ୍ୟା ଭଲ ହୋଇଗଲା । ସେ ମା'ଙ୍କ ନିକଟକୁ ଦର୍ଶନ ପାଇଁ ପ୍ରାୟ ଆସୁଥିଲେ ଓ ଦୀକ୍ଷା ମଧ୍ୟ ନେଇଥିଲେ । ମା' ତାଙ୍କୁ ଅତି ସ୍ନେହ କରୁଥିଲେ ।

## ଜ୍ଞାନଦାୟିନୀ

ଆଲୋଚନାର ସୁବିଧା ପାଇଁ ଯଦିଓ ଆମେ ଶ୍ରୀମା'ଙ୍କର ଚରିତ୍ରକୁ ବିବିଧଭାବରେ ବିଭକ୍ତ କରି ପୃଥକ୍ ଅଧ୍ୟାୟ ସୃଷ୍ଟି କରିଛୁ, ତଥାପି ଏହା ସ୍ମରଣ ରଖିବାକୁ ହେବ ଯେ, ଏହି ଆଲୋଚନାଗୁଡ଼ିକ ତାଙ୍କ ଦେହମନକୁ ଅବଲମ୍ବନ କରି ପ୍ରକାଶିତ ଏକ ଅଖଣ୍ଡ ମହାଶକ୍ତିର ଏକ ବିଚିତ୍ର ରୂପ । ପ୍ରକୃତ ପକ୍ଷରେ ଏହି ଅଖଣ୍ଡ ଶକ୍ତିକୁ ବିଶ୍ଳେଷଣ କରିବା ସମ୍ଭବ ନୁହେଁ । ଆମର ସସୀମ ବୁଦ୍ଧି ଅସୀମକୁ ଧାରଣ କରିପାରେ ନାହିଁ ଏବଂ ଆମର ଧାରଣାଶକ୍ତିର ଅକ୍ଷମତାବଶତଃ ଆମେ ଶ୍ରୀମା'ଙ୍କୁ

ଜନନୀ, ଗୁରୁ, ଦେବୀ ଇତ୍ୟାଦି ରୂପରେ ଭାବିବାକୁ ଚେଷ୍ଟା କରୁ । କିନ୍ତୁ କିଛିକ୍ଷଣ ଚିନ୍ତା କଲେ ଆମେ ବୁଝିପାରିବା ଯେ, ଏହି ଅଲୌକିକ ଜୀବନରେ ଗୁରୁ, ଦେବୀ ଓ ମାତା—ଏହି ତ୍ରିବିଧ ରୂପ ଅଙ୍ଗାଙ୍ଗୀ ଭାବରେ ସଂଶ୍ଳିଷ୍ଟ । ଯେତେବେଳେ ଆମେ ତାଙ୍କୁ ଜନନୀରୂପରେ ପାଉ, ସେତେବେଳେ ଆମ ସମ୍ମୁଖରେ ଫୁଟି ଉଠେ ତାଙ୍କର ଅମୋଘ ଜ୍ଞାନଦାୟିନୀ ଶକ୍ତି; ଯେତେବେଳେ ତାଙ୍କୁ ଦେଖିବାକୁ ଚାହୁଁ ଗୁରୁରୂପେ, ସେତେବେଳେ ସେ ମାତୃରୂପରେ ଆମମାନଙ୍କୁ କୋଳକୁ ଟାଣି ନିଅନ୍ତି; ପୁନଶ୍ଚ ଗୁରୁ ଓ ଜନନୀରୂପେ ତାଙ୍କୁ ଚିନ୍ତା କରିବାକୁ ଯାଇ ଦେଖୁ, ସେ ସବୁକିଛିର ଊର୍ଦ୍ଧ୍ୱରେ, ଦେବୀରୂପେ ସ୍ୱ-ମହିମାରେ ପ୍ରତିଷ୍ଠିତ । ଅତଏବ ମାନବବୁଦ୍ଧିର ସସୀମତାକୁ ସ୍ୱୀକାର କରି ଆମମାନଙ୍କୁ ଏହି ଅଲୌକିକ ଚରିତ୍ରର ବିଶ୍ଳେଷଣରେ ନିଯୁକ୍ତ ହେବାକୁ ପଡ଼ିବ । ତାଙ୍କ ଭିତରେ ଗୁରୁଭାବର କ୍ରମବିକାଶ ଆମେ ପୂର୍ବରୁ ଆଲୋଚନା କରି ଦେଖିଛୁ । ବର୍ତ୍ତମାନ ଅଧ୍ୟାୟରେ ତାହାର ପୂର୍ଣ୍ଣ ବିକାଶ ସମ୍ବନ୍ଧରେ ଆଲୋଚନା କରିବା ।

ଆମେ ଯେଉଁ ଗୁରୁଶକ୍ତିର ଅନୁଧ୍ୟାନରେ ଅଗ୍ରସର ହୋଇଛୁ, ମନେ ରଖିବାକୁ ହେବ, ତାହା କୃପା-ଅବତୀର୍ଣ୍ଣା ଆଦ୍ୟାଶକ୍ତିଙ୍କର ସ୍ନେହଘନମୂର୍ତ୍ତି । ଜାଗତିକ ଗୁରୁଶିଷ୍ୟ ଦୃଷ୍ଟିରୁ ଆମେ ବୁଝିବାକୁ ଚେଷ୍ଟା କଲେ ବ୍ୟର୍ଥ ହେବୁ ମାତ୍ର । ପ୍ରକୃତ ଗୁରୁ ଦୁଃଖମୋଚନକାରୀ । ସେ କରୁଣାବଶତଃ ଶିଷ୍ୟର ସମସ୍ତ ଭାର ଗ୍ରହଣ କରନ୍ତି । ଶିଷ୍ୟର ରୋଗ, ପାପରାଶି ମଧ୍ୟ ନିଜ ଦେହରେ ଗ୍ରହଣ କରି ସ୍ୱୟଂ ଯନ୍ତ୍ରଣା ଭୋଗକରନ୍ତି ଏବଂ ଦୁର୍ବଳ ଶିଷ୍ୟକୁ ମୁକ୍ତ କରନ୍ତି । ଶ୍ରୀମା'ଙ୍କ ଜୀବନରେ ଏପରି ବହୁ ଦୃଷ୍ଟାନ୍ତ ରହିଛି ।

ଉଦ୍‌ବୋଧନରେ ଶେଷ ଅବସ୍ଥା ସମୟରେ ଶ୍ରୀମା' ଜଣେ ବ୍ରହ୍ମଚାରୀଙ୍କୁ କହିଥିଲେ, ''ତୁମେ କଅଣ ମନେ କର, ଠାକୁର ଯଦି ଏହି ଦେହକୁ ନ ରଖନ୍ତି, ତେବେ ସୁଦ୍ଧା ଯେଉଁମାନଙ୍କର ଭାର ନେଇଛି ସେମାନଙ୍କ ମଧ୍ୟରୁ ଜଣେ ହେଲେ ବାକି ଥାଉ ଥାଉ ମୋର ଛୁଟି ଅଛି ? ସେମାନଙ୍କ ସହିତ ରହିବାକୁ ହେବ—ସେମାନଙ୍କ ଭଲମନ୍ଦର ଦାୟିତ୍ୱ ଯେ ମୁଁ ନେଇଛି । ମନ୍ତ୍ର ଦେବା କଅଣ ସହଜ କଥା ! କେତେ ବଡ଼ ବୋଝ ନିଜ ଉପରେ ନେଇଛି; ସେମାନଙ୍କ ପାଇଁ କେତେ ଚିନ୍ତା କରିବାକୁ ପଡ଼େ ! ତୋର ପିତା ଦେହ ତ୍ୟାଗ କଲେ, ମୋର ମନଟା ଖରାପ ହେଲା । ମନେହେଲା—ପିଲାଟିକୁ ଠାକୁର କଅଣ ପୁନର୍ବାର ପରୀକ୍ଷାରେ ପକାଇଲେ ?...ତୁମେମାନେ କଅଣ ବୁଝିପାର ? ଯଦି ତୁମେମାନେ ବୁଝିପାରୁଥାଆନ୍ତ, ତେବେ ମୋର ଚିନ୍ତା ଅନେକ କମିଯାଆନ୍ତା । ଠାକୁର ନାନା ଭାବରେ ଭକ୍ତମାନଙ୍କୁ ଖେଳାଉଛନ୍ତି—କିନ୍ତୁ ଦାୟିତ୍ୱ ସମ୍ଭାଳିବାକୁ ପଡୁଛି ମୋତେ । ଯେଉଁମାନଙ୍କୁ ନିଜର ବୋଲି ଗ୍ରହଣ କରିଛି, ସେମାନଙ୍କୁ ତ ଆଉ ଫୋପାଡ଼ି ଦେଇପାରିବି ନାହିଁ !'' ଗୁରୁଶିଷ୍ୟଙ୍କର ଏହି ସମ୍ବନ୍ଧ କୌଣସି

ଅନୁଷ୍ଠାନକୁ ଅବଲମ୍ବନ କରି କେବଳ ଇହଜୀବନ ପାଇଁ ସ୍ଥାପିତ ହୋଇନାହିଁ । ଏହା ଗୁରୁଶକ୍ତିଙ୍କର ସ୍ୱେଚ୍ଛାରେ ସ୍ୱୀକୃତ ଚିରକାଳର ସମ୍ବନ୍ଧ ।

ଶ୍ରୀମା' ସର୍ବଦା ମନେ ମନେ ଜପ କରୁଥିଲେ । ଶେଷ ବୟସରେ ଯେତେବେଳେ ଶରୀର ଦୁର୍ବଳ, ସେତେବେଳେ ଅନେକ ସମୟ ଶୋଇ ଶୋଇ କଟାଇବାକୁ ପଡୁଥିଲା; କିନ୍ତୁ ସେବକ ଲକ୍ଷ୍ୟ କରି ଦେଖିଛନ୍ତି, ସେହି ଅବସ୍ଥାରେ ମଧ୍ୟ ଜପର ବିରାମ ନାହିଁ । ରାତିରେ ଖୁବ୍ ଅଳ୍ପ ନିଦ ହେଉଥିଲା — ପ୍ରୟୋଜନ ସ୍ଥାନରେ ଥରେ ଡାକିଲେ ଉଠିପଡୁଥିଲେ । ସେବକ ବିସ୍ମିତ ହୋଇ ଏତେ ଅଳ୍ପ ନିଦର କାରଣ ପଚାରିଲେ କହୁଥିଲେ, ''କଅଣ କରିବି ବାବା, ପିଲାମାନେ ସବୁ ବ୍ୟାକୁଳ ହୋଇ ଆସନ୍ତି, ଆଗ୍ରହରେ ଦୀକ୍ଷା ନେଇ ଯାଆନ୍ତି । କିନ୍ତୁ କାହିଁ, କେହି ନୀତିନିୟମରେ ଚଳୁଛନ୍ତି କି ? କେହି ହୁଏତ କିଛି କରେ ନାହିଁ । ତା'ର ଯେତେବେଳେ ଭାର ନେଇଛି, ସେତେବେଳେ ସେମାନଙ୍କୁ ଦେଖିବାକୁ ହେବ ତ ? ତେଣୁ ଜପ କରେ ଏବଂ ତାଙ୍କ ପାଇଁ ଠାକୁରଙ୍କ ନିକଟରେ ପ୍ରାର୍ଥନା କରେ, ''ହେ ଠାକୁର ! ସେମାନଙ୍କୁ ଚୈତନ୍ୟ ଦିଅ, ମୁକ୍ତି ଦିଅ, ସେମାନଙ୍କର ଇହକାଳ ଓ ପରକାଳ ସବୁ ତୁମେ ଦେଖ । ଏ ସଂସାରରେ ବଡ଼ ଦୁଃଖ ଓ କଷ୍ଟ । ଆଉ ଯେପରି ସେମାନଙ୍କୁ ଆସିବାକୁ ନ ପଡ଼େ ।''

ଜଣେ ଭକ୍ତଙ୍କୁ ଅଭୟ ଦେଇ ଶ୍ରୀମା' କହିଲେ, ''ତୁମର ଚିନ୍ତା କ'ଣ ବାବା, ତୁମମାନଙ୍କ କଥା ମୋର ସବୁବେଳେ ମନେପଡ଼େ । ତୁମକୁ କିଛି କରିବାକୁ ହେବ ନାହିଁ — ତୁମପାଇଁ ମୁଁ ସବୁ କରୁଛି ।'' ଭକ୍ତ ପ୍ରଶ୍ନ କଲେ, ''ତୁମର ଯେଉଁଠି ଯେତେ ସନ୍ତାନ ଅଛନ୍ତି, ସମସ୍ତଙ୍କ ପାଇଁ ତୁମକୁ କ'ଣ କରିବାକୁ ପଡ଼େ ?'' ମା' ଉତ୍ତର ଦେଲେ, ''ସମସ୍ତଙ୍କ ପାଇଁ ମୋତେ କରିବାକୁ ହୁଏ ।'' ଭକ୍ତ ପଚାରିଲେ, ''ତୁମର ଏତେ ସନ୍ତାନ ରହିଛନ୍ତି, ସମସ୍ତଙ୍କ କଥା ତୁମର ମନେପଡ଼େ ?'' ମା' ଉତ୍ତରରେ କହିଲେ, ''ଯାହାର ଯାହାର ନାମ ମନେପଡ଼େ, ସେମାନଙ୍କ ପାଇଁ ଜପ କରେ । ଆଉ ଯେଉଁମାନଙ୍କର ନାମ ମନେ ନ ପଡ଼େ ସେମାନଙ୍କ ପାଇଁ ଠାକୁରଙ୍କ ନିକଟରେ ପ୍ରାର୍ଥନା କରେ, 'ଠାକୁର, ମୋର ଅନେକ ପିଲା ଅନେକ ଜାଗାରେ ରହିଛନ୍ତି, ଯେଉଁମାନଙ୍କର ନାମ ମୋର ମନେ ପଡୁନାହିଁ, ତୁମେ ସେମାନଙ୍କୁ ଦେଖ, ଯେଉଁଥିରେ ସେମାନଙ୍କର କଲ୍ୟାଣ ହୁଏ ସେଇଆ କର ।''

ସ୍ୱାମୀ ବିଶ୍ୱେଶ୍ୱରାନନ୍ଦ ଦିନେ ଶ୍ରୀମା'ଙ୍କୁ କହିଲେ, ''ଯେତେବେଳେ ଏତେ ଭକ୍ତଙ୍କର ବ୍ୟକ୍ତିଗତ ମଙ୍ଗଳଚିନ୍ତା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ, ସେତେବେଳ ଦୀକ୍ଷିତ ଭକ୍ତଙ୍କ ସଂଖ୍ୟା କମାଇ ଦେବା ଭଲ ।'' ଶ୍ରୀମା' ଉତ୍ତରରେ କହିଲେ, ''ଠାକୁର ତ ମୋତେ ସେପରି କୌଣସି ନିଷେଧ କରି ନାହାନ୍ତି । ସେ ମୋତେ ଏତେସବୁ କଥା ବୁଝାଇଛନ୍ତି, ଆଉ ଏଇ କଥା ଯଦି ପ୍ରୟୋଜନ ଥିଲା ତା'ହେଲେ କଅଣ କହି ନ ଥାନ୍ତେ ? ମୁଁ ଠାକୁରଙ୍କ ଉପରେ ଭାର ଅର୍ପଣ କରେ,

ମୁଁ ନିତି ତାଙ୍କୁ କୁହେ, 'ଯେ ଯେଉଁଠି ଅଛି ତାଙ୍କୁ ତୁମେ ଦେଖ ।' ଜାଣିବ, ଏହିସବୁ ଠାକୁରଙ୍କ ଦେଇଥିବା ମନ୍ତ୍ର । ସେ ମୋତେ ଦେଇଥିଲେ — ସିଦ୍ଧ ମନ୍ତ୍ର ।'' କହିବାର ତାତ୍ପର୍ଯ୍ୟ ଶିଷ୍ୟର କଲ୍ୟାଣ କେବଳ ଗୁରୁଙ୍କ ମନେରଖିବା ଉପରେ ନିର୍ଭର କରେ ନାହିଁ । ମନ୍ତ୍ରର ମଧ୍ୟ ଗୋଟିଏ ଶକ୍ତି ଅଛି ।

ମନ୍ତ୍ରଶକ୍ତି ଓ ପାପଗ୍ରହଣ ବିଷୟରେ ଶ୍ରୀମା' ଅନ୍ୟ ସମୟରେ ରାସବିହାରୀ ମହାରାଜଙ୍କୁ କହିଥିଲେ, ''ମନ୍ତ୍ର ମାଧ୍ୟମରେ ଶକ୍ତି ଯାଏ । ଗୁରୁଶକ୍ତି ଶିଷ୍ୟ ଭିତରକୁ ଯାଏ, ଶିଷ୍ୟର ଶକ୍ତି ଗୁରୁଙ୍କ ନିକଟକୁ ଆସେ । ସେଇଥିପାଇଁ ତ ମନ୍ତ୍ର ଦେଲେ ଅନ୍ୟର ପାପ ନେଇ ଦେହରେ ଏତେ ବ୍ୟାଧି ହୁଏ । ଗୁରୁ ହେବା ବଡ଼ କଠିନ — ଶିଷ୍ୟର ପାପ ଗ୍ରହଣ କରିବାକୁ ପଡ଼େ । ଶିଷ୍ୟ ପାପ କଲେ ଗୁରୁଙ୍କୁ ବଡ଼ ବାଧେ । ଶିଷ୍ୟ ଉତ୍ତମ ହେଲେ ଗୁରୁଙ୍କର ମଧ୍ୟ ଉପକାର ହୁଏ ।''

ଭକ୍ତଙ୍କର ପାପ ନେଇ କଷ୍ଟ ପାଇଲେ ସୁଦ୍ଧା ସେଥିରେ ମା'ଙ୍କର ବିରକ୍ତିର ଲେଶ ମାତ୍ର ନ ଥିଲା । ଜଣେ ଭକ୍ତ କହିଲେ, ''ମା' ଶୁଣିବାକୁ ପାଏ, ଭକ୍ତମାନଙ୍କର ପାପ ଗ୍ରହଣ କରି ତୁମର ଏହି ବ୍ୟାଧି । ମୋର ଗୋଟିଏ ଆନ୍ତରିକ ନିବେଦନ — ତୁମେ ମୋ ପାଇଁ ରୋଗ ଭୋଗିବ ନାହିଁ, ମୋର କର୍ମର ଭୋଗ ମୋଦ୍ୱାରା କରାଇ ନିଅ ।'' କରୁଣାମୟୀ ମା' ତତ୍କ୍ଷଣାତ୍ ଉତ୍ତର ଦେଲେ, ''ସେ କି କଥା ବାବା ! ତୁମେମାନେ ସବୁ ଭଲରେ ରୁହ, ମୁଁ ଭୋଗିବି ।''

ଶିଷ୍ୟର ପାପ ଗ୍ରହଣ କରି ଯନ୍ତ୍ରଣା ପାଇଲେ ସୁଦ୍ଧା ପାପୀଙ୍କ ବିଷୟରେ ମା'ଙ୍କର ଦୃଷ୍ଟି ଅତି ଉଦାର ଥିଲା । ସେମାନଙ୍କୁ ଘୃଣା ଚକ୍ଷୁରେ ନ ଦେଖି କୃପାପୂର୍ଣ୍ଣ ଚକ୍ଷୁରେ ଦେଖୁଥିଲେ । ଯଦି କୌଣସି ଭକ୍ତ କହୁଥିଲେ ଯେ, ତାଙ୍କର ଆଶଙ୍କା ହୁଏ, ମା'ଙ୍କ ପରି ଜନନୀ ପାଇ ମଧ୍ୟ ହୁଏତ କିଛି ହେଲା ନାହିଁ, ଶ୍ରୀମା' ସେପରି କ୍ଷେତ୍ରରେ ତାଙ୍କୁ ଅଭୟ ଦେଇ କହୁଥିଲେ, ''ଭୟ କଅଣ ବାବା ! ସର୍ବଦା ଜାଣିବ ଯେ ଠାକୁର ତୁମମାନଙ୍କର ପଶ୍ଚାତ୍‌ରେ ଅଛନ୍ତି । ମୁଁ ରହିଛି, ମୁଁ ମା' ଥାଉ ଥାଉ ଭୟ କ'ଣ ? ଠାକୁର ତ କହିଛନ୍ତି, 'ଯେଉଁମାନେ ତୁମ ପାଖକୁ ଆସିବେ, ମୁଁ ଶେଷକାଳରେ ଆସି ସେମାନଙ୍କ ହାତ ଧରି ନେଇଯିବି ।' ଯିଏ ଯାହା କିଛି କରନା କାହିଁକି, ଯେଉଁଭାବେ ଖୁସୀ ଚାଲନା କାହିଁକି, ଠାକୁର ଶେଷକାଳରେ ଆସିବେ ତୁମମାନଙ୍କୁ ନେଇଯିବା ପାଇଁ । ଈଶ୍ୱର ହାତ ଗୋଡ଼ ଦେଇଛନ୍ତି, ସେମାନେ ତ ପୁଣି ତାଙ୍କର ଖେଳ ଖେଳିବେ !''

ଜଣେ ସମ୍ଭ୍ରାନ୍ତ କୁଳର ମହିଳା କର୍ମବିପାକରେ ପଡ଼ି କୁପଥଗାମୀ ହେଲେ । ପରେ ନିଜର ଭ୍ରମ ବୁଝିପାରି ଉଦ୍‌ବୋଧନରେ ଶ୍ରୀମା'ଙ୍କ ନିକଟକୁ ଗଲେ ଏବଂ ଘରର ଦୁଆରବନ୍ଧରେ ଠିଆ ହୋଇ କହିଲେ, ''ମା, ମୋର କଅଣ ଉପାୟ ହେବ ? ମୁଁ ଆପଣଙ୍କର ଏହି ପବିତ୍ର ମନ୍ଦିରରେ ପ୍ରବେଶ କରିବା ପାଇଁ ଯୋଗ୍ୟ ନୁହେଁ ।'' ଶ୍ରୀମା' ଅଗ୍ରସର ହୋଇ ମହିଳାଙ୍କୁ ଆଲିଙ୍ଗନ କଲେ ଓ ସ୍ନେହ ସହକାରେ

କହିଲେ, ''ଆସ ମା, ଘରକୁ ଆସ । ପାପ କଅଣ ତାହା ବୁଝିପାରିଛ, ଅନୁତପ୍ତ ହୋଇଛ । ଆସ ମୁଁ ତୁମକୁ ମନ୍ତ୍ର ଦେବି — ଠାକୁରଙ୍କୁ ସବୁ ଅର୍ପଣ କରିଦିଅ । ଭୟ କ'ଣ ?'' ପତିତ-ଉଦ୍ଧାରିଣୀ ମା' ଦିନେ ଏହି ଅବୋଧ କୃପାବିତରଣର କାରଣ ସମସ୍ତଙ୍କ ସମ୍ମୁଖରେ ପ୍ରକାଶ କରି କହିଥିଲେ, ''ଠାକୁର କଅଣ ଖାଲି ରସଗୋଲା ଖାଇବାକୁ ଆସିଥିଲେ ?''

କୌଣସି ଦିନ ଭକ୍ତ ନ ଆସିଲେ କହୁଥିଲେ — ଭକ୍ତମାନେ କେହି ଆସିଲେ ନାହିଁ । ସ୍ୱାମୀ ଗୌରୀଶାନନ୍ଦ ଯେତେବେଳେ ଜୟରାମବାଟୀରେ ଥିଲେ, ସେତେବେଳେ ଶ୍ରୀମା'ଙ୍କର ଗୋଡ଼ରେ ବାତ ଥିବାରୁ ଚାଲିବାରେ କଷ୍ଟ ହେଉଥିଲା । ଦିନେ ସେ ଶୁଣିବାକୁ ପାଇଲେ ଯେ ଶ୍ରୀମା' ଠାକୁରଙ୍କୁ ଲକ୍ଷ୍ୟ କରି କହୁଛନ୍ତି, ''ଆଜି ଦିନଟା ବୃଥାରେ ଗଲା । ଜଣେ ହେଲେ କେହି ଆସିଲେ ନାହିଁ । ତୁମେ ତ କହିଥିଲ, 'ତୁମକୁ ପ୍ରତିଦିନ କିଛି ନା କିଛି କରିବାକୁ ହେବ' ?'' ଏହା କହି ସେ ଅସ୍ଥିର ହୋଇ ଘର ବାହାର ହେଉଥିଲେ ଏବଂ ଠାକୁରଙ୍କ ଛବି ଆଡ଼କୁ ଚାହିଁ କହୁଥିଲେ, ''ଠାକୁର, କଅଣ ଆଜି ଦିନଟା ବୃଥାରେ କଟିଯିବ ?'' ପରଦିନ ତିନିଜଣ ଭକ୍ତ ଆସି ଉପସ୍ଥିତ ହେବାରୁ ମା'ଙ୍କ ମୁହଁରେ ହସ ଫୁଟିଉଠିଲା ।

ଶ୍ରୀମା' କହୁଥିଲେ, ''ଦୟାର ବଶବର୍ତ୍ତୀ ହୋଇ ମୁଁ ମନ୍ତ୍ର ଦିଏ । ସେମାନେ ଛାଡ଼ନ୍ତି ନାହିଁ, କାନ୍ଦନ୍ତି, ଦେଖିଲେ ଦୟା ହୁଏ । ସେମାନଙ୍କୁ କୃପା କରି ମନ୍ତ୍ର ଦିଏ । ନ ହେଲେ ମୋର କଅଣ ଲାଭ ? ମନ୍ତ୍ର ଦେଲେ ତା'ର ପାପ ଗ୍ରହଣ କରିବାକୁ ହୁଏ । ଭାବେ ଦେହଟା ତ ନିଶ୍ଚିତ ଯିବ, ତଥାପି ଏମାନଙ୍କର କିଛି (ଚୈତନ୍ୟ) ହେଉ ।'' ଦିନେ ଜଣେ ଭକ୍ତ ଗୋଟିଏ ଆଶ୍ଚର୍ଯ୍ୟ ସ୍ୱପ୍ନ ଦେଖିଥିବା କଥା କହିଲେ — ଜଣେ ବ୍ୟକ୍ତି ଶ୍ରୀମା'ଙ୍କୁ ଧରି ବସିଛି ଦୀକ୍ଷା ପାଇଁ ଏବଂ ଶ୍ରୀମା' କହୁଛନ୍ତି, ''ଏହା ପାଇଁ ଯଦି ମୁଁ ବର୍ତ୍ତମାନ କିଛି କରିବି ତେବେ ମୁଁ ଆଉ ବଞ୍ଚିବି ନାହିଁ, ମୋ ଦେହ ରହିବ ନାହିଁ ।'' ସ୍ୱପ୍ନଦ୍ରଷ୍ଟା ମଧ୍ୟ ମା'ଙ୍କୁ ନିଷେଧ କଲେ, ତଥାପି ମା' ପ୍ରାର୍ଥୀର ଛାତି ସ୍ପର୍ଶ କରି କ'ଣ କରିଦେଲେ ଏବଂ ପୂର୍ବକଥାର ପୁନରାବୃତ୍ତି କଲେ । ଶ୍ରୀମା' ସ୍ୱପ୍ନ କଥା ଶୁଣି କହିଲେ, ''ଜଣେ ଜଣେ ଲୋକଙ୍କର ପୀଡ଼ାରେ ଉତ୍ୟକ୍ତ ହୋଇ ମନେହୁଏ, 'ଏ ଦେହ ତ ନିଶ୍ଚୟ ଯିବ, ତା' ହେଲେ ବର୍ତ୍ତମାନ ଯାଉ' ।'' କାଶୀଧାମରେ ଶ୍ରୀମା' ଦିନେ କହିଥିଲେ, ''ଜନ୍ମରୁ କୌଣସି ପାପ କରିଛି ବୋଲି ମୋର ମନେ ପଡ଼େନାହିଁ । ପାଞ୍ଚବର୍ଷ ବୟସରୁ ତାଙ୍କୁ (ଠାକୁରଙ୍କୁ) ସ୍ପର୍ଶ କରିଛି । ମୁଁ ହୁଏତ ସେତେବେଳେ କିଛି ବୁଝି ନ ଥିଲି, କିନ୍ତୁ ସେ ମୋତେ ତ ସ୍ପର୍ଶ କରିଥିଲେ । ତା'ହେଲେ ମୋର ଏତେ କଷ୍ଟ କାହିଁକି ? ତାଙ୍କୁ ସ୍ପର୍ଶ କରି ସମସ୍ତ ପ୍ରାଣୀ ମାୟାମୁକ୍ତ ହେଉଛନ୍ତି, ଆଉ ମୋର ଏତେ ମାୟା ? ମୋର ମନ ସର୍ବଦା ଉଚ୍ଚଭୂମିରେ ଅବସ୍ଥାନ କରିବାକୁ ଚାହେଁ; ଜୋର୍ କରି ମୁଁ ତାକୁ ନିମ୍ନଭୂମିରେ ରଖେ — ଦୟାର ବଶବର୍ତ୍ତୀ ହୋଇ, ଏମାନଙ୍କ ପାଇଁ ।'' କୋଆଲପଡ଼ା ଆଶ୍ରମରେ ଜଣେ ଭକ୍ତ

ଶ୍ରୀମା'ଙ୍କୁ ପରାମର୍ଶ ଦେଲେ, ''ଭକ୍ତମାନଙ୍କ ସ୍ପର୍ଶରେ ଯଦି କଷ୍ଟ ହୁଏ, ତା'ହେଲେ ସ୍ପର୍ଶ ନ କରିବା ଉଚିତ ।'' ଶ୍ରୀମା' ଉତ୍ତର ଦେଲେ, ''ନା, ବାବା, ଆମେ ତ ଏଇଥିପାଇଁ ଆସିଛୁ । ଆମେ ଯଦି ପାପତାପ ନ ନେବୁ, ହଜମ ନ କରିବୁ, ତେବେ କିଏ କରିବ ? ପାପୀତାପୀଙ୍କର ଭାର କିଏ ସହିବ ?'' ଶ୍ରୀମା' ଏହା ମଧ୍ୟ କହିଲେ ଯେ—ସବୁ ଭକ୍ତଙ୍କ ସ୍ପର୍ଶ ମନ୍ଦ ନୁହେଁ; ଅନେକ ଶୁଦ୍ଧସତ୍ତ୍ୱ ଭକ୍ତ ସ୍ପର୍ଶ କଲେ ଆନନ୍ଦ ହୁଏ ।

ଦିନେ ସକାଳେ ତିନିଜଣ ଭକ୍ତ ସ୍ୱାମୀ ବ୍ରହ୍ମାନନ୍ଦଜୀଙ୍କର ଗୋଟିଏ ପତ୍ର ନେଇ ଜୟରାମବାଟୀରେ ଉପସ୍ଥିତ ହେଲେ । ମା' ଭକ୍ତମାନଙ୍କୁ ଡାକିଲେ । ଯଦିଓ ବାତ ଯୋଗୁଁ ମା' ସାଧାରଣତଃ ଗୋଡ଼ ଲମ୍ବାଇ ବସୁଥିଲେ, କିନ୍ତୁ ସେଦିନ ଗୋଡ଼ ଜାକି ବସିଲେ ଓ ଖେଦୋକ୍ତି କରି କହିଲେ, ''ଶେଷରେ ରାଖାଲ ମଧ୍ୟ ମୋ ପାଇଁ ଏହା ପଠାଇଲା ? ପୁଅ ବିଦେଶକୁ ଗଲେ କେତେ ଭଲ ଭଲ ଜିନିଷ ପଠାଏ, ଆଉ ରାଖାଲ କି ନା ମୋ ପାଇଁ ଏହା ପଠାଇଲା ?'' ଶ୍ରୀମା' ସେମାନଙ୍କୁ ଦୀକ୍ଷା ଦେବା ପାଇଁ ଅସମ୍ମତ ହେଲେ ଏବଂ ବେଲୁଡ଼ମଠକୁ ଫେରିଯିବାକୁ କହିଲେ । ଭକ୍ତମାନେ କିନ୍ତୁ ଛାଡ଼ିଲେ ନାହିଁ । ଶ୍ରୀମା' ଅନେକ ସମୟ ଚିନ୍ତା କରି ଦୀକ୍ଷା ଦେବାକୁ ସ୍ଥିର କଲେ ଓ ଠାକୁରଙ୍କୁ କହିଲେ, ''ଯେତେଦିନ ଦେହ ଅଛି, ତୁମ କାମ କରିଯିବି ।'' ଦୀକ୍ଷା ହୋଇଗଲା । କେତେଦିନ ପରେ ବ୍ରହ୍ମାନନ୍ଦଜୀ, ପ୍ରେମାନନ୍ଦଜୀ ଓ ଅନ୍ୟାନ୍ୟ ସ୍ୱାମୀଗଣ ବେଲୁଡ଼ମଠରେ ଏହି ଘଟଣା ବିସ୍ତାରିତଭାବରେ ଶୁଣିଲେ । ବ୍ରାହ୍ମାନନ୍ଦଜୀ ଶୁଣି ନିସ୍ତବ୍‌ଧ ହୋଇ ରହିଲେ । ପ୍ରେମାନନ୍ଦଜୀ ଦୀର୍ଘନିଃଶ୍ୱାସ ପକାଇ ହାତ ଯୋଡ଼ି କହିଲେ, ''କୃପା, କୃପା ! ଏହି କୃପାଦ୍ୱାରା ମା' ଆମମାନଙ୍କୁ ସର୍ବଦା ରକ୍ଷା କରୁଛନ୍ତି ! ସେ ଯେଉଁ ପ୍ରକାର ବିଷ ନିଜେ ଗ୍ରହଣ କଲେ ତାହା ଆମେ ଭାଷାରେ ପ୍ରକାଶ କରିପାରିବୁ ନାହିଁ । ଯଦି ଏହି ବିଷ ଆମେ ଗ୍ରହଣ କରିଥାଆନ୍ତୁ, ତେବେ ପୋଡ଼ି ପାଉଁଶ ହୋଇଯାଇଥାଆନ୍ତୁ ।''

ଭକ୍ତ ଯେତେ ଦୁର୍ବଳ ହେଉ ନା କାହିଁକି, ମା'ଙ୍କ ନିକଟକୁ ଆସିଲେ ସାହସ ଓ ଅଭୟ ପାଉଥିଲା ଆଉ ତା'ର ହୃଦୟରେ ବିଶ୍ୱାସ ଜାତ ହେଉଥିଲା । ଜଣେ ଭକ୍ତ ଜପଧ୍ୟାନ କରି ମଧ୍ୟ ମନରେ ଶାନ୍ତି ପାଉ ନ ଥିଲା । ଶ୍ରୀଶ୍ରୀମା' ତାଙ୍କୁ ଉତ୍ସାହ ଦେଇ କହିଲେ ଯେ ବାରମ୍ବାର ଅଭ୍ୟାସ କଲେ ମନ ଶାନ୍ତ ହେବ । କିନ୍ତୁ ଭକ୍ତଙ୍କ ମନ ଆଶ୍ୱସ୍ତ ହେଲା ନାହିଁ । ସେ ଶୁଣିଥିଲେ ଶିଷ୍ୟ ମନ୍ତ୍ରଜପ ନ କଲେ ଗୁରୁଙ୍କର କ୍ଷତି ହୁଏ । ସୁତରାଂ ସେ ଶ୍ରୀମା'ଙ୍କୁ ମନ୍ତ୍ର ଫେରାଇ ନେବାକୁ କହିଲେ । ଶ୍ରୀମା' କହିଲେ, ''ଦେଖ, ଏ କି କଥା ! ତୁମମାନଙ୍କ ପାଇଁ ମୁଁ ଭାବି ଭାବି ଅସ୍ଥିର । ଠାକୁର ବହୁ ପୂର୍ବରୁ ତୁମମାନଙ୍କୁ ଦୟା କରିଛନ୍ତି ।'' ଶ୍ରୀମା' ଅଶ୍ରୁପୂର୍ଣ୍ଣ ନୟନରେ ଆବେଗର ସହିତ କହିଲେ, ''ଆଚ୍ଛା, ତୁମକୁ ଆଉ ମନ୍ତ୍ର ଜପ କରିବାକୁ ପଡ଼ିବ ନାହିଁ ।'' ଭକ୍ତ କିନ୍ତୁ ଆତଙ୍କରେ କହିଉଠିଲେ, ''ମା' ! ମୋର ସବୁ କାଢ଼ିନେଲ !

ବର୍ତ୍ତମାନ ମୁଁ କଅଣ କରିବି ମା' ? ତା' ହେଲେ ମୁଁ କଣ ରସାତଳକୁ ଯିବି ?'' ଶ୍ରୀମା' ଦୃଢ଼-କଣ୍ଠରେ ସନ୍ତାନଙ୍କୁ ଅଭୟବାଣୀ ଶୁଣାଇଲେ, ''କଅଣ, ମୋର ସନ୍ତାନ ହୋଇ ତୁମେ ରସାତଳକୁ ଯିବ ? ଏଠାକୁ ଯେଉଁମାନେ ଆସିଛନ୍ତି, ଯେଉଁମାନେ ମୋର ପୁଅ, ସେମାନଙ୍କର ମୁକ୍ତି ପୂର୍ବରୁ ହୋଇ ରହିଛି । ବିଧିର ସାଧ ନାହିଁ ଯେ ମୋ ସନ୍ତାନମାନଙ୍କୁ ରସାତଳରେ ପକାଇବ । ମୋ ଉପରେ ଦାୟିତ୍ୱ ଦେଇ ନିଶ୍ଚିନ୍ତରେ ରହ । ସର୍ବଦା ସ୍ମରଣ ରଖିବ ଯେ ତୁମ ପଛରେ ଏପରି ଜଣେ ଅଛନ୍ତି ଯିଏ ସମୟ ହେଲେ ତୁମମାନଙ୍କୁ ସେହି ନିତ୍ୟଧାମକୁ ନେଇଯିବେ ।''

ଜଣେ ସନ୍ନ୍ୟାସୀ ଭକ୍ତଙ୍କର ନୈରାଶ୍ୟପୂର୍ଣ୍ଣ ପତ୍ର ପାଇ ମା' କହିଲେ, ''ଦେଖ, କିପରି କଥା ! ଠାକୁରଙ୍କର ନାମ କଅଣ ସାଧାରଣ କଥା ? ତାହା କେବେହେଲେ ବ୍ୟର୍ଥ ହୋଇ ନ ପାରେ । ଯେଉଁମାନେ ଠାକୁରଙ୍କୁ ସ୍ମରଣ କରି ଏଠାକୁ ଆସିଛନ୍ତି, ସେମାନଙ୍କର ଇଷ୍ଟ-ଦର୍ଶନ ହେବ ହିଁ ହେବ । ପୂର୍ବରୁ ନ ହୋଇଥିଲେ ମୃତ୍ୟୁ ସମୟରେ ନିଶ୍ଚିତ ହେବ ।''

୧୯୧୫ ଖ୍ରୀଷ୍ଟାବ୍ଦ ବୈଶାଖ ମାସରେ ଶ୍ରୀ ମହେନ୍ଦ୍ରନାଥ ଗୁପ୍ତ (ଶ୍ରୀମ) ଜୟରାମବାଟୀରେ ଆସି ପହଞ୍ଚିଲେ । ଭାବିଲେ ଏହି ପୁଣ୍ୟ କ୍ଷେତ୍ରରେ ଅଧିକ ଜପଧ୍ୟାନ କଲେ ବେଶୀ ଫଳଲାଭ ହେବ । ଦିନ ଶେଷରେ ମା'ଙ୍କୁ ପ୍ରଣାମ କରିବାକୁ ଯେତେବେଳେ ଗଲେ, ସେତେବେଳେ ମା' କହିଲେ, ''ମା' ପାଖକୁ ଆସିଛ, ବର୍ତ୍ତମାନ ଏତେ ଧ୍ୟାନଜପର କଅଣ ପ୍ରୟୋଜନ ? ମୁଁ ତୁମମାନଙ୍କ ପାଇଁ ସବୁ କରିଛି — ବର୍ତ୍ତମାନ ଖାଅ, ନିଶ୍ଚିନ୍ତ ମନରେ ଆନନ୍ଦ କର ।''

୧୯୦୭ ଖ୍ରୀଷ୍ଟାବ୍ଦରେ ଜୟରାମବାଟୀକୁ ଆଗତ ଗିରିଜା ମହାରାଜଙ୍କୁ ଶ୍ରୀମା' କହିଥିଲେ, ''ବାବା, ଗୁରୁଗୃହରେ ଜପ କରନ୍ତି ନାହିଁ । କେବଳ ଗୁରୁ-ଆଦିଷ୍ଟ ୧୦୮ ଜପ ନିତ୍ୟ କରିବାକୁ ହୁଏ ।''

ପୂର୍ବୋକ୍ତ ଘଟଣାଗୁଡ଼ିକ ମଧ୍ୟରେ ଯେପରି ଆମେ ଅଭୟଦାନ ଓ ବିଶ୍ୱାସ -ଉତ୍ପାଦନର ଜ୍ୱଳନ୍ତ ନିଦର୍ଶନ ପାଉ, ଅନ୍ୟଦିଗରେ ସେପରି ସେଥିରେ ନିହିତ ରହିଛି ଶିଷ୍ୟର ଭାରଗ୍ରହଣର ଇଙ୍ଗିତ ଏବଂ ଗୁରୁଙ୍କ ପ୍ରତି ପ୍ରେମାନୁରାଗର ଆକୁଳ ଆହ୍ୱାନ । ଏହି ପ୍ରସଙ୍ଗରେ ଦୁଇଟି ଘଟଣାର ଉଲ୍ଲେଖ କଲେ ଅସଙ୍ଗତ ହେବ ନାହିଁ । ଶ୍ରୀଶ୍ରୀଠାକୁର ଗିରିଶବାବୁଙ୍କୁ ସମସ୍ତ ଅନୁଷ୍ଠାନ ତ୍ୟାଗ କରି ବକଲମା (Power of Attorney) ଦେବାକୁ କହିଥିଲେ ଏବଂ ଯୀଶୁଖ୍ରୀଷ୍ଟ ମଧ୍ୟ ତାଙ୍କର ସହଗାମୀମାନଙ୍କୁ କହିଥିଲେ ଯେ, ବରଯାତ୍ରୀ ଯେପରି ବର ସହିତ ଆନନ୍ଦରେ ଦିନ କଟାନ୍ତି, ସେପରି ସେମାନେ ମଧ୍ୟ ବୈଧୀ ଭକ୍ତି ଉପରେ ଜୋର୍ ନ ଦେଇ ତାଙ୍କୁ ଅତି ଆପଣାର ବୋଲି ଗ୍ରହଣ କଲେ, କେବଳ ଏହି ପ୍ରେମଦ୍ୱାରା ମୁକ୍ତିଲାଭ କରିବା ସମ୍ଭବ । ଉପନିଷଦ୍‌ରେ ମଧ୍ୟ ତତ୍ତ୍ୱଜ୍ଞାନ ଲାଭ ପାଇଁ ଗୁରୁ ଓ ଇଷ୍ଟଙ୍କ ପ୍ରତି ଭକ୍ତି ଅତ୍ୟାବଶ୍ୟକ ବୋଲି ବର୍ଣ୍ଣନା କରାଯାଇଛି ।

ଯସ୍ୟ ଦେବେ ପରା ଭକ୍ତିଃ ଯଥା ଦେବେ ତଥା ଗୁରୌ ।
ତସ୍ୟୈ ତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ।।

—"ଯାହାଙ୍କର ଦେବତାଙ୍କ ପ୍ରତି ପରାଭକ୍ତି ଅଛି ଏବଂ ଦେବତାଙ୍କ ପ୍ରତି ଯେପରି ଗୁରୁଙ୍କ ପ୍ରତି ମଧ୍ୟ ସେପରି ଭକ୍ତି ଅଛି, ସେହି ମହାତ୍ମାଙ୍କ ନିକଟରେ ପୂର୍ବୋକ୍ତ ବିଷୟସମୂହ ପ୍ରତିଭାତ ହୋଇଥାଏ ।" (ଶ୍ୱେତାଶ୍ୱତର ଉପନିଷଦ୍, ୬/୨୩) । ବସ୍ତୁତଃ ଧ୍ୟାନ କରିବୁ କାହାର—ଯଦି ଧ୍ୟେୟ ବ୍ୟକ୍ତିଙ୍କ ପ୍ରତି ପ୍ରୀତି ଉତ୍ପନ୍ନ ନ ହୁଏ ? ଆଉ ବିଦ୍ୟାପ୍ରତି ଶ୍ରଦ୍ଧା ଆସିବ କିପରି ଯଦି ଆଚାର୍ଯ୍ୟଙ୍କ ପ୍ରତି ପ୍ରେମ ନ ଆସେ ? ସେଥିପାଇଁ ଶ୍ରୀମା' ତାଙ୍କ ସନ୍ତାନମାନଙ୍କର ଦାୟିତ୍ୱ ନିଜ ଉପରେ ନେଉଥିଲେ, ସେମାନଙ୍କୁ ପ୍ରାଣ ଦେଇ ଭଲ ପାଉଥିଲେ, ଏବଂ ଆଶା ପୋଷଣ କରୁଥିଲେ ଯେ ସେମାନେ ମଧ୍ୟ ତାଙ୍କୁ ଯେପରି ଜୀବନର ଅବଲମ୍ବନରୂପେ ଗ୍ରହଣ କରିବେ ।

ସମ୍ପୂର୍ଣ୍ଣ ଭାର ସେ ଗ୍ରହଣ କରୁଥିଲେ ବୋଲି ଏହା ଚିନ୍ତା କରିବା ଠିକ୍ ନୁହେଁ ଯେ, ଶ୍ରୀମା' ଜପଧ୍ୟାନ ଉପରେ ଗୁରୁତ୍ୱ ଦେଉ ନ ଥିଲେ । ଯଦି ତାହା ହୋଇଥାଆନ୍ତା ତେବେ ଶତ ଶତ ଭକ୍ତଙ୍କୁ ସେ ମନ୍ତ୍ର-ଦୀକ୍ଷା ଦେଲେ କାହିଁକି ଏବଂ ସାଧନାପଦ୍ଧତି ବା କାହିଁକି ଶିଖାଇଲେ ? ବସ୍ତୁତଃ ପୂର୍ବରୁ ଯେଉଁ ଉଦାହରଣଗୁଡ଼ିକ ଦିଆଯାଇଛି ତାହା କେତେଗୋଟି ବ୍ୟତିକ୍ରମ ମାତ୍ର । ଅସାଧାରଣ ଘଟଣାପ୍ରତି ଦୃଷ୍ଟିପାତ କଲେ ଲୋକାତୀତ ଚରିତ୍ରର ବିଶେଷତ୍ୱ ସହଜରେ ଉପଲବ୍ଧ ହୁଏ । କିନ୍ତୁ କେବଳ ଏହା ଭିତରେ ଦୃଷ୍ଟି ନିବଦ୍ଧ ରଖିଲେ ଆମେ ଏହି ଅସାମାନ୍ୟ ଚରିତ୍ରର ଅତି ଅଳ୍ପ ଅଂଶ ବୁଝିପାରିବା । ସେ ଆସିଥିଲେ ସର୍ବସାଧାରଣଙ୍କ ପାଇଁ ଏବଂ ସାଧାରଣ ମନୁଷ୍ୟଙ୍କ ଭିତରେ ହିଁ ଜୀବନ ଅତିବାହିତ କରିଥିଲେ । ଶ୍ରୀମା' ସର୍ବସାଧାରଣଙ୍କ ପାଇଁ ଭକ୍ତିବିଶ୍ୱାସମିଶ୍ରିତ ବିହିତ ଅନୁଷ୍ଠାନକୁ ଜୀବନରେ ଅବଲମ୍ବନ କରିବାକୁ ଉପଦେଶ ଦେଉଥିଲେ । କଠିନ ଓ ବିରସ ସାଧନାରେ ଏକ ଅସାଧାରଣ ପ୍ରାଣ ସଞ୍ଚାର କରି ଶ୍ରୀମା' ତାହାକୁ ସହଜ ଓ ସରସ କରିଥିଲେ ।

ଶ୍ରୀନରେଶଚନ୍ଦ୍ର ଚକ୍ରବର୍ତ୍ତୀ ଦୀକ୍ଷା ନେଇ ଶ୍ରୀମା'ଙ୍କୁ ପଚାରିଲେ, "ମା', ମୋତେ କଅଣ ତୁମେ ନିରାମିଷ ଆହାର ଖାଇବାକୁ କହିବ ?" ଶ୍ରୀମା' କହିଲେ, "ତୁମେ ନିରାମିଷ ଖାଇବ କାହିଁକି ? ମୋର ପିଲାମାନେ ନିରାମିଷ କାହିଁକି ଖାଇବେ ? ତୁମେ ଖୁବ୍ ଖାଇବ, ପିଇବ, ଆଉ ଫୁର୍ତ୍ତି କରିବ । ବାକି ସବୁ ମୁଁ ଦେଖିବି ।" ନରେଶବାବୁ ପୁଣି ପଚାରିଲେ, "ମୁଁ ଯଦି ଇଷ୍ଟମନ୍ତ୍ର ଜପ ନ କରେ ?" ଶ୍ରୀମା' ଉତ୍ତେଜିତ ହୋଇ କହିଲେ, "କଅଣ ? ଇଷ୍ଟମନ୍ତ୍ର ଜପ କରିବ ନାହିଁ, ସେ କି କଥା ? ଇଷ୍ଟମନ୍ତ୍ର ଜପ ନ କଲେ ତୁମର କ୍ଷତି ହେବ, ମୋର କଅଣ ହେବ ?"

ଜଣେ ଭକ୍ତଙ୍କୁ ଶ୍ରୀମା' କହିଥିଲେ, ''ଧ୍ୟାନ, ଜପ ନ କଲେ କି ଫଳ ହେବ ? ସେସବୁ କରିବାକୁ ହୁଏ ।'' ଦିନେ ଜଣେ ଭକ୍ତ ମା'ଙ୍କୁ ପ୍ରଶ୍ନ କଲେ, ''ଆଚ୍ଛା ମା' ! ମନ୍ତ୍ର ନେବାର ପ୍ରୟୋଜନ କଅଣ ? ମନ୍ତ୍ରଜପ ନ କରି ଯଦି କେବଳ 'ମା କାଳୀ, ମା କାଳୀ' ବୋଲି ଜପିବି, ସେଥିରେ ହେବ ନାହିଁ ?'' ମା' ଉତ୍ତର ଦେଲେ, ''ମନ୍ତ୍ରଦ୍ୱାରା ଦେହ ଶୁଦ୍ଧ ହୁଏ । ଭଗବାନଙ୍କର ମନ୍ତ୍ର ଜପ କରି ମନୁଷ୍ୟ ପବିତ୍ର ହୁଏ ।'' ଆଉ ଗୋଟିଏ ଘଟଣା । ଜଣେ ଭକ୍ତ ମା'ଙ୍କୁ ବରଗଛର ଅତି କ୍ଷୁଦ୍ର ବୀଜ ଦେଖାଇ କହିଲେ, ''ମା' ! ଦେଖୁଛ, ଏହା ଶାଗମଞ୍ଜିଠାରୁ ମଧ୍ୟ ଛୋଟ । ଅଥଚ ଏଥିରୁ କେଡ଼େ ପ୍ରକାଣ୍ଡ ଗଛ ହେବ ।'' ମା' କହିଲେ, ''ତାହା ହେବ ନାହିଁ ? ଦେଖୁନା, ଭଗବାନଙ୍କ ନାମର ବୀଜ କେତେ ଛୋଟ । କିନ୍ତୁ ସେଥିରୁ କ୍ରମେ ଭାବ, ଭକ୍ତି, ପ୍ରେମ, କେତେ କଅଣ ହୁଏ ।''

ଜଣେ ଭକ୍ତ ଅପ୍ରକୃତିସ୍ଥ ହୋଇ ଶ୍ରୀମା'ଙ୍କୁ ଜପମାଳା ପ୍ରତ୍ୟର୍ପଣ କରିଥିଲେ । ସେ ମନ୍ତ୍ର ମଧ୍ୟ ଫେରାଇ ଦେଇଥିଲେ କି ନାହିଁ ଏ କଥା ଜଣେ ଭକ୍ତ ଜାଣିବାକୁ ଚାହିଁବାରୁ, ମା' କହିଲେ, ''ତାହା କଅଣ ସମ୍ଭବ ? ଏହା ସଜୀବ ମନ୍ତ୍ର । ତାହା କଅଣ ଫେରାଇ ହୁଏ ? — ଯେଉଁ ମନ୍ତ୍ର ଥରେ ପାଇଛ ତାହା ମହାମନ୍ତ୍ର । ଗୁରୁଙ୍କ ଉପରେ ଯାହାର ଥରେ ଆପଣାବୋଧ ହୋଇଛି ତାହା କ'ଣ କେବେ ଚାଲିଯାଇପାରେ ?''

ଜପର କାର୍ଯ୍ୟକାରିତା ସମ୍ବନ୍ଧରେ ଶ୍ରୀମା' କହିଥିଲେ, ''ମନ୍ତ୍ରଜପ କଅଣ ଜାଣିଛ ? ତାହାଦ୍ୱାରା ଇନ୍ଦ୍ରିୟଗୁଡ଼ିକର ପ୍ରଭାବ କଟିଯାଏ ।'' ଆଉଦିନେ କହିଥିଲେ, ''ଧ୍ୟାନ ଜପ ନିୟମିତ ସମୟରେ ଆଳସ୍ୟ ତ୍ୟାଗକରି କରିବାକୁ ହୁଏ ।'' ଆଉ ଦିନକର କଥା, ''ନିତ୍ୟ ପନ୍ଦର କିମ୍ବା କୋଡ଼ିଏ ହଜାର ନାମଜପ କରିପାରିଲେ ଯାଇ ହେବ । କରିବା ସତ୍ତ୍ୱେ ଯଦି ନ ହୁଏ, ତେବେ କହିବ । ଟିକିଏ ମନ ଦେଇ କରିବାକୁ ପଡ଼େ । ତା' ନ କରି କେବଳ ଯଦି କହିବ, 'କାହିଁକି କିଛି ହେଉ ନାହିଁ', 'ସେଥିରୁ କି ଫଳ ମିଳିବ ?''

''କାମ ଦାମ କରିବ, କାମ କଲେ ମନ ଭଲ ରହେ । ତେବେ ଜପ ଧ୍ୟାନ ପ୍ରାର୍ଥନା ମଧ୍ୟ ବିଶେଷ ଦରକାର; ଅନ୍ତତଃ ପକ୍ଷେ ସକାଳେ ଓ ସନ୍ଧ୍ୟାରେ ଥରେ ବସିବାକୁ ହୁଏ । ତାହା ଯେପରିକି ନୌକାର ମଙ୍ଗ । ସଂଧ୍ୟାରେ କିଛି ସମୟ ବସିଲେ ସାରାଦିନ ଧରି କଅଣ ଭଲ ମନ୍ଦ କାମ କଲ ତା'ର ବିଚାର ଆସେ । ତା'ପରେ ପୂର୍ବଦିନର ମନର ଅବସ୍ଥା ସହିତ ଆଜିର ଅବସ୍ଥା ତୁଳନା କରି ଦେଖିବାକୁ ହୁଏ । ଜପ କରିବା ସମୟରେ ଇଷ୍ଟମୂର୍ତ୍ତି ଧ୍ୟାନ କରିବାକୁ ହୁଏ ।... କାମଦାମ ସହିତ ସକାଳେ ସଂଧ୍ୟାରେ ଜପଧ୍ୟାନ ନ କଲେ କଅଣ କରିଛ ନ କରିଛ ବୁଝିବ କିପରି ? ବିଶେଷ ଅଧିକାରୀମାନଙ୍କୁ ସେ ସର୍ବଦା ସ୍ମରଣ-ମନନ କରିବାକୁ କହୁଥିଲେ । ୧୯୧୯ ଖ୍ରୀଷ୍ଟାବ୍ଦରେ ଶ୍ରୀମା' ଯେତେବେଳେ କୋଆଲପଡ଼ାରେ

ଥିଲେ, ଜଣେ ଭକ୍ତ ଦୀକ୍ଷା ନେଇ ଘରକୁ ଫେରିବା ସମୟରେ ପଚାରିଲେ, ''ମା' ଉପାୟ କ'ଣ ?'' ଠଣା ଉପରେ ଗୋଟିଏ ଛୋଟିଆ ଘଣ୍ଟା ଥିଲା । ଶ୍ରୀମା' ତାହା ଦେଖାଇ କହିଲେ, ''ଏହି ଘଣ୍ଟାଟି ଯେପରି ଟିକ୍ ଟିକ୍ କରୁଛି, ଠିକ୍ ସେହିପରି କରିଯାଅ, ତା'ହେଲେ ସବୁ ଠିକ୍ ହୋଇଯିବ । ଆଉ କିଛି କରିବାକୁ ହେବ ନାହିଁ ।''

ଶ୍ରୀମା'ଙ୍କ ଦୃଷ୍ଟିରେ ଜପର ସ୍ଥାନ ଅତି ଉଚ୍ଚରେ । ବିଶେଷ ଅଧିକାରୀମାନଙ୍କୁ ସେ ଅନେକ ସମୟରେ ଜ୍ଞାନର ଉପଦେଶ ଦେଇଛନ୍ତି; କିନ୍ତୁ ସାଧାରଣ କ୍ଷେତ୍ରରେ ତାଙ୍କର ଦୀକ୍ଷିତ ଭକ୍ତମାନଙ୍କୁ ସେ ପୁନଃପୁନଃ ଜପ କରିବାକୁ ନିର୍ଦ୍ଦେଶ ଦେଉଥିଲେ । ସେ ନିଜେ ମଧ୍ୟ ଭକ୍ତମାନଙ୍କ କଲ୍ୟାଣ ଲାଗି ଅବିରାମ ଜପ କରୁଥିଲେ । ତେବେ ସେ ଧ୍ୟାନ-ଜପକୁ କେବଳମାତ୍ର ଅନୁଷ୍ଠାନରୂପେ ଗ୍ରହଣ କରିବାକୁ କହୁ ନ ଥିଲେ । ସେ କହୁଥିଲେ, ''ମନ୍ତ୍ର ତନ୍ତ୍ର କିଛି ନୁହେଁ, ଭକ୍ତି ହିଁ ସାର । ଠାକୁରଙ୍କ ଭିତରେ ଗୁରୁ ଇଷ୍ଟ ସବୁ ପାଇବ । ସେ ସବୁ ।'' ଐଶୀ କୃପା ପ୍ରତି ଦୃଷ୍ଟି ଆକର୍ଷଣ କରି ସେ କହୁଥିଲେ, ''ଏତେ ଜପ କଲି, ଏତେ କାମ କଲି — ଯାହା କୁହ ନା କାହିଁକି, ସେଥିରେ କିଛି ହେବ ନାହିଁ । ମହାମାୟା ପଥ ଛାଡ଼ି ନ ଦେଲେ କାହାର କିଛି ସାଧ୍ୟ ଅଛି ! ଜୀବ, ଶରଣାଗତ ହୁଅ, କେବଳ ଶରଣାଗତ ହୁଅ । ତେବେ ଯାଇ ସେ ଦୟା କରି ପଥ ଛାଡ଼ି ଦେବେ ।'' ଦିନେ ଜଣେ ଭକ୍ତଙ୍କୁ ସେ କହିଲେ, 'ଜପତପଦ୍ୱାରା କର୍ମବନ୍ଧନ କଟିଯାଏ; କିନ୍ତୁ ଭଗବାନଙ୍କୁ ପ୍ରେମଭକ୍ତି ଛଡ଼ା ପାଇବା ସମ୍ଭବ ନୁହେଁ । ଗୋପାଳମାନେ ଧ୍ୟାନ ଜପ କରି କୃଷ୍ଣଙ୍କୁ ପାଇଥିଲେ ନା ସେମାନେ 'ଆରେ, ନେରେ, ଖାଆରେ' କରି ପାଇଥିଲେ ?''

ଏହି ଆତ୍ମସମର୍ପଣ, ଏହି ରାଗଭକ୍ତିର ଭାବନା ଆସିବା ପର୍ଯ୍ୟନ୍ତ କୌଣସି ସାଧନା ହେୟ ନୁହେଁ; ମୁମୁକ୍ଷୁଭକ୍ତ ନିଜର କ୍ଷମତା ଅନୁଯାୟୀ ଏହିସବୁ ଅନୁଷ୍ଠାନ କରିଥାଆନ୍ତି । ସାଧନାର ବିଭିନ୍ନ ଅଙ୍ଗ ସମ୍ବନ୍ଧରେ ଶ୍ରୀମା'ଙ୍କର ବହୁବିଧ ଉକ୍ତି ପ୍ରତି ଦୃଷ୍ଟିପାତ କଲେ ଆମେ ତାହା ଭଲ ଭାବରେ ବୁଝିପାରିବା । ରେଙ୍ଗୁନ୍‌ର ଶ୍ରୀଶ୍ୟାମାଚରଣ ଚକ୍ରବର୍ତ୍ତୀ ସ୍ୱାମୀଜୀଙ୍କର 'ରାଜଯୋଗ' ବହି ପଢ଼ି ପ୍ରତିଦିନ ତିନିଘଣ୍ଟା ପ୍ରାଣାୟାମ କରୁଥିଲେ । ଏହା ଯୋଗୁଁ ସେ ସର୍ବଦା ସଁ ସଁ ଶବ୍ଦ ଶୁଣିବାକୁ ପାଉଥିଲେ — ବହୁ ଚେଷ୍ଟା ସତ୍ତ୍ୱେ ତାହା ଭଲ ହେଲା ନାହିଁ । ସୁତରାଂ ସେ କାମରୁ ଅବକାଶ ନେଇ ବେଲୁଡ଼ମଠକୁ ଆସିଲେ ଏବଂ ଶ୍ରୀମା'ଙ୍କ କଥା ଶୁଣି ତାଙ୍କ ଦର୍ଶନ ପାଇଁ ଜୟରାମବାଟୀକୁ ଗଲେ । ସେଠାରେ ପହଞ୍ଚିବା ମାତ୍ରେ ସେହି ଉପସର୍ଗ ଭଲ ହୋଇଥିଲା । ସେ ଶ୍ରୀମା'ଙ୍କ ନିକଟରେ ଯୋଗସାଧନାର ଅଭିପ୍ରାୟ ବ୍ୟକ୍ତ କରିବାରୁ ଶ୍ରୀମା' ଉତ୍ତର ଦେଲେ, ''ତୁମ ଶରୀର ଓ ମନରେ କଅଣ ବା ସାମର୍ଥ୍ୟ ଅଛି ଯେ ତୁମେ ଯୋଗ କରିବ ?'' ଭକ୍ତ ପ୍ରଶ୍ନ କଲେ, ''ତେବେ ମୋର କଅଣ କୌଣସି ଉପାୟ ନାହିଁ ?'' ଶ୍ରୀମା' ଉତ୍ତର ଦେଲେ, ''କଅଣ କରିବାକୁ ହେବ,

ତାହା ମୁଁ କହିଦେବି ।'' ପରେ ଶ୍ରୀମା' ତାଙ୍କୁ ମନ୍ତ୍ରଦୀକ୍ଷା ଦେଇ ଦୁଇଓଳି ଜପ କରିବାକୁ କହିଲେ । ଭକ୍ତ ଅଧିକା କିଛି କରିବାକୁ ହେବ କି ନାହିଁ ପଚାରିବାରୁ ଶ୍ରୀମା' ଉତ୍ତର ଦେଲେ, ''ଏତିକି କଲେ ଯଥେଷ୍ଟ ହେବ ।'' ଶ୍ୟାମାଚରଣବାବୁ ପ୍ରଶ୍ନ କଲେ, ''ରାସ୍ତାରେ ଯିବା ଆସିବା ସମୟରେ କଅଣ କରିବି ?'' ମା' କହିଲେ, ''କେବଳ ସ୍ମରଣ କଲେ ଚଳିବ ।''

କାଶୀଧାମରେ ଜଣେ ସନ୍ନ୍ୟାସୀ ଭକ୍ତ ଶ୍ରୀମା'ଙ୍କୁ ପ୍ରଶ୍ନ କଲେ, ''ଅଳ୍ପ ପ୍ରଣାୟାମ ଅଭ୍ୟାସ କରୁଛି । ତା' କରିବା ଉଚିତ କି ?'' ଶ୍ରୀମା' ଉତ୍ତର ଦେଲେ, ''ଅଳ୍ପ ଅଳ୍ପ କଲେ କ୍ଷତି ନାହିଁ । ବେଶୀ କରି ମୁଣ୍ଡ ଗରମ କରିବା ଭଲ ନୁହେଁ । ମନ ଯଦି ଆପଣା ଛାଏଁ ସ୍ଥିର ହୁଏ ତା'ହେଲେ ପ୍ରାଣାୟାମର କି ପ୍ରୟୋଜନ ?'' ଶ୍ରୀମା' ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଯୋଗାସନ ଅଭ୍ୟାସ କରିବା ପସନ୍ଦ କରୁ ନ ଥିଲେ; କିନ୍ତୁ ଦୀର୍ଘକାଳ ବସି ଜପଧ୍ୟାନର ସୁବିଧା ପାଇଁ ସେ ଆସନ ଅଭ୍ୟାସ କରିବାକୁ ଉପଦେଶ ଦେଉଥିଲେ—''କୌଣସି ଗୋଟିଏ ଆସନ ଅଭ୍ୟାସ କରିବ, ଯାହାଦ୍ୱାରା କି ଅନେକ ସମୟ—ଦୁଇ ତିନି ଘଣ୍ଟା ବସିପାରିବ । ଯେତେବେଳେ ଗୋଡ଼ ଝିମ୍ ଝିମ୍ କରିବ ସେତେବେଳେ ଗୋଡ଼ ବଦଳାଇବ; ପରେ ଆଉ କଷ୍ଟ ହେବ ନାହିଁ ।'' ଶ୍ରୀମା' ବିଗ୍ରହ ପୂଜାଦିର ଉପକାରିତା ବିଷୟରେ ଗୁରୁତ୍ୱ ଦେଉଥିଲେ । କାଶୀଧାମରେ ଶ୍ରୀବିଶ୍ୱନାଥଙ୍କ ପ୍ରସଙ୍ଗରେ ଜଣେ ଭକ୍ତ କହିଲେ, ''ମା' ପଥରର ଶିବଲିଙ୍ଗ ଆଉ ଭଲ ଲାଗୁନାହିଁ ।'' ମା' ବିସ୍ମୟର ସହିତ ଉତ୍ତର ଦେଲେ, ''କଅଣ କହୁଛ ବାବା ! କେତେ ମହାପାପୀ କାଶୀଧାମକୁ ଆସୁଛନ୍ତି ଓ ବିଶ୍ୱନାଥଙ୍କୁ ସ୍ପର୍ଶ କରି ଉଦ୍ଧାର ହୋଇଯାଉଛନ୍ତି । ସେ ସମସ୍ତଙ୍କର ପାପ ନିର୍ବିକାରରେ ଗ୍ରହଣ କରୁଛନ୍ତି ।'' ଶାସ୍ତ୍ରଗ୍ରନ୍ଥ ଅଧ୍ୟୟନ ବିଷୟରେ ଶ୍ରୀମା' ଅନେକଙ୍କୁ ଉତ୍ସାହ ଦେଉଥିଲେ । ଗୀତାରୁ ପ୍ରତ୍ୟହ ଅନ୍ତତଃପକ୍ଷେ ଦୁଇ ଚରୋଟି ଶ୍ଳୋକ ପଢ଼ିବାକୁ କହୁଥିଲେ ।

ଭାବପ୍ରବଣ ଭକ୍ତମାନେ ଅନେକ ସମୟରେ ମୂଳତତ୍ତ୍ୱ ଭୁଲିଯାଇ ଅନୁଷ୍ଠାନକୁ ଚରମ ଲକ୍ଷ୍ୟ ବୋଲି ମନେ କରନ୍ତି । ଏ ବିଷୟରେ ଶ୍ରୀମା' ସାବଧାନ କରି ଦେଉଥିଲେ । ଜଣେ ଭକ୍ତଙ୍କୁ ଶ୍ରୀମା' ଲେଖିଥିଲେ, ''ତୁମର ଉପବୀତ ନେବା ବିଷୟରେ ମୁଁ ଆଉ କଅଣ କହିବି ? ଏହା ମନ୍ଦ ନୁହେଁ—କେବଳ ଏକ ସାମାଜିକ ବ୍ୟାପାର ମାତ୍ର । ଏ ବିଷୟରେ ତୁମେ ଯାହା ଭଲ ବିବେଚନା କରିବ ତାହା କରିବ । ଉପବୀତ ନେଲେ ଯେପରି ତାହାର ସଦ୍‌ବ୍ୟବହାର କରିପାରିବ ସେଥିପ୍ରତି ବିଶେଷ ଲକ୍ଷ୍ୟ ରଖିବ । ତା' ଯଦି ନ ପାରିବ, ତେବେ କେବଳ ଲୋକ ଦେଖାଇବା ପାଇଁ ଏପରି କରିବାର ଅର୍ଥ କଅଣ ? ପ୍ରଥମେ ନିଜ ଇଷ୍ଟମନ୍ତ୍ର ଜପ କରି ପରେ ଅନ୍ୟ ଯାହା ଇଚ୍ଛା ତାହା ଜପ କରିପାର ? ଜପର କୌଣସି ବିଧିନିଷେଧ ନାହିଁ ସତ, କିନ୍ତୁ ସକାଳ ସଂଧ୍ୟା ଏଥିପାଇଁ ପ୍ରକୃଷ୍ଟ ସମୟ । ଯେଉଁ ସମୟରେ

ହେଉ ପ୍ରତ୍ୟେକ ଦିନ ଜପ କରିବ—ବାଦ ଦେବା ଭଲ ନୁହେଁ ।'' ଜଣେ ସ୍ତ୍ରୀ-ଭକ୍ତଙ୍କର ଶିବପୂଜା ପାଇଁ ଆଗ୍ରହ ହେଲା; ଅନୁମତି ପାଇଁ ଶ୍ରୀମା'ଙ୍କୁ ପଚାରିବାରୁ ସେ କହିଲେ, ''ମୁଁ ଯେଉଁ ମନ୍ତ୍ର ଦେଇଛି ସେଥିରେ ସବୁ ଅଛି—ଦୁର୍ଗାପୂଜା, କାଳୀପୂଜା, ସବୁ ଏହି ମନ୍ତ୍ରଦ୍ୱାରା ହେବ ।...ତୁମର ସେ ସବୁର ପ୍ରୟୋଜନ ନାହିଁ, ତାହା କରିବା ମାନେ ସମସ୍ୟା ବଢ଼ାଇବା ।'' ପୂଜାପଦ୍ଧତି ଅନୁଯାୟୀ ଠାକୁରଙ୍କୁ ଭୋଗ ନିବେଦନ କରିବା କଥା ପଚାରିବାରୁ ଶ୍ରୀମା' କହିଲେ, ''ପୂଜାପଦ୍ଧତିର ଏତେ ପ୍ରୟୋଜନ ନାହିଁ । ଇଷ୍ଟମନ୍ତ୍ର ଜପିଲେ ସବୁ ହେବ ।''

ଶ୍ରୀମା'ଙ୍କର ଦୃଷ୍ଟି ସର୍ବଦା ଜୀବନର ଚରମ ଉଦ୍ଦେଶ୍ୟ ଭଗବତ୍‌ପ୍ରାପ୍ତି ଉପରେ ନିବଦ୍ଧ ଥିବାରୁ ସେ ପାରିପାର୍ଶ୍ୱିକ ଅବସ୍ଥା ବା ଘଟଣାବଳୀକୁ ଗୁରୁତ୍ୱ ଦେଉ ନ ଥିଲେ । କୌଣସି ଆନ୍ତରିକ ସଦୁପାୟ ସେହି ଚରମ ଉଦ୍ଦେଶ୍ୟର ପରିପୂରକ ବୋଲି ତାଙ୍କର ଧାରଣା ହେଲେ ସେ ତାହା ଗ୍ରହଣ କରୁଥିଲେ ଏବଂ ଦୀକ୍ଷିତ ଭକ୍ତର ଦୃଷ୍ଟି ମଧ୍ୟ ସେଥିପ୍ରତି ଆକୃଷ୍ଟ କରୁଥିଲେ ।

ଜଣେ ଭକ୍ତ ଚା' ନ ପିଇ ଧ୍ୟାନଜପ ଇତ୍ୟାଦି କିଛି କରିପାରୁ ନ ଥିଲେ । ସୁତରାଂ ମନ୍ତ୍ର ଗ୍ରହଣ କରି ଏ ବିଷୟରେ ଶ୍ରୀମା'ଙ୍କର ନିର୍ଦ୍ଦେଶ ଚାହିଁବାରୁ ସେ କହିଲେ, ''ବାବା, ମା' କ'ଣ କେବେ ଧରମ-ମା' ହୋଇପାରିବ ? ତୁମର ଯେପରି ଖୁସୀ ସେପରି କରିବ—ଆଗେ ଖାଇ ପରେ ଜପଧ୍ୟାନ କରିବ ।'' ଦିନେ ନଳିନୀବାବୁଙ୍କୁ ଶ୍ରୀମା' ପିଠା ଖାଇବାକୁ ଦେଇଥିଲେ । ତାଙ୍କ ଜନନୀଙ୍କ ଦେହତ୍ୟାଗ ହୋଇଥିବାରୁ ସେତେବେଳେ ତାଙ୍କର ଅଶୌଚ, ସୁତରାଂ ପିଠା ଖାଇବା ପାଇଁ ମା'ଙ୍କ ନିର୍ଦ୍ଦେଶ ଚାହିଁଲେ । ମା' କହିଲେ, ''ସେଥିରେ କୌଣସି ଦୋଷ ନାହିଁ ବାବା ! ମୁଁ ମଧ୍ୟ ତୋର ମା' ! ମୁଁ ଦେଉଛି—କୌଣସି ଦୋଷ ହେବ ନାହିଁ ।'' ଆଉ ଜଣେ ଭକ୍ତଙ୍କୁ ଆହାର ବିଷୟରେ ଶ୍ରୀମା' କହିଥିଲେ, ''ବାବା, ତୁମର ମାଛମାଂସ ଯାହା ଇଚ୍ଛା ଖାଇବ । ତେବେ ଠାକୁର ଶ୍ରାଦ୍ଧ, ବିବାହ ଏବଂ ପ୍ରାୟଶ୍ଚିତ୍ତର ଅନ୍ନ ଖାଇବାକୁ ନିଷେଧ କରୁଥିଲେ ।

ଜଣେ ସ୍ତ୍ରୀ-ଭକ୍ତ ଶ୍ରୀମା'ଙ୍କୁ ପ୍ରଶ୍ନ କଲେ, ''ମା' ! ସ୍ତ୍ରୀ-ଲୋକମାନଙ୍କର ଋତୁକାଳୀନ ଅବସ୍ଥାରେ କ'ଣ ଠାକୁରଙ୍କର ପୂଜା କରିବା ଉଚିତ ?'' ଏ ବିଷୟରେ ଠାକୁର ଶ୍ରୀମା'ଙ୍କୁ ଯେଉଁ ଉପଦେଶ ଦେଇଥିଲେ ସେ ତାହାର ଉଲ୍ଲେଖ କରି କହିଲେ, ''ହଁ ମା', ପୂଜା କରିପାର, ଯଦି ଠାକୁରଙ୍କ ଉପରେ ସେପରି ଆନ୍ତରିକତା ଥାଏ ।...ପୂଜା କର, କିନ୍ତୁ ମନରେ କୌଣସି ଦ୍ୱିଧା ଆସିଲେ କର ନାହିଁ ।''

କିନ୍ତୁ ବିଧିବିଧାନକୁ ମଧ୍ୟ ଯଥାସମ୍ଭବ ମର୍ଯ୍ୟାଦା ଶ୍ରୀମା' ଦେଉଥିଲେ ଏବଂ ଅଯଥା ତାହାର ନିନ୍ଦା ନ କରି ଶିଷ୍ୟମାନଙ୍କୁ ଭକ୍ତିମାର୍ଗରେ ଉନ୍ନୀତ କରାଇବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତାଙ୍କର ଦୀକ୍ଷାପ୍ରଣାଳୀ ମଧ୍ୟ ଏହି ଦୃଷ୍ଟିଭଙ୍ଗୀଦ୍ୱାରା

ପରିଚାଳିତ ହେଉଥିଲା । ଥରେ ଜଣେ ଦୀକ୍ଷାର୍ଥୀଙ୍କୁ ଶ୍ରୀମା' କହିଥିଲେ, ''ତୁମର କୁଳଗୁରୁ ତ ଅଛନ୍ତି, ତାଙ୍କଠାରୁ ନିଅ ।'' ପୁଣି କୌଣସି କୌଣସି କ୍ଷେତ୍ରରେ ସେ କୁଳଗୁରୁଙ୍କ ଦ୍ୱାରା ପ୍ରଦତ୍ତ ଦୀକ୍ଷାମନ୍ତ୍ର ଜପ କରିବା ପରେ ନିଜ ପ୍ରଦତ୍ତ ମନ୍ତ୍ର ଜପ କରିବାକୁ କହୁଥିଲେ । ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁଙ୍କ ମଧ୍ୟରେ ପାର୍ଥକ୍ୟ ସ୍ୱୀକାର କରି ସେ ଦିନେ ଜଣେ ଭକ୍ତଙ୍କୁ କହିଥିଲେ ଯେ, ଯୋଗ ଶିକ୍ଷାଦି ପାଇଁ ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ କରିବାକୁ ପଡ଼େ । କିନ୍ତୁ ଦୀକ୍ଷାଗୁରୁଙ୍କ ପରିବର୍ତ୍ତନ ଅସମ୍ଭବ । ଜଣେ ଦୀକ୍ଷାପ୍ରାର୍ଥୀଙ୍କ ଆବେଦନ ଶୁଣି ଶ୍ରୀମା' ମନ୍ତବ୍ୟ କରିଥିଲେ, ''ଦୀକ୍ଷା ନେବାର ଉଦ୍ଦେଶ୍ୟ ସରଳ ମନରେ ସାଧନଭଜନ କରି ଭଗବତ୍‌ପ୍ରାପ୍ତି ପାଇଁ ଚେଷ୍ଟା କରିବା — କୁଳଗୁରୁଙ୍କ ବୃତ୍ତି ନଷ୍ଟ କରିବା ନୁହେଁ । ମୁଁ ଦୀକ୍ଷା ଦେଲେ ମୋତେ ଯେପରି ଭକ୍ତି କରନ୍ତା, ଯଦି ସେହି ଭାବରେ ତା'ର କୁଳଗୁରୁଙ୍କୁ ଶ୍ରଦ୍ଧା କରେ ଏବଂ ତାଙ୍କ ବାର୍ଷିକ ବୃତ୍ତି ଯଥାଶକ୍ତି ଦେବା ପାଇଁ ରାଜି ଥାଏ, ତେବେ ଦୀକ୍ଷା ହୋଇପାରେ ।'' ପ୍ରାର୍ଥୀ ସେଥିରେ ସମ୍ମତ ହେବାରୁ ଶ୍ରୀମା' ତାଙ୍କୁ କୃପା କରିଥିଲେ । ଦୀକ୍ଷାଦାତା ଗୁରୁଙ୍କ ସମ୍ବନ୍ଧରେ ତାଙ୍କ ଦୃଷ୍ଟି ଅତି ଉଦାର ଥିଲା । ଜଣେ ଅଯୋଗ୍ୟ ବ୍ୟକ୍ତି ମନ୍ତ୍ର ଦେଉଛନ୍ତି ଶୁଣି ସେ କହିଥିଲେ, ''ଏମାନେ ସବୁ ବ୍ୟବସାୟୀ ସାଧୁ । ତେବେ ଏଥିରେ ମଧ୍ୟ ଉପକାର ହୁଏ । ଅନ୍ତତଃପକ୍ଷେ ଏମାନଙ୍କ କଥାରେ ମଣିଷ ଯଥାସମ୍ଭବ ଭଗବାନଙ୍କ ନାମ କରିବ ।'' କିନ୍ତୁ ଏପରି ଗୁରୁମାନଙ୍କର ଅଯୌକ୍ତିକ ଅର୍ଥଦାବୀକୁ ଶ୍ରୀମା' ପ୍ରଶ୍ରୟ ଦେଉ ନ ଥିଲେ । ଜଣେ ଭକ୍ତଙ୍କୁ ସେ ଲେଖିଥିଲେ କୁଳଗୁରୁଙ୍କୁ ଯଥାରୀତି ବାର୍ଷିକ ବୃତ୍ତି ଦେବ, କିନ୍ତୁ ଅନ୍ୟ କିଛି ଦେବା ପାଇଁ ତୁମର ସାମର୍ଥ୍ୟ ଥିବା ଦରକାର । ଅର୍ଥ ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ତୁମେ ଏତେ ଟଙ୍କା କୋଉଠୁ ପାଇବ ? ଜଣେ ସ୍ତ୍ରୀ-ଭକ୍ତ ଶ୍ରୀମା'ଙ୍କ ନିକଟରୁ ଦୀକ୍ଷା ନେବାରୁ ତାଙ୍କର କୁଳଗୁରୁ ତାଙ୍କୁ ଅଭିଶାପ ଦେଇଥିଲେ । ଏକଥା ଶ୍ରୀମା'ଙ୍କ ନିକଟରେ ନିବେଦିତ ହେବାରୁ ସେ ଉତ୍ତର ଦେଲେ, ''ଯେଉଁ ବ୍ୟକ୍ତି ଠାକୁରଙ୍କର ଶରଣାଗତ ହେବ ତା'ର ବ୍ରହ୍ମଶାପଦ୍ୱାରା ମଧ୍ୟ କୌଣସି କ୍ଷତି ହେବ ନାହିଁ । ତୁମର କୌଣସି ଭୟ ନାହିଁ ।''

ମନ୍ତ୍ରଗ୍ରହଣ ପାଇଁ ଆନ୍ତରିକ ଆଗ୍ରହ ଆବଶ୍ୟକ, ଆଗ୍ରହ ଥିଲେ ବହୁବାଧାସତ୍ତ୍ୱେ ଉପାୟ ଆବିଷ୍କୃତ ହୁଏ । ଜଣେ ସ୍ତ୍ରୀଲୋକ ଶ୍ରୀମା'ଙ୍କୁ ଲେଖିଥିଲେ ଯେ, ଶାଶୁଶ୍ୱଶୁରଙ୍କ ଅମତ ଯୋଗୁଁ ସେ ଦୀକ୍ଷା ନେଇପାରୁ ନାହାନ୍ତି । ଶ୍ରୀମା' ତାଙ୍କୁ ଉତ୍ତର ଦେଇ ଜଣାଇଲେ ଯେ, ଭଗବାନ ବିଶ୍ୱବ୍ରହ୍ମାଣ୍ଡରେ ସର୍ବତ୍ର ରହିଛନ୍ତି । ତାଙ୍କୁ ଆନ୍ତରିକ ଭାବରେ ଡାକିଲେ ସେ କୃପା କରିବେ । ଆଉ ଜଣେ ଭକ୍ତଙ୍କୁ ଶ୍ରୀମା' ପତ୍ରରେ ଜଣାଇଥିଲେ, ''ମୋଟ କଥା ହେଉଛି, ଯାହାର ସଂସାର-ବନ୍ଧନରୁ ମୁକ୍ତ ହେବାର ସମୟ ହୋଇଛି, ସେ ସମସ୍ତ ଶୃଙ୍ଖଳରୁ ମୁକ୍ତ ହୋଇ ବାହାରି ଆସିବ, ତାଙ୍କୁ କେହି ବାନ୍ଧି ରଖିପାରିବେ ନାହିଁ ।''

ଯୋଗ୍ୟ ପ୍ରାର୍ଥୀ ପାଇଲେ ଶ୍ରୀମା' ଅନେକ ସମୟରେ ସ୍ୱତଃପ୍ରବୃତ୍ତ ହୋଇ ଦୀକ୍ଷା ଦେଉଥିଲେ । କଟକର ବୈକୁଣ୍ଠବାବୁ ୧୯୧୦ ଖ୍ରୀଷ୍ଟାବ୍ଦରେ କୋଠାର ଗ୍ରାମରେ (ଭଦ୍ରକ ଜିଲ୍ଲା) ଶ୍ରୀମା'ଙ୍କୁ ଦର୍ଶନ କରିବାକୁ ଯାଇଥିଲେ । କୋଠାରଠାରେ ଠାକୁରଙ୍କର ବିଶିଷ୍ଟ ଭକ୍ତ ବଳରାମବାବୁଙ୍କର ଜମିଦାରୀ ଥିଲା । ମା'ଙ୍କର ଦର୍ଶନଲାଭ କରି ବୈକୁଣ୍ଠବାବୁ କଟକକୁ ଫେରିଗଲେ । ସେତେବେଳେ ଦୀକ୍ଷା ଗ୍ରହଣ କରିବାର କଥା ତାଙ୍କ ମନରେ ନ ଥିଲା; କିନ୍ତୁ ଦୁଇ ଚାରିଦିନ ପରେ ପ୍ରବଳ ଆକର୍ଷଣ ହେତୁ ପୁଣିଥରେ କୋଠାରରେ ଆସି ପହଞ୍ଚିଲେ । କଟକକୁ ଫେରିବା ପୂର୍ବଦିନ ଶ୍ରୀମା'ଙ୍କୁ ପ୍ରଣାମ କରିବାକୁ ଯେତେବେଳେ ସେ ଆସିଲେ ସେତେବେଳେ ମା' କହିଲେ, ''କାଲି ଦିନଟା ରହ, ତା'ପରଦିନ ଯିବ ।'' ପରେ ବୈକୁଣ୍ଠବାବୁ ଶୁଣିବାକୁ ପାଇଲେ ଯେ ଶ୍ରୀମା' ତାଙ୍କୁ କୃପା କରିବେ । ଅତଏବ ତାଙ୍କୁ ସେଦିନ ସକାଳେ ସ୍ନାନ କରି ପ୍ରସ୍ତୁତ ରହିବାକୁ ହେବ । ସେ ଏସବୁ କଥାର କୌଣସି ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । ନିର୍ଦ୍ଦିଷ୍ଟ ସମୟରେ ସେ ଶ୍ରୀମା'ଙ୍କ ନିକଟରେ ଉପସ୍ଥିତ ହେଲେ । ମା' ତାଙ୍କୁ ପଚାରିଲେ, ''ତୁମେ ମନ୍ତ୍ରନେବ ?'' ବୈକୁଣ୍ଠବାବୁ କହିଲେ, ''ଆପଣଙ୍କର ଯଦି ଇଚ୍ଛା ହୁଏ ତା'ହେଲେ ଦିଅନ୍ତୁ, ମୁଁ କିଛି ଜାଣେ ନାହିଁ ।'' ମା' କହିଲେ, ''ତୁମେ କେଉଁ ଦେବତାଙ୍କର ମନ୍ତ୍ର ନେବ ?'' ଦୀକ୍ଷା ବିଷୟରେ ପୂର୍ବରୁ କିଛି ଚିନ୍ତା କରି ନ ଥିବାରୁ ଏହି ପ୍ରଶ୍ନର କୌଣସି ଉତ୍ତର ସେ ଦେଇପାରିଲେ ନାହିଁ । ଶ୍ରୀମା' ଇଚ୍ଛାନୁରୂପ ମନ୍ତ୍ର ଦେଇ ଭକ୍ତଙ୍କୁ କୃତାର୍ଥ କଲେ ।

ଜୟରାମବାଟୀରେ ଦୀର୍ଘଦିନ ମ୍ୟାଲେରିଆ ଜ୍ୱରରେ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଶ୍ରୀମା' କଲିକତା ଆସିଲେ । ଜ୍ୱର କମିଗଲା, କିନ୍ତୁ ଦେହ ଖୁବ୍ ଦୁର୍ବଳ, ଭକ୍ତମାନଙ୍କର ଦର୍ଶନ ସମ୍ପୂର୍ଣ୍ଣ ବନ୍ଦ । ଏହି ସମୟରେ ମୁମ୍ବାଇରୁ ଜଣେ ପାର୍ସୀଯୁବକ ମା'ଙ୍କ ଦର୍ଶନ ପାଇଁ ଆସିଲେ । ସ୍ୱାମୀ ବିବେକାନନ୍ଦଙ୍କର କିଛି ବହି ପଢ଼ି ତାଙ୍କ ମନରେ ଧର୍ମ ବିଷୟରେ ଖୁବ୍ ଆଗ୍ରହ ବଢ଼ିଛି । ତାଙ୍କର ଆଗ୍ରହ ଦେଖି ସାରଦାନନ୍ଦଜୀ ତାଙ୍କୁ ଉପରକୁ ଯିବାକୁ ଅନୁମତି ଦେଲେ । ଶ୍ରୀମା'ଙ୍କର ଦର୍ଶନଲାଭରେ ଧନ୍ୟ ହୋଇ ଯୁବକ ପ୍ରାର୍ଥନା କଲେ, ''ମାଈଜୀ, କୁଛ ମୂଳ ମନ୍ତ୍ର ଦିଜିଏ, ଜିସ୍‌ସେ ଖୁଦା ପହଚାନା ଯାଏ ।'' ଶ୍ରୀମା' ସେବକ ରାସବିହାରୀ ମହାରାଜଙ୍କୁ ପଚାରିଲେ, ''ଦେବି ? ଦେଇଦିଏ ।'' ସେବକ କହିଲେ, ''ବର୍ତ୍ତମାନ ଭକ୍ତମାନଙ୍କର ଦର୍ଶନ ନିଷିଦ୍ଧ, ମାତ୍ର କେତେଦିନ ହେଲା ଜ୍ୱରରୁ ଉଠିଛନ୍ତି । ଶରତ ମହାରାଜ ଶୁଣିଲେ କ'ଣ କହିବେ ! ବର୍ତ୍ତମାନ ନୁହେଁ, ପରେ ହେବ ।'' ମା' କହିଲେ, ''ଆଚ୍ଛା, ତୁମେ ଶରତକୁ ପଚାରିଆସ ।'' ଶରତ ମହାରାଜ ତତ୍‌କ୍ଷଣାତ୍ ଦୀକ୍ଷା ଦେବା କଥା ଅନୁମୋଦନ କଲେ । ସେବକ ଫେରିଆସି ଦେଖିଲେ ଯେ ଶ୍ରୀମା' ଦୁଇଟି ଆସନ ପାରି ଦୀକ୍ଷା ଦେବା ପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି । ଦୀକ୍ଷା ଦେଇସାରି ଶ୍ରୀମା' କହିଲେ, ''ଖୁବ୍ ଭଲ ପିଲା, ତାକୁ ଯାହା କହିଲି ସବୁ ବୁଝିପାରିଲା ।''

ବସ୍ତୁତଃ ଅନ୍ତରର ପ୍ରେରଣା ପାଇ ଶ୍ରୀମା'ଭକ୍ତମାନଙ୍କୁ କୃତାର୍ଥ କରୁଥିଲେ । ସେ କହୁଥିଲେ, ''ଏମାନଙ୍କୁ ଠାକୁରେ ନିଜେ ପଠାଉଛନ୍ତି ।'' ଏପରି ଦୀକ୍ଷା ଦେବା ସମୟରେ ଭାଷାର ବ୍ୟବଧାନ କୌଣସି ବିଘ୍ନ ସୃଷ୍ଟି କରିପାରୁ ନ ଥିଲା । ଦୀକ୍ଷା ସମୟରେ ଯାହା ବକ୍ତବ୍ୟ ଶ୍ରୀମା' ବଙ୍ଗଳାରେ କହିଯାଉଥିଲେ, କିନ୍ତୁ ଆଶ୍ଚର୍ଯ୍ୟର କଥା ଦୀକ୍ଷାର୍ଥୀମାନେ ତାହାର ମର୍ମ ବୁଝିପାରୁଥିଲେ । ଶ୍ରୀମା' ଯେତେବେଳେ ଦକ୍ଷିଣ ଭାରତରେ ଥିଲେ, ସେତେବେଳେ ସ୍ଥାନୀୟ ଭକ୍ତମାନେ ଆସି କହୁଥିଲେ— ମନ୍ତ୍ରମ୍, ଉପଦେଶମ୍ । ଦୀକ୍ଷା ଦେବା ସମୟରେ ମନର ଅନ୍ତସ୍ଥଳରୁ ଯେଉଁ ମନ୍ତ୍ର ଆସୁଥିଲା, ତାହା ଦୀକ୍ଷାର୍ଥୀମାନଙ୍କର ଯଥାର୍ଥ ମନ୍ତ୍ର ବୁଝି ଶ୍ରୀମା' ତାହା ପ୍ରଦାନ କରୁଥିଲେ । ସେ କହୁଥିଲେ, ''ମନ୍ତ୍ର ଦେବା ସମୟରେ ମନ କହିଦିଏ, 'ଏହି ମନ୍ତ୍ର ଦିଅ, ଏହି ମନ୍ତ୍ର ଦିଅ ।' ପୁଣି କୌଣସି କୌଣସି କ୍ଷେତ୍ରରେ ଅନେକ ଚିନ୍ତା କରିବା ପରେ ମନ୍ତ୍ର ଦେଖିବାକୁ ପାଏ । ...ଯଦି ଭଲ ଆଧାର ହୁଏ, ସେ କ୍ଷେତ୍ରରେ ମନ୍ତ୍ର ତତ୍କ୍ଷଣାତ୍ ମନକୁ ଆସେ ।''

ଅନେକ କ୍ଷେତ୍ରରେ ଶ୍ରୀମା' ଅଳ୍ପବୟସ୍କ ବାଳକମାନଙ୍କୁ ମଧ୍ୟ ଦୀକ୍ଷା ଦେଇଛନ୍ତି । ଗୋଟିଏ ୧୨ ବର୍ଷ ବୟସ୍କ ବାଳକ ଶ୍ରୀମା'ଙ୍କୁ ପ୍ରଣାମ କରି କାନ୍ଦିବାକୁ ଲାଗିଲା, କହିଲା, ''ମା' ! ମୋତେ କୃପା କରନ୍ତୁ ।'' କିନ୍ତୁ ବାଳକର କଥାକୁ ସେବକମାନେ କୌଣସି ଗୁରୁତ୍ୱ ଦେଲେ ନାହିଁ । ପରଦିନ ଜଣେ ସେବକ ଦେଖିଲେ ଯେ ବାଳକଟି ଉଦ୍‌ବୋଧନ ଭବନର ବାହାର ପଟ ବାରଣ୍ଡାରେ ବସିଛି । ଅନେକ ପିଲା ସେଠାରେ ବସନ୍ତି, ସୁତରାଂ ସେବକ ଏ ବିଷୟରେ କୌଣସି ମନଯୋଗ ନ ଦେଇ ବଜାରକୁ ଚାଲିଗଲେ । ଫେରିଆସି ଦେଖିଲେ ବାଳକ ହସି ହସି ଘରୁ ବାହାରି ଆସୁଛି । ପଚାରିବାରୁ ଉତ୍ତର ପାଇଲେ ଯେ, ତାହାର ଦୀକ୍ଷା ହୋଇଯାଇଛି । ସେବକ ଅନୁସନ୍ଧାନ କରି ଜାଣିଲେ, ଶ୍ରୀମା' ରାଧୁକୁ ପଠାଇ ପିଲାଟିକୁ ଉପରକୁ ଡକାଇ ଆଣିଲେ ଓ ଦୀକ୍ଷାଦେଲେ । ବର୍ତ୍ତମାନ ସେ ଗୁରୁ-ଦକ୍ଷିଣା ପାଇଁ ଫଳ ଇତ୍ୟାଦି କିଣିବା ପାଇଁ ବଜାରକୁ ଯାଉଛି । ସେବକ ମହାରାଜ ପଚାରିଲେ, ''ମା' ! ଏହି ଅଳ୍ପବୟସ୍କ ପିଲାକୁ ଦୀକ୍ଷା ଦେଲ ? ସେ କଅଣ ବୁଝିବ ?'' ମା' ଉତ୍ତର ଦେଲେ, ''ବୟସ ଯାହା ହେଉ ବାବା, ପିଲାଲୋକ— କାଲି କେମିତି ଗୋଡ଼ ଧରି କାନ୍ଦିଲା ! ଭଗବାନଙ୍କ ପାଇଁ କିଏ କାନ୍ଦୁଛି ? ଏପରି ଶୁଭବୁଦ୍ଧି କେତେଜଣଙ୍କର ହୁଏ ?''

ରାମେଶ୍ୱର ତୀର୍ଥରୁ ଶ୍ରୀମା' କଲିକତା ଫେରିଲେ । ଜନ୍ମାଷ୍ଟମୀର କେତେଦିନ ପୂର୍ବରୁ କୋଆଲପଡ଼ାରୁ ଜଣେ ବ୍ରହ୍ମଚାରୀ ବାଳକ ଦୀକ୍ଷା ନେବା ପାଇଁ ଆସିଲା । ସେତେବେଳେ ତାହାର ବୟସ ୧୩ ବର୍ଷ । ଶ୍ରୀମା' ତାକୁ ଅତି ସ୍ନେହ କରୁଥିଲେ । ଦୀକ୍ଷା ନେବା କଥା ଶୁଣି ଗୋଲାପ ମା' ପ୍ରବଳ ବାଧା ଦେଲେ, କହିଲେ, ''ଏଡ଼େ ଟିକିଏ ପିଲା, ଦୁଇଦିନ ପରେ ମନ୍ତ୍ର ଭୁଲିଯିବ । ଏବେଠାରୁ ପୁଣି

ଦୀକ୍ଷା କ'ଣ ! ମା' ତ ତୁମରି ଦେଶର ଲୋକ, ସେ ଯେତେବେଳେ ସେଠାକୁ ଯିବେ ସେତେବେଳେ ଦୀକ୍ଷା ନେବ ।'' ଗୋଲାପ-ମା' ଚାଲିଯିବାରୁ ମା' କହିଲେ, ''ଗୋଲାପର କଥା ଶୁଣ ! ପିଲାଦିନେ ଯିଏ ଯାହା ଶିଖେ ତାହା କ'ଣ କେବେ ଭୁଲିବା ସମ୍ଭବ ? ଏବେ ଯେତିକି ପାରିବ ସେତିକି କରିବ । ପରେ ମୁଁ ଦେଖିବି ।'' ଜନ୍ମାଷ୍ଟମୀ ଦିନ ଦୀକ୍ଷା ହୋଇଗଲା । ମା' ଯେପରି ଜପ କରିବାକୁ ନିର୍ଦ୍ଦେଶ ଦେଇଥିଲେ ଦୀକ୍ଷା ପରେ ବାଳକକୁ ସେହିପରି ଜପ କରିବାର ଦେଖି ମା' କହିଲେ, ''ଏଇ ତ, ଏହା ପୁଣି ମନେ ରହିବ ନାହିଁ ? ଖୁବ୍ ରହିବ । ପରେ ପ୍ରୟୋଜନ ଅନୁଯାୟୀ ସବୁ ଦେଖାଇ ଦେବି ।'' ଦୀକ୍ଷା ପରେ ତାହାକୁ ଦୁଇଟି ପ୍ରସାଦୀ ଗୋଲାପଜାମ୍ ଖାଇବାକୁ ଦେଇ ମା' କହିଲେ, ''ଲାଜ କର ନାହିଁ; ଦୀକ୍ଷା ପରେ ପ୍ରସାଦ ପାଇବାର ବିଧି ଅଛି ।'' ପରେ ଗ୍ଲାସରେ ପାଣି ପିଇବାକୁ ଦେଲେ ।

ଅଧିକାରୀ ଯଦି ଉପଯୁକ୍ତ ହୁଏ ଏବଂ ଭିତରୁ ଦୀକ୍ଷାଦାନର ପ୍ରେରଣା ଜାଗେ, ତେବେ ଶ୍ରୀମା' ସ୍ଥାନକାଳ ସମ୍ବନ୍ଧରେ ବିଚାର କରୁ ନ ଥିଲେ । ଶିଲଂର ଜଣେ ଭକ୍ତ ପ୍ରତିଜ୍ଞା କଲେ ଯେ, ଯଦି ଶ୍ରୀମା' ଭଗବତୀଙ୍କର ଅବତାର ହୁଅନ୍ତି ତେବେ ସେ ତାଙ୍କୁ ସ୍ୱପ୍ନରେ ସାତଥର ଦେଖା ଦେବେ । ମା'ଙ୍କ କୃପାରୁ ଭକ୍ତ ସାତଥର ସ୍ୱପ୍ନରେ ତାଙ୍କର ଦର୍ଶନ ପାଇଲେ ଏବଂ ଜୟରାମବାଟୀକୁ ଶ୍ରୀମା'ଙ୍କ ଦର୍ଶନ ପାଇଁ ଗଲେ । ଫେରିବା ସମୟରେ ଶ୍ରୀମା' ସ୍ୱୟଂ ତାଙ୍କୁ ଦୀକ୍ଷା ଦେବା କଥା କହିଲେ । ଭକ୍ତ କହିଲେ ଯେ ସେ ପରେ କଲିକତାରେ ଦୀକ୍ଷାନେବେ । ମା' କିନ୍ତୁ ତାଙ୍କୁ ସେହି ମୁହୂର୍ତ୍ତରେ ଦୀକ୍ଷା ଦେବାକୁ ମନସ୍ଥ କଲେ ଏବଂ ଭକ୍ତ ଦ୍ୱିପ୍ରହରର ଭୋଜନ ସାରିଥିବା ସତ୍ତ୍ୱେ ଶ୍ରୀମା' ତାହା ଦୋଷାବହ ବୋଲି ମନେ କଲେ ନାହିଁ । ବାସ୍ତବିକ୍ ସଦ୍‌ଗୁରୁଙ୍କ କୃପା କୌଣସି ନିୟମର ଅଧୀନ ନୁହେଁ ।

ପୁଲିସ୍‌ର ନଜରବନ୍ଦୀରୁ ମୁକ୍ତି ପାଇ ଜଣେ ବାଳକ ସନ୍ଧ୍ୟାବେଳେ ଶ୍ରୀମା'ଙ୍କ ନିକଟରେ ଦୀକ୍ଷା ନେବାର ଆଗ୍ରହ ପ୍ରକାଶ କଲେ । ମା' ସେତେବେଳେ କୋଆଲପଡ଼ା ଆଶ୍ରମରେ ରହୁଥିଲେ । ଆଶ୍ରମ ଉପରେ ପୁଲିସର କଡ଼ା ନଜର । ସ୍ନେହଶୀଳା ଜନନୀ ବାଳକକୁ ପରଦିନ ଦୀକ୍ଷା ଦେବାକୁ ସମ୍ମତ ହେଲେ । ପୁଲିସ୍‌ର ଦୃଷ୍ଟି ଏଡ଼ାଇବା ପାଇଁ ବାଳକକୁ ଆଶ୍ରମ ବାହାରେ ଗୋଟିଏ ଘରେ ରଖିବାର ବ୍ୟବସ୍ଥା ହେଲା । ପ୍ରତ୍ୟୁଷରେ ଶ୍ରୀମା' ଯେତେବେଳେ ବ୍ରହ୍ମଚାରୀ ବରଦାଙ୍କ ସହିତ ରାଧୁ ପାଖକୁ ଯାଉଥିଲେ ସେତେବେଳେ ବାଳକ ସ୍ନାନ କରି ଆସି ମା'ଙ୍କ ନିକଟରେ ଉପସ୍ଥିତ ହେଲା । ମା' ପାଣି ଆଣିବାକୁ କହିବାରୁ ବ୍ରହ୍ମଚାରୀ ଗ୍ଲାସରେ ପାଣି ଆଣି ଦେଲେ । ବ୍ରହ୍ମଚାରୀଙ୍କର ବୋଧ ହେଲା, ଶ୍ରୀମା' ସତେକି ଆସନ ଖୋଜୁଛନ୍ତି, ତେଣୁ କହିଲେ, ''ଆସନ ଆଣି ଦେବି କି ?'' ମା କହିଲେ, ''ଥାଉ,

ଆଉ ଯିବାକୁ ପଡ଼ିବ ନାହିଁ; ଦିଟା କୁଟା ଆଣି ଦିଅ, ଆମେ ଦୁଇଜଣ ବସିବୁ ।'' ଏହିଭାବରେ ବସି ଶ୍ରୀମା' ବାଳକକୁ ମନ୍ତ୍ରଦୀକ୍ଷା ଦେଲେ ।

ଥରେ କଲିକତାରୁ ଫେରିବା ପଥରେ ଶ୍ରୀମା' ବିଷ୍ଣୁପୁର ଷ୍ଟେସନରେ ରେଳଗାଡ଼ି ପାଇଁ ଅପେକ୍ଷା କରୁଥିଲେ । ହଠାତ୍ ଜଣେ ପଶ୍ଚିମାଞ୍ଚଳର କୁଲି ତାଙ୍କୁ ଦେଖି ଅତି ବ୍ୟଗ୍ର ହୋଇ ଧାଇଁ ଆସିଲା ଓ କହିବାକୁ ଲାଗିଲା—''ତୁମ୍ ହମାରି ଜାନକୀ ମାଈ ହୋ ! ତୁମ୍‌କୋ ମେଁ କିତ୍‌ନେ ଦିନ୍‌ସେ ଢୁଁଢ୍ ରହା ହୁଁ । ଇତ୍‌ନେ ଦିନ୍ ତୁମ୍ କାହାଁ ଥୀ ?'' ଏତକ କହି ସେ କାନ୍ଦିବାକୁ ଲାଗିଲା । କୃପାମୟୀ ମା' ତାକୁ ଶାନ୍ତ କରି ଗୋଟିଏ ଫୁଲ ଆଣିବାକୁ କହିଲେ । ସେ ଶ୍ରୀମା'ଙ୍କ ପାଦପଦ୍ମରେ ଫୁଲ ଅର୍ପଣ କଲା ଏବଂ ଶ୍ରୀମା' ତାକୁ ଦୀକ୍ଷା ଦେଲେ ।

ଦିନେ ଜୟରାମବାଟୀରେ ଶ୍ରୀମା' ଭକ୍ତମାନଙ୍କର ପ୍ରଣାମ ନେଉଥିଲେ । ଶେଷରେ ଜଣେ ଆସି ମା'ଙ୍କ ଗୋଡ଼ ଧରି ଅଧୀର ଭାବରେ କାନ୍ଦିବାକୁ ଲାଗିଲା । ପଚାରିବାରୁ କୌଣସି ଉତ୍ତର ଦେଲା ନାହିଁ । ଶ୍ରୀମା' ତା'ର ମନର ଭାବ ବୁଝିଲେ ଏବଂ ସମସ୍ତଙ୍କୁ ସେଠାରୁ ଚାଲିଯିବାକୁ ଇଙ୍ଗିତ କଲେ । ସେହି ଗଛତଳେ ଛିଡ଼ା ହୋଇଥିବା ଅବସ୍ଥାରେ ଭକ୍ତଙ୍କୁ ଦୀକ୍ଷା ଦେଲେ ।

ଜଗଦ୍ଧାତ୍ରୀ ପୂଜା ଉପଲକ୍ଷେ ରାଞ୍ଚିର ଗୋଟିଏ ବାଳକ ଜୟରାମବାଟୀକୁ ଆସିଥିଲା । ପୂଜାର କେତେଦିନ ଶ୍ରୀମା' ବ୍ୟସ୍ତ ଥିବାରୁ ସେ ନିଜର ଦୀକ୍ଷା-ଗ୍ରହଣର ଅଭିଳାଷ ତାଙ୍କୁ ଜଣାଇପାରିଲା ନାହିଁ । ଯେଉଁଦିନ ତା'ର ବିଦାୟ ନେବାର କଥା ସେହି ଦିନ ଶ୍ରୀମା'ଙ୍କର ଦେହ ଭଲ ନ ଥିଲା । ଯେତେବେଳେ ଅନ୍ୟ ଭକ୍ତମାନେ ମା'ଙ୍କୁ ପ୍ରଣାମ କରୁଥିଲେ ପିଲାଟି ବାହାର ବାରଣ୍ଡାରେ ଛିଡ଼ା ହୋଇଥିଲା । ସମସ୍ତେ ଚାଲିଯିବା ପରେ ସେ ଭିତରକୁ ଯାଇ ମା'ଙ୍କ ଗୋଡ଼ରେ ମୁଣ୍ଡ ରଖି ଏପରି କାନ୍ଦିବାକୁ ଲାଗିଲା ଯେ ମା'ଙ୍କ ପାଦ ଅଶ୍ରୁସିକ୍ତ ହେଲା । କରୁଣାମୟୀ ମା' ତାହାର ହାତ ଧରି ପଚାରିଲେ, ''କାନ୍ଦୁଛୁ କାହିଁକି ବାବା ! କ'ଣ ଚାହୁଁ ? ମନ୍ତ୍ର ନେବୁ ?'' ପରେ କବାଟ ବନ୍ଦ କରି ସେହି ଅବସ୍ଥାରେ ମା' ତାକୁ ଦୀକ୍ଷା ଦେଲେ ।

ଗାଁର ଜଣେ ମହିଳା ପିଲାଦିନଠାରୁ ଶ୍ରୀମା'ଙ୍କର ସଖୀ ଥିଲେ । ଦିନେ ଶ୍ରୀମା' ପାଖାପାଖି ଶାୟିତ ଅବସ୍ଥାରେ ସଖୀକୁ ମନ୍ତ୍ର ଶୁଣାଇଥିଲେ ।

କାଶୀରେ ଶ୍ରୀମା' ଦୀକ୍ଷା ଦେଉ ନ ଥିଲେ । ସେ କହୁଥିଲେ, ''ଏଠାରେ ସ୍ୱୟଂ ଶିବ ଗୁରୁ ।'' ଶ୍ରୀଶ୍ରୀଠାକୁରଙ୍କ ଜନ୍ମଦିନରେ ମଧ୍ୟ ସେ ଦୀକ୍ଷା ଦେଉ ନ ଥିଲେ । କିନ୍ତୁ କୌଣସି କୌଣସି କ୍ଷେତ୍ରରେ ଏହି ନିୟମର ବ୍ୟତିକ୍ରମ ହେଉଥିଲା । ମାନ୍ଦ୍ରାଜରେ ଠାକୁରଙ୍କ ଜନ୍ମଦିନରେ ଦୁଇଜଣ ଭକ୍ତଙ୍କୁ ମା' ଦୀକ୍ଷା ଦେଇଥିଲେ । ଜୟରାମବାଟୀରେ ଠାକୁରଙ୍କ ଜନ୍ମତିଥି ଦିନ ଜଣେ ରୁଗ୍‌ଣ ଯୁବକ ଦୀକ୍ଷା ନେବା ପାଇଁ ଆସିଲା । ସେ ଶିକ୍ଷିତ ଉଚ୍ଚ ବଂଶଜାତ ନ ଥିବା ସତ୍ତ୍ୱେ ଶ୍ରୀମା' ତାହାର

ଆନ୍ତରିକ ପ୍ରାର୍ଥନା ଶୁଣିଲେ ଏବଂ ସେବକମାନଙ୍କର ନିଷେଧ ନ ମାନି ଯୁବକକୁ ଦୀକ୍ଷା ଦେଲେ ।

ଶ୍ରୀମା'ଙ୍କର ମନ୍ତ୍ର–ନିର୍ବାଚନ ଯେ ଶିଷ୍ୟର ସଂସ୍କାର ଅନୁଯାୟୀ ହେଉଥିଲା ଏ ବିଷୟରେ ବହୁତ ଦୃଷ୍ଟାନ୍ତ ରହିଛି । ଜଣେ ଅଳ୍ପବୟସ୍କା କୁଳବଧୂ ଦୀକ୍ଷା ନେଇ ଶାଶୁଘରକୁ ଚାଲିଗଲେ । ପରେ ମନ୍ତ୍ରର ସଠିକ୍ ଉଚ୍ଚାରଣ ହେଉଛି କି ନାହିଁ ସନ୍ଦେହ ହେବାରୁ କେତେ ବର୍ଷ ପରେ ମା'ଙ୍କୁ ଦର୍ଶନ କରି ନିଜର ମନ କଥା କହିଲେ । ତାଙ୍କ କଥା ଶୁଣି ମା' କହିଲେ, 'ସେ କେତେ ଦିନର କଥା, ମୋର କଅଣ ମନେ ଅଛି ମା' ! ତୁମେ କିଛି କୁହ ନାହିଁ । ଟିକିଏ ଅପେକ୍ଷା କର, ମୁଁ ଠାକୁରଙ୍କୁ ପଚାରିଆସେ ।'' କିଛି ସମୟ ପରେ ଠାକୁରଘରୁ ଫେରିଆସି କହିଲେ, ''ତୁମକୁ କଅଣ ଏହି ମନ୍ତ୍ର ଦେଇଥିଲି ?'' ବଧୂ ସ୍ୱୀକାର କଲେ ଯେ ବାସ୍ତବିକ ଏହା ହିଁ ତାଙ୍କର ମନ୍ତ୍ର ।

ରସିକଲାଲ ରାୟ ଦୀକ୍ଷା ନେବାକୁ ଆଗ୍ରହୀ ହେବାରୁ ଶ୍ରୀମା' ତାଙ୍କର ବଂଶର ମନ୍ତ୍ର କ'ଣ ଜାଣିବାକୁ ଚାହିଁଲେ । ରସିକଲାଲଙ୍କୁ ତାହା ଜଣା ନ ଥିଲା । ଶ୍ରୀମା' କିଛି ସମୟ ଚୁପ୍ ରହି କହିଲେ, ''ତୁମ ବଂଶର ମନ୍ତ୍ର ଏହା'' ଏବଂ ସେହି ମନ୍ତ୍ର ତାଙ୍କୁ ପ୍ରଦାନ କଲେ । ପରେ ଅନୁସନ୍ଧାନ କରି ଜଣାଗଲା ଯେ ଶ୍ରୀମା'ଙ୍କ ପ୍ରଦତ୍ତ ମନ୍ତ୍ର ଠିକ୍ ।

ଶ୍ରୀଶଶିଭୂଷଣ ମୁଖୋପାଧ୍ୟାୟ ଶକ୍ତିମନ୍ତ୍ରରେ ଦୀକ୍ଷା ପ୍ରାର୍ଥନା କଲେ । କିନ୍ତୁ ଶ୍ରୀମା' କହିଲେ, ''ବାବା ! ତୁମ ଭିତରେ ମୁଁ ରାମଙ୍କୁ ଦେଖୁଛି । ତୁମ ବଂଶରେ କ'ଣ ସମସ୍ତେ ରାମମନ୍ତ୍ରର ଉପାସକ ? ରାମ ଆଉ ଶକ୍ତି ଅଭିନ୍ନ; ତେବେ ରାମମନ୍ତ୍ର ନେବାରେ କ୍ଷତି କ'ଣ ?'' ବସ୍ତୁତଃ ଦେଖାଗଲା ସେହି ବଂଶରେ ସମସ୍ତେ ରାମମନ୍ତ୍ରର ଉପାସକ ।

ଶ୍ରୀସାରଦାକିଙ୍କର ରାୟଙ୍କ ପୂର୍ବପୁରୁଷ ସମସ୍ତେ ଶାକ୍ତ ଥିଲେ । କିନ୍ତୁ ସେ ନିଜେ ବୈଷ୍ଣବଭାବଧାରାର ସଂସ୍ପର୍ଶରେ ଆସିଥିଲେ । ସୁତରାଂ ଶ୍ରୀମା' ତାଙ୍କୁ ଯେତେବେଳେ ଶକ୍ତି ମନ୍ତ୍ରରେ ଦୀକ୍ଷିତ କଲେ, ସେତେବେଳେ ତାଙ୍କ ମନରେ ସନ୍ଦେହ ହେଲା । ମା' ତାଙ୍କ ମନକଥା ବୁଝିପାରି କହିଲେ, ''ମୁଁ ତୁମକୁ ଠିକ୍ ମନ୍ତ୍ର ଦେଉଛି, ବାବା !''

ଅନେକ କ୍ଷେତ୍ରରେ ଶ୍ରୀମା' ଦୀକ୍ଷା ଦେବା ପୂର୍ବରୁ ଶିଷ୍ୟକୁ ତାହାର ମନୋଭାବ ବିଷୟରେ ପଚାରୁଥିଲେ । ପରେ ତାହା ନିଜେ ପ୍ରତ୍ୟକ୍ଷ କରିଥିବା ରୂପ ସହିତ ମିଳାଇ ତଦନୁଯାୟୀ ମନ୍ତ୍ର ଦେଉଥିଲେ । ଶ୍ରୀସୁରେନ୍ଦ୍ରମୋହନ ମା'ଙ୍କ ନିକଟରୁ ଶକ୍ତିମନ୍ତ୍ରରେ ଦୀକ୍ଷିତ ହେଲେ ଏବଂ ତାଙ୍କର ବୋଧହେଲା ଯେପରିକି ତାଙ୍କ ଦେହ ଭିତରେ ଏକ ବିଦ୍ୟୁତ୍–ପ୍ରବାହ ସଞ୍ଚାରିତ ହେଉଛି । ତାଙ୍କ ଦେହ

କମ୍ପିବାକୁ ଲାଗିଲା । ମନ୍ତ୍ରର ସତ୍ୟତା ବିଷୟରେ ତାଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ ।

ଶ୍ରୀକର୍ଣ୍ଣାଟକୁମାର ଚୌଧୁରୀ ଯଥାବିହିତ ଗୁରୁବରଣ କରିବା ସତ୍ତ୍ୱେ ମନରେ ଶାନ୍ତି ପାଉ ନ ଥିଲେ । ତାଙ୍କ ସ୍ତ୍ରୀଙ୍କର ମଝିରେ ମଝିରେ ଭୂତାବେଶ ହେଉଥିଲା । ସେଥିରୁ ଅବ୍ୟାହତି ପାଇବା ପାଇଁ ତାଙ୍କ ଗୁରୁଙ୍କ ନିକଟରୁ ସ୍ତ୍ରୀଙ୍କୁ ଦୀକ୍ଷିତ କରାଇଥିଲେ, କିନ୍ତୁ ରୋଗ ଭଲ ହେଲା ନାହିଁ । ସେ ନିଜେ ମଧ୍ୟ ଶାନ୍ତି ପାଇଲେ ନାହିଁ । ପରିଶେଷରେ ଶ୍ରୀମା'ଙ୍କ ନିକଟରେ ପୁନଃ ଦୀକ୍ଷା ପାଇଁ ସେ ସସ୍ତ୍ରୀକ କଲିକତାକୁ ଆସିଲେ । କିନ୍ତୁ ନିଜେ ପ୍ରସ୍ତାବ କରିବାକୁ ସାହସ ନ ପାଇ ସ୍ତ୍ରୀଙ୍କଦ୍ୱାରା ଶ୍ରୀମା'ଙ୍କ ନିକଟରେ ଅନୁରୋଧ ଜଣାଇଲେ । ମା' ରାଜି ହୋଇ ଦୀକ୍ଷାର ଦିନ ଧାର୍ଯ୍ୟ କଲେ । କିନ୍ତୁ ଗୋଲାପ-ମା' ସେମାନେ ପୂର୍ବରୁ ଦୀକ୍ଷିତ ଥିବାରୁ ଦୀକ୍ଷା ବିଷୟରେ ଆପତ୍ତି କଲେ । ତେଣୁ ଏ ବିଷୟରେ ନିଃସନ୍ଦେହ ହେବା ପାଇଁ ଦୀକ୍ଷାର ପୂର୍ବଦିନ କର୍ଣ୍ଣାଟବାବୁ ଶ୍ରୀମା'ଙ୍କୁ ପୁନର୍ବାର ଏହି ପ୍ରଶ୍ନ କରିବାରୁ ଶ୍ରୀମା' ଅଭୟ ଦେଇ କହିଲେ, ''କହିଛି ତ !'' ଦୀକ୍ଷାଦିନ କର୍ଣ୍ଣାଟବାବୁଙ୍କ ସ୍ତ୍ରୀଙ୍କର ମ୍ୟାଲେରିଆ ଜ୍ୱର ହେଲା । ଏହି ଅବସ୍ଥାରେ ଗଙ୍ଗାସ୍ନାନ ସାରି ସେମାନେ ମାତୃଭବନରେ ଉପସ୍ଥିତ ହେଲେ । କର୍ଣ୍ଣାଟବାବୁଙ୍କର ଯଥା ସମୟରେ ଦୀକ୍ଷା ସମ୍ପନ୍ନ ହେଲା । ସ୍ତ୍ରୀ ନିକଟବର୍ତ୍ତୀ ଅନ୍ୟ ଏକ ଘରେ ଜ୍ୱରରେ କମ୍ପୁଥିଲେ ଏବଂ ଗୋଲାପ-ମା' ତାଙ୍କୁ ଉତ୍ତେଜିତ କଣ୍ଠରେ ଧମକାଇ କହୁଥିଲେ, ''ଗୁରୁତ୍ୟାଗ କରିବାକୁ ଆସିଛି, ମନ୍ତ୍ର ଭୁଲିଯାଇଛି, ପୁଣି ଜ୍ୱର ! କୌଣସି ପ୍ରକାରେ ଦୀକ୍ଷା ହେବ ନାହିଁ ।'' ଶ୍ରୀମା' ଆସନରେ ବସି ଦୀକ୍ଷାର୍ଥିନୀଙ୍କ ପାଇଁ ଅପେକ୍ଷା କରୁଥିଲେ ଏବଂ ଗୋଲାପ-ମା'ଙ୍କର ସବୁ କଥା ସ୍ପଷ୍ଟ ଶୁଣୁଥିଲେ । ବିଳମ୍ବ ହେଉଛି ଦେଖି ଦୀକ୍ଷାର୍ଥିନୀଙ୍କୁ ଆଣିବା ପାଇଁ ସେବିକାକୁ ନିର୍ଦ୍ଦେଶ ଦେଲେ । ଯଥା ସମୟରେ ସ୍ତ୍ରୀଙ୍କର ମଧ୍ୟ ଦୀକ୍ଷା ହେଲା । ଭବିଷ୍ୟତରେ ତାଙ୍କର ଆଉ କେବେ ଭୂତାବେଶ ହୋଇ ନାହିଁ ।

ଜଣେ ଭକ୍ତ ସ୍ୱପ୍ନରେ ଠାକୁରଙ୍କର ନିକଟରୁ ମନ୍ତ୍ର ପାଇଥିଲେ । ଶ୍ରୀମା'ଙ୍କୁ ଏହି ବିଷୟ କହିବାରୁ ସେ ଭକ୍ତଙ୍କୁ କହିଲେ, ''ଠାକୁର ତୁମକୁ ଯାହା ଦେଇଛନ୍ତି, ତାହା ତୁମେ କରିବ । ମୁଁ ମଧ୍ୟ ତୁମକୁ ଅନ୍ୟ ଏକ ମନ୍ତ୍ର ଦେଉଛି ।''

ଗୋଟିଏ ବାଳକ ସ୍ୱପ୍ନରେ ମନ୍ତ୍ର ପାଇଲା — ଶ୍ରୀଶ୍ରୀଠାକୁର ତାକୁ କୋଳରେ ବସାଇ ମନ୍ତ୍ର ଶୁଣାଇଲେ । ଶ୍ରୀମା' ତାକୁ ନୂତନ ମନ୍ତ୍ର ଦେଲେ ନାହିଁ; କହିଲେ, ''ତୁମେ କୃପାସିଦ୍ଧ । ତୁମେ ଏହି ମନ୍ତ୍ର ଜପ କରିଲେ ସିଦ୍ଧ ହେବ ।''

ଶାସ୍ତ୍ରାନୁମୋଦିତ ନ ହେଲେ କିମ୍ବା ଶ୍ରୀମା'ଙ୍କର ଅନୁଭବ ସହିତ ନ ମିଶିଲେ ସେ ସ୍ୱପ୍ନଲବ୍ଧ ମନ୍ତ୍ରକୁ ସତ୍ୟବୋଲି ସ୍ୱୀକାର କରୁ ନ ଥିଲେ । ଶ୍ରୀଯୁକ୍ତ ଯତୀନ୍ଦ୍ରନାଥ ରାୟ ଗୋଟିଏ ସ୍ୱପ୍ନପ୍ରାପ୍ତ ମନ୍ତ୍ର ଜପ କରୁଥିଲେ । ମନ୍ତ୍ର ବିଷୟରେ

ଅବଗତ ହୋଇ ଶ୍ରୀମା' କହିଲେ, ''ବୀଜ ଛଡ଼ା କଅଣ ମନ୍ତ୍ର ହୁଏ ?'' ପରେ ସେ ଭିନ୍ନ ମନ୍ତ୍ରରେ ତାଙ୍କୁ ଦୀକ୍ଷିତ କଲେ ।

ଶ୍ରୀମା' ସମସ୍ତଙ୍କୁ କୃପା କରିବାକୁ ସର୍ବଦା ଉନ୍ମୁଖ ଥିଲେ ମଧ ଶିଷ୍ୟର କଲ୍ୟାଣ ପାଇଁ ବିଶେଷ ବିଶେଷ ସ୍ଥଳରେ ବିଳମ୍ବ କରୁଥିଲେ ବା ଅସ୍ୱୀକାର ମଧ କରୁଥିଲେ—ଯେପରିକି ଶିଷ୍ୟର ଆଗ୍ରହ ବୃଦ୍ଧିପାଏ । ଉଦ୍‌ବୋଧନରେ ଶ୍ରୀଯୁକ୍ତ ବସନ୍ତକୁମାର ସରକାରଙ୍କ ଦୀକ୍ଷା ପରେ ତାଙ୍କ ସ୍ତ୍ରୀ ଦୀକ୍ଷା ପାଇଁ ମା'ଙ୍କ ନିକଟରେ ପ୍ରାର୍ଥନା କଲେ । କିନ୍ତୁ ଶ୍ରୀମା' ସେଥିପାଇଁ ରାଜି ହେଲେ ନାହିଁ ଏବଂ ତାଙ୍କୁ ବେଲୁଡ଼ମଠରୁ ଦୀକ୍ଷା ନେବା ପାଇଁ କହିଲେ । ମହିଳା କିନ୍ତୁ କୌଣସିମତେ ରାଜି ହେଲେ ନାହିଁ । ମା' ବିରକ୍ତି ସହକାରେ ପୁନର୍ବାର ଅସ୍ୱୀକାର କରି ପୂଜାରେ ବସିଲେ । ମହିଳା ସେତେବେଳେ ଶୋକରେ ମୁହ୍ୟମାନ ହୋଇ ତୀରବିଦ୍ଧା ହରିଣୀପରି ଭୂମିରେ ପଡ଼ି ଆବେଗ ସହକାରେ ଗାଇବାକୁ ଲାଗିଲେ—

ଯେ ହୁଏ ପାଷାଣର କନ୍ୟା ତାର ହୃଦେ କି ଥାଏ ଦୟା !
ଦୟାହୀନା ନ ହେଲେ କି ଲାତ ମାରେ ସ୍ୱାମୀର ହିୟା ?

ସୁମିଷ୍ଟ ଗୀତରେ ଆକୃଷ୍ଟ ହୋଇ ଶ୍ରୀମା' ଆଉ ପୂଜାରେ ବସି ପାରିଲେ ନାହିଁ ଏବଂ ଅବଶେଷରେ ତାଙ୍କୁ ଗୀତ ନ ଗାଇବାକୁ କହିଲେ, କାରଣ ଗୀତରେ ଆକୃଷ୍ଟ ହୋଇ ତାଙ୍କ ମନ ପୂଜାରେ ବସୁ ନ ଥିଲା । ପୂଜା ପରେ ମହିଳା ପୁନର୍ବାର ଦୀକ୍ଷାର ପ୍ରାର୍ଥନା ଜଣାଇବାରୁ ଶ୍ରୀମା' ଦୀକ୍ଷାର ଦିନ ସ୍ଥିର କରିଦେଲେ ଏବଂ ଆଦର କରି ତାଙ୍କ ମୁହଁରେ ପ୍ରସାଦ ଦେଲେ ।

ଜଣେ ଭକ୍ତ ଦୁଇଟି ପରିଚିତ ବାଳକଙ୍କୁ ଦୀକ୍ଷା ପାଇଁ ଶ୍ରୀମା'ଙ୍କ ନିକଟକୁ ଆଣିଲେ । ଶ୍ରୀମା' ସମ୍ମତ ହେଲେ ଏବଂ ଯଥାସମୟରେ ଜଣଙ୍କର ଦୀକ୍ଷା ମଧ ହୋଇଗଲା । ଅତଃପର ଅନ୍ୟ ବାଳକର ଡାକରା ପଡ଼ିଲା; କିନ୍ତୁ ସେତେବେଳେ ସେ ସେଠାରେ ନ ଥିଲା । ମା' ଦୁଃଖ କରି କହିଲେ, ''ହତଭାଗାର କପାଳରେ ନାହିଁ ।'' ପରେ ପଳାୟନର କାରଣ ପଚାରିବାରୁ ପିଲାଟି କହିଲା ଯେ ସେତେବେଳେ ତା'ମନରେ ଭୟର ଉଦ୍ରେକ ହୋଇଥିବାରୁ ସେ ପଳାଇବାକୁ ବାଧ ହେଲା ।

ଶ୍ରୀମା'ଙ୍କ ହୃଦୟ ଭକ୍ତମାନଙ୍କ ପାଇଁ କରୁଣାରେ ପରିପୂର୍ଣ୍ଣ ଥିଲେ ସୁଦ୍ଧା ତାଙ୍କର ପ୍ରବଳ ଗୁରୁଶକ୍ତି ସମ୍ମୁଖରେ କୌଣସି ପ୍ରକାର ବାଚାଳତା ବା ଅସଙ୍ଗତ ପ୍ରାର୍ଥନା ସ୍ତବ୍‌ଧ ହୋଇ ଯାଉଥିଲା । ଉଦ୍‌ବୋଧନର କର୍ମଚାରୀ ଶ୍ରୀଚନ୍ଦ୍ରମୋହନ ଦତ୍ତ ଶ୍ରୀମା'ଙ୍କର ବଜାର ହାଟ ଇତ୍ୟାଦି କରୁଥିଲେ ଏବଂ ସେଥିପାଇଁ ସର୍ବଦା ତାଙ୍କ ନିକଟକୁ ଯିବା ଆସିବା କରୁଥିଲେ । ଦିନେ ଶୁଦ୍ଧାନନ୍ଦଜୀ ମହାରାଜ ଚନ୍ଦ୍ରବାବୁଙ୍କୁ କୌତୁହଳରେ କହିଲେ, ''ଚନ୍ଦ୍ର, ତୁମେ ତ ସର୍ବଦା ମା'ଙ୍କ ନିକଟକୁ ଯାଅ ଓ ପ୍ରସାଦ ଖାଅ; ବର୍ତ୍ତମାନ ମୁଁ ତୁମକୁ ଗୋଟିଏ କଥା କହୁଛି—ତାହା ତୁମେ

ମା'ଙ୍କୁ ପଚାରିପାରିବ କି ?'' ଚନ୍ଦ୍ର ଉତ୍ତର ଦେଲେ, ''କାହିଁକି ପାରିବି ନାହିଁ ?'' ଶୁଦ୍ଧାନନ୍ଦଜୀ କହିଲେ, ''ତୁମେ ମା'ଙ୍କୁ କହିପାରିବ, ମା' । ମୁଁ ମୁକ୍ତି ଚାହେଁ ?'' ଚନ୍ଦ୍ର କହିଲେ,''ଆପଣ ଟିକିଏ ଅପେକ୍ଷା କରନ୍ତୁ, ମୁଁ ବର୍ତ୍ତମାନ ପଚାରି ଆସୁଛି ।'' ସେ ଉପରକୁ ଯାଇ ଦେଖିଲେ ଶ୍ରୀମା' ପୂଜାରେ ବସିଛନ୍ତି । ଆସ୍ତେ ଆସ୍ତେ ଘରେ ପ୍ରବେଶ କଲେ; କିନ୍ତୁ କିପରି ଏକ ଭୟରେ ତାଙ୍କ ଦେହ କମ୍ପିବାକୁ ଲାଗିଲା । ଟିକିଏ ପରେ ମା' ତାଙ୍କୁ ଲକ୍ଷ୍ୟକରି ଆସିବାର କାରଣ ପଚାରିଲେ । ଚନ୍ଦ୍ରବାବୁଙ୍କର ଛାତି ସେତେବେଳେ କମ୍ପୁଥାଏ ଏବଂ କିଏ ଯେପରି ତାଙ୍କ ତଣ୍ଟିକୁ ଚିପି ଧରିଥାଏ । ଅଭ୍ୟାସବଶତଃ ସେ ହଠାତ୍ କହି ପକାଇଲେ, ''ପ୍ରସାଦ ଦିଅନ୍ତୁ ।'' ମା' ଇଙ୍ଗିତ କରି ଖଟତଳେ ପ୍ରସାଦ ଦେଖାଇ ଦେଲେ ଓ ପୁନରାୟ ପୂଜାରେ ମନ ଦେଲେ । ଚନ୍ଦ୍ରବାବୁଙ୍କର ସେହି କମ୍ପନ କମିବାକୁ ପ୍ରାୟ ଘଣ୍ଟାଏ ଲାଗିଥିଲା ।

## ଦେବୀ

ଶ୍ରୀମତ୍ ଭଗବଦ୍‌ଗୀତାରେ ବର୍ଣ୍ଣିତ ହୋଇଛି —

ଆହୁସ୍ତ୍ୱାମୃଷୟଃ ସର୍ବେ ଦେବର୍ଷିନାରଦସ୍ତଥା ।
ଅସିତୋ ଦେବଳୋ ବ୍ୟାସଃ ସ୍ୱୟଂ ଚୈବ ବ୍ରବୀଷି ମେ ।।

—''ବଶିଷ୍ଠାଦି ଋଷିଗଣ ଓ ଦେବର୍ଷି ନାରଦ ଏବଂ ଆପଣ ନିଜେ ମଧ୍ୟ ମୋତେ ତାହା ହିଁ କହୁଛନ୍ତି ।'' (ଗୀତା ୧୦/୧୩) ଆମେ ଦେଖିଛୁ ଯେ ଶ୍ରୀରାମକୃଷ୍ଣ ଶ୍ରୀମା'ଙ୍କୁ ଦେବୀଙ୍କ ଆସନରେ ବସାଇ ପୂଜା କରିଥିଲେ । ତାଙ୍କ ପ୍ରତି ଅଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ ଭକ୍ତମାନଙ୍କ ନିକଟରେ ତାଙ୍କର ଦେବୀତ୍ୱ ବ୍ୟକ୍ତ କରିଥିଲେ । ସ୍ୱାମୀ ବିବେକାନନ୍ଦ ପ୍ରମୁଖ ଶ୍ରୀରାମକୃଷ୍ଣଙ୍କ ସନ୍ତାନମାନଙ୍କ ଦ୍ୱାରା ମଧ୍ୟ ଏହା ବହୁଥର ଘୋଷିତ ହୋଇଛି ।

ଶ୍ରୀସୁରେନ୍ଦ୍ର କୁମାର ସେନ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦଙ୍କ ନିକଟରୁ ଦୀକ୍ଷା ନେବାକୁ ଇଚ୍ଛା ବ୍ୟକ୍ତ କରିଥିଲେ । ଦୀକ୍ଷା-ଆସନରେ ବସି ସ୍ୱାମୀଜୀ ସୁରେନ୍ଦ୍ରବାବୁଙ୍କୁ କହିଲେ ଯେ, ଠାକୁରଙ୍କ ନିର୍ଦ୍ଦେଶ ଅନୁଯାୟୀ ସେ ଜାଣିପାରିଛନ୍ତି ଯେ ସୁରେନ୍ଦ୍ରବାବୁ ଅଧିକ ଶକ୍ତିସମ୍ପନ୍ନ ଅନ୍ୟ ଗୁରୁଙ୍କ ନିକଟରୁ ଦୀକ୍ଷା ପାଇବେ । କିଛିଦିନପରେ ସୁରେନ୍ଦ୍ରବାବୁ ସ୍ୱପ୍ନରେ ଦେଖିଲେ ସେ ଠାକୁରଙ୍କ କୋଳରେ ବସିଛନ୍ତି ଏବଂ ଏକ ମାତୃମୂର୍ତ୍ତି ତାଙ୍କୁ ମନ୍ତ୍ର ଦେଉଛନ୍ତି । ବହୁବର୍ଷ ଅତୀତ ହେଲା । ୧୯୧୧ ଖ୍ରୀଷ୍ଟାବ୍ଦରେ ସୁରେନ୍ଦ୍ରବାବୁ ଜୟରାମବାଟୀକୁ ଯାଇ ସେଠାରେ ଶ୍ରୀମା'ଙ୍କ ନିକଟରୁ ଦୀକ୍ଷା ପାଇଲେ । ଦୀକ୍ଷାର ମନ୍ତ୍ର ସ୍ୱପ୍ନପ୍ରାପ୍ତ ମନ୍ତ୍ର ସହିତ ମିଳିଗଲା ଏବଂ ଶ୍ରୀମା'ଙ୍କର ଗୁରୁମୂର୍ତ୍ତି ସ୍ୱପ୍ନଦ୍ରଷ୍ଟା ଦେବୀଙ୍କର ଅନୁରୂପ ଦେଖି ସୁରେନ୍ଦ୍ରବାବୁ ଦୀକ୍ଷା ସମୟରେ ବାହ୍ୟଜ୍ଞାନଶୂନ୍ୟ ହେଲେ ।

ଶ୍ରୀରାମକୃଷ୍ଣ କହିଥିଲେ—ଶ୍ରୀମା' ଜ୍ଞାନଦାତ୍ରୀ ସରସ୍ୱତୀ । ପୂର୍ବ ଅଧ୍ୟାୟରେ ଏହି କଥାର ବହୁତ ପ୍ରମାଣ ପାଇଛୁ । ଶ୍ରୀମା' ସାଧାରଣତଃ ଅତି ସଙ୍କୋଚଶୀଳା ଓ କୋମଳସ୍ୱଭାବା ହେଲେ ମଧ୍ୟ ସ୍ଥଳ ବିଶେଷରେ ତାଙ୍କ ବ୍ୟବହାରରେ ଏକ ଅଦ୍ଭୁତ ଦୃଢ଼ତା ପ୍ରକାଶ ପାଉଥିଲା । ମହାକବିଙ୍କ କହିବା ଅନୁସାରେ ତାଙ୍କ ଚରିତ୍ର, 'କୁସୁମ ଅପେକ୍ଷା ମୃଦୁ ଅଥଚ ବଜ୍ରଠାରୁ ମଧ୍ୟ କଠୋର ।' 'ଉନ୍ମାଦ ହରିଶ'ର ଶାସ୍ତି ବିଷୟରେ ଆମେ ପୂର୍ବରୁ ଅଲୋଚନା କରିଛୁ ।

ଶ୍ରମା'ଙ୍କର ମାନବ-ଲୀଳାରେ ହଠାତ୍ ଦେବୀଭାବର ସ୍ଫୁରଣ ଅନେକ ଭକ୍ତଙ୍କୁ ଚମତ୍କୃତ କରିଛି । ଏହା ବିଦ୍ୟୁତ୍ ପରି ଏତେ ଦ୍ରୁତ ଆସୁଥିଲା ଏବଂ ଶ୍ରୀମା' ଏତେ ଶୀଘ୍ର ଆତ୍ମସମ୍ବରଣ କରୁଥିଲେ ଯେ ଭକ୍ତମାନେ ମା'ଙ୍କର ଏହି ଭାବ ଧରିପାରୁ ନ ଥିଲେ । ତଥାପି ତାଙ୍କର ଚିତ୍ତରେ ଏହି ବିଶ୍ୱାସ କ୍ରମେ ଦୃଢ଼ ହେଉଥିଲା ଯେ ଏହି ଦେବୀତ୍ୱ ହିଁ ତାଙ୍କର ମୌଳିକ ଭାବ । ଗଗନ ମହାରାଜ ଲକ୍ଷ୍ୟ କରିଥିଲେ ଯେ ଯେତେବେଳେ ଶ୍ରୀମା'ଙ୍କ ବ୍ୟବହାରରେ ଦେବୀଭାବର ପ୍ରାଧାନ୍ୟ ହେଉଥିଲା ସେତେବେଳେ ତାଙ୍କର କଣ୍ଠସ୍ୱର ଓ ଆଚାର ବ୍ୟବହାର ଏକ ଅସ୍ୱାଭାବିକ ପରିବେଶ ସୃଷ୍ଟି କରୁଥିଲା ଓ ଭକ୍ତମାନଙ୍କର ମନକୁ କିଛି କ୍ଷଣ ପାଇଁ ଅନ୍ୟ ଏକ ରାଜ୍ୟକୁ ନେଇଯାଉଥିଲା ।

ଶ୍ରୀମା'ଙ୍କର ମାତୃଭାବ ଓ ଗୁରୁଭାବ ଗୋଟିଏ ଦିଗରୁ ଦେଖିଲେ ଏହି ଦେବୀଭାବର ହିଁ ବିଭିନ୍ନ ବିକାଶ । ହିନ୍ଦୁ ଶାସ୍ତ୍ରରେ ଯଦିଓ ମାତା ଓ ଗୁରୁଙ୍କୁ ଦେବୀଜ୍ଞାନରେ ପୂଜା କରିବାର ବିଧାନ ରହିଛି, ତଥାପି ବର୍ତ୍ତମାନ କ୍ଷେତ୍ରରେ ଆମେ ଦେଖିବୁ ଯେ ଶ୍ରୀମା'ଙ୍କର ଆଶ୍ରିତ ଭକ୍ତଗଣ ତାଙ୍କ ଭିତରେ ଏପରି ଏକ ଅଲୌକିକ କରୁଣା, ପବିତ୍ରତା, ଆଶ୍ରିତବାତ୍ସଲ୍ୟର ପରିଚୟ ପାଉଥିଲେ, ଯେଉଁ କାରଣରୁ ସେମାନେ କେବଳ ଶାସ୍ତ୍ରୀୟ ବିଧି ଅନୁସାରେ ନୁହେଁ, ବରଂ ପ୍ରତ୍ୟକ୍ଷ ଦେବୀଜ୍ଞାନରେ ଶ୍ରୀମା'ଙ୍କୁ ହୃଦୟର ଭକ୍ତି-ଅର୍ଘ୍ୟ ଅର୍ପଣ କରୁଥିଲେ । ସେହି ଭକ୍ତି-ପ୍ରକାଶର କୌଣସି ସୁଚିନ୍ତିତ ବିଧିବଦ୍ଧ ଧାରା ନ ଥିଲା—ଥିଲା କେବଳ ସ୍ୱତଃସ୍ଫୂର୍ତ୍ତ ପୂଜାର ଆଗ୍ରହ ।

କୌଣସି କୌଣସି ଭକ୍ତ ଦୀକ୍ଷା ସମୟରେ ବା ସ୍ୱପ୍ନରେ ଶ୍ରୀମା'ଙ୍କୁ ଦେବୀରୂପେ ଦେଖିବାକୁ ପାଉଥିଲେ ଏବଂ ସେହି ଅନୁଭୂତି ତାଙ୍କ ଜୀବନର ସମ୍ବଳ ହୋଇ ନାନା ଭାବରେ ତାଙ୍କର ଦୈନନ୍ଦିନ ଜୀବନକୁ ନିୟନ୍ତ୍ରିତ କରୁଥିଲା । ସୁମତୀ (ଜନୈକା ଭକ୍ତ ମହିଳା) ସ୍ୱପ୍ନରେ ଦେଖିଲେ ଯେ ସେ ଶ୍ରୀମା'ଙ୍କୁ ଚଉଡ଼ା ନାଲିଧଡ଼ିଯୁକ୍ତ ଶାଢ଼ୀ ପିନ୍ଧାଇ ଚଣ୍ଡୀରୂପେ ପୂଜା କରୁଛନ୍ତି; ତେଣୁ ସେହିପରି ଗୋଟିଏ ଶାଢ଼ୀ ନେଇ ଶ୍ରୀମା'ଙ୍କ ନିକଟକୁ ଆସିଲେ—କିନ୍ତୁ ଲଜ୍ଜାରେ ମୁହଁ ଖୋଲି କିଛି କହିପାରିଲେ ନାହିଁ । ଅନ୍ୟ ଜଣକ ମାଧ୍ୟମରେ ନିଜର ସ୍ୱପ୍ନବୃତ୍ତାନ୍ତ ଜଣାଇଲେ । ମା' ତାହା ଶୁଣି ସହାସ୍ୟ କହିଲେ, "ଜଗଦମ୍ବା ସ୍ୱୟଂ ସ୍ୱପ୍ନରେ

ଦେଖା ଦେଇଛନ୍ତି, ନୁହେଁ କି ? ଦିଅ, ଶାଢ଼ୀ ପିନ୍ଧିବାକୁ ପଡ଼ିବ ।'' ଶ୍ରୀମା' ଶାଢ଼ୀଟି ପିନ୍ଧିଲେ । ସେହି ଦିନ ରାତିରେ ଲକ୍ଷ୍ମୀପୂଜା । ଅପରାହ୍ଣରେ ଜଣେ ସ୍ତ୍ରୀ-ଲୋକ ଲକ୍ଷ୍ମୀ-ପୂଜାର ଯାବତୀୟ ଉପକରଣ ଆଣି ଶ୍ରୀମା'ଙ୍କର ଚରଣ ପୂଜା କଲେ । ମା' ଉପସ୍ଥିତ ଅନ୍ୟ ସମସ୍ତଙ୍କୁ କହିଲେ, ''ଆହା ! ତା'ର ଭାରୀ ଦୁଃଖ ମା', ଖୁବ୍ ଗରିବ ।'' ସ୍ତ୍ରୀ-ଲୋକଟିର ଏକମାତ୍ର ପୁଅ ବି.ଏ. ପାସ୍ କରି ପାଗଳ ହୋଇ ନିରୁଦ୍ଦିଷ୍ଟ ହୋଇଯାଇଥିଲା ଏବଂ ସ୍ୱାମୀ ପୁତ୍ରଶୋକରେ ଉନ୍ମାଦପ୍ରାୟ । ମା' ଭକ୍ତ-ମହିଳାଙ୍କୁ ଆଶୀର୍ବାଦ କଲେ ।

ଉପରୋକ୍ତ ଘଟଣାକୁ ଲୋକେ ହୁଏତ ଶ୍ରୀମା'ଙ୍କର ଦେବୀତ୍ୱ ପ୍ରମାଣରୂପେ ସମ୍ପୂର୍ଣ୍ଣଭାବେ ଗ୍ରହଣ ନ କରିପାରନ୍ତି—ସେମାନେ କହିବେ ଯେ ଏହି ଅଙ୍ଗୀକାର ସହିତ ଆଶ୍ରିତ ଓ ଆର୍ତ୍ତମାନଙ୍କ ପ୍ରତି ଶ୍ରୀମା'ଙ୍କର ସହାନୁଭୂତି ମଧ୍ୟ ମିଶ୍ରିତ ଥିଲା । ତେଣୁ ଆହୁରି କେତୋଟି ଏହି ପର୍ଯ୍ୟାୟର ଘଟଣାବଳୀର ଆଲୋଚନା ଆମେ କରିବା । ଠାକୁରଙ୍କର ଦେହତ୍ୟାଗ ପରେ ଶ୍ରୀମା' ଦିନେ କାମାରପୁକୁରରୁ ଜୟରାମବାଟୀକୁ ଯାଉଥିଲେ । ତାଙ୍କ ସହିତ ଶିବରାମ ମଧ୍ୟ ଲୁଗାଗାଣ୍ଠି ଧରି ପଛେ ପଛେ ଚାଲିଥାଆନ୍ତି । ସେତେବେଳେ ସେ ପିଲାଲୋକ । ଜୟରାମବାଟୀ ନିକଟକୁ ଆସି ଶିବୁ ହଠାତ୍ ଆଉ ନ ଯାଇ ଛିଡ଼ା ହୋଇ ରହିଲେ । ଶ୍ରୀମା' କିଛିଦୂର ଆଗେଇ ଯାଇ ପଛକୁ ଚାହିଁ ଦେଖିଲେ ଏବଂ ଶିବୁଙ୍କୁ ସେଠାରେ ନିଶ୍ଚଳଭାବରେ ଛିଡ଼ା ହୋଇଥିବାର ଦେଖି କହିଲେ, ''ଆରେ କ'ଣ କରୁଛୁ, ଚାଲି ଆ ।'' ଶିବୁ କହିଲେ, ''ଯଦି ଗୋଟିଏ କଥା କହିବ, ତେବେ ଯିବି ।'' ମା' କହିଲେ, ''କଅଣ ?'' ଶିବୁ କହିଲେ, ''ତୁମେ କିଏ ?'' ମା' ଉତ୍ତର ଦେଲେ, ''ମୁଁ ଆଉ କିଏ ? ମୁଁ ତୋର ଖୁଡ଼ୀ ।'' ଶିବୁ କହିଲେ, ''ତେବେ ଯାଅ, ଘର ଦେଖାଯାଉଛି, ମୁଁ ଆଉ ଯିବି ନାହିଁ ।'' ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି; ଶ୍ରୀମା' ବିବ୍ରତ ହୋଇ କହିଲେ, ''ଦେଖ, ଦେଖ, ମୁଁ ଆଉ କିଏ ? ମୁଁ ମଣିଷ...ତୋ ଖୁଡ଼ୀ ।'' ଶିବୁ ଉତ୍ତର ଦେଲେ, ''ଭଲ କଥା, ତୁମେ ଯାଉନା !'' ଶିବୁ ନିଶ୍ଚଳ ହୋଇ ଛିଡ଼ା ହୋଇ ରହିଥିବାରୁ ଶ୍ରୀମା' ବାଧ୍ୟ ହୋଇ ଶେଷରେ କହିଲେ, ''ଲୋକେ କହନ୍ତି କାଳୀ ।'' ଶିବୁ କହିଲେ, ''କାଳୀ ତ ? ଠିକ୍ କଥା ?'' ମା' କହିଲେ, ''ହଁ !'' ଶିବୁ ଖୁସୀ ହୋଇ କହିଲେ, ''ତେବେ ଚାଲ ।''

ଜୟରାମବାଟୀରୁ ଶ୍ରୀମା' କଲିକତା ଯାଉଛନ୍ତି ଶୁଣି ଶିବରାମ ତାଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଦିନ ୧୧ଟା ସମୟରେ ଜୟରାମବାଟୀରେ ଉପସ୍ଥିତ ହେଲେ ଏବଂ ଜଣାଇଲେ ଯେ ସେ ଯେହେତୁ ରଘୁବୀରଙ୍କର ପୂଜା, ଭୋଗ, ସନ୍ଧ୍ୟା, ଆରତି ଓ ଶୟନାଦି ସମ୍ପନ୍ନ କରି ଆସିଛନ୍ତି, ଆଉ ତାଙ୍କୁ ସେଦିନ କାମାରପୁକୁରକୁ ଫେରିବାକୁ ପଡ଼ିବ ନାହିଁ । ମା' କିନ୍ତୁ ଅସନ୍ତୁଷ୍ଟ ହୋଇ ସେହିଦିନ ତାଙ୍କୁ କାମାରପୁକୁରକୁ ଫେରିଯାଇ ଅପରାହ୍ଣର କ୍ରିୟାଦି ଯଥାବିଧି କରିବାକୁ

ନିର୍ଦ୍ଦେଶ ଦେଲେ ଏବଂ ବ୍ରହ୍ମଚାରୀ ବରଦାଙ୍କୁ ଗୋଟିଏ ପୁଟୁଳିରେ କିଛି ଫଳ ଓ ପନିପରିବା ବାନ୍ଧି ଦେବାକୁ କହିଲେ । ଅପରାହ୍ଣ ୩ଟା ସମୟରେ ବରଦାଙ୍କୁ ଡାକି ମା' କହିଲେ ସେ ଯେପରି ପୁଟୁଳିଟି ନେଇ ନଦୀ ଯାଏ ଶିବରାମଙ୍କୁ ଛାଡ଼ିଦେଇ ଆସନ୍ତି । ବରଦା ନିର୍ଦ୍ଦେଶ ଅନୁଯାୟୀ ସେପରି କଲେ; କିନ୍ତୁ କିଛିକ୍ଷଣ ପରେ ଦେଖାଗଲା ଶିବୁ ପୁନରାୟ ଫେରି ଆସୁଛନ୍ତି ଏବଂ ମା'ଙ୍କ ପାଦରେ ମୁଣ୍ଡ ରଖି କାନ୍ଦିକାନ୍ଦି କହୁଛନ୍ତି, ''ମା' ! ମୋର କଅଣ ହେବ କୁହ । ମୁଁ ତୁମ ନିକଟରୁ ଏହା ଶୁଣିବାକୁ ଚାହେଁ ।'' ମା' କହିଲେ, ''ଶିବୁ, ଉଠ୍, ତୋର ଆଉ ଭାବନା କଅଣ ? ଠାକୁରଙ୍କର ଏତେ ସେବା କଲୁ । ସେ ତୋତେ କେତେ ଭଲ ପାଉଥିଲେ । ତୋର ଆଉ ଚିନ୍ତା କଅଣ ? ତୁ ତ ଜୀବନ୍ମୁକ୍ତ ହୋଇ ରହିଛୁ ।'' ଶିବରାମ କିନ୍ତୁ କହିଲେ, ''ନା, ତୁମେ ମୋର ଦାୟିତ୍ୱ ନିଅ, ଆଉ ତୁମେ ମୋତେ ପୂର୍ବେ ଯାହା କହିଥିଲ, ତାହା ସତ କି ନାହିଁ କୁହ ।'' ମା' ତାଙ୍କର ମସ୍ତକରେ ହାତ ଦେଇ ବହୁତ ଆଦର କଲେ ଓ ସାନ୍ତ୍ୱନା ଦେଲେ; କିନ୍ତୁ ଶିବରାମଙ୍କର କାନ୍ଦିବା ବଢ଼ି ଚାଲିଲା — ''କୁହ, ତୁମେ ମୋର ସବୁ ଦାୟିତ୍ୱ ନେଇଛ, ଆଉ ତୁମେ ସାକ୍ଷାତ୍ ମା' କାଳୀ କି ନା ?'' ଶ୍ରୀମା' ଏହି ଘଟଣାରେ ବିଚଳିତ ହୋଇଯାଇଥିଲେ ଏବଂ ଶିବରାମଙ୍କର ଏହି ପ୍ରଗାଢ଼ ବ୍ୟାକୁଳତା ଦେଖି ତାଙ୍କର ଭାବାନ୍ତର ଉପସ୍ଥିତ ହେଲା । ପାଖରେ ଛିଡ଼ା ହୋଇଥିବା ବରଦା ବୋଧ କଲେ ଯେପରିକି ମା' ଆଉ ସେତେବେଳେ ସାମାନ୍ୟ ମାନବୀ ନୁହଁନ୍ତି । ସେ ଶିବୁଙ୍କ ମୁଣ୍ଡରେ ହାତ ଦେଇ ଗମ୍ଭୀର ହୋଇ କହିଲେ, ''ହଁ, ତାହା ଠିକ୍ ।'' ଶିବରାମ ସେତେବେଳେ ଆଣ୍ଠୁମାଡ଼ି ଯୋଡ଼ହସ୍ତ ହୋଇ ମନ୍ତ୍ରପାଠ କଲେ, ''ସର୍ବମଙ୍ଗଲମାଙ୍ଗଲ୍ୟେ'' ଇତ୍ୟାଦି । ଶ୍ରୀମା' ତାଙ୍କର ଓଠ ସ୍ପର୍ଶ କରି ଚୁମ୍ବନ ଦେଲେ । ଶିବରାମ ଆଖି ପୋଛି ପୁଟୁଳି କାଖେଇ ଆନନ୍ଦରେ ଚାଲିଲେ । ଗ୍ରାମରୁ ବାହାରି ଆସି ଶିବରାମ ବରଦାଙ୍କୁ କହିଲେ, ''ଭାଇ, ମା' ସାକ୍ଷାତ୍ କାଳୀ, ସେ ସାକ୍ଷାତ୍ କପାଳମୋଚନ । ତାଙ୍କରି କୃପାରେ ମୁକ୍ତି, ବୁଝିଲ ?''

ଜିଜ୍ଞାସୁମାନଙ୍କର ଏହିଭଳି ପ୍ରଶ୍ନ ଯଦି ଶୂନ୍ୟଗର୍ଭ ଔତ୍ସୁକ୍ୟଜନିତ ଅଥବା ଚାଟୁବାଦପ୍ରସୂତ ହୋଇଥାଏ ତେବେ ଅଜ୍ଞର ଅଜ୍ଞତାବୃଦ୍ଧି ଅବାଞ୍ଛିତ ମନେକରି ମା' ସ୍ପଷ୍ଟ ଭାବରେ ନିଜର ଦେବୀତ୍ୱ ଅସ୍ୱୀକାର କରୁଥିଲେ । ନମ୍ରତାର ପ୍ରତିମୂର୍ତ୍ତି ଶ୍ରୀମା' ନିଜକୁ ଶ୍ରୀଶ୍ରୀଠାକୁରଙ୍କର ପଦାଶ୍ରିତ ବୋଲି ମନେ କରୁଥିଲେ ଏବଂ ସମସ୍ତଙ୍କ ମନରେ ଏହି ଭାବ ଦୃଢ଼ାଙ୍କିତ କରିଦେଉଥିଲେ । ଶିଷ୍ୟମାନଙ୍କୁ ଦୀକ୍ଷା ଦେଇ ସେ ଠାକୁରଙ୍କ ଛବି ଦେଖାଇ କହୁଥିଲେ, ''ସେ ତୁମର ଗୁରୁ ।'' ଖୁବ୍ ଅନ୍ତରଙ୍ଗ ଭାବରେ କଥା କହୁ କହୁ ଦୈବାତ୍ ତାଙ୍କର ଦେବୀଭାବ ପ୍ରକାଶିତ ହେଉଥିଲା । କିନ୍ତୁ ସାଧାରଣତଃ ଶ୍ରୀମା' ସେହି ଭାବକୁ ବ୍ୟକ୍ତ କରୁ ନ ଥିଲେ । ଜଣେ ପ୍ରାଚୀନ ସ୍ତ୍ରୀଭକ୍ତ ମା'ଙ୍କର ଶେଷ ଅସୁସ୍ଥତା ସମୟରେ ତାଙ୍କୁ, 'ତୁମେ ଜଗଦମ୍ବା, ତୁମେ ସବୁ' ଇତ୍ୟାଦି କହି ପ୍ରଶଂସା କରିବାରୁ ମା' ରୁକ୍ଷ ସ୍ୱରରେ କହି ଉଠିଲେ,

''ଯାଅ, ଯାଅ, 'ଜଗଦମ୍ବା' ! ସେ ଦୟା କରି ପାଦତଳେ ଆଶ୍ରା ଦେଇଛନ୍ତି ବୋଲି ବଞ୍ଚିଯାଇଛି । 'ତୁମେ ଜଗଦମ୍ବା ! ତୁମେ ଅମୁକ ତୁମେ ସମୁକ !' ଏଠାରୁ ବାହାରିଯାଅ ।'' ଶ୍ରୀମା' ଯଦିଓ କାହାରି ଆନ୍ତରିକ ବିଶ୍ୱାସରେ ଆଘାତ ଦେଉ ନ ଥିଲେ ତଥାପି ଏହିପରି ପ୍ରଶଂସାବାକ୍ୟ ତାଙ୍କ ପକ୍ଷରେ ଅସହ୍ୟ ଥିଲା ।

ଦିନେ ସକାଳେ ଜୟରାମବାଟୀରେ ମା'ଙ୍କ ଘର ବାରଣ୍ଡାରେ ଶ୍ରୀଶ୍ରୀରାମକୃଷ୍ଣ ପୋଥିରୁ ବିବାହ ବିଷୟକ ଅଂଶଟି ପାଠ ହେଉଥିଲା । ଶ୍ରୀମା'ଙ୍କ ସହିତ ଆହୁରି କେତେଜଣ ବସି ଶୁଣୁଥିଲେ । ଏହି ଅଂଶରେ ଶ୍ରୀମା'ଙ୍କୁ ଜଗଦମ୍ବା ବୋଲି ବର୍ଣ୍ଣନା କରାଯାଇଥିଲା । ଶ୍ରୀମା' ସେଠାରୁ ଉଠିଗଲେ ।

ଦକ୍ଷିଣାଞ୍ଚଳକୁ ଯିବା ପୂର୍ବରୁ ଭଦ୍ରକ ଜିଲ୍ଲାର କୋଠାର ଗ୍ରାମରେ ମା' କେତେ ମାସ ଅବସ୍ଥାନ କରିଥିଲେ । ଦିନେ ଖରାବେଳେ ଏକାକୀ ବସି ମା' କ'ଣ ଭାବୁଥିଲେ । ଜଣେ ସେବକ ତାଙ୍କ ନିକଟକୁ ଆସିବାରୁ ମା' କହିଲେ, ''ଠାକୁର ବରମ୍ବାର ଆସନ୍ତି—ଯେପରି ସେହି ଗୋଟିଏ ଚନ୍ଦ୍ର ପ୍ରତିଦିନ ରାତିରେ ଦେଖା ଦିଅନ୍ତି । ନିସ୍ତାର ନାହିଁ, ଧରା ଦେଇଛନ୍ତି । କବିଙ୍କ ଭାଷାରେ—

'ବାରେ ବାରେ ଆସି, ଦୁଃଖ ରାଶିରାଶି,
ଯାତନା ସହିବ କେତେ ଦିନ !'

—ଏ ଦୁଃଖ କଅଣ ଖାଲି ଜୀବର, ଠାକୁରଙ୍କର ମଧ୍ୟ । ସେହି କଥା ବସି ଭାବୁଥିଲି, ଦେଖିଲି ଶେଷ ନାହିଁ । ଠାକୁରଙ୍କର କେତେ କଷ୍ଟ—କିଏ ବୁଝିବ ?'' ଭକ୍ତ କହିଲେ, ''ଖାଲି ଠାକୁରଙ୍କର କାହିଁକି ଆପଣଙ୍କର ମଧ୍ୟ । ଠାକୁର ଓ ଆପଣ ତ ଏକ !'' ମା' କହିଲେ, ''ଛି, ସେପରି କଥା କହ ନାହିଁ, ବୋକାଟାଏ । ମୁଁ ତ ତାଙ୍କର ଦାସୀ ! ପଢ଼ିନାହଁ—'ତୁମେ ଯନ୍ତ୍ରୀ, ମୁଁ ଯନ୍ତ୍ର, ତୁମେ ଘରଣୀ, ମୁ ଘର; ଯେପରି କରାଅ ସେପରି କରେ ।' ସବୁ ଠାକୁର—ଠାକୁରଙ୍କ ଛଡ଼ା ଆଉ କିଛି ନାହିଁ ।''

କୌଣସି କୌଣସି ପାଠକ ହୁଏତ କହିବେ, ''ଆମ ସିଦ୍ଧାନ୍ତ ଗ୍ରହଣ ପାଇଁ ଏତିକି ଯଥେଷ୍ଟ । ଶ୍ରୀମା' ନିଜକୁ ଅବତାର ବୋଲି ମନେ କରୁ ନ ଥିଲେ କିମ୍ବା ଏପରି କୌଣସି କଥା କହୁ ନ ଥିଲେ । ଠାକୁର ଅବତାର, ତେବେ ଠାକୁରଙ୍କର ସହଧର୍ମିଣୀ ସାଧନଜଗତରେ ଶହଶହ ଲୋକଙ୍କର ପଥପ୍ରଦର୍ଶିକା ଏବଂ ଆଧ୍ୟାତ୍ମିକ ଶକ୍ତିର ପ୍ରକୃଷ୍ଟ କେନ୍ଦ୍ରରୂପେ ତାଙ୍କର ସ୍ଥାନ ଧର୍ମ-ଇତିହାସରେ ଅତି ଉଚ୍ଚରେ ।'' ଆମେ ଏହି ପାଠକମାନଙ୍କୁ ଧୈର୍ଯ୍ୟ ଧରିବାକୁ ଅନୁରୋଧ କରିବୁ, କାରଣ ଘଟଣା ପରମ୍ପରା ଆମ ବିଶ୍ୱାସକୁ ଜୋର୍ କରି ଆହୁରି ଉଚ୍ଚକୁ ନେଇଯାଏ । ଜଣେ ଭକ୍ତଙ୍କୁ ସେ କହିଥିଲେ, ''ଏଠାକୁ ଯେ ଆସିଛ, ନିଶ୍ଚୟ ଗୋଟାଏ ଭାବକୁ ଆଶ୍ରା କରି ଆସିଛ । ହୁଏତ ଜଗନ୍ମାତା ବୋଲି ଭାବି ଆସିଛ ।'' ଶ୍ରୀମତୀ ଶୈଳବାଳା ଚୌଧୁରୀ ଦିନେ ପ୍ରଶ୍ନ କଲେ, ''ମା', ଠାକୁରଙ୍କ ଜପ ତ ମୋତେ କହି ଦେଇଛନ୍ତି,

ଆପଣଙ୍କ ଜପ କିପରି କରିବି ?'' ମା' କହିଲେ, ''ରାଧା ବୋଲି କହିପାର, କିମ୍ବା ଅନ୍ୟ କିଛି କହିପାର, ଯାହା ତୁମର ପସନ୍ଦ ତାହା କରିବ । କିଛି ନ ପାରିଲେ କେବଳ ମା' ବୋଲି ଡାକିଲେ ମଧ୍ୟ ଚଳିବ ।''

କଥା ପ୍ରସଙ୍ଗରେ ଏଭଳି ଅସ୍ପଷ୍ଟ ସ୍ୱୀକୃତିର ବହୁ ଦୃଷ୍ଟାନ୍ତ ଅଛି । ଦିନେ ଜୟରାମବାଟୀରେ ଜଣେ ତ୍ୟାଗୀ ଭକ୍ତ ଦୁଃଖ କରି କହିଲେ ଯେ ଏତେ ଜାଣି ଶୁଣି ମଧ୍ୟ ତାଙ୍କ ନିଜର ମା' ବୋଲି ସେ ଚିହ୍ନିପାରିଲେ ନାହିଁ । ମା' ଆଶ୍ୱାସ ଦେଇ କହିଲେ, ''ବାବା, ନିଜର ନ ହେଲେ ଏତେ ଆସିବ କାହିଁକି ? 'ଯେ ଯାହାର, ସେ ତାହାର, ଯୁଗେ ଯୁଗେ ଅବତାର ।' ନିଜର ମା', ସମୟ ହେଲେ ଚିହ୍ନିବ ।''

ପାରିବାରିକ ଆଚରଣରେ ବା ସାଧାରଣ ଲୋକମାନଙ୍କ ସହ କଥାବାର୍ତ୍ତା ସମୟରେ ଶ୍ରୀମା'ଙ୍କର ଏହି ଆତ୍ମପରିଚୟ ହଠାତ୍ ପ୍ରକାଶ ପାଉଥିଲା । ଶେଷ ଥର ଜୟରାମବାଟୀରେ ଥିବା ବେଳେ ଦିନେ ରାତି ୯ଟା ସମୟରେ ପାଚିକା ବ୍ରାହ୍ମଣୀ ଆସି କହିଲା, ''କୁକୁର ଛୁଇଁଲି, ଗାଧୋଇ ଆସେ ।'' ମା' କହିଲେ, ''ଏତେ ରାତିରେ ନ ଗାଧୋଇବା ଭଲ । ଗୋଡ଼ ହାତ ଧୋଇ ଲୁଗା ବଦଳାଇ ଆସ ।'' ପାଚିକା ଉତ୍ତର ଦେଲା, ''ସେଥିରେ କ'ଣ ହେବ ?'' ମା' କହିଲେ, ''ତେବେ ଗଙ୍ଗାଜଳ ନିଅ ।'' ଏକଥା ମଧ୍ୟ ପାଚିକାର ମନକୁ ସ୍ପର୍ଶ ନ କରିବାର ଦେଖି ପବିତ୍ରତାସ୍ୱରୂପିଣୀ ମା' କହିଲେ, ''ତେବେ ମୋତେ ସ୍ପର୍ଶ କର ।'' ଏକଥା ଶୁଣି ପାଚିକାର ଆଖି ଖୋଲିଗଲା ଏବଂ ଅନ୍ତତଃ ମୁହୂର୍ତ୍ତକ ପାଇଁ କୁସଂସ୍କାରରୁ ମୁକ୍ତି ପାଇଲା ।

ଉଦ୍‌ବୋଧନରେ ଶ୍ରୀମା' ଠାକୁରପୂଜା କରିବା ସମୟରେ ପାଗଳୀ ମାଈଁ ତାଙ୍କୁ ଶୁଣେଇ ଶୁଣେଇ ଗାଳି ଦେଉଥାଆନ୍ତି । ମା' ପୂଜା ଶେଷ କରି ମାଈଁଙ୍କୁ କହିଲେ, ''କେତେ ମୁନିଋଷି ତପସ୍ୟା କରି ମୋତେ ପାଉ ନାହାନ୍ତି; ଅଥଚ ତୁମେମାନେ ମୋତେ ପାଇ ମଧ୍ୟ ହରାଇଲ ?'' କାଶୀରେ ପାଗଳୀ ସାରାରାତି ଶ୍ରୀମା'ଙ୍କୁ ଗାଳିଦେଉଥାଆନ୍ତି, ''ତୁ ମର, ତୁ ମର'' ଇତ୍ୟାଦି । ସକାଳେ ଶ୍ରୀମା' ସେହି କଥାର ଉଲ୍ଲେଖ କରି କହିଲେ, ''ସାନବୋହୂ ଜାଣିନାହିଁ ଯେ ମୁଁ ମୃତ୍ୟୁଞ୍ଜୟୀ ।''

ଏହି ପରିଚୟ ଦେବା ନ ଦେବା ଉପରେ ତାଙ୍କର ଜୀବନର ବୈଶିଷ୍ଟ୍ୟ ନିର୍ଭର କରେ । ସୁଦୂର ପଲ୍ଲୀଗ୍ରାମକୁ କେତେ ଲୋକ ଆସି ଶ୍ରୀମା'ଙ୍କୁ ଦେବୀଜ୍ଞାନରେ ପୂଜା କରି ଯାଉଛନ୍ତି, ଅଥଚ ଗ୍ରାମବାସୀମାନେ ଏହାର ତାତ୍ପର୍ଯ୍ୟ କିଛି ବୁଝିପାରି ନାହାନ୍ତି । ଶ୍ରୀମା' ତାଙ୍କ ନିକଟରେ ପିଉସୀ, ମାଉସୀ, ନାନୀ ହୋଇ ରହିଛନ୍ତି । ଦିନେ ଜଣେ ଗ୍ରାମବାସୀ ପଚାରିଲା, ''ତୁମକୁ ଦେଖିବା ପାଇଁ କେତେ ଲୋକ କେତେ ଦୂର ଦେଶରୁ ଆସୁଛନ୍ତି, ଅଥଚ ଆମେ ତୁମକୁ ବୁଝିପାରୁନାହୁଁ କାହିଁକି ?'' ମା' ଉତ୍ତର ଦେଲେ, ''ନ ବୁଝିଲେ କ୍ଷତି କ'ଣ, ତୁମେ ମୋର ସଖା, ସଖୀ ।''

ବାଙ୍କୁଡ଼ା ଜିଲ୍ଲାରେ ସେହି ବର୍ଷ ଦୁର୍ଭିକ୍ଷ ପଡ଼ିଥାଏ । ରାମକୃଷ୍ଣ ମିଶନର ସେବାକାର୍ଯ୍ୟ ପାଇଁ ଆସିଥିବା ଜଣେ ସାଧୁ ଶ୍ରୀମା'ଙ୍କୁ ଲୋକମାନଙ୍କର ଦୁର୍ଗତି କଥା ଶୁଣାଉଥିଲେ । ଶ୍ରୀମା' ସବୁ ଶୁଣି ନିଜ ଚାରିପାଖରେ ହାତ ବୁଲାଇ କହିଲେ, ''ଦେଖ ବାବା, ମା' ସିଂହବାହିନୀଙ୍କ କୃପାରୁ ଏଠାରେ (ଜୟରାମବାଟୀ ଗ୍ରାମରେ) ଏସବୁ କିଛି ହୋଇ ନାହିଁ ।'' ସାଧୁ କହିଲେ, ''ମା' ସିଂହବାହିନୀ କିଏ ମୁଁ ଜାଣିନାହିଁ; ଆପଣ ଅଛନ୍ତି ବୋଲି ଏସବୁ କିଛି ହୋଇ ନାହିଁ ।'' ମା' କୌଣସି ଉତ୍ତର ନ ଦେଇ ନୀରବ ରହିଲେ ।

ଜୟରାମବାଟୀରେ ଦିନେ ଆତ୍ମୀୟମାନଙ୍କ ଦୌରାତ୍ମ୍ୟରେ ଉତ୍ତ୍ୟକ୍ତ ହୋଇ ମା' କହିଲେ, ''ଦେଖ, ତୁମେମାନେ ମୋତେ ଏତେ ଜଳାଅନି । ଏହା ଭିତରେ ଯିଏ ଅଛନ୍ତି, ଯଦି ଥରେ ସେ ଫଣା ଟେକନ୍ତି, ତେବେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, କାହାରି ସାଧ ନାହିଁ ଯେ ତୁମମାନଙ୍କୁ ରକ୍ଷା କରିବେ ।'' ଦିନେ କୋଆଲପଡ଼ାରେ ରାଧୁର ଅତ୍ୟାଚାର ବିଷୟ ଉଲ୍ଲେଖ କରି କହିଲେ, ''ଦେଖ, ମା', ଏ ଶରୀରକୁ (ନିଜ ଦେହ ଦେଖାଇ) ଦେବ ଶରୀର ବୋଲି ଜାଣିବ । ଏହା ଉପରେ କେତେ ଅତ୍ୟାଚାର ସହ୍ୟ ହେବ ? ଭଗବାନ ନ ହେଲେ କ'ଣ ମଣିଷ ଏତେ ସହିପାରେ ? ଦେଖ ମା', ମୁଁ ଥାଉ ଥାଉ ଏମାନେ କେହି ଚିହ୍ନିପାରିବେ ନାହିଁ । ପରେ ସବୁ ବୁଝିବେ ।''

ମାନବୀରୂପେ ଅବତୀର୍ଣ୍ଣା ଦେବୀ ଶ୍ରୀଶ୍ରୀମା'ଙ୍କୁ ସାଧାରଣ ଲୋକ କିପରି ବୁଝିବେ—ଯଦି ସେ ନିଜେ ତାଙ୍କ ସ୍ୱରୂପ ଉନ୍ମୋଚନ ନ କରନ୍ତି ? ଭଗବତୀ ନରଲୋକଙ୍କୁ ଆସନ୍ତି ମନୁଷ୍ୟଙ୍କୁ ପ୍ରେମଭକ୍ତି ଶିଖାଇବା ପାଇଁ; କିନ୍ତୁ ମନୁଷ୍ୟ ବୁଦ୍ଧି ସୀମିତ ବୋଲି ତାହାର କଲ୍ୟାଣ ପାଇଁ ଦେବୀ ତାଙ୍କର ସ୍ୱରୂପ ଆବୃତ ରଖନ୍ତି । ଏହି ବିରୁଦ୍ଧ ଅବସ୍ଥା ଦ୍ୱୟର ସଂଘର୍ଷ ହେତୁ ସେ ସାଧାରଣ ମାନବ ନିକଟରେ ଅଜ୍ଞାତ ରହିଯାଆନ୍ତି—କେବଳ ଦୁଇଚାରି ଜଣଙ୍କ ନିକଟରେ ସେ ନିଜର ସ୍ୱରୂପକୁ ପ୍ରକାଶିତ କରନ୍ତି । ନଳିନୀଦେବୀ ଦିନେ ସ୍ତ୍ରୀଭକ୍ତମାନଙ୍କ ସମ୍ମୁଖରେ ମା'ଙ୍କୁ ପ୍ରଶ୍ନ କଲେ, ''ଆଚ୍ଛା ପିଉସୀ, ଲୋକେ ଯେ ତୁମକୁ ଅନ୍ତର୍ଯ୍ୟାମୀ କହନ୍ତି, ପ୍ରକୃତରେ କ'ଣ ତୁମେ ତାହା ?'' ମା' କେବଳ ଟିକିଏ ହସିଲେ । ନଳିନୀଦେବୀ ପୁନର୍ବାର ପ୍ରଶ୍ନ କରିବାରୁ ମା' କହିଲେ, ''ସେମାନେ କହନ୍ତି ଭକ୍ତିରେ । ମୁଁ କିଏ ? ଠାକୁର ହିଁ ସବୁ । ତୁମେମାନେ ଠାକୁରଙ୍କ ନିକଟରେ ପ୍ରାର୍ଥନା କର ଯେ ମୋ ମନରେ ଅହଙ୍କାର ଯେପରି ସ୍ଥାନ ନ ପାଏ ।'' ଶ୍ରୀମା'ଙ୍କର ଏହି ବିନୟ ଓ ଆତ୍ମଗୋପନ ଦେଖି ଜଣେ ମହିଳା ହାସ୍ୟସମ୍ବରଣ କରିପାରିଲେ ନାହିଁ ଏବଂ କଥା ପ୍ରସଙ୍ଗରେ କହିଲେ, ''ଅନେକ ଲୋକ ତ ମା'ଙ୍କୁ ଜଗଦମ୍ବା କୁହନ୍ତି; କିନ୍ତୁ କାହାର କେତେ ବିଶ୍ୱାସ ଠାକୁର ହିଁ ଜାଣନ୍ତି । ଆମଭଳି ଅବିଶ୍ୱାସୀ ଲୋକମାନଙ୍କ ମୁହଁରେ ଏସବୁ କଥା ଯେପରି କେତେଗୁଡ଼ିଏ ମୁଖସ୍ଥ କରିଥିବା ବାକ୍ୟ ପରି ।'' ମା' ହସି ହସି

ଉତ୍ତର ଦେଲେ, ''ଠିକ୍ କଥା ମା' ! ମହିଳା ତା'ପରେ କହିଲେ ଯେ, ''ମା' ଯଦି ଦୟାକରି ଆତ୍ମସ୍ୱରୂପ ପ୍ରକାଶିତ ନ କରନ୍ତି ଅନ୍ୟମାନଙ୍କ ପକ୍ଷରେ ବୁଝିବା ଅସମ୍ଭବ ।'' ସେ କହିଲେ, ''ଶ୍ରୀମା'ଙ୍କର ଈଶ୍ୱରତ୍ୱର ସବୁଠାରୁ ବଡ଼ ପ୍ରମାଣ ହେଉଛି ତାଙ୍କ ଭିତରେ ଆଦୌ ଅହଙ୍କାରର ଭାବ ନାହିଁ । ସାଧାରଣ ଜୀବଙ୍କର ମନ ଅହଙ୍କାରରେ ପୂର୍ଣ୍ଣ । ହଜାର ହଜାର ଲୋକ ଯେପରି ଭାବରେ ମା'ଙ୍କ ପାଦ ତଳେ, 'ତୁମେ ଲକ୍ଷ୍ମୀ, ତୁମେ ଜଗଦମ୍ବା' କହି ଗଡ଼ିଯାଆନ୍ତି, ମନୁଷ୍ୟ ହେଲେ ଅହଙ୍କାରରେ ଫୁଲିଉଠନ୍ତା । ଏତେ ସମ୍ମାନ ହଜମ କରିବା କ'ଣ ମଣିଷର ଶକ୍ତିରେ ସମ୍ଭବ !'' ମା' ପ୍ରସନ୍ନା ହୋଇ କେବଳମାତ୍ର ଭକ୍ତଙ୍କୁ ଥରୁଟିଏ ଚାହିଁଲେ ।

ବହୁ ପୂର୍ବର କଥା । ସେତେବେଳେ ଯୋଗୀନ୍-ମା' ଦକ୍ଷିଣେଶ୍ୱରରେ ଶ୍ରୀମା'ଙ୍କ ସହିତ ସମୟେ ସମୟେ ରହୁଥିଲେ । ଦିନେ ଶ୍ରୀମା' ତାଙ୍କୁ ପଚାରିଲେ, ''ଯୋଗୀନ୍, ତୁମେ ଶୁଖିଲା ବେଲପତ୍ର ଦେଇ କ'ଣ ପୂଜା କର ?'' ଯୋଗୀନ୍-ମା' ଦକ୍ଷିଣେଶ୍ୱରରୁ ପୂଜା ପାଇଁ ବେଲପତ୍ର ନେଇଯାଉଥିଲେ ଏବଂ ତାହା ଶୁଖିଗଲେ ମଧ୍ୟ ସେଥିରେ ପୂଜା କରୁଥିଲେ । ସୁତରାଂ ସେ ଉତ୍ତର ଦେଲେ, ''ହଁ, ମା' କିନ୍ତୁ ତୁମେ ତାହା କିପରି ଜାଣିଲ ?'' ମା' ଅଳ୍ପ ହସି କହିଲେ, ''ଆଜି ସକାଳେ ମୁଁ ଧ୍ୟାନ କରିବା ସମୟରେ ଦେଖିଲି, ତୁମେ ଶୁଖିଲା ବେଲପତ୍ର ଦେଇ ମୋ... ।'' କଥା ଶେଷ ନ କରି ମା' ଶୀଘ୍ର ବାକ୍ୟପୂରଣ କଲେ, ''ପୂଜା କଲ ।'' ବୁଦ୍ଧିମତୀ ଯୋଗୀନ୍-ମା' ସ୍ତମ୍ଭିତ ହୋଇ ଶ୍ରୀମା'ଙ୍କ ଆଡ଼କୁ ଅନାଇଁ ରହିଲେ । ମା' ଲଜ୍ଜାରେ ଆରକ୍ତିମ ହୋଇ ତାଙ୍କୁ ଆଲିଙ୍ଗନ କଲେ । ଯୋଗୀନ୍-ମା' ତାଙ୍କୁ ନିଜ କନ୍ୟା ଭାବି କୁଣ୍ଢାଇ ଧରିଲେ ଓ ଚୁମ୍ବନ ଦେଲେ । ପରେ ସ୍ୱାଭାବିକ ଅବସ୍ଥାକୁ ଫେରିଆସି ଶ୍ରୀମା'ଙ୍କ ଚରଣ ସ୍ପର୍ଶ କରି ପଦଧୂଳି ମସ୍ତକରେ ଧାରଣ କଲେ ।

ଉପଯୁକ୍ତ ଆଧାର ଦେଖି ଶ୍ରୀମା' ନିଜର ଦେବୀତ୍ୱ ସ୍ପଷ୍ଟ ସ୍ୱୀକାର କରୁଥିଲେ । ସ୍ୱାମୀ ତନ୍ମୟାନନ୍ଦ ଥରେ ଜୟରାମବାଟୀକୁ ଯାଇ ଶ୍ରୀମା'ଙ୍କର ପାଦପୂଜା କଲେ । ଶ୍ରୀମା'ଙ୍କ ଚରଣଯୁଗଳ ନିଜ ମସ୍ତକରେ ଧାରଣ କରିବାରୁ ମା' ବାଧା ଦେଇ କହିଲେ, ''କାହାରି ମସ୍ତକରେ ପଦସ୍ପର୍ଶ କରାଇବା ଉଚିତ୍ ନୁହେଁ; କାରଣ ଠାକୁର ମସ୍ତକରେ ଅବସ୍ଥାନ କରନ୍ତି । ସେ ସାକ୍ଷାତ୍ ଭଗବାନ, ମସ୍ତକରେ ଥିବା ସହସ୍ରଦଳ ପଦ୍ମଉପରେ ସେ ବସିଅଛନ୍ତି ।'' ଏହା ଶୁଣି ତନ୍ମୟାନନ୍ଦ ପ୍ରଶ୍ନ କଲେ, ''ମା' ଠାକୁର ଯଦି ସ୍ୱୟଂ ଭଗବାନ, ତେବେ ଆପଣ କିଏ ?'' ବିନ୍ଦୁମାତ୍ର ଇତସ୍ତତଃ ନ ହୋଇ ମା' ଉତ୍ତର ଦେଲେ, ''ମୁଁ ଆଉ କିଏ ! ମୁଁ ମଧ୍ୟ ଭଗବତୀ ।''

କୋଆଲପଡ଼ା ଆଶ୍ରମରେ ଶ୍ରୀମା' ଠାକୁରଙ୍କ ଛବି ପାଖରେ ନିଜର ଛବି ସ୍ୱହସ୍ତରେ ସ୍ଥାପନ କରି ପୂଜା କରିବାର କଥା ଆମେ ପୂର୍ବରୁ ଆଲୋଚନା କରିଛୁ । ୧୯୧୦ ଖ୍ରୀଷ୍ଟାବ୍ଦ ବଡ଼ଦିନ ଛୁଟିରେ ଜଣେ ଦୀକ୍ଷାର୍ଥୀ କୋଠାର ଗ୍ରାମରେ ଶ୍ରୀମା'ଙ୍କ ନିକଟରୁ ଦୀକ୍ଷା ଗ୍ରହଣ କରିଥିଲେ । ମନ୍ତ୍ର ନେଇସାରି ଶ୍ରୀମା'ଙ୍କ ପାଦପଦ୍ମରେ

ପୁଷ୍ପାଞ୍ଜଳି ଓ ତତ୍‌ସହିତ ଗୋଟିଏ ବସ୍ତ୍ର ଓ ଟଙ୍କା ମଧ୍ୟ ସେ ପ୍ରଦାନ କଲେ । ମା' କହିଲେ, ''ତୋର ଏତେ ଆର୍ଥିକ ଅଭାବ; ପୁଣି ଟଙ୍କା ଦେଉଛୁ କାହିଁକି ?'' ଭକ୍ତ ଜଣାଇଲେ ଯେ ଟଙ୍କା ମା'ଙ୍କର, ପୁତ୍ରର ଅର୍ଜିତ ଅର୍ଥ ଯଦି ମା'ଙ୍କ ସେବାରେ ଲାଗେ ତେବେ ସେ ପୁତ୍ର ଧନ୍ୟ । ଶ୍ରୀମା' ଏକଥା ଶୁଣି ଖୁବ୍ ଆନନ୍ଦ ପ୍ରକାଶ କରିଥିଲେ । ଭକ୍ତଜଣକ ଅନ୍ୟମାନଙ୍କଠାରୁ ଶୁଣିଥିଲେ ଯେ ଶ୍ରୀମା' ସାକ୍ଷାତ୍ କାଳୀ, ଆଦ୍ୟାଶକ୍ତି ଭଗବତୀ । ବର୍ତ୍ତମାନ ସେ ନିଜେ ଶ୍ରୀମା'ଙ୍କ ମୁହଁରୁ ଏ କଥା ଶୁଣିବାକୁ ଚାହିଁଲେ । ଗୀତାରେ ମଧ୍ୟ ଭଗବାନ ନିଜ ସ୍ୱରୂପକୁ ସ୍ୱୀକାର କରିଛନ୍ତି । ଭକ୍ତ ମା'ଙ୍କୁ କହିଲେ, ''ତୁମ ସମ୍ବନ୍ଧରେ ମୁଁ ଯାହା ଶୁଣିଛି ତା' ମୁଁ ବିଶ୍ୱାସ କରେ, ତେବେ ତୁମେ ଯଦି ସ୍ୱୟଂ ସେ କଥା ସ୍ୱୀକାର କର, ତେବେ ମୋ ମନରେ କୌଣସି ସନ୍ଦେହ ରହିବ ନାହିଁ । ତୁମ ମୁହଁରୁ ମୁଁ ବର୍ତ୍ତମାନ ଶୁଣିବାକୁ ଚାହେଁ ଏ କଥା ସତ୍ୟ କି ନୁହେଁ !'' ଶ୍ରୀମା' କହିଥିଲେ ଯେ ଏକଥା ସତ୍ୟ ।

୧୯୧୩ ଖ୍ରୀଷ୍ଟାବ୍ଦରେ ଜୟରାମବାଟୀରେ ଶ୍ରୀମା' ଅସୁସ୍ଥ ରାଧୁ ସହିତ ଅବସ୍ଥାନ କରୁଥିଲେ । ମା' ରାଧୁ ପାଖରେ ବସି ଦୁଧ ପିଆଉଥିଲେ । ପାଗଳୀ ମାଈଁ ମଧ୍ୟ ଆସି ମା'ଙ୍କ ପାଖରେ ବସିଲେ । ରାଧୁର ଇଚ୍ଛା ନୁହେଁ ଯେ ସେ ସେଠାରେ ବସନ୍ତୁ; ତେଣୁ ତାଙ୍କୁ ସେଠାରୁ ଠେଲିଦେବାରୁ ତାଙ୍କ ଗୋଡ଼ ଶ୍ରୀମା'ଙ୍କ ହାତରେ ଯାଇ ଲାଗିଲା । ପାଗଳୀ ଅସ୍ଥିର ହୋଇ କହିଉଠିଲେ, ''ତୁମେ କାହିଁକି ମୋ ଗୋଡ଼ରେ ହାତ ଦେଲ ? ମୋର ବର୍ତ୍ତମାନ କ'ଣ ହେବ ?'' ମା' ତାଙ୍କର ଏପରି କଥାବାର୍ତ୍ତା ଶୁଣି ହସି ହସି ଗଡ଼ିଗଲେ । ବ୍ରହ୍ମଚାରୀ ରାସବିହାରୀ କହିଲେ, ''ପାଗଳୀ ଶ୍ରୀମା'ଙ୍କୁ ଗାଳି ଅପମାନ ଦେଲେ ମଧ୍ୟ ଗୋଡ଼ରେ ତାଙ୍କ ହାତ ଲାଗିଲେ ଡରେ ।'' ମା' କହିଲେ, ''ବାବା, ରାବଣ କ'ଣ ଜାଣି ନ ଥିଲା ଯେ ରାମ ପୂର୍ଣ୍ଣବ୍ରହ୍ମ ନାରାୟଣ, ସୀତା ଆଦ୍ୟାଶକ୍ତି ଜଗନ୍ମାତା—ତଥାପି ସେ ଏପରି କର୍ମ କରିବାକୁ ଆସିଥିଲା । ସେ (ପାଗଳୀ) କ'ଣ ମୋତେ ଜାଣି ନାହିଁ ? ସବୁ ଜାଣେ, ତଥାପି ଏହି କର୍ମ କରିବାକୁ ଆସିଛି ।''

ଭକ୍ତଙ୍କ ପ୍ରତି କୃପାପରବଶ ହୋଇ ଅନେକ ସମୟରେ ଶ୍ରୀମା' ଅଜ୍ଞାତସାରରେ ନିଜ ସ୍ୱରୂପ ପ୍ରକାଶିତ କରୁଥିଲେ । ବୈକୁଣ୍ଠ ନାମକ ଜଣେ ଭକ୍ତ କାମାରପୁକୁରକୁ ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ । ଭକ୍ତ ଯେତେବେଳେ ବିଦାୟ ନେଉଥିଲେ, ସେତେବେଳେ ଶ୍ରୀମା' ଅକସ୍ମାତ୍ କହି ଉଠିଲେ, ''ବୈକୁଣ୍ଠ ମୋତେ ଡାକିବୁ ।'' ପରମୁହୂର୍ତ୍ତରେ ଆତ୍ମସମ୍ବରଣ କରି ଶ୍ରୀମା' କହିଲେ, ''ଠାକୁରଙ୍କୁ ଡାକିବୁ, ଠାକୁରଙ୍କୁ ଡାକିଲେ ସବୁ ହେବ ।'' ଲକ୍ଷ୍ମୀଦେବୀ ପାଖରେ ଥାଇ ସବୁ ଶୁଣୁଥିଲେ । ସେ କହି ଉଠିଲେ, ''ନା ମା', ଏ କିପରି କଥା ? ତୁମେ ଖୁବ୍ ଅନ୍ୟାୟ କରୁଛ, ପିଲାମାନଙ୍କୁ ଏପରି ଭୁଲାଇଲେ ସେମାନେ କ'ଣ କରିବେ ?'' ଲକ୍ଷ୍ମୀଦେବୀ ବୈକୁଣ୍ଠକୁ ବୁଝାଇ କହିଲେ, ''ଶ୍ରୀମା'ଙ୍କ ମୁହଁରୁ

ଆଜି ଯେଉଁ ନୂତନ ବାଣୀ ବହିର୍ଗତ ହେଲା, ତାହା ଅତ୍ୟନ୍ତ ମୂଲ୍ୟବାନ । ଏହା ଶ୍ରୀମା'ଙ୍କର ନିଜ ସ୍ୱରୂପ ସମ୍ବନ୍ଧରେ ସ୍ୱୀକୃତିପ୍ରଦାନ ଏବଂ ଆଦେଶ ମଧ୍ୟ ।'' ସୁତରାଂ ବୈକୁଣ୍ଠ ଯେପରି ମା'ଙ୍କୁ ହିଁ ଡାକନ୍ତି । ମା' ସବୁ ଶୁଣିଲେ, କିନ୍ତୁ କୌଣସି ପ୍ରତିବାଦ କଲେ ନାହିଁ ।

ଜଣେ ଭକ୍ତ ମହିଳା ମା'ଙ୍କୁ ପ୍ରଶ୍ନ କଲେ, ''ମା, ଆପଣ ଯେ ଭଗବତୀ, ଆମେ ଚିହ୍ନିବୁ କିପରି ?'' ମା' କହିଲେ, ''ସମସ୍ତେ କଅଣ ଆଉ ଚିହ୍ନିପାରିବେ ମା' ? ପୋଖରୀତୁଠରେ ଗୋଟିଏ ହୀରା ପଡ଼ିଥିଲା । ସମସ୍ତେ ପଥର ମନେକରି ସେଥିରେ ଗୋଡ଼ ଘଷୁଥିଲେ । ଦିନେ ଜଣେ ବଣିଆ ସେଠାକୁ ଆସି ଦେଖିଲା ଯେ ଗୋଟିଏ ପ୍ରକାଣ୍ଡ ମହାମୂଲ୍ୟ ହୀରା ତୁଠରେ ପଡ଼ିଛି ।'' ଶ୍ରୀମା'ଙ୍କ ପାଖକୁ ଏପରି ବଣିଆ ଆସୁଥିଲେ କେତେଜଣ ? ସୁତରାଂ ସେ ଆତ୍ମପରିଚୟ ଦେବେ କାହା ନିକଟରେ ଏବଂ ଦେଲେ ମଧ୍ୟ କିଏ ବା ସେକଥା ବିଶ୍ୱାସ କରିବ ? କିନ୍ତୁ ଉପଯୁକ୍ତ କ୍ଷେତ୍ର ଦେଖିଲେ ସେ ବିନ୍ଦୁମାତ୍ର ସଂକୋଚ ନ କରି ସ୍ପଷ୍ଟ ଆତ୍ମ ପରିଚୟ ଦେଇଥିଲେ । ଶ୍ରୀଯୁକ୍ତ କେଦାର (ସ୍ୱାମୀ କେଶବାନନ୍ଦ) କଥା ପ୍ରସଙ୍ଗରେ କହିଲେ, ''ମା, ଆପଣଙ୍କ ପରେ ଆଉ କେହି ଷଷ୍ଠୀ ଓ ଶୀତଳା ପ୍ରଭୃତି ଦେବୀମାନଙ୍କୁ ମାନିବେ ନାହିଁ ।'' ମା' କହିଲେ, ''ମାନିବେ ନାହିଁ କାହିଁକି ? ସେମାନେ ତ ମୋର ଅଂଶ ।'' ଦିନେ ଜଗଦମ୍ବା ଆଶ୍ରମରେ ଶ୍ରୀଯୁକ୍ତ କେଦାର କଥାବାର୍ତ୍ତା କରୁଥିଲେ । ଏହି ସମୟରେ ନିକଟରେ ଥିବା ବରଗଛ ମୂଳକୁ ଢୋଲ ବଜାଇ ଲୋକେ ଷଷ୍ଠୀପୂଜା କରିବା ପାଇଁ ଆସିଲେ । କଥାବାର୍ତ୍ତାରେ ଅସୁବିଧା ହେବାରୁ କେଦାର ବିରକ୍ତ ହୋଇ କହିଲେ, ''ଆହା, ରହ ନା' ରେ ବାବା ।'' ସଙ୍ଗେ ସଙ୍ଗେ ମା' ବାଧା ଦେଇ କହିଲେ, ''କ'ଣ କହୁଛ କେଦାର ! ମୁଁ ତ ସବୁ ! ତୁମେ ବିରକ୍ତ ହେଉଛ କାହିଁକି ?''

ବର୍ତ୍ତମାନ ଆମେ ଶ୍ରୀମା'ଙ୍କ ଜୀବନରୁ ଏପରି କେତୋଟି ଘଟଣା ଲିପିବଦ୍ଧ କରିବା, ଯାହା ଶ୍ରୀମା'ଙ୍କର କେବଳ ଦୈବୀଶକ୍ତିର ପରିଚାୟକ ନୁହେଁ ବରଂ ତାହା ଅନ୍ୟମାନଙ୍କର ଭକ୍ତି ଶ୍ରଦ୍ଧା ଏବଂ ଆଧ୍ୟାତ୍ମିକ ଜୀବନର ସହାୟକ ମଧ୍ୟ । ଆଧୁନିକ ଯୁକ୍ତିବାଦୀମାନଙ୍କ ନିକଟରେ ଏହି ସବୁ ଘଟଣା ହୁଏତ ଖୁବ୍ ରୁଚିସମ୍ପନ୍ନ ହେବ ନାହିଁ; ଧୁରନ୍ଧରମାନଙ୍କ ଦୃଷ୍ଟିରେ ଏହି ସବୁ ଘଟଣା ଉପଭୋଗ୍ୟ ହେଲେ ମଧ୍ୟ ବର୍ଜନୀୟ । ତଥାପି ନିରପେକ୍ଷ ଜୀବନୀ-ଲେଖକ ହିସାବରେ ଆମେ ଏହା ଲିପିବଦ୍ଧ କରିବାକୁ ବାଧ୍ୟ । ପାଠକମାନେ ନିଜ ଅନୁଭୂତି ଅନୁଯାୟୀ ଏହି ଘଟଣାଗୁଡ଼ିକର ମୂଲ୍ୟ ବା ମର୍ମ ନିର୍ଦ୍ଧାରଣ କରିବେ । ଲୋକୋତ୍ତର ଚରିତ୍ରରେ ଏହି ଜାତୀୟ ଘଟଣା ଶୁଣାଯାଏ । ଏମାନଙ୍କ ଚରିତ୍ରରେ ନିଶ୍ଚୟ କୌଣସି ବୈଶିଷ୍ଟ୍ୟ ଅଛି, ନ ହେଲେ ସମସ୍ତଙ୍କ କ୍ଷେତ୍ରରେ ଏପରି କଥା ଶୁଣାଯାଏ ନାହିଁ କାହିଁକି ? ଏସବୁ କ୍ଷେତ୍ରରେ ସତ୍ୟ ନିର୍ଣ୍ଣୟ କରିବା ଆମର କ୍ଷମତାର ବାହାରେ ।

ଅଧ୍ୟାପକ ଗୋକୁଳଦାସ ଦେ ସୁଲଳିତ ସ୍ୱରରେ ଚଣ୍ଡୀପାଠ କରିବା ଶିଖିଥିଲେ । ଦିନେ ସକାଳେ ଗଙ୍ଗାକୂଳରେ ବୁଲୁ ବୁଲୁ ଦେଖିଲେ ଶ୍ରୀମା' ଗୋଟିଏ ଘାଟରେ ସର୍ବନିମ୍ନ ପାହାଚ ଉପରେ ବସି ଧ୍ୟାନ କରୁଛନ୍ତି । ଗୋକୁଳ ବାବୁ ଟିକେ ଦୂରରେ ଠିଆ ହୋଇ ଅତି ନିମ୍ନ ସ୍ୱରରେ ଚଣ୍ଡୀପାଠ କରିବାକୁ ଲାଗିଲେ— 'ସୌମ୍ୟାଃସୌମ୍ୟତରାଃଶେଷ ସୌମ୍ୟେଭ୍ୟସ୍ତ୍ୱତିସୁନ୍ଦରୀ' (୧/୮୧) । ଶ୍ରୀମା' ହଠାତ୍ ପଛଆଡ଼କୁ ଚାହିଁ ସ୍ତବକାରୀଙ୍କୁ ଦୁଇହାତ ଉଠାଇ ଆଶୀର୍ବାଦ କଲେ ।

ଅଧ୍ୟାପକ ତାଙ୍କ ସ୍ମୃତିରେ ଲେଖିଛନ୍ତି ଯେ, ତାଙ୍କର କର୍ମ, ଘର ଇତ୍ୟାଦି ସମ୍ବନ୍ଧରେ ମା' କେବେହେଲେ କୌଣସି ପ୍ରଶ୍ନ କରି ନ ଥିଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା, ଦିନେ ହଠାତ୍ ତାଙ୍କର ଦୁଇ ବଡ଼ ଭାଇଙ୍କର ନାମ ଧରି ସେମାନଙ୍କର ଭଲମନ୍ଦ କଥା ପଚାରିଲେ; ତେବେ ଜଣଙ୍କର ନାମ ଲଳିତ ନ କହି ନଳୀନ କହିଥିଲେ । ଅଧ୍ୟାପକ ମନେକଲେ, ବୋଧହୁଏ ଉଚ୍ଚାରଣଦୋଷରୁ ସେ ଏପରି କହିଥିବେ । କିନ୍ତୁ ଘରକୁ ଆସି ମାତାଙ୍କୁ ଏ ବିଷୟରେ ପଚାରିବାରୁ ସେ କହିଲେ, ''ଜଗଜ୍ଜନନୀ ଠିକ୍ କହିଛନ୍ତି, ପିଲାଦିନେ ତାହାର ନାମ ନଳୀନ ଥିଲା । ପରେ ପରିବର୍ତ୍ତନ କରି ନାମ ଲଳିତ ରଖାହେଲା ।''

ଦିନେ ସଂଧ୍ୟାବେଳେ ମା'ଙ୍କ ଗୋଡ଼ରେ ବାତ ପାଇଁ ତେଲ ମାଲିସ୍ କରୁକରୁ ଜଣେ ଶିଷ୍ୟ ଭାବିଲେ ଯେପରି କି ମା'ଙ୍କର ବ୍ୟାଧି ତା'ଙ୍କ ଦେହକୁ ଆସେ ଏବଂ ମା' ଆରୋଗ୍ୟ ଲାଭ କରନ୍ତୁ । ମା' ଟିକିଏ ମୁରୁକି ହସିଦେଇ କହିଲେ, ''ବାବା, ତୁମେ କଅଣ ଚିନ୍ତା କରୁଛ ? ତୁମେମାନେ ବଞ୍ଚିରହ । ମୁଁ ବୁଢ଼ୀ ହେଲିଣି, ଆଉ କେତେଦିନ ବଞ୍ଚିବି ? ସେପରି ଚିନ୍ତା କାହିଁକି କରୁଛ ? ଠାକୁରେ ତୁମମାନଙ୍କୁ ଦୀର୍ଘଜୀବୀ କରନ୍ତୁ ।'' ଏହା କହି ଶିଷ୍ୟର ମସ୍ତକରେ ହାତ ଦେଇ ଆଶୀର୍ବାଦ କଲେ ।

ଭକ୍ତ ଶ୍ରୀଲଳିତମୋହନ ସାହାଙ୍କର ମନ ଅତ୍ୟନ୍ତ ଅସ୍ଥିର ହେବାରୁ ସେ ଶ୍ରୀମା' ଓ ଠାକୁରଙ୍କ ଉପରେ ଅଭିମାନବଶତଃ ସଙ୍କଳ୍ପ କଲେ ଯେ ଶ୍ରୀମା'ଙ୍କ ଦର୍ଶନ ପାଇଁ ସେ ଯିବେ ନାହିଁ । କିନ୍ତୁ ସାଙ୍ଗସାଥିମାନଙ୍କ ଅନୁରୋଧରେ ତାଙ୍କୁ ଦିନେ ଉଦ୍‌ବୋଧନ ଯିବାକୁ ପଡ଼ିଲା । ସେଦିନ ବହୁ ଭକ୍ତ ଶ୍ରୀମା'ଙ୍କୁ ପ୍ରଣାମ କରୁଥିଲେ । ମା' କିନ୍ତୁ କାହାରି ସହିତ କଥାବାର୍ତ୍ତା କରୁ ନ ଥିଲେ । ସର୍ବଶେଷରେ ଲଳିତବାବୁଙ୍କୁ ଦେଖି ମା' ପଚାରିଲେ, ''ଭଲ ଅଛ ତ ?'' ଅଭିମାନ କରି ଭକ୍ତ କହିଲେ, ''ହଁ ମା' , ଖୁବ୍ ଭଲ ଅଛି ।'' ପ୍ରତ୍ୟୁତ୍ତରରେ ମା' କରୁଣା ସହକାରେ କହିଲେ, ''ସେପରି କାହିଁକି ଭାବୁଛ ? ମନର ସ୍ୱଭାବ ହିଁ ତାହା । ସେଥିପାଇଁ କଅଣ ଏପରି କରିବା କଥା ?''

ଜୟରାମବାଟୀରେ ଉପସ୍ଥିତ ହୋଇ ଶ୍ରୀମହେନ୍ଦ୍ରନାଥ ଗୁପ୍ତ ଭାବିଲେ, ଫୁଲ ଚନ୍ଦନ ଦେଇ ଶ୍ରୀମା'ଙ୍କର ପାଦପୂଜା କରିବେ । କିନ୍ତୁ ଏହି ବିଦେଶରେ ଏସବୁ

ଜିନିଷ ସଂଗ୍ରହ କରିବ କିଏ ? ଏହି କଥା ଚିନ୍ତା କରୁଛନ୍ତି, ଠିକ୍ ଏପରି ସମୟରେ ମା' ଗୋଟିଏ ଛୋଟ ଝିଅ ହାତରେ ଫୁଲ ଚନ୍ଦନ ଦେଇ ଭକ୍ତଙ୍କ ପାଖକୁ ଖବର ପଠାଇଲେ— ''ତୁମେ ଅଞ୍ଜଳି ଦେବାକୁ ଚାହିଁଲେ ବର୍ତ୍ତମାନ ଆସି ଦେଇଯାଅ ।''

କରୁଣାମୟୀ ମା' ଏପରି ଅଲୌକିକ ଭାବରେ ତାଙ୍କ ଆଶ୍ରିତ ଭକ୍ତମାନଙ୍କର ମନୋବାଞ୍ଛା ପୂରଣ କରୁଥିଲେ । ସ୍ୱାମୀ ମହାଦେବାନନ୍ଦ ମା'ଙ୍କ ଆଦେଶରେ ଦିନେ ଦୂରଗ୍ରାମରୁ କିରାସିନି, ଅଟା ଇତ୍ୟାଦି ମହଣେ ଓଜନର ଜିନିଷ ମୁଣ୍ଡ ଉପରେ ଲଦି ଜୟରାମବାଟୀକୁ ଫେରୁଥିଲେ । ଶ୍ରାବଣ ମାସର ପାଣି-କାଦୁଅ ରାସ୍ତା । ମା' କୁଲି ଆଣିବା କଥା କହି ନାହାନ୍ତି ବୋଲି ସେ ମନେ ମନେ ପ୍ରତିଜ୍ଞା କଲେ ଯେ, ମା'ଙ୍କର ଏହି କାମ ସେ ଏକାକୀ କରିବେ । ଦୁର୍ଗମ ରାସ୍ତାରେ ଚାଲୁ ଚାଲୁ ସେ ବୋଧକଲେ ଯେପରିକି ମୁଣ୍ଡର ବୋଝ ଆହୁରୀ ଭାରୀ ହୋଇ ଉଠୁଛି—ବୋଝ ଅଧିକ ଦୂର ବହନ କରିବା ପ୍ରାୟ ଅସମ୍ଭବ । କିନ୍ତୁ ହଠାତ୍ ସେ ଅନୁଭବ କଲେ ଯେପରିକି ବୋଝଟି ହାଲୁକା ହୋଇଯାଉଛି ଏବଂ ସେ ଅକ୍ଳେଶରେ ଚାଲିପାରୁଛନ୍ତି । ଏହି କଥା ଚିନ୍ତା କରି କରି ସେ ମା'ଙ୍କ ଘରେ ପ୍ରବେଶ କଲେ ଏବଂ ଦେଖିଲେ ଯେ ମା' ଅସ୍ଥିର ଭାବରେ ନିଜ ଘରର ବାରଣ୍ଡା ଉପରେ ଦ୍ରୁତ ପଦଚାରଣ କରୁଛନ୍ତି— ମୁହଁ ନାଲି ପଡ଼ିଯାଇଛି, ଆଖିରେ ବ୍ୟସ୍ତତା ଫୁଟିଉଠୁଛି ଏବଂ ସେ ମନକୁ ମନ କହୁଛନ୍ତି, ''ଗୋଟିଏ କୁଲି ନେବାକୁ କାହିଁକି କହିଲି ନାହିଁ ?'' ମହାଦେବାନନ୍ଦ ବୋଝ ଓହ୍ଲାଇ ରଖିବାରୁ ମା' କହିଲେ, ''ଗୋଟିଏ କୁଲି କରି ନ ଥା'ନ୍ତ ! ମୁଁ କହି ନାହିଁ ବୋଲି କଅଣ ଏପରି ଭାବରେ ଆସିବା କଥା ?''

ପ୍ରୟୋଜନ ଅନୁଯାୟୀ ଶ୍ରୀମା' ତାଙ୍କ ଭବିଷ୍ୟତ ଦୃଷ୍ଟିର ପରିଚୟ ଦେଉଥିଲେ । ବୈକୁଣ୍ଠ ନାମକ ଜଣେ ଭକ୍ତ ଶ୍ରୀମା'ଙ୍କୁ ଦର୍ଶନ କରିବା ପାଇଁ ଜୟରାମବାଟୀକୁ ଯାଇଥିଲେ । ଫେରିବା ସମୟରେ ମା' ତାଙ୍କୁ କହିଲେ, ''ତୁମେ ଏଠାରୁ ଶୀଘ୍ର ଘରକୁ ଯାଅ । ମଠ ବା ଏଠାକୁ ସେଠାକୁ ଯିବା ପ୍ରୟୋଜନ ନାହିଁ । ଘରେ ପହଞ୍ଚି ବାପା ମା'ଙ୍କର ସେବା କର । ତୁମର ବର୍ତ୍ତମାନ ବିଶେଷ କରି ବାପାଙ୍କର ସେବା କରିବା ଉଚିତ ।'' ବୈକୁଣ୍ଠ ଘରେ ପହଞ୍ଚି ଦେଖିଲେ, ବାପା ରୋଗଶଯ୍ୟାରେ ଶାୟିତ, ଯଦିଓ ଯିବା ସମୟରେ ସେ ସମ୍ପୂର୍ଣ୍ଣ ସୁସ୍ଥ ଥିଲେ । ଛ' ସାତ ଦିନ ପରେ ତାଙ୍କର ମୃତ୍ୟୁ ହେଲା ।

ସ୍ୱାମୀ ମହାଦେବାନନ୍ଦ କୋଆଲପଡ଼ାରୁ ପରିବାପତ୍ର ନେଇ ଜୟରାମବାଟୀକୁ ଆସିଥିଲେ । ଝୁଡ଼ି ରଖି ଫେରିବେ, ଏପରି ସମୟରେ ଶ୍ରୀମା' ତାଙ୍କୁ ନିଷେଧ କରି କହିଲେ, ''ବର୍ତ୍ତମାନ ଯାଅ ନାହିଁ, ବର୍ଷା ହେବ ।'' ଶିଷ୍ୟ କିନ୍ତୁ ନିଷେଧ ଶୁଣିଲେ ନାହିଁ । ଜଳଖିଆ ଖାଇ ଯାତ୍ରା କଲେ । ଆକାଶ ସେତେବେଳେ ସମ୍ପୂର୍ଣ୍ଣ ମେଘମୁକ୍ତ । ମହାଦେବାନନ୍ଦଜୀ ମା'ଙ୍କୁ ପ୍ରଣାମ କରି ମନଖୁସିରେ ବିଦାୟ ନେଲେ । ଆମୋଦର ନଦୀ ପାରିହୋଇ ପଡ଼ିଆରେ ଅଳ୍ପ ଅଗ୍ରସର ହେବା ପରେ

ପ୍ରବଳ ବର୍ଷା ଆରମ୍ଭ ହେଲା । ସେ କୌଣସି ପ୍ରକାରେ ଦୌଡ଼ି ଦୌଡ଼ି ଗୋଟିଏ ଡମଘରେ ଆଶ୍ରୟ ନେଲେ ।

୧୯୧୨ ଖ୍ରୀଷ୍ଟାବ୍ଦର କଥା । ଠିକ୍ ଦୁର୍ଗାପୂଜା ପରେ ଶ୍ରୀମା' କାଶୀଧାମକୁ ଯିବେ । ଅତଏବ ଜିନିଷପତ୍ର ସଜାଡ଼ିବାରେ ବ୍ୟସ୍ତ । ଦିନ ଦ୍ୱିପ୍ରହର ସମୟରେ ନାଟ୍ୟକାର ଗିରିଶ ଘୋଷଙ୍କର ଭଗିନୀ ଦେଖା କରିବାକୁ ଆସିଲେ । ବିଦାୟ ନେଇ ଯିବା ସମୟରେ ସେ କହିଲେ, ''ତେବେ ମୁଁ ଯାଉଛି ମା' !'' ଶ୍ରୀମା' ଅନ୍ୟ ମନସ୍କଭାବରେ କହିଲେ, ''ହଁ ଯାଅ ।'' ଗିରିଶବାବୁଙ୍କ ଭଗିନୀ ଚାଲିଯିବା ପରେ ମା'ଙ୍କର ମନେହେଲା, ''କାହିଁକି ଏପରି କହିଲି ? ଯାଅ ବୋଲି କହିଲି ? ମୁଁ ତ ଏପରି କାହାକୁ କୁହେ ନାହିଁ ।'' ସାଧାରଣତଃ କେହି ବିଦାୟ ନେବା ସମୟରେ ଶ୍ରୀମା' ତାଙ୍କୁ ଆସ ବୋଲି କହୁଥିଲେ । ମହିଳା ହଠାତ୍ ସେହିଦିନ ରାତିରେ ଦେହତ୍ୟାଗ କଲେ । ମା' ଏ କଥା ଶୁଣି ଦୁଃଖ ପ୍ରକାଶ କରି କହିଲେ, ''କାହିଁକି ଏପରି କଥା ମୋ ମୁହଁଦେଇ ବାହାରିଲା ?''

ଶ୍ରୀହେମଚନ୍ଦ୍ର ଦାସଗୁପ୍ତ ଜୟରାମବାଟୀରେ ଶ୍ରୀମା'ଙ୍କ ନିକଟରୁ ଦୀକ୍ଷା ନେଲେ । କରଜପ କରିବାର ପଦ୍ଧତି ସେ ବୁଝିପାରି ନାହାନ୍ତି ଦେଖି ଶ୍ରୀମା' କହିଲେ, ''ତୁମେ ସୁରେନ୍‌କୁ ପଚାରି ବୁଝିନେବ । ସୁରେନ୍‌ବାବୁ ରହନ୍ତି ରାଞ୍ଚିରେ— ଆଉ ହେମବାବୁ ଯିବେ ପୂର୍ବବଙ୍ଗସ୍ଥିତ ଚଟ୍ଟଗ୍ରାମକୁ; ସୁତରାଂ ସେ ସନ୍ଦେହ ପ୍ରକାଶ କଲେ । କିନ୍ତୁ ମା' ତାଙ୍କୁ ଆଶ୍ୱାସ ଦେଇ ପଠାଇ ଦେଲେ । ପରେ ଗୋଆଲନ୍ଦରେ ଷ୍ଟିମର୍‌ରେ ଉଠି ହଠାତ୍ ସେଠାରେ ସୁରେନ୍‌ବାବୁଙ୍କୁ ଦେଖିବାକୁ ପାଇଲେ — ସେ ରାଞ୍ଚିରୁ ଢାକାକୁ ଯାଉଥିଲେ ।

ଠାକୁରଙ୍କର ପ୍ରିୟଭକ୍ତ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ଘୋଷ ସେତେବେଳେ ଅତ୍ୟନ୍ତ ପୀଡ଼ିତ । ପୂର୍ଣ୍ଣବାବୁଙ୍କ ଜନନୀ ଉଦ୍‌ବୋଧନକୁ ଆସୁଥିବାର ଦେଖି ଶ୍ରୀମା' କହିଲେ, ''ଏଇ ଦେଖ ଆସୁଛି, ପ୍ରତିଦିନ ଆସି ମୋତେ ବିରକ୍ତ କରୁଛି, 'ମା, ଆଶୀର୍ବାଦ କର, ପୂର୍ଣ୍ଣକୁ ଭଲ କରିଦିଅ ।' ମୁଁ ଜାଣେ ପୂର୍ଣ୍ଣ ବଞ୍ଚିବ ନାହିଁ, କେବଳ ତାକୁ ଭୁଲାଇବା ପାଇଁ ସେ ଭଲ ହୋଇଯିବ ବୋଲି କୁହେ ।'' ସେଦିନ ମଧ୍ୟ ପୂର୍ଣ୍ଣବାବୁଙ୍କ ଜନନୀକୁ ଯଥାସମ୍ଭବ ସାନ୍ତ୍ୱନା ଦେଇ ମା' ବିଦାୟ ଦେଲେ । ପରେ ଭକ୍ତମାନଙ୍କୁ କହିଲେ, ''ଠାକୁର କହିଥିଲେ ଯେ ପୂର୍ଣ୍ଣକୁ ବିବାହ ଦେଲେ ସେ ବେଶୀ ଦିନ ବଞ୍ଚିବ ନାହିଁ । କିନ୍ତୁ ତା' ମା' ସେକଥା ଶୁଣିଲା ନାହିଁ । ସନ୍ନ୍ୟାସୀ ହୋଇଯିବ ବୋଲି ପୁଅକୁ ଶୀଘ୍ର ବିବାହ କରାଇ ଦେଲା ।'' କେତେ ଦିନ ପରେ ରାତିରେ ଶ୍ରୀମା' ଯୋଗୀନ୍-ମା' ଇତ୍ୟାଦିଙ୍କ ସହିତ ଶୋଇଛନ୍ତି । ମା'ଙ୍କୁ ଟିକିଏ ନିଦ ଧରି ଆସିଛି । ହଠାତ୍ ସେ କହି ଉଠିଲେ, ''ଯୋଗେନ୍, ପୂର୍ଣ୍ଣ ମରିଗଲା ନା କ'ଣ ?'' ଯୋଗୀନ୍-ମା' ଆଶ୍ଚର୍ଯ୍ୟ ହୋଇ କହିଲେ, ''କିଏ ତୁମକୁ ଏକଥା କହିଲା ମା' ?'' ମା' କହିଲେ, ''ମୁଁ ନିଦରେ ଶୋଇଥିଲି, ହଠାତ୍ ଶୁଣିବାକୁ

ପାଇଲି, ପୂର୍ଣ୍ଣ ମରିଯାଇଛି ।'' ଯୋଗୀନ୍-ମା' ସବୁ କଥା ଖୋଲି କହିଲେ ଯେ ସେହିଦିନ ସନ୍ଧ୍ୟାବେଳେ ପୂର୍ଣ୍ଣଚନ୍ଦ୍ର ଦେହରକ୍ଷା କରିଛନ୍ତି; କିନ୍ତୁ ଶ୍ରୀମା'ଙ୍କୁ ଏ ଖବର ଦିଆଯାଇ ନାହିଁ । ଶ୍ରୀମା' ସେଦିନ ରାତିରେ ବାରମ୍ବାର ପୂର୍ଣ୍ଣବାବୁଙ୍କ କଥା କହି ଦୁଃଖପ୍ରକାଶ କରିଥିଲେ । ସ୍ମରଣ ଥାଉକି, ଶ୍ରୀରାମକୃଷ୍ଣ ଯେଉଁ ଛଅଜଣ ଯୁବକ ଶିଷ୍ୟଙ୍କୁ ଈଶ୍ୱରକୋଟୀ ବୋଲି ନିର୍ଦ୍ଦିଷ୍ଟ କରିଥିଲେ, ସେମାନଙ୍କ ମଧ୍ୟରୁ ପୂର୍ଣ୍ଣଚନ୍ଦ୍ର ଅନ୍ୟତମ । ପୂର୍ଣ୍ଣ ଠାକୁର ଓ ମା'ଙ୍କର ଅତ୍ୟନ୍ତ ପ୍ରିୟ ସନ୍ତାନ ଥିଲେ ।

ଭକ୍ତମାନଙ୍କ ପ୍ରତି ମା'ଙ୍କର ଆଶୀର୍ବାଦ ଓ ପ୍ରାର୍ଥନା ଅବ୍ୟର୍ଥ ଥିଲା । ଥରେ ଜଣେ ଭକ୍ତ ଘୋର ଅସୁବିଧାରେ ପଡ଼ି ବନ୍ଦୀ ହେବାର ସମ୍ଭାବନା ଦେଖାଦେଲା । ଅତ୍ୟନ୍ତ କାତର ହୋଇ ସେ ମା'ଙ୍କ ନିକଟରେ ସବୁକଥା ନିବେଦନ କଲେ । ମା' ତାଙ୍କୁ ଆଶ୍ୱାସ ଦେଇ କହିଲେ, ''ଭୟ ନାହିଁ, କୌଣସି ଚିନ୍ତା ନାହିଁ ।'' ଭକ୍ତ ସେ ବିପଦରୁ ଆଶ୍ଚର୍ଯ୍ୟଭାବରେ ରକ୍ଷା ପାଇଲେ ।

ବରିଶାଲର ଭକ୍ତ ସୁରେନ୍ଦ୍ରନାଥ ରାୟ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ । ଜୀବନର ଆଶା ନ ଥିଲା ! ମୃତ୍ୟୁ ପୂର୍ବରୁ ଶ୍ରୀମା'ଙ୍କୁ ଥରେ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇ ପତ୍ର ଲେଖିଲେ ଯେପରି କି ମା' ବରିଶାଲକୁ ଆସି ତାଙ୍କୁ ଥରେ ଦେଖାଦେଇ ଯାଆନ୍ତି । ଶ୍ରୀମା' ତାଙ୍କୁ ନିଜର ଗୋଟିଏ ବନ୍ଧା ଛବି ଓ କେତୋଟି ଉଦ୍‌ବୋଧନ ପତ୍ରିକା ପଠାଇ ଲେଖିଲେ ଯେ ଭୟର କୌଣସି କାରଣ ନାହିଁ—ରୋଗ ଭଲ ହୋଇଯିବ । ମଝିରେ ମଝିରେ ଛବିଟି ଦେଖିବାକୁ ଓ ପତ୍ରିକା ପାଠ କରିବାକୁ ମା' ଲେଖିଥିଲେ । ଆସନ୍ନ ମୃତ୍ୟୁରୋଗୀ ଫଟୋକୁ ନିଜ ମୁଣ୍ଡତଳେ ରଖିଲେ ଏବଂ ମା'ଙ୍କ ଆଶୀର୍ବାଦ ଅନୁଯାୟୀ କ୍ରମେ ସୁସ୍ଥ ହୋଇଉଠିଲେ ।

ବର୍ଷେ ବର୍ଷା ନ ହେବାରୁ ଜୟରାମବାଟୀ ନିକଟବର୍ତ୍ତୀ ଗ୍ରାମଗୁଡ଼ିକରେ ଧାନଗଛ ଶୁଖିଯିବାକୁ ଲାଗିଲା । ନିରୁପାୟ ଚାଷୀମାନେ ଶ୍ରୀମା'ଙ୍କୁ କହିଲେ, ''ଏଥର ଆମ ଛୁଆପିଲାମାନଙ୍କର ବଞ୍ଚିବାର ଆଶା ନାହିଁ—ସମସ୍ତେ ନ ଖାଇ ମରିବେ ।'' ସେମାନଙ୍କର ଅବସ୍ଥା ଦେଖି ମା' ଅତ୍ୟନ୍ତ ବିଚଳିତ ହେଲେ ଏବଂ ଆକୁଳ ଭାବରେ ପ୍ରାର୍ଥନା କରି କହିଲେ, ''ହେ ଠାକୁର, କଅଣ କଲ ! ଶେଷରେ ସମସ୍ତେ ନ ଖାଇ ନ ପିଇ ମରିବେ ?'' ସେହି ରାତିରେ ପ୍ରବଳ ବର୍ଷା ହେଲା ଏବଂ ସେବର୍ଷ ଯେପରି ଫସଲ ହେଲା ସେପରି ପୂର୍ବେ ବହୁବର୍ଷ ଧରି ହୋଇ ନ ଥିଲା ।

ଶ୍ରୀମା' ସେତେବେଳେ ଉଦ୍‌ବୋଧନରେ ଥାଆନ୍ତି । ରାତି ଦଶଟା ସମୟରେ ସ୍ୱାମୀ ସାରଦାନନ୍ଦଙ୍କର ଆହ୍ୱାନ ପାଇ ଜଣେ ବ୍ରହ୍ମଚାରୀ ଓହ୍ଲାଇ ଆସି ଦେଖିଲେ ଯେ କୋଆଲପଡ଼ାର ଜଣେ ପରିଚିତ ବ୍ୟକ୍ତି ଶ୍ରୀନଫରଚନ୍ଦ୍ର କୋଲେ ଶ୍ରୀମା'ଙ୍କ ଦର୍ଶନ ପାଇଁ ଆସି ହାଜିର । ସାରଦାନନ୍ଦଜୀଙ୍କ ନିର୍ଦ୍ଦେଶ ଅନୁଯାୟୀ ତାଙ୍କୁ ମା'ଙ୍କ ନିକଟକୁ ପଠାଇ ଦିଆଗଲା । ସେ ମା'ଙ୍କର ଗୋଡ଼ ଧରି କାନ୍ଦି କାନ୍ଦି କହିଲେ, ''ମା, ମୁଁ ବିପଦଗ୍ରସ୍ତ ହୋଇ ଆପଣଙ୍କ ପାଖକୁ ଆସିଛି । ଇନ୍‌ଫ୍ଲୁଏଞ୍ଜା

ଜ୍ୱରରେ ପଡ଼ି ମୋର କେତୋଟି ନାତୁଣୀ ଓ ଗୋଟିଏ ନାତି ମରିଯାଇଛନ୍ତି । ବର୍ତ୍ତମାନ ମୋର ଏକମାତ୍ର ନାତିର ଅବସ୍ଥା ଖୁବ୍ ସଙ୍କଟପୂର୍ଣ୍ଣ । ମା' ଆପଣଙ୍କୁ ଆଶୀର୍ବାଦ କରିବାକୁ ହେବ ମୋର ବଂଶ ଯେପରି ରକ୍ଷା ପାଏ ।'' ମା' କହିଲେ, ''ସେ କିପରି କଥା ! ଆପଣ ଏପରି ଆଶଙ୍କା କରୁଛନ୍ତି କାହିଁକି ? ଆପଣ ଲକ୍ଷ୍ମୀବନ୍ତ ଭାଗ୍ୟବାନ୍ ଲୋକ ।'' ନଫରବାବୁ କହିଲେ, ''ନା ମା', ମୁଁ ସେସବୁ କଥା ଶୁଣିବାକୁ ଚାହେଁ ନାହିଁ । ମୋର ଏହି ଶେଷ ବୟସରେ ଏକମାତ୍ର ନାତିର ଶୋକ ଯେପରି ମୁଁ ନ ପାଏ ।'' ମା' କହିଲେ, ''ଆପଣ ଏତେ ବ୍ୟସ୍ତ ହୁଅନ୍ତୁ ନାହିଁ, ଉଠନ୍ତୁ । ମୁଁ ଠାକୁରଙ୍କୁ ଜଣାଉଛି ।'' ନଫରବାବୁ ମା'ଙ୍କ ଗୋଡ଼ ଜାବୁଡ଼ି ଧରି କାନ୍ଦିବାରେ ଲାଗିଥାଆନ୍ତି । ଶେଷରେ ମା' ଅତି ଗମ୍ଭୀର ହୋଇ ଅଭୟବାଣୀ ଶୁଣାଇଲେ, ''ଆପଣଙ୍କର କୌଣସି ଭୟ ନାହିଁ ।'' ନଫରବାବୁ ଲୁହ ପୋଛି ଖୁସି ମନରେ ବିଦାୟ ନେଲେ । ଶ୍ରୀମା' କିଛି ପ୍ରସାଦ ତାଙ୍କ ହାତରେ ଦେଲେ । ଶ୍ରୀମା'ଙ୍କ ଆଶୀର୍ବାଦରେ ବୃଦ୍ଧଙ୍କର ମନସ୍କାମନା ପୂର୍ଣ୍ଣ ହେଲା ।

## ଶ୍ରୀମା' ଓ ଠାକୁର

ଶ୍ରୀଶ୍ରୀଠାକୁର ଶ୍ରୀମା'ଙ୍କୁ କେଉଁ ଦୃଷ୍ଟିରେ ଦେଖୁଥିଲେ ତାହା ଆମେ ଆଲୋଚନା କରିଛୁ । ବର୍ତ୍ତମାନ ଶ୍ରୀମା' ଠାକୁରଙ୍କୁ କି ଦୃଷ୍ଟିରେ ଦେଖୁଥିଲେ, ତାହା ବୁଝିବାକୁ ଚେଷ୍ଟା କରିବା । ଦକ୍ଷିଣେଶ୍ୱରରେ ଠାକୁର ଛୋଟ ଖଟ ଉପରେ ବସିଥିଲେ ଏବଂ ଘରେ ଶ୍ରୀମା' ଝାଡୁ ଦେଉଥିଲେ । ଅନ୍ୟ କେହି ନ ଥିଲେ, ହଠାତ୍ ଶ୍ରୀମା' ଠାକୁରଙ୍କୁ ପ୍ରଶ୍ନ କଲେ, ''ମୁଁ ତୁମର କିଏ ?'' ଠାକୁର ତତ୍କ୍ଷଣାତ୍ ଉତ୍ତର ଦେଲେ, ''ତୁମେ ମୋର ମା' ଆନନ୍ଦମୟୀ ।'' ଦିନେ ହସି ହସି ହୃଦୟ ଶ୍ରୀମା'ଙ୍କୁ ପଚାରିଲେ, ''ମାଈଁ, ତୁମେ ମାମୁଁଙ୍କୁ ବାବା ବୋଲି ଡାକ କାହିଁକି ?'' ଶ୍ରୀମା' କୌଣସି ଦ୍ୱିଧା ନ କରି ସ୍ପଷ୍ଟ ଉତ୍ତର ଦେଲେ, ''ସେ କ'ଣ କେବଳ ବାବା ? ମାତା, ପିତା, ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ—ସେ ସବୁ ।'' ଠାକୁରଙ୍କ ଦୃଷ୍ଟିରେ ମା' ଯେପରି ସ୍ୱୟଂ ଜଗଦମ୍ବା ଥିଲେ, ସେପରି ଶ୍ରୀମା'ଙ୍କ ଦୃଷ୍ଟିରେ ଶ୍ରୀରାମକୃଷ୍ଣ ଥିଲେ ସର୍ବଦେବଦେବୀସ୍ୱରୂପ । ଶ୍ରୀମା' ଦିନେ କହିଥିଲେ, ''ସେ (ଠାକୁର) ମନସା, ଗଙ୍ଗା—ସବୁ ।''

ଭକ୍ତ ସୁରେନ୍ଦ୍ରବାବୁ ଜୟରାମବାଟୀରେ ଶ୍ରୀମା'ଙ୍କୁ କହିଲେ ଯେ, ଠାକୁରଙ୍କ ପୂଜା କରିବାକୁ ଯାଇ ତାଙ୍କର ମନରେ ସନ୍ଦେହ ହୁଏ, କାରଣ ଇଷ୍ଟଦେବୀ ଓ ଠାକୁର ଅଭେଦ ବୋଲି ଗୋଟିଏ ସାଧାରଣ ଧାରଣା ଥିଲେ ସୁଦ୍ଧା ଠାକୁରଙ୍କ ପ୍ରତିକୃତିରେ ଇଷ୍ଟଦେବୀଙ୍କର ପୂଜାକରି ଜପ ବିସର୍ଜନ ସମୟରେ 'ତତ୍ ପ୍ରାସାଦାତ୍ ମହେଶ୍ୱରୀ' କହିବାକୁ ଟିକିଏ ଦ୍ୱିଧା ହୁଏ । ମା' ହସି ହସି ଉତ୍ତର ଦେଲେ, ''ତା' ବାବା, ସେ ମହେଶ୍ୱର, ସେ ମହେଶ୍ୱରୀ, ସେ ସର୍ବଦେବମୟ, ସେ ସର୍ବଜୀବମୟ । ତାଙ୍କ

ଭିତରେ ସବୁ ଦେବଦେବୀଙ୍କ ପୂଜା ହୁଏ । ତାଙ୍କୁ ମହେଶ୍ୱର କହିଲେ ଚଳିବ—ମହେଶ୍ୱରୀ ମଧ୍ୟ ।'' ଆଉ ଦିନେ ଜଣେ ସ୍ତ୍ରୀଭକ୍ତଙ୍କୁ ଶ୍ରୀମା' କହିଥିଲେ, ''ସେ (ଠାକୁର) ସବୁ । ସେ ପୁରୁଷ, ସେ ହିଁ ପ୍ରକୃତି । ତାଙ୍କୁ ଧରିଲେ ସବୁ ସମ୍ଭବ ।'' ଜୟରାମବାଟୀରେ ଜଣେ ଭକ୍ତଙ୍କୁ ଦୀକ୍ଷା ଦେଇ ଠାକୁରଙ୍କ ପାଦପଦ୍ମରେ ସବୁ କର୍ମ, ପାପପୁଣ୍ୟ ଓ ଧର୍ମାଧର୍ମ ସମର୍ପଣ କରିବାକୁ ମା' କହିଲେ ଏବଂ ଠାକୁରଙ୍କୁ ଗୁରୁ ରୂପେ ନିର୍ଦ୍ଦିଷ୍ଟ କଲେ । କିନ୍ତୁ କୃପାପ୍ରାପ୍ତ ସନ୍ତାନ ଚିନ୍ତା କଲେ, ଯଦି ଠାକୁର ସ୍ୱୟଂ ଗୁରୁ, ତେବେ ମା' କିଏ ? ସେ ବୁଝିପାରି ନ ଥିଲେ ଯେ ଠାକୁର ଓ ମା' ଅଭିନ୍ନ । ମା' ଗମ୍ଭୀରଭାବରେ ଉତ୍ତର ଦେଲେ, ''ସେ ସବୁ—ପୁରୁଷ, ପ୍ରକୃତି । ତାଙ୍କୁ ଚିନ୍ତା କଲେ ସବୁ ହେବ ।''

ବାଗ୍‌ବଜାର ସିଦ୍ଧେଶ୍ୱରୀ ମନ୍ଦିରରୁ ଶ୍ରୀମା'ଙ୍କ ପାଇଁ ଦେବୀଙ୍କର ଚରଣାମୃତ ଆସୁଥିଲା । ଦିନେ ଠାକୁରଙ୍କ ପୂଜା ପରେ ସ୍ୱାମୀ ବାସୁଦେବାନନ୍ଦ ଦୁଇଟି ଭିନ୍ନ ପାତ୍ରରେ ଦେବୀଙ୍କର ଓ ଠାକୁରଙ୍କର ଚରଣାମୃତ ଆଣିଲେ । ଶ୍ରୀମା' କହିଲେ, ''ତାହା ଭିନ୍ନ ନୁହେଁ, ମିଶାଇ ଦିଅ ।'' ବାସୁଦେବାନନ୍ଦ ସଙ୍କୋଚବୋଧ କରିବାରୁ ଶ୍ରୀମା' ତାଙ୍କରି ସମ୍ମୁଖରେ ଉଭୟକୁ ମିଶାଇ ତାଙ୍କୁ ଦେବାକୁ ଆଦେଶ ଦେଲେ ।

ଶ୍ରୀମା' ଅତ୍ୟନ୍ତ ଲଜ୍ଜାଶୀଳା ଥିଲେ । କିନ୍ତୁ ଠାକୁରଙ୍କ ଲୀଳା-ସମ୍ବରଣ ଦିନ ନିଜକୁ ସମ୍ଭାଳି ନ ପାରି ଭକ୍ତମାନଙ୍କ ଉପସ୍ଥିତିସତ୍ତ୍ୱେ ଶୟନକକ୍ଷରେ ପ୍ରବେଶ କରି, ''ହେ, ମା' କାଳୀ, ତୁମେ ମୋର କେଉଁ ଦୋଷ ପାଇଁ ତ୍ୟାଗ କରିଗଲ !'' କହି କାନ୍ଦିବାକୁ ଲାଗିଲେ ।

ଉପରୋକ୍ତ ବିବରଣୀଗୁଡ଼ିକରୁ ଏହା ସ୍ପଷ୍ଟ ଅନୁଭୂତ ହୁଏ ଯେ, ଶ୍ରୀମା' ଠାକୁରଙ୍କୁ କେବଳ ମାତ୍ର ପତି, ମାନବ ବା ସାଧାରଣ ଦେବତା ଦୃଷ୍ଟିରେ ଦେଖୁ ନ ଥିଲେ । ତାଙ୍କ ଦୃଷ୍ଟିରେ ଶ୍ରୀଶ୍ରୀଠାକୁର ସର୍ବବ୍ୟାପୀ ଭଗବାନ । ତେଣୁ ସେ ଭକ୍ତମାନଙ୍କୁ କହୁଥିଲେ, ''ଠାକୁର ହିଁ ସବୁ, ସେ ଗୁରୁ ଓ ସେ ହିଁ ଇଷ୍ଟ ।'' ନିଜ ଅନୁଭୂତି ବିଷୟରେ ସୁଧୀରା ଦେବୀଙ୍କୁ ଶ୍ରୀମା' ଦିନେ କହିଥିଲେ, ''ମୋର ଥରେ ଏପରି ଅବସ୍ଥା ହେଲା ଯେ, ନୈବେଦ୍ୟରୁ ପିମ୍ପଡ଼ିକୁ ମଧ୍ୟ ବାହାର କରିପାରିଲି ନାହିଁ, ବୋଧ ହେଲା ଠାକୁର ଯେପରି ନିଜେ ଖାଉଛନ୍ତି ।''

ଶ୍ରୀମା'ଙ୍କ ଦୃଷ୍ଟିରେ ଠାକୁର ସର୍ବବ୍ୟାପୀ, ସର୍ବସ୍ୱରୂପ; ପୁଣି ସର୍ବରୂପର ଅତୀତ ମଧ୍ୟ । ହିମାଳୟର କ୍ରୋଡ଼ରେ ଅବସ୍ଥିତ ମାୟାବତୀ ଅଦ୍ୱୈତ ଆଶ୍ରମ ଅଦ୍ୱୈତମତ ପ୍ରଚାର ପାଇଁ ପ୍ରତିଷ୍ଠିତ ହେଲା । କିନ୍ତୁ ୧୯୦୧ ଖ୍ରୀଷ୍ଟାବ୍ଦରେ ସ୍ୱାମୀ ବିବେକାନନ୍ଦ ସେଠାରେ ପହଞ୍ଚି ଦେଖିଲେ ଯେ, ଅନ୍ୟାନ୍ୟ ଆଶ୍ରମ ପରି ସେଠାରେ ମଧ୍ୟ ଠାକୁର ପୂଜା କରାଯାଉଛି । ସେ ଏଥିଲାଗି ଦୁଃଖ ପ୍ରକାଶ କଲେ ସୁଦ୍ଧା ଶିଷ୍ୟମାନଙ୍କ ମନରେ କଷ୍ଟ ହେବ ଭାବି ଠାକୁର ପୂଜା ନିଷେଧ କଲେ ନାହିଁ । କିନ୍ତୁ ତାଙ୍କର ମନୋଭାବ ବୁଝି ଆଶ୍ରମବାସୀମାନେ ତାହା ବନ୍ଦ କରିଦେଲେ । ଜଣେ

ଶିଷ୍ୟଙ୍କ ମନରେ ଏ ବିଷୟରେ ଦ୍ୱନ୍ଦ୍ୱ ଉପସ୍ଥିତ ହେବାରୁ ସେ ଶ୍ରୀମା'ଙ୍କୁ ସବୁକଥା ଲେଖି ଜଣାଇଲେ । ମା' ଉତ୍ତର ଦେଲେ, ''ଠାକୁର ପୂର୍ଣ୍ଣ ଅଦ୍ୱୈତ ଥିଲେ ଏବଂ ଅଦ୍ୱୈତ ପ୍ରଚାର କରି ଯାଇଛନ୍ତି । ତୁମେ ଅଦ୍ୱୈତ ମତର ଅନୁସରଣ କରିବ ନାହିଁ କାହିଁକି ? ତାଙ୍କର ସବୁ ସନ୍ତାନମାନେ ଅଦ୍ୱୈତମତାବଲମ୍ବୀ ।''

ଠାକୁରଙ୍କୁ ଶ୍ରୀମା' ନିର୍ଗୁଣ ବ୍ରହ୍ମ ଜାଣିଥିଲେ ସୁଦ୍ଧା ସଗୁଣ ଭଗବତ୍‌ରୂପେ ସ୍ମରଣ, ମନନ ଓ ପୂଜାଦି କରୁଥିଲେ । ଫଟୋରେ ଶ୍ରୀଶ୍ରୀଠାକୁରଙ୍କର ପୂଜା କି ଭାବରେ ଆରମ୍ଭ ହେଲା ସେ ବିଷୟରେ ଶ୍ରୀମା' ଯାହା କହିଛନ୍ତି ସେଥିରୁ ଜଣାଯାଏ ଯେ, ଠାକୁରଙ୍କର ଧ୍ୟାନାବସ୍ଥାର ଯେଉଁ ଛବି ଆଜିକାଲି ପୂଜା ହୁଏ, ସେଥିରୁ ଖଣ୍ଡିଏ ଜଣେ ବ୍ରାହ୍ମଣ ଘରେ ରଖିଥିଲେ । ଥରେ ଦକ୍ଷିଣେଶ୍ୱର ଛାଡ଼ି କିଛି ଦିନ ପାଇଁ ବାହାରକୁ ଯିବା ସମୟରେ ସେ ଛବିଟି ମା'ଙ୍କ ନିକଟରେ ରଖିଗଲେ । ଶ୍ରୀମା' ଏହି ଫଟୋଟି ଅନ୍ୟାନ୍ୟ ଦେବତାମାନଙ୍କ ସହିତ ବସାଇ ପୂଜା କରିବାକୁ ଲାଗିଲେ । ଦିନେ ଠାକୁର ନହବତକୁ ଯାଇ ଏହି ଛବିଟିକୁ ଦେଖିଲେ ଏବଂ ପଚାରିଲେ, ''ଏସବୁ ପୁଣି କ'ଣ କରୁଛ ?'' ସେତେବେଳେ ଶ୍ରୀମା' ବାହାରର ସିଡ଼ିତଳେ ରାନ୍ଧୁଥିଲେ । ଠାକୁରଙ୍କ ସ୍ୱର ଶୁଣି ସେ ଭିତରକୁ ଆସି ଦେଖିଲେ, ସେଠାରେ ପୂଜା ପାଇଁ ଯେଉଁ ବେଲପତ୍ର ଇତ୍ୟାଦି ଥିଲା ତାହା ହାତରେ ନେଇ ଠାକୁର ଥରେ କି ଦୁଇଥର ଏହି ଛବିରେ ନିଜେ ପୁଷ୍ପାଞ୍ଜଳି ଦେଲେ । ଶୁଣାଯାଏ, ବିଷ୍ଣୁପ୍ରିୟାଦେବୀ ନିମ୍ବକାଠର ଗୌରାଙ୍ଗମୂର୍ତ୍ତି ନିର୍ମାଣ କରି ତାଙ୍କ ପୂଜାର ପ୍ରବର୍ତ୍ତନ କରିଥିଲେ । ଆଲୋଚ୍ୟ ସ୍ଥଳରେ ଶ୍ରୀମା' କ'ଣ ତାହା ହିଁ କରିଛନ୍ତି ? ଯାହା ହେଉ, ସେହି ବ୍ରାହ୍ମଣ ଆଉ ଫେରିଲେ ନାହିଁ, ସୁତରାଂ ଫଟୋଟି ମା'ଙ୍କର ଚିରସାଥି ହୋଇ ରହିଲା । ପ୍ରଥମେ ତାହା ଖୁବ୍ କଳା ଥିଲା, କିନ୍ତୁ ପରେ ଫିକା ହୋଇ ଆସିଲା ।

ଦୂର ଦେଶକୁ ଯାତ୍ରା କରିବା ସମୟରେ ମଧ୍ୟ ଠାକୁରଙ୍କର ଫଟୋ ମା'ଙ୍କ ସହିତ ରହୁଥିଲା ଏବଂ ସେ ନିୟମିତ ତାହା ପୂଜା କରୁଥିଲେ । ସେହି ପୂଜାରେ କୌଣସି ଆଡ଼ମ୍ବର ନ ଥିଲା — ଥିଲା କେବଳ ଆନ୍ତରିକତା ଓ ଆତ୍ମୀୟତାବୋଧ । ପୂଜା ସମୟରେ ଶ୍ରୀମା'ଙ୍କର ହାବଭାବ ଦେଖି ମନେହେଉଥିଲା ଯେପରି କି ସେ ଠାକୁରଙ୍କୁ ସମ୍ମୁଖରେ ଉପସ୍ଥିତ ଦେଖୁଛନ୍ତି ଏବଂ ତାଙ୍କ ସହିତ ଠିକ୍ ସେହି ଅନୁଯାୟୀ ଯଥାଯୋଗ୍ୟ ବ୍ୟବହାର କରୁଛନ୍ତି । ଏହି ଆନ୍ତରିକତା ହିଁ ତାଙ୍କ ପୂଜାର ବୈଶିଷ୍ଟ୍ୟ । ଶ୍ରୀମା'ଙ୍କ ପୂଜାରେ କୌଣସି ଆନୁଷ୍ଠାନିକ ଭକ୍ତି ନ ଥିଲା । ଜଣେ ପ୍ରତ୍ୟକ୍ଷଦ୍ରଷ୍ଟା ଜୟରାମବାଟୀରେ ଶ୍ରୀମା' କିପରି ପୂଜା କରୁଥିଲେ ତାହାର ବର୍ଣ୍ଣନା ଏହି ଭାବରେ ଦେଇଛନ୍ତି — ''ଶ୍ରୀଶ୍ରୀଠାକୁରଙ୍କର ଫଟୋ କାନ୍ଥରେ ଏକ ସାଧାରଣ କାଠ ଆସନରେ ରହିଛି; ପାଖରେ ବାଳଗୋପାଳ ଏବଂ ଅନ୍ୟ କେତୋଟି ଦେବତାଙ୍କର ଛୋଟ ଛୋଟ ଛବି । ପ୍ରତ୍ୟୁଷରେ ଉଠି ଶ୍ରୀମା' ଗଙ୍ଗାଜଳ

ସ୍ପର୍ଶ କରି ଠାକୁରଙ୍କୁ ଶୟନରୁ ଉଠାଉଥିଲେ ଏବଂ ଆସନରେ ବସାଉଥିଲେ । ଠାକୁରଙ୍କ ଆସନ ତଳେ ଛୋଟ ପିତଳର କମଣ୍ଡଳୁରେ ଗଙ୍ଗାଜଳ ରହୁଥିଲା, ଚନ୍ଦନକାଠ ଓ ଚନ୍ଦନପେଡ଼ି ଏବଂ ପୂଜାର କେତୋଟି ଉପକରଣ ମଧ୍ୟ ଥିଲା । ଶ୍ରୀମା' ଗୃହକର୍ମ ସାରି ସକାଳ ନଅଟା ସମୟରେ ପୂଜାରେ ବସୁଥିଲେ । ଘରର ମଧ୍ୟସ୍ଥଳରେ ଠାକୁରଙ୍କୁ ପୂର୍ବମୁଖରେ ବସାଇ ପୂଜା କରୁଥିଲେ । ତାଙ୍କୁ ସ୍ନାନ କରାଇ, ଫୁଲଚନ୍ଦନ ଦେଇ, ଫଳ, ମିଠା, ସର୍ବତ ଇତ୍ୟାଦି ନିବେଦନ କରି ମା' ସ୍ଥିର ଭାବରେ କିଛି ସମୟ ଧ୍ୟାନ କରୁଥିଲେ । କୌଣସି ବିଶେଷ କାମ ନ ଥିଲେ ସେ ପୂଜାରେ ବେଶୀ ସମୟ ଅତିବାହିତ କରୁଥିଲେ । ଧ୍ୟାନ କରିସାରି ପ୍ରଣାମ କରି ସେ ଠାକୁରଙ୍କୁ ଯଥାସ୍ଥାନରେ ରଖୁଥିଲେ । ପୂଜାର ଚରଣାମୃତ, ତୁଳସୀ ଇତ୍ୟାଦି ମୁହଁରେ ଦେଉଥିଲେ । ଜୟରାମବାଟୀରେ ଅନେକ ସମୟ ଫୁଲର ଅଭାବ ହେଉଥିଲା । ଯେତେବେଳେ ଯାହା ମିଳୁଥିଲା ସେତେବେଳେ ସେଥିରେ ପୂଜା ସମ୍ପନ୍ନ କରୁଥିଲେ । ଫୁଲ ନ ଥିଲେ କେବଳ ତୁଳସୀ ଓ ପାଣିଦ୍ୱାରା ପୂଜା ହେଉଥିଲା । ତୁଳସୀ ସମ୍ବନ୍ଧରେ ଶ୍ରୀମା' କହୁଥିଲେ, ''ତୁଳସୀ ଅତି ପବିତ୍ର, ତୁଳସୀ ଥିଲେ ସବୁ ଶୁଦ୍ଧ ହୋଇଯାଏ ।...ମଧ୍ୟାହ୍ନରେ ଭାତ, ଡାଲି, ତରକାରି ଇତ୍ୟାଦି ଯାହା ରନ୍ଧା ହୁଏ ତାହା ଠାକୁରଙ୍କ ଉଦ୍ଦେଶ୍ୟରେ ନିବେଦିତ ହୁଏ । ରାତିରେ ମା' ଲୁଚି, ରୁଟି, ଦୁଧ ଇତ୍ୟାଦି ଠାକୁରଙ୍କୁ ଭୋଗ ଦେଉଥିଲେ ।''

ଶେଷଥର କଲିକତା ଯିବା ପଥରେ ଶ୍ରୀମା' ଜଗଦମ୍ବା ଆଶ୍ରମରେ ରାତ୍ରିଯାପନ କରିଥିଲେ । ସକାଳ ପାଞ୍ଚଟା ସମୟରେ ବରଦା ମହାରାଜ ଆସି ଦେଖିଲେ, ଶ୍ରୀମା' ଫଳ, ମିଠା ଇତ୍ୟାଦି ଠାକୁରଙ୍କୁ ନିବେଦନ କରି ଫଟୋଟି ଲୁଗାରେ ମୋଡ଼ି ବାକ୍ସରେ ରଖିଲେ ଓ ଠାକୁରଙ୍କୁ ଲକ୍ଷ୍ୟ କରି କହିଲେ, ''ଉଠ, ଯାତ୍ରାର ସମୟ ହେଲା ।'' ଅନ୍ୟ ଦିନକର କଥା, ମା' ସେତେବେଳେ ଜୟରାମବାଟୀରେ ଥାଆନ୍ତି । ଜଗଦ୍ଧାତ୍ରୀ ପୂଜାଦିନ ଶ୍ରୀମା' ଠାକୁରଙ୍କର ନିତ୍ୟ ପୂଜା ଖୁବ୍ ଭୋର୍‌ରେ କରୁଥା'ନ୍ତି । ଜଣେ ଭକ୍ତ ଶୁଣିଲେ, ଭୋଗ ନିବେଦନ କରିବା ସମୟରେ ମା' ଠାକୁରଙ୍କୁ କହୁଛନ୍ତି, ''ଦେଖ, ଆଜି ମା'ଙ୍କର ପୂଜା, ଶୀଘ୍ର ଖାଇନିଅ, ମୁଁ ସେଠାକୁ ଯିବି ।'' କଲିକତାରୁ ଗାଁକୁ ଯିବା କଥା; କିନ୍ତୁ ସଙ୍ଗୀମାନଙ୍କର ଅସୁସ୍ଥତା ହେତୁ ଯିବାରେ ବିଳମ୍ବ ହେଉଛି । ତେଣୁ ଶ୍ରୀମା' ଠାକୁରଙ୍କୁ କହିଲେ, ''ଜୟରାମବାଟୀ ଚାଲ । ସେଠାକାର ବଡ଼ ପୋଖରୀର ପାଣି ଏବଂ ତୁଳସୀ କ'ଣ ତୁମକୁ ଭଲ ଲାଗେ ନାହିଁ ?''

ଭୋଗ ନିବେଦନ କରି ମା' ଦେଖୁଥିଲେ ଠାକୁର ସତକୁ ସତ ତାହା ଗ୍ରହଣ କରୁଛନ୍ତି । ଥରେ ଡାକ୍ତର ଲାଲବିହାରୀ ସେନ୍ ଜୟରାମବାଟୀରେ ଅସୁସ୍ଥ ହୋଇପଡ଼ିଲେ । ଦିନେ ମା' ତାଙ୍କୁ ଅଳ୍ପ ଖେଚୁଡ଼ି ଖାଇବାକୁ ଦେଇ କହିଲେ ଯେ, ଏହା ଖାଇଲେ କ୍ଷତି ହେବ ନାହିଁ, କାରଣ ତାହା ଠାକୁରଙ୍କ ପ୍ରସାଦ । ଡାକ୍ତର

ପ୍ରଶ୍ନ କଲେ, ''ଠାକୁରଙ୍କୁ ଦେଖିବା କ'ଣ ସମ୍ଭବ ?'' ମା' ଉତ୍ତର ଦେଲେ, ''ହଁ, ଆଜିକାଲି ମଝିରେ ମଝିରେ ଆସି ଖେଚୁଡ଼ି ଓ ଛେନା ଖାଇବାକୁ ଚାହାଁନ୍ତି ।'' ଜଣେ ଭକ୍ତ ଶ୍ରୀମା'ଙ୍କୁ ଦୁଃଖ କରି କହିଲେ ଯେ, ଭୋଗ ନିବେଦନ କଲେ ଠାକୁର ତାହା ଗ୍ରହଣ କରନ୍ତି କି ନାହିଁ କିଛି ବୁଝିହୁଏ ନାହିଁ । ଶ୍ରୀମା' ଜୋର୍ ଦେଇ କହିଲେ, ''ନିଶ୍ଚୟ ଖାଆନ୍ତି, ଆନ୍ତରିକଭାବେ ନିବେଦନ କଲେ ନିଶ୍ଚୟ ଖାଇବେ ।'' ଶ୍ରୀମା' ଏହା ମଧ୍ୟ କହିଲେ ଯେ, ଗୋପାଳଙ୍କୁ ଖାଇବା ପାଇଁ ଆଦର କରି ଡାକିଲେ ସେ ଘୁଙ୍ଗୁର ବାନ୍ଧି ଝୁମ୍ ଝୁମ୍ କରି ଆସି ହାଜର ହୁଅନ୍ତି, ଆଉ ଛୋଟ ପିଲାଙ୍କ ପରି ଖାଇବାକୁ ମାଗନ୍ତି । ଜଣେ ସ୍ତ୍ରୀ-ଭକ୍ତ ଦିନେ ଦ୍ୱିପ୍ରହରରେ ଠାକୁରଘରେ ପ୍ରବେଶ କରି ଦେଖିଲେ ଶ୍ରୀମା' ସଲଜ୍ଜ ଭାବରେ ଠାକୁରଙ୍କୁ ଡାକି କହୁଛନ୍ତି, ''ଆସ, ଖାଇବାକୁ ଆସ ।'' ଏବଂ ପରେ ବାଳଗୋପାଳ ବିଗ୍ରହ ପାଖକୁ ଯାଇ କହିଲେ, ''ଆସ ଗୋପାଳ, ଖାଇବାକୁ ଆସ ।'' ହଠାତ୍ ସ୍ତ୍ରୀ-ଭକ୍ତଙ୍କ ଉପରେ ଦୃଷ୍ଟି ପଡ଼ିବାରୁ ମା' ହସି ହସି କହିଲେ, ''ସମସ୍ତଙ୍କୁ ଖାଇବାକୁ ଡାକି ନେଇ ଯାଉଛି ।'' ଏତିକି କହି ଯେଉଁ ଘରେ ଭୋଗ ବଢ଼ା ହୋଇଥିଲା ସେହି ଘର ଆଡ଼କୁ ମା' ଯେତେବେଳେ ଗଲେ, ସେତେବେଳେ ସେ ଭକ୍ତ ବୋଧ କଲେ, ଯେପରିକି ସବୁ ଠାକୁରମାନେ ତାଙ୍କ ପଛେ ପଛେ ଯାଉଛନ୍ତି ।

ଠାକୁରଙ୍କ ଫଟୋରେ ଶ୍ରୀମା' ସାକ୍ଷାତ୍ ଠାକୁରଙ୍କର ଦର୍ଶନ ପାଉଥିଲେ । ଜୟରାମବାଟୀରେ ମା' ଦ୍ୱିପ୍ରହର ସମୟରେ ବିଶ୍ରାମ କରୁଥିଲେ । ସକାଳେ ଜଣେ ଭକ୍ତ ପୂଜା କରିଥା'ନ୍ତି । ମା' ସ୍ୱପ୍ନରେ ଦେଖିଲେ, ଠାକୁର ତଳେ ଶୋଇଛନ୍ତି ଏବଂ ମା' ତାଙ୍କୁ ପଚାରୁଛନ୍ତି, ''ତୁମେ ଏଠାରେ କାହିଁକି ଶୋଇଛ ?'' ନିଦ୍ରା ଭାଙ୍ଗିଯିବାରୁ ଶ୍ରୀମା' ତତ୍‌କ୍ଷଣାତ୍ ଉଠି ଠାକୁରଙ୍କ ଫଟୋ ପାଖକୁ ଗଲେ ଏବଂ ଦେଖିଲେ ଯେ ଫୁଲଗୁଡ଼ିକ ଠାକୁରଙ୍କ ଦେହରେ ଲାଗିଥିବାରୁ ସେଥିରୁ ପିମ୍ପୁଡ଼ି ଉଠି ଛବି ଉପରେ ଚାଲୁଥିଲେ । ମା' ଫୁଲଗୁଡ଼ିକୁ କାଢ଼ିନେଲେ ଏବଂ ଫଟୋ ପରିଷ୍କାର କରି ପୂଜକଙ୍କୁ ଭବିଷ୍ୟତରେ ଏ ବିଷୟରେ ସାବଧାନ ରହିବାକୁ କହିଲେ ।

ଶ୍ରୀମା' ସେତେବେଳେ କଲିକତାରେ ନିବେଦିତା ସ୍କୁଲରେ ବୋର୍ଡ଼ିଂରେ ଥିଲେ । ସରଳାଦେବୀ ଭୋଗ ନିବେଦନ ପାଇଁ ଆଦିଷ୍ଟ ହୋଇ ତାହାର ବିଧି ଜାଣିବାକୁ ଚାହିଁଲେ । ମା' କହିଲେ, ''ଦେଖ ମା' , ଠାକରଙ୍କୁ ଆପଣାର ଭାବି କହିବ, 'ଆସ, ବସ, ନିଅ, ଖାଅ ।' ଭାବିବ ସେ ଆସିଛନ୍ତି, ବସିଛନ୍ତି ଏବଂ ଖାଉଛନ୍ତି । ନିଜ ଲୋକଙ୍କ ପାଇଁ ମନ୍ତ୍ରତନ୍ତ୍ରର ପ୍ରୟୋଜନ ନାହିଁ । ନିଜର ପରିବାରସ୍ୱଜନ ଆସିଲେ ସେମାନଙ୍କର ଯେପରି ଆଦରଯତ୍ନ କରିବାର କଥା ସେପରି କରିବ । ତାଙ୍କୁ ଯେଉଁ ଭାବରେ ଦେବ ସେ ସେହି ଭାବରେ ତାହା ଗ୍ରହଣ କରିବେ ।'' ଅନେକ କ୍ଷେତ୍ରରେ ଭକ୍ତମାନଙ୍କର ଆଗ୍ରହ ଦେଖିଲେ ସେ ମନ୍ତ୍ର ବା ସମାନ୍ୟ ବିଧିବିଧାନ ଶିଖାଇ ଦେଉଥିଲେ । ଜଣେ ଭକ୍ତଙ୍କୁ ମା' ଥରେ କହିଥିଲେ,

''ସେବା-ଅପରାଧ ଯେପରି ନ ହୁଏ, ସେଥିପ୍ରତି ଲକ୍ଷ୍ୟ ରଖିବ । ଫୁଲ ବେଲପତ୍ର ଯେପରି ପୋକକଟା ନ ହୁଏ । ପୂଜା କରିବା ସମୟରେ ହାତ ଯେପରି ଦେହର କୌଣସ ଅଙ୍ଗ ବା ଲୁଗାପଟାରେ ନ ଲାଗେ । ଅତ୍ୟନ୍ତ ଯତ୍ନ ସହିତ ଏହା କରିବା ଉଚିତ । ଭୋଗରାଗ ଠିକ୍ ସମୟ ଅନୁସାରେ କରିବା ଉଚିତ । ଏହିସବୁ କଥା କହି ମା' ଶେଷରେ କହିଥିଲେ, ତେବେ ମଣିଷ ଅଜ୍ଞ ବୋଲି ସେ ତାଙ୍କୁ କ୍ଷମା କରନ୍ତି ।''

ଶ୍ରୀଯୁକ୍ତ ମାନଦା ଶଙ୍କର ଦାସଗୁପ୍ତଙ୍କୁ ମା' ପତ୍ରରେ ଲେଖିଥିଲେ ଯେ, ଯଦି ଶ୍ରୀମା'ଙ୍କ ଧ୍ୟାନ କରିବାକୁ ତାଙ୍କର ବେଶୀ ଇଚ୍ଛା ତେବେ ସେ ତାହା କରିପାରନ୍ତି; କାରଣ ସେ ଓ ଠାକୁରଙ୍କ ଭିତରେ କୌଣସି ପାର୍ଥକ୍ୟ ନାହିଁ, କେବଳ ରୂପର ପାର୍ଥକ୍ୟ — ଯେ ଠାକୁର ହୋଇଛନ୍ତି ସେ ନିଜେ ଶ୍ରୀମା'ଙ୍କ ଦେହରେ ବିଦ୍ୟମାନ । ଅନ୍ୟ ଏକ ପତ୍ରରେ ମା' ଲେଖିଥିଲେ, ''ଯେ ଠାକୁର ସେ ହିଁ ମୁଁ ।'' ମାନଦାବାବୁ ଶ୍ରୀମା'ଙ୍କୁ ପ୍ରଶ୍ନ କଲେ, ''ଉପାସନା ସମୟରେ ଠାକୁରଙ୍କ ନାମ ଜପ କରିବାର ପ୍ରୟୋଜନ କଅଣ ? ତୁମେ ଓ ଠାକୁର ତ ସମାନ !'' ଏକଥା ଶୁଣି ଅତ୍ୟନ୍ତ ବ୍ୟସ୍ତ ହୋଇ ମା' କହିଲେ, ''ନା ନା, ସମାନ ହେଲେ ମଧ୍ୟ ମୁଁ କେବେ ଠାକୁରଙ୍କୁ ଛାଡ଼ିବାକୁ କହିପାରିବି ନାହିଁ ।''

ସ୍ୱାମୀ କେଶବାନନ୍ଦ ଶ୍ରୀମା'ଙ୍କ ନିକଟରୁ ଠାକୁରଙ୍କ କଥା ଶୁଣୁ ଶୁଣୁ ଆକ୍ଷେପ କରି କହିଲେ ଯେ, ''ଯଦିଓ ଠାକୁର ଜଗତରେ ଅବତୀର୍ଣ୍ଣ ହୋଇଥିଲେ ତଥାପି ଦୁର୍ଭାଗ୍ୟବଶତଃ ସେ ତାଙ୍କର ଦର୍ଶନ ପାଇଲେ ନାହିଁ ।'' ଶ୍ରୀମା' ଦ୍ୱିଧା ନ କରି ନିଜ ଦେହକୁ ଲକ୍ଷ୍ୟ କରି କହିଲେ, ''ଏହାରି ଭିତରେ ସେ ସୂକ୍ଷ୍ମ ଦେହରେ ଅଛନ୍ତି । ଠାକୁର ସ୍ୱୟଂ କହିଛନ୍ତି, 'ମୁଁ ତୁମ ଭିତରେ ସୂକ୍ଷ୍ମ ଦେହରେ ରହିବି' ।''

ଶ୍ରୀ ନରେଶ ଚକ୍ରବର୍ତ୍ତୀ ଯେଉଁଥର ଦୁଇଜଣ ଦୀକ୍ଷାର୍ଥୀ ବନ୍ଧୁଙ୍କୁ ନେଇ ଜୟରାମବାଟୀକୁ ଯାଇଥିଲେ, ସେଥର ଶ୍ରୀମା' ନରେଶବାବୁଙ୍କର ପୂଜା ଗ୍ରହଣ କରିବା ପାଇଁ ଫୁଲ ଆଣିବାକୁ କହି କହିଲେ, ''ମୋତେ ହଳଦିଆ ଫୁଲ ଭଲ ଲାଗେ ଏବଂ ଠାକୁରଙ୍କୁ ଧଳା ଫୁଲ । କିଶୋରୀକୁ ଦୁଇ ଧରଣର ଫୁଲ ଆଣିବାକୁ କୁହ ।'' କିଶୋରୀ ମହାରାଜଙ୍କ ନିକଟରୁ ଫୁଲ ଆଣି ନରେଶବାବୁ ଦଉଡ଼ିଆସି ଦେଖିଲେ ଯେ ମା' ଠିକ୍ ସେହି ଜାଗାରେ ଦଣ୍ଡାୟମାନ । ଶ୍ରୀମା'ଙ୍କ ଇଙ୍ଗିତ ଅନୁଯାୟୀ ନରେଶବାବୁ ତାଙ୍କ ବାମ ପାଦରେ ପୀତ ଏବଂ ଦକ୍ଷିଣ ପାଦରେ ଶ୍ୱେତ ପୁଷ୍ପ ଦେଇ ଆବେଗ ସହକାରେ କହିଲେ, ''ମା', ମୋର ଇହପରକାଳର ସମସ୍ତ ଫଳ ମୁଁ ତୁମକୁ ଅର୍ପଣ କଲି ।'' ସ୍ୱେଚ୍ଛାରେ ପୂଜା ଗ୍ରହଣ କରି ଶ୍ରୀମା' ବୁଝାଇଦେଲେ ଯେ ତାଙ୍କ ଦେହରେ ଶିବଶକ୍ତି ସମ୍ମିଳିତ ।

ଶ୍ରୀମା' ସ୍ଥଳବିଶେଷରେ ଶ୍ରୀଶ୍ରୀଠାକୁରଙ୍କ ସହିତ ନିଜର ଅଭେଦ ସ୍ପଷ୍ଟ ଭାବରେ ବ୍ୟକ୍ତ କରୁଥିଲେ ସୁଦ୍ଧା ଜୋର୍ କରି କାହାକୁ ଏହି ମତ ଗ୍ରହଣ କରିବାକୁ

କହୁ ନ ଥିଲେ । ଭାଗ୍ୟବାନ୍ ବ୍ୟକ୍ତି ଏହି ମର୍ମ ସହଜରେ ଧରିପାରୁଥିଲେ; କିନ୍ତୁ ଅନ୍ୟମାନଙ୍କ କ୍ଷେତ୍ରରେ ଏହା ବୁଝିବାରେ ବିଳମ୍ବ ହେଉଥିଲା । ଜୟରାମବାଟୀରେ ସ୍ୱାମୀ ସାଧନାନନ୍ଦଙ୍କୁ ଦୀକ୍ଷା ଦେଇ ଶ୍ରୀମା' ଠାକୁରଙ୍କ ଫଟୋ ଦେଖାଇ କହିଲେ, ''ସେ ହିଁ ଗୁରୁ ।'' ଶିଷ୍ୟ ପ୍ରଶ୍ନ କଲେ, ''ତାହାହେଲେ ଆପଣ କିଏ ?'' ଶ୍ରୀମା' ଉତ୍ତର ଦେଲେ, ''ବାବା, ମୁଁ କିଛି ନୁହେଁ—ଠାକୁର ହିଁ ଗୁରୁ, ଠାକୁର ହିଁ ଇଷ୍ଟ ।''

ଅନ୍ୟ ଏକ ଭକ୍ତଙ୍କୁ ଦୀକ୍ଷା ଦେଇ ଶ୍ରୀମା' ଠାକୁରଙ୍କ ଛବିକୁ ଇଙ୍ଗିତ କରି ଯେତେବେଳେ କହିଲେ, ''ସେ ତୁମର ଗୁରୁ'' ସେତେବେଳେ ଶିଷ୍ୟ ଆପେ କହି ଉଠିଲେ, ''ହଁ ମା, ସେ ଜଗଦ୍‌ଗୁରୁ ।'' ପରେ ଭବତାରିଣୀ କାଳୀଙ୍କୁ ଦେଖାଇ ମା' ଯେତେବେଳେ କହିଲେ, ''ଏ ତୁମର ଇଷ୍ଟ'', ସେତେବେଳେ ଶିଷ୍ୟ କହିଲେ, ''ମା' ସାକ୍ଷାତ୍ ଥାଉ ଥାଉ ଅସାକ୍ଷାତ୍‌କୁ ଯିବି କାହିଁକି ?'' ଅର୍ଥାତ୍ ଶ୍ରୀମା'ଙ୍କ ଦେହରେ ଅବତୀର୍ଣ୍ଣା ଜଗଦମ୍ବାଙ୍କୁ ଛାଡ଼ି ପ୍ରତିମାରେ ଉପାସନା କରିବାର ପ୍ରୟୋଜନ କଅଣ ? ଭକ୍ତର ଆନ୍ତରିକତାରେ ସନ୍ତୁଷ୍ଟ ହୋଇ ଶ୍ରୀମା' କହିଲେ, ''ଆଚ୍ଛା, ତାହା ହିଁ ହେବ ।''

ଭକ୍ତଙ୍କ ନିକଟରେ ଠାକୁରଙ୍କ ସହିତ ତାଙ୍କର ଅଭେଦ ପ୍ରକାଶ କରିବା ସତ୍ତ୍ୱେ ଶ୍ରୀମା' ଠାକୁରଙ୍କୁ ବାଦ୍ ଦେଇ କେବଳ ତାଙ୍କୁ ଗ୍ରହଣ କରିବା ପସନ୍ଦ କରୁ ନ ଥିଲେ, ଏକଥା ଆମେ ପୂର୍ବରୁ କହିଛୁ । କୁଶଳପ୍ରଶ୍ନ କରିବାରୁ ଜଣେ ଭକ୍ତ ଯେତେବେଳେ କହିଲେ, ''ମା, ଆପଣଙ୍କ ଆଶୀର୍ବାଦରେ ଭଲ ଅଛି'', ସେତେବେଳେ ମା' ତିରସ୍କାର କରି କହିଲେ, ''ତୁମମାନଙ୍କର ଏହା ଏକ ବଡ଼ ଦୋଷ । ସବୁ କଥାରେ ମୋତେ ଉଲ୍ଲେଖ କର କାହିଁକି ? ଠାକୁରଙ୍କ ନାମ ଉଲ୍ଲେଖ କରିପାର ନାହିଁ ? ଯାହା ଦେଖୁଛ ସବୁ ଠାକୁରଙ୍କର ।''

ପ୍ରକୃତପକ୍ଷରେ ଠାକୁର ଓ ଶ୍ରୀମା'ଙ୍କୁ ଯେଉଁମାନେ ଭେଦ-ଦୃଷ୍ଟିରେ ଦେଖୁଥିଲେ, କେବଳ ସେହି ସବୁ ସ୍ଥଳରେ ମା' ତିରସ୍କାର କରୁଥିଲେ । ସ୍ୱାମୀ ପ୍ରେମାନନ୍ଦଜୀ ଦିନେ ଏ ବିଷୟରେ ଦୃଷ୍ଟି ଆକର୍ଷଣ କରି କହିଥିଲେ ଯେ, ''ଯେଉଁମାନେ ଠାକୁର ଓ ଶ୍ରୀମା'ଙ୍କୁ ପୃଥକ୍ ବୋଲି ଭାବିବେ, ସେମାନଙ୍କର କୌଣସି କାଳେ କିଛି ହେବ ନାହିଁ; କାରଣ ଉଭୟେ ମୁଦ୍ରାର ଏପାଖ ସେପାଖ ।'' ଦିନେ ଦୁଇଜଣ ଭକ୍ତ ଉଦ୍‌ବୋଧନରେ ଶ୍ରୀମା'ଙ୍କୁ ପ୍ରଣାମ କରିବାରୁ ସେ ଠାକୁରଙ୍କ ପ୍ରସାଦ ଆଣି ଜିହ୍ୱାରେ ସ୍ପର୍ଶ କରି ସେମାନଙ୍କୁ ତାହା ଦେଲେ । ଜଣେ ହଠାତ୍ କହି ଉଠିଲେ, ''ନା, ମୁଁ ଠାକୁରଙ୍କ ପ୍ରସାଦ ଛଡ଼ା ଆଉ କିଛି ଗ୍ରହଣ କରେ ନାହିଁ ।'' ମା' କହିଲେ, ''ତେବେ ନିଅ ନାହିଁ ।'' କିନ୍ତୁ ଭକ୍ତଙ୍କ ହୃଦୟରେ ସତ୍ୟ ଉଦ୍‌ଭାସିତ ହେଲା ଏବଂ ସେ ଉତ୍‌ଫୁଲ୍ଲ ହୋଇ କହିଉଠିଲେ, ''ମା' ! ଏଥର ବୁଝିଛି; ଠାକୁର ଯାହା ଆପଣ ମଧ୍ୟ ତାହା—ଉଭୟେ ଅଭିନ୍ନ ।'' ମା' କହିଲେ, ''ତେବେ ଖାଅ ।''

ଅନ୍ନପୂର୍ଣ୍ଣାର ମା' କହିଲେ , ''ମୁଁ ସ୍ୱପ୍ନ ଦେଖିଛି, ତୁମେ ମୋତେ କହୁଛ — ମୋର ପ୍ରସାଦ ଖାଅ, ତା'ହେଲେ ତୁମର ରୋଗ ଭଲ ହୋଇଯିବ । ମୁଁ କହିଲି, ଠାକୁର ମୋତେ ନିଷେଧ କରିଛନ୍ତି କାହାର ଅଇଁଠା ନ ଖାଇବା ପାଇଁ । ସେ ଯାହା ହେଉ ମା', ମୋତେ ତୁମର ଅଳ୍ପ ପ୍ରସାଦ ଦିଅ ।'' ମା' କହିଲେ, ''ଠାକୁର ଯାହା ନିଷେଧ କରିଛନ୍ତି, ଠିକ୍ ତାହା କରିବ ?'' ଅନ୍ନପୂର୍ଣ୍ଣାର ମା' ଉତ୍ତର ଦେଲେ, ''ମା' , ଠାକୁର ଓ ତୁମ ଭିତରେ ଯେତେଦିନ ଭେଦ ଜ୍ଞାନ ମୋର ଥିଲା, ସେତେ ଦିନ ସେକଥା ସତ୍ୟ । ବର୍ତ୍ତମାନ ଦିଅ ।'' ମା' ତାଙ୍କୁ ପ୍ରସାଦ ଦେଲେ ।

ଠାକୁର ଶ୍ରୀରାମକୃଷ୍ଣ ପ୍ରତି ଯୁଗରେ ଜୀବର କଲ୍ୟାଣ ପାଇଁ ଅବତୀର୍ଣ୍ଣ ହୁଅନ୍ତି, ଶକ୍ତିସ୍ୱରୂପିଣୀ ଶ୍ରୀମା' ମଧ୍ୟ ପ୍ରତିଥର ଦେହଧାରଣ କରିଥାଆନ୍ତି । ଠାକୁରଙ୍କ ସହିତ ତାଙ୍କର ଏହି ଚିରନ୍ତନ ସମ୍ବନ୍ଧ ସେ ଉପଯୁକ୍ତ ପାତ୍ର ଦେଖି ପ୍ରକାଶ କରୁଥିଲେ । ମେଦିନୀପୁରର ନଳିନୀବାବୁ ଯେତେବେଳେ ପ୍ରଶ୍ନ କଲେ, ''ମା, ସବୁ ଅବତାରଙ୍କ ସହିତ ଆପଣ କ'ଣ ଆସିଥିଲେ ?'' ସେତେବେଳେ ମା' ଦ୍ୱିଧା ନ କରି ଉତ୍ତର ଦେଲେ, ''ହଁ ବାବା !''

ଠାକୁର ଯେତେବେଳେ ପୁନର୍ବାର ଅବତୀର୍ଣ୍ଣ ହେବେ, ସେତେବେଳେ ତାଙ୍କ ସାଙ୍ଗୋପାଙ୍ଗୋମାନଙ୍କୁ ମଧ୍ୟ ଆସିବାକୁ ପଡ଼ିବ; ତାଙ୍କ ଶକ୍ତି ଶ୍ରୀମା'ଙ୍କୁ ମଧ୍ୟ ଦେହଧାରଣ କରିବାକୁ ପଡ଼ିବ । ଦିନେ ଉଦ୍‌ବୋଧନରେ ଗୌରୀ-ମା' କଥା ପ୍ରସଙ୍ଗରେ କହିଲେ, ''ଠାକୁର ଆହୁରି ଦୁଇଥର ଆସିବେ ବୋଲି କହିଛନ୍ତି । ଥରେ ବାଉଲ (ଯୋଗୀ) ବେଶରେ ଆସିବେ ବୋଲି କହିଛନ୍ତି ।'' ମା' କଥା ଅନୁମୋଦନ କରି କହିଲେ, ''ହଁ, ଠାକୁର କହିଥିଲେ, 'ତୁମ ହାତରେ ହୁକ୍କା ଚିଲମ ରହିବ ।' ଗୋଟିଏ ଛୋଟିଆ ଭଙ୍ଗା ପଥର ଗିନା ଠାକୁରଙ୍କ ହାତରେ ଥିବ । ହୁଏତ ଭଙ୍ଗା କଡ଼େଇରେ ରୋଷେଇ ହେବ । ରାସ୍ତାରେ ଚାଲିଛନ୍ତି ତ ଚାଲିଛନ୍ତି, କୌଣସି ଭ୍ରୂକ୍ଷେପ ନାହିଁ ।''

ରାଞ୍ଚିର ଭକ୍ତ ଶ୍ରୀ ଆଶୁତୋଷ ରାୟ ଠାକୁରଙ୍କ ଦର୍ଶନ ପାଇଥିଲେ । ଠାକୁରଙ୍କ ଡାକରେ ସେ ନିଦରୁ ଉଠି ଦେଖିଲେ, ଠାକୁର ରାସ୍ତାରେ ଠିଆ ହୋଇଛନ୍ତି — ଗେରୁଆ ବସ୍ତ୍ର ପରିହିତ, ପାଦରେ କଠଉ, ହାତରେ ଚିମୁଟା । ଜୟରାମବାଟୀରେ ଶ୍ରୀମା'ଙ୍କୁ ଘଟଣାଟିର ଉଲ୍ଲେଖ କରି ସେ ପ୍ରଶ୍ନ କଲେ, ''ମା', ପାଦରେ କଠଉ, ଚିମୁଟା ହାତରେ ଠାକୁରଙ୍କୁ କାହିଁକି ଦେଖିଲି ?'' ମା' କହିଲେ, ''ଏହା ସନ୍ନ୍ୟାସୀ ବେଶ । ସେ କହିଛନ୍ତି, 'ବାଉଲ ବେଶରେ ଆସିବେ ।' ଦେହରେ ଆଲଖାଲା, ମୁଣ୍ଡରେ ଜଟା, ଲମ୍ବା ଦାଢ଼ି । ସେ କହିଥିଲେ, 'ବର୍ଦ୍ଧମାନର ରାସ୍ତାରେ ଗାଁକୁ ଯିବି; ରାସ୍ତାରେ କାହାର ପିଲା ମଳତ୍ୟାଗ କରୁଥିବ, ହାତରେ ଭଙ୍ଗା ପଥର ଗିନାଟି ଥିବ, କାନ୍ଧରେ ଝୁଲାଥିବ ।' ଚାଲିଥିବେ ତ ଚାଲିଥିବେ, ଖାଉଥିବେ ତ ଖାଉଥିବେ, କୌଣସି ଦିଗକୁ ଦୃଷ୍ଟି ନାହିଁ ।'' ଭକ୍ତ ପୁନର୍ବାର ପ୍ରଶ୍ନ କଲେ, ''ବର୍ଦ୍ଧମାନର ରାସ୍ତା

କାହିଁକି ?'' ମା' କହିଲେ, ''ସେହି ଦିଗରେ ଗାଁ ଅବସ୍ଥିତ ।'' ମୁଁ ଏକଥା ଶୁଣି କହିଲି, 'ଏପରି କଥା କାହିଁକି କହୁଛ ?' ସେ ହସି ହସି କହିଲେ, ''ହଁ, 'ତୁମ ହାତରେ ହୁକ୍‌କା ଚିଲମ ଥିବ' ।''

ଠାକୁର ପୁନର୍ବାର ଆସିବେ ଏବଂ ତାଙ୍କ ସଙ୍ଗୀମାନେ ମଧ୍ୟ ତାଙ୍କ ସହିତ ଆସିବେ—ଏକଥା ଶୁଣି ଲକ୍ଷ୍ମୀଦେବୀ ଠାକୁରଙ୍କୁ କହିଥିଲେ, ''ମୋତେ କାଟି ପକାଇଲେ ସୁଦ୍ଧା ମୁଁ ଆସିବି ନାହିଁ ।'' ଠାକୁର ହସି ହସି ଉତ୍ତର ଦେଇଥିଲେ, ''ଯଦି ମୁଁ ଆସେ, ତେବେ କେଉଁଠି ରହିବୁ ? ଆସିବାକୁ ବାଧ୍ୟ । ପୋଖରୀର ଦଳକୁ ଗୋଟିଏ ଜାଗାରେ ଟାଣିଲେ ସବୁ ଚାଲି ଆସେ ।'' ବୃନ୍ଦାବନରେ ଭକ୍ତମାନେ ରେଳଗାଡ଼ିରୁ ଓହ୍ଲାଇ ଯାଇଥାଆନ୍ତି । ଡବା ଭିତରୁ ଗୋଲାପ-ମା' ଜିନିଷପତ୍ର ବାହାର କରୁଥିଲେ । ଲାଟୁ ମହାରାଜଙ୍କର ହୁକ୍‌କା ଓ ଚିଲମ ଗାଡ଼ିରେ ଥିଲା । ଗୋଲାପ-ମା' ଉଠାଇ ଶ୍ରୀମା'ଙ୍କ ହାତକୁ ଦେଲେ । ଏହା ଦେଖି ଲକ୍ଷ୍ମୀଦେବୀ କହି ଉଠିଲେ, ''ଏଇ ତୁମର ହୁକ୍‌କା ଚିଲମ ଧରିବା ହେଲା !'' ଶ୍ରୀମା' ମଧ୍ୟ କହିଲେ, ''ଠାକୁର, ଦେଖ, ମୁଁ ହୁକ୍‌କା ଚିଲମ ଧରିଲି ।'' ଏହା କହି ମାଟିରେ ତାହା ଫୋପାଡ଼ି ଦେଲେ ।

ଶ୍ରୀମା' କହିଥିଲେ, ''ସେ (ଠାକୁର) ଶହେବର୍ଷ କାଳ ସନ୍ତାନସନ୍ତତି ନେଇ ଅବସ୍ଥାନ କରିବେ ବୋଲି କହିଛନ୍ତି ।'' ଶ୍ରୀମା'ଙ୍କର ମତ, ଠାକୁରଙ୍କ ଆବିର୍ଭାବଠାରୁ ସତ୍ୟଯୁଗ ଆରମ୍ଭ ହୋଇଛି । ସେ ବିଶିଷ୍ଟ ଅନ୍ତରଙ୍ଗ ଭକ୍ତମାନଙ୍କୁ ସଙ୍ଗରେ ନେଇ ଆସିଛନ୍ତି । ଠାକୁର ଶ୍ରୀମା'ଙ୍କୁ କହିଥିଲେ—ସ୍ୱାମୀ ବିବେକାନନ୍ଦ ସପ୍ତଋଷି ମଧ୍ୟରେ ପ୍ରଧାନ ଋଷି ଏବଂ ଅର୍ଜୁନ ଯୋଗାନନ୍ଦ ରୂପେ ଆବିର୍ଭୂତ ହୋଇଛନ୍ତି । ସାଧାରଣ ଲୋକେ ପୃଥିବୀରେ ଜନ୍ମଗ୍ରହଣ କରନ୍ତି ଓ ସମୟ ହେଲେ ମରିଯାଆନ୍ତି । କିନ୍ତୁ ଏହିସବୁ ଆଧିକାରିକ ପୁରୁଷମାନେ ଅବତାରଙ୍କ ସହିତ ଆସିଥାଆନ୍ତି । ଶ୍ରୀମା' ଏମାନଙ୍କର ଆଧ୍ୟାତ୍ମିକ ଉଚ୍ଚାଧିକାର ବିଷୟରେ କହିଛନ୍ତି, ''ଯେଉଁମାନେ ପୂର୍ବେ ଆସିଥିଲେ, ସେହିମାନେ ପୁଣି ଆସିଛନ୍ତି ।'' ଅନ୍ତରଙ୍ଗ ସନ୍ତାନମାନଙ୍କ କଥା ଶ୍ରୀମା' ଗର୍ବ କରି କହୁଥିଲେ, ''ଦେଖୁନା, ରାଖାଲର (ସ୍ୱାମୀ ବ୍ରହ୍ମାନନ୍ଦ) କିପରି ବାଳକ-ସ୍ୱଭାବ, ଠିକ୍ ଛୋଟ ପିଲାଟି ପରି । ଶରତକୁ ଦେଖ, କେତେ କାମ କରେ, କେତେ ଗୋଳମାଳ ଭିତରେ ଥାଏ—କିନ୍ତୁ କୌଣସି ଅଭାବ ଅଭିଯୋଗ ନାହିଁ । ସେ ସାଧୁ ଲୋକ, ତାର ଏସବୁ ଭିତରେ ରହିବାର ପ୍ରୟୋଜନ କଅଣ ? ସେ ଚାହିଁଲେ ଦିନରାତି ଭଗବାନଙ୍କର ଧ୍ୟାନ କରି ରହିପାରେ । କେବଳ ତୁମମାନଙ୍କ ମଙ୍ଗଳ ପାଇଁ ଏମାନେ ଆସିଛନ୍ତି । ଏମାନଙ୍କର ଚରିତ୍ର ସର୍ବଦା ସମ୍ମୁଖରେ ରଖିବ, ଏମାନଙ୍କର ସେବା କରିବ ।'' ଶ୍ରୀରାମକୃଷ୍ଣଙ୍କ ଅନ୍ତରଙ୍ଗମାନଙ୍କୁ ଶ୍ରୀମା' ନିଜର ସନ୍ତାନ ବୋଲି ନିର୍ଦ୍ଦେଶ କରୁଥିଲେ—''ରାଖାଲ, ଶରତ ଇତ୍ୟାଦି ଏମାନେ ସବୁ ଏହି ଦେହରୁ ବାହାରିଛନ୍ତି ।''

ଶ୍ରୀଶ୍ରୀଠାକୁରଙ୍କର ନାନାଭାବରେ ଲୀଳା, ସାଧନଭଜନ ଏବଂ ସାଧନାନ୍ତେ ଯୁଗ-ଧର୍ମ-ପ୍ରବର୍ତ୍ତନ, ଏହି ତିନୋଟି ଭିତରୁ ଭକ୍ତମାନଙ୍କ ପକ୍ଷରେ ପ୍ରଥମ କଥାଟି ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ଅନୁଧ୍ୟାନଯୋଗ୍ୟ । ଗୁରୁତ୍ୱ ଦୃଷ୍ଟିରୁ ଲୀଳା ପରେ ସାଧନ ଏବଂ ସର୍ବଶେଷରେ ଯୁଗ-ଧର୍ମ-ପ୍ରବର୍ତ୍ତନ ଅନୁଧ୍ୟେୟ । ସ୍ୱାମୀ କେଶବାନନ୍ଦଙ୍କୁ ଶ୍ରୀମା' କହିଥିଲେ, ''ଦେଖ ବାବା, ସେ ଯେ ସମନ୍ୱୟଭାବ ପ୍ରଚାର କରିବା ପାଇଁ ସବୁ ଧର୍ମମତ ସାଧନ କରିଥିଲେ — ତାହା ମୋର ଆଦୌ ମନେହୁଏ ନାହିଁ । ସେ ସର୍ବଦା ଭଗବତ୍‌ଭାବରେ ବିଭୋର ରହୁଥିଲେ । ଖ୍ରୀଷ୍ଟାନ୍, ମୁସଲମାନ, ବୈଷ୍ଣବ ଭକ୍ତମାନେ କିପରି ଭାବରେ କେଉଁ କେଉଁ ପଥଦେଇ ଭଜନ କରି ତାଙ୍କୁ ଲାଭ କରିଛନ୍ତି, ସେହି ଭାବ ଅନୁଯାୟୀ ସାଧନ କରି ନାନା ଲୀଳା ଆସ୍ୱାଦନ କରୁଥିଲେ ଓ ଦିନରାତି କିପରି କଟିଯାଉଥିଲା କୌଣସି ହୋସ୍ ରହୁ ନ ଥିଲା । ଏହି ଯୁଗରେ ତାଙ୍କର ତ୍ୟାଗ ସବୁଠାରୁ ବେଶୀ ତାତ୍ପର୍ଯ୍ୟପୂର୍ଣ୍ଣ । ସେପରି ସ୍ୱାଭାବିକ ତ୍ୟାଗ କଅଣ କେହି କେବେ ଦେଖିଛି ? ସର୍ବଧର୍ମସମନ୍ୱୟ କଥା ଯାହା କହିଲ, ତାହା ମଧ୍ୟ ଠିକ୍ । ପୂର୍ବେ ଗୋଟିଏ ଭାବ ଉପରେ ଗୁରୁତ୍ୱ ଦେବାରୁ ଅନ୍ୟ ଭାବଗୁଡ଼ିକର ମହତ୍ତ୍ୱ କମିଯାଇଥିଲା ।'' ଏକଥା କହିବାର ତାତ୍ପର୍ଯ୍ୟ : ଅନୁଭୂତି ସର୍ବାଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ପ୍ରୟୋଗ ବା କାର୍ଯ୍ୟର ମହତ୍ତ୍ୱ ପରେ । ଦିନେ ଜଣେ ଭକ୍ତଙ୍କୁ ମା' କହିଥିଲେ, ''ମଣିଷ ଭଗବାନଙ୍କୁ ଭୁଲି ରହିଛି, ତେଣୁ ଯେତେବେଳେ ପ୍ରୟୋଜନ, ସେ ନିଜେ ଆସି ସାଧନ କରି ପଥ ଦେଖାଇଦେଇ ଯାଆନ୍ତି । ଏଥର ତ୍ୟାଗର ମହିମା ଦେଖାଇଗଲେ ।'' ବସ୍ତୁତଃ ତ୍ୟାଗ ଉପରେ ପ୍ରତିଷ୍ଠିତ ନ ହେଲେ ସେବାମୂଳକ କର୍ମ ଠିକ୍‌ଭାବରେ କରିହୁଏ ନାହିଁ, ଭଗବତ୍-ଦର୍ଶନ ତ ସୁଦୂରପରାହତ ।

## ମାନବୀ

୧୯୧୯ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସ; ମା' କୋଆଲପଡ଼ାରେ ଅବସ୍ଥାନ କରୁଛନ୍ତି । ମାକୁ'ର ପୁଅ ମରିଯିବାରୁ ଶ୍ରୀମା'ଙ୍କୁ ବିକଳ ହୋଇ ବିଳାପ କରୁଥିବାର ଦେଖି ଭକ୍ତମାନଙ୍କ ମନରେ ନାନା ପ୍ରଶ୍ନ ଉଠିଲା । ମହୀଶୂରର ଭକ୍ତ ଶ୍ରୀନାରାୟଣ ଆୟେଙ୍ଗାର ପ୍ରଶ୍ନ କଲେ, ''ମା ! ଆପଣ ଏପରି ସାଧାରଣ ମଣିଷଙ୍କ ପରି କାନ୍ଦିଲେ କାହିଁକି ?'' ଶ୍ରୀମା' ଉତ୍ତର ଦେଲେ, ''ମୁଁ ସଂସାରରେ ଅଛି— ସଂସାର-ବୃକ୍ଷର ଫଳ ଭୋଗ କରିବାକୁ ପଡ଼ିବ । ତେଣୁ କାନ୍ଦୁଛି ।''

ଏହି ସଂସାର-ଯନ୍ତ୍ରର ଗୋଟିଏ ନିଜସ୍ୱ ଧାରା ଅଛି, ଯାହା ଦେହଧାରୀ ସମସ୍ତଙ୍କୁ ମାନି ଚଳିବାକୁ ପଡ଼େ । ଶ୍ରୀରାମକୃଷ୍ଣ କହିଥିଲେ, ''ନରଲୀଳାରେ ଅବତାରଙ୍କୁ ଠିକ୍ ମଣିଷପରି ଆଚରଣ କରିବାକୁ ହୁଏ — ତେଣୁ ଚିହ୍ନିବା କଠିନ । ମଣିଷ ଯେତେବେଳେ ହୋଇଛନ୍ତି, ସବୁ ଠିକ୍ ମଣିଷଙ୍କ ପରି । କ୍ଷୁଧା, ପିପାସା,

ରୋଗ, ଶୋକ, ଭୟ—ଠିକ୍ ମଣିଷଙ୍କ ପରି ।'' ଠାକୁର ଆହୁରି କହିଛନ୍ତି, ''ପଞ୍ଚଭୂତର ଫାନ୍ଦେ, ବ୍ରହ୍ମ ପଡ଼ି କାନ୍ଦେ ।''

ଦେବୀତ୍ୱ-ମାନବୀତ୍ୱର ଯୁଗ୍ମଭାବ ଶ୍ରୀମା'ଙ୍କ ନିଜ କଥାରୁ ଅନେକ ସମୟରେ ପ୍ରକାଶ ପାଉଥିଲା । ଉଦ୍‌ବୋଧନରେ ଦିନେ କଥାପ୍ରସଙ୍ଗରେ ମା' କହିଥିଲେ, ''ଲୋକେ ମୋତେ ଭଗବତୀ କୁହନ୍ତି, ମୁଁ ମଧ୍ୟ ଭାବେ ହୁଏତ ତାହା ସତ୍ୟ । ନ ହେଲେ ମୋ ଜୀବନରେ ଏତେ ଅଦ୍ଭୁତ ଅଦ୍ଭୁତ ଘଟଣା କିପରି ଘଟିଲା ! ଗୋଲାପ, ଯୋଗୀନ୍ ଏମାନେ ଅନେକ କଥା ଜାଣନ୍ତି । ମୁଁ ଯଦି ଭାବେ ଏପରି ହେଲେ ଭଲ ହୁଅନ୍ତା, କିମ୍ବା ଯଦି କିଛି ଖାଇବାକୁ ଇଚ୍ଛା କରେ, ଭଗବାନ କେଉଁଠାରୁ ସବୁ ଜୁଟାଇ ଦିଅନ୍ତି ।'' ଆଉ ଦିନକର କଥା—ଶ୍ରୀମା' ରାଧୁ ସହିତ ଜୟରାମବାଟୀରେ ଥାଆନ୍ତି । ଦିନେ ରାତିରେ ମା' ଭକ୍ତମାନଙ୍କର ଚିଠି ଶୁଣୁଥିଲେ । ଜଣେ ସ୍ତ୍ରୀଭକ୍ତ ମା'ଙ୍କୁ ସ୍ତବସ୍ତୁତି କରି ଚିଠି ଲେଖିଥିଲେ । ମା' କହିଲେ, ''ଦେଖ, ଅନେକ ସମୟରେ ମୁଁ ଭାବେ ଯେ, ମୁଁ ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କର ଝିଅ, ମୋର ସମବୟସୀ ଆହୁରି ଅନେକ ଝିଅ ଜୟରାମବାଟୀରେ ଅଛନ୍ତି; ମାତ୍ର ସେମାନଙ୍କଠାରୁ ମୋର କ'ଣ ତଫାତ୍ ? ଭକ୍ତମାନେ ସବୁ କେଉଁଠାରୁ ଆସି ମୋତେ ପ୍ରଣାମ କରନ୍ତି । ପଚାରିଲେ କହନ୍ତି, କିଏ ହାକିମ, କିଏ ଓକିଲ ଇତ୍ୟାଦି, ଏମାନେ କାହିଁକି ଆସନ୍ତି ?'' ଶ୍ରୀମା' କଥାଟି କହି ଚୁପ୍ ରହିଲେ, କିନ୍ତୁ ଚିଠି ପଢୁଥିବା ବ୍ରହ୍ମଚାରୀ ଏ କଥାର ତାତ୍ପର୍ଯ୍ୟ ବୁଝିପାରିଲେ । ସେ ପଚାରିଲେ, ''ଆଚ୍ଛା, ଆପଣଙ୍କର କଅଣ ସର୍ବଦା ନିଜ ସ୍ୱରୂପ ମନେ ଥାଏ ?'' ମା' କହିଲେ, ''ତାହା କଅଣ ସବୁବେଳେ ଥାଏ ? ତାହାହେଲେ ଏହିସବୁ କର୍ମ କରିବା କିପରି ସମ୍ଭବ ହୁଅନ୍ତା ? ତେବେ କାମ କରୁକରୁ ଯେତେବେଳେ ଇଚ୍ଛା ହୁଏ ମନ ସହଜରେ ଉଚ୍ଚ ଭୂମିକୁ ଚାଲିଯାଏ ଏବଂ ମହାମାୟାଙ୍କର ଖେଳ ସବୁ ପରିଷ୍କାର ବୁଝିପାରେ ।''

ଆହୁରି ପୂର୍ବର କଥା—୧ ଫେବୃଆରୀ, ୧୯୦୭ । ଶ୍ରୀମା' ଜୟରାମବାଟୀରେ ଥିଲେ । ଭକ୍ତ ଜାଣିବାକୁ ଚାହିଁଲେ, ଠାକୁର ସନାତନ ପୂର୍ଣ୍ଣବ୍ରହ୍ମ କି ନୁହେଁ । ମା' ଉତ୍ତର ଦେଲେ, ''ହଁ, ସେ ପୂର୍ଣ୍ଣବ୍ରହ୍ମ ସନାତନ—ମୋର ସ୍ୱାମୀ ହିସାବରେ ଏବଂ ଅନ୍ୟ ଭାବରେ ମଧ୍ୟ ।'' ଭକ୍ତ ଭାବିଲେ, ସୀତାରାମ ବା ରାଧାକୃଷ୍ଣ ଯେପରି ଅଭିନ୍ନ, ଠାକୁର ଏବଂ ମା' ମଧ୍ୟ ସେହିପରି ଅଭିନ୍ନ । ଅଥଚ ଶ୍ରୀମା'ଙ୍କର ସାଧାରଣ ଲୋକଙ୍କ ପରି କର୍ମ ଦେଖି ମନର ସନ୍ଦେହ ମୋଚନ କରିବା ପାଇଁ ସେ ପଚାରିଲେ, ''ତେବେ ତୁମେ ସାଧାରଣ ସ୍ତ୍ରୀଲୋକମାନଙ୍କ ପରି ବସି ରୁଟି ବେଲୁଛ କାହିଁକି, ଏସବୁ କ'ଣ ? ଏହା କ'ଣ ମାୟା ?'' ମା' କହିଲେ, ''ମାୟା ନୁହେଁ ତ କ'ଣ ! ମାୟା ନ ହେଲେ ମୋର ଏପରି ଦଶା କାହିଁକି ହେବ ! ମୁଁ ବୈକୁଣ୍ଠରେ ନାରାୟଣଙ୍କ ପାଖରେ ଲକ୍ଷ୍ମୀ ହୋଇ ବସିଥାଆନ୍ତି । କିନ୍ତୁ ଭଗବାନ ଯେ ନରଲୀଳା ଭଲପାଆନ୍ତି ।'' ଭକ୍ତ ପୁଣି ପ୍ରଶ୍ନ କଲେ, ''ତୁମର

କଅଣ ନିଜ ସ୍ୱରୂପ ମନେପଡ଼େ ନାହିଁ ?'' ଉତ୍ତରରେ ମା' କହିଲେ, ''ହଁ, ଥରେ ଥରେ ମନେ ପଡ଼େ; ସେତେବେଳେ ଭାବେ କଅଣ କରୁଛି ! କିନ୍ତୁ ପର ମୁହୂର୍ତ୍ତରେ ଏହିସବୁ ଘର ଦୁଆର, ପିଲାପିଲିଙ୍କ କଥା ମନକୁ ଆସେ ଓ ମୁଁ ସବୁ ଭୁଲିଯାଏ ।'' ସେ ଯେ ସ୍ୱେଚ୍ଛାରେ ମାୟା ସ୍ୱୀକାର କରିଛନ୍ତି, ଏହା ଶ୍ରୀମା' ଜାଣିଥିଲେ; ତେଣୁ କେବେ କେବେ କହୁଥିଲେ, ''ଗୋଟିଏ ମୋହକୁ ଆଶ୍ରୟ କରି ରହିଛି, ଏହା ମାୟା ବ୍ୟତୀତ ଆଉ କଅଣ ?''

ଅବତାରଲୀଳା ମାନବଙ୍କ ପରି ହେଲେ ସୁଦ୍ଧା ତାହାର ସ୍ୱୀୟ ବୈଶିଷ୍ଟ୍ୟ ରହିଛି । ଶ୍ରୀରାମକୃଷ୍ଣ ମୁହୂର୍ମୁହୁଃ ସମାଧିସ୍ଥ ହେଉଥିଲେ, କିନ୍ତୁ ସ୍ୱାଭାବିକ ଅବସ୍ଥାରେ ତାଙ୍କର ପ୍ରତ୍ୟେକ କର୍ମ ସୁଚିନ୍ତିତ ଏବଂ ଶୃଙ୍ଖଳିତ ଥିଲା । ଜନକଲ୍ୟାଣ ଓ ଲୋକଶିକ୍ଷା ପାଇଁ ତାଙ୍କର ଜୀବନ ମାନବଜାତିର ଆଦର୍ଶସ୍ଥାନୀୟ । ଶ୍ରୀମା'ଙ୍କ ଜୀବନରେ ମଧ୍ୟ ଏହା ଅତି ସ୍ପଷ୍ଟଭାବରେ ଫୁଟି ଉଠିଥିଲା । ଶ୍ରୀରାମକୃଷ୍ଣଙ୍କ ଚରିତ୍ରରେ ଯେପରି ଆଧ୍ୟାତ୍ମିକ ଭାବ, ମହାଭାବ ଇତ୍ୟାଦି ପ୍ରକାଶିତ ହୋଇଛି ଏବଂ ତାହା ଆଧୁନିକ ଜଡ଼ବାଦୀ ମନୁଷ୍ୟକୁ ବଳପୂର୍ବକ ଭଗବତ୍-ଅଭିମୁଖୀ କରୁଛି, ସେପରି ଶ୍ରୀମା'ଙ୍କ ଜୀବନରେ ସମାଧି, ତ୍ୟାଗ, ବୈରାଗ୍ୟ ଓ ଭାବଗାମ୍ଭୀର୍ଯ୍ୟ କୌଣସି ଅଂଶରେ କମ୍ ନ ଥିଲେ ସୁଦ୍ଧା ତାଙ୍କର ସ୍ନେହ, ସେବା, ଉଦାରତା, ଲଜ୍ଜା, ବିନୟ ପ୍ରଭୃତି ଗୁଣରାଶି ଭୋଗଲିପ୍ସୁ ବ୍ୟକ୍ତିତନ୍ତ୍ର ସମାଜକୁ ଏକ ନୂତନ ପ୍ରେରଣା ଦେଉଛି । ସାଧାରଣ ମନୁଷ୍ୟ ନିଜର ବ୍ୟକ୍ତିଗତ ଚିନ୍ତାରେ ବ୍ୟସ୍ତ, କିନ୍ତୁ ଦେବ-ମାନବଙ୍କର ସମସ୍ତ ଜୀବନ ପରାର୍ଥେ ଉତ୍ସର୍ଗୀକୃତ ।

କେଶବାନନ୍ଦ ମହାରାଜ ପ୍ରଭୃତି ଭକ୍ତମାନଙ୍କୁ ସ୍ୱାମୀ ପ୍ରେମାନନ୍ଦଜୀ କହିଥିଲେ, ''ତୁମେମାନେ ନିଜେ ଦେଖୁଛ, ରାଜରାଜେଶ୍ୱରୀ ମା' କିପରି ସ୍ୱେଚ୍ଛାରେ କାଙ୍ଗାଳିନୀ ସାଜିଛନ୍ତି, ଘର-କରଣା କାମ କରୁଛନ୍ତି, ବାସନ ମାଜୁଛନ୍ତି, ଚାଉଳ ପାଛୁଡୁଛନ୍ତି, ଭକ୍ତମାନଙ୍କର ଅଇଁଠା ସଫା କରୁଛନ୍ତି । ସେ କେତେ କଷ୍ଟ କରୁଛନ୍ତି—ଗୃହୀମାନଙ୍କୁ ଗାର୍ହସ୍ଥ୍ୟ ଧର୍ମ ଶିଖାଇବା ପାଇଁ । କିପରି ଅସୀମ ଧୈର୍ଯ୍ୟ, ଅପରିସୀମ କରୁଣା ଏବଂ ସମ୍ପୂର୍ଣ୍ଣ ଅଭିମାନରାହିତ୍ୟ !'' ଗୋଟିଏ ପତ୍ରରେ ପ୍ରେମାନନ୍ଦଜୀ ଲେଖିଥିଲେ, ''ଶ୍ରୀଶ୍ରୀମା'ଙ୍କୁ କିଏ ବୁଝିଛି ? ଐଶ୍ୱର୍ଯ୍ୟର ଲେଶମାତ୍ର ନାହିଁ । ଠାକୁରଙ୍କର ବରଂ ବିଦ୍ୟାର ଐଶ୍ୱର୍ଯ୍ୟ ଥିଲା । କିନ୍ତୁ ମା'ଙ୍କର ? ତାଙ୍କର ବିଦ୍ୟାର ଐଶ୍ୱର୍ଯ୍ୟ ପର୍ଯ୍ୟନ୍ତ ଲୁପ୍ତ । ଏ କି ମହାଶକ୍ତି ! ଜୟ ମା' ! ଜୟ ମା' ! ଜୟ ଶକ୍ତିମୟୀ ମା' ! ଯେଉଁ ବିଷ ନିଜେ ହଜମ କରିପାରୁ ନାହୁଁ, ସବୁ ମା'ଙ୍କ ନିକଟକୁ ପଠାଇ ଦେଉଛୁ । ମା' ! ସମସ୍ତଙ୍କୁ କୋଳରେ ସ୍ଥାନ ଦେଉଛନ୍ତି । ଅନନ୍ତ ଶକ୍ତି, ଅପାର କରୁଣା । ଜୟ ମା' ! ଆମ କଥା ଆଉ କ'ଣ କହିବା, ସ୍ୱୟଂ ଠାକୁର ମଧ୍ୟ ଏପରି କରି ନାହାନ୍ତି । ସେ କେତେ ପରୀକ୍ଷା କରି ବାଛି ବାଛି ଲୋକ ନେଉଥିଲେ, କିନ୍ତୁ ଶ୍ରୀମା'ଙ୍କ କ୍ଷେତ୍ରରେ କ'ଣ ଆମେ ଦେଖୁଛୁ ? ଅଦ୍ଭୁତ !

ଅଦ୍ଭୁତ ! ସମସ୍ତଙ୍କୁ ମା' ଆଶ୍ରୟ ଦେଉଛନ୍ତି, ସମସ୍ତଙ୍କର ଖାଦ୍ୟ ଖାଉଛନ୍ତି । ମା' ! ମା' ! ଜୟ ମା' ! ମନେରଖ, ସୁଖରେ, ଦୈନ୍ୟରେ, ସମ୍ପଦରେ, ବିପଦରେ, ଦୁର୍ଭିକ୍ଷରେ, ମହାମାରୀରେ, ଯୁଦ୍ଧରେ, ବିଗ୍ରହରେ—ସବୁ କ୍ଷେତ୍ରରେ ମା'ଙ୍କର ସେହି କରୁଣା, ସେହି ଅପାର କରୁଣା ! ଜୟ ମା' ! ଜୟ ମା' !''

ଶ୍ରୀମା' ମଧ୍ୟ ଦିନେ କହିଥିଲେ ଠିକ୍ ଏହି ଧରଣର କଥା । ଜଣେ ଭକ୍ତ ଅନୁଯୋଗ କଲେ, ''ଠାକୁରଙ୍କ ନିକଟକୁ ଯେଉଁମାନେ ଯାଉଥିଲେ, ସେମାନଙ୍କର କେତେ ଭାବ, ସମାଧି ଇତ୍ୟାଦି ହେଉଥିଲା । କିନ୍ତୁ ଆପଣ ତ ଆମ ପାଇଁ ସେପରି କିଛି କରୁନାହାନ୍ତି ?'' ମା' ଉତ୍ତର ଦେଲେ, ''ଠାକୁର କେତେଜଣଙ୍କର ଏପରି କରିଥିଲେ ? ସେ ଲୋକମାନଙ୍କୁ ବାଛି ବାଛି ନେଉଥିଲେ । ତଥାପି ତାଙ୍କ ଦେହ ବେଶୀ ଦିନ ରହିଲା ନାହିଁ, କିନ୍ତୁ ମୋ ନିକଟକୁ ପିମ୍ପୁଡ଼ିଧାର ଭଳି ଲୋକମାନଙ୍କୁ ପଠାଉଛନ୍ତି । ମୁଁ ଯଦି ତାଙ୍କପରି କରେ, ତେବେ ଏ ଦେହ କେତେ ଦିନ ରହିବ ? କେତେ ପିଲାଙ୍କ ଦାୟିତ୍ୱ ମୋ ଉପରେ ରହିଛି !''

କ୍ଷେତ୍ରରେ ବିଭିନ୍ନତା ହେତୁ ଶ୍ରୀମା' ଓ ଠାକୁରଙ୍କ ଅଚାର-ବ୍ୟବହାର ପ୍ରଭେଦ ଥିଲା; କିନ୍ତୁ ମନଯୋଗ ସହିତ ନିରୀକ୍ଷଣ କଲେ ବୁଝାଯାଏ ଯେ ଏହି ପ୍ରଭେଦ ମୌଳିକ ନୁହେଁ; ଏହା କ୍ଷେତ୍ରାନୁଯାୟୀ ବିକାଶର ତାରତମ୍ୟ ମାତ୍ର । ପାରିବାରିକ ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ କାଳୀମନ୍ଦିରର ପୂଜାରୀ ଭକ୍ତପରିବେଷ୍ଟିତ ଶ୍ରୀରାମକୃଷ୍ଣଙ୍କର ଜୀବନ ଯେପରି ତ୍ୟାଗ ଓ ବୈରାଗ୍ୟର ଅନାବୃତ ସୌନ୍ଦର୍ଯ୍ୟରେ ପ୍ରକାଶିତ ହୋଇ ସମସ୍ତଙ୍କୁ ମୁଗ୍ଧ କରୁଥିଲା, ଶ୍ରୀମା'ଙ୍କର ଜୀବନରେ ତାହା ହିଁ ଗାର୍ହସ୍ଥ୍ୟଜୀବନର ଅନ୍ଧକାର-ପଥକୁ ଆଲୋକିତ କରୁଥିଲା । ଊର୍ଦ୍ଧ୍ୱଗାମୀ ମନକୁ ସାଧାରଣ ଭୂମିରେ ରଖିବା ପାଇଁ ଠାକୁର ତମାଖୁ ଖାଇବି, ପାଣି ପିଇବି ଇତ୍ୟାଦି କ୍ଷୁଦ୍ର ବାସନାକୁ ଅବଲମ୍ବନ କରୁଥିଲେ । ଅପର ଦିଗରେ ଶ୍ରୀମା' ଭଗବତ୍-ଧ୍ୟାନରେ ଲୀୟମାନ ମନକୁ ସଂସାରରେ ରଖିବା ପାଇଁ ରାଧୁକୁ ଅବଲମ୍ବନ କରିଥିଲେ । ଏହି ସ୍ୱାର୍ଥହୀନ, କ୍ଳେଶକର ଉଦ୍ୟମ ବନ୍ଧନ ବୋଲି ପ୍ରତୀତି ହେଲେ ସୁଦ୍ଧା ଆମେ ସେଥିରେ ମା'ଙ୍କର ଅସୀମ ଶକ୍ତିର ପରିଚୟ ପାଉ । ଠାକୁର କାଞ୍ଚନ ତ୍ୟାଗ କରିଥିଲେ, ଧାତୁ ସ୍ପର୍ଶ କଲେ ତାଙ୍କର ଅଙ୍ଗ ବିକୃତ ହେଉଥିଲା; ଶ୍ରୀମା' ଅର୍ଥକୁ ଲକ୍ଷ୍ମୀଜ୍ଞାନରେ ମସ୍ତକରେ ସ୍ପର୍ଶ କରୁଥିଲେ । ବସ୍ତୁକୁ ବସ୍ତୁ ଭାବରେ ତ୍ୟାଗ ଓ ବ୍ରହ୍ମ ଭାବରେ ଗ୍ରହଣ, ଉଭୟ ମୂଳତଃ ସମାନ । ଏହିସବୁ ତତ୍ତ୍ୱକଥା ମନରେ ଧାରଣ କରି ଶ୍ରୀମା'ଙ୍କର ମାନବ-ଚରିତ୍ରର ଆଲୋଚନାରେ ଆମେ ଅଗ୍ରସର ହେବା । ଏହି ଅଖଣ୍ଡ ଅଲୌକିକ ଚରିତ୍ରକୁ ଖଣ୍ଡିତ କରି ବୁଝିବାକୁ ଚେଷ୍ଟା କଲେ ସୁଦ୍ଧା ପାଠକ ଯେପରି ଶ୍ରୀମା'ଙ୍କର ଦେବୀତ୍ୱ ଭୁଲିଯାଇ ତାଙ୍କୁ କେବଳ ସାମାନ୍ୟ ନାରୀ ବୋଲି ଜ୍ଞାନ ନ କରନ୍ତି ସେ ବିଷୟରେ ସତର୍କ ରହିବା ଉଚିତ ।

ଆମେ ଏହି ଅଧ୍ୟାୟରେ ଯେଉଁସବୁ ଘଟଣା ଆଲୋଚନା କରିବା ତାହା ଦୁଇ ଶ୍ରେଣୀରେ ବିଭକ୍ତ—କେତେଗୁଡ଼ିଏ ଘଟଣା ସହିତ ଶ୍ରୀମା'ଙ୍କ ସାକ୍ଷାତ ସମ୍ବନ୍ଧ ରହିଛି ଏବଂ ଅନ୍ୟ କେତେଗୁଡ଼ିକରେ ସେ କେବଳ ସାକ୍ଷୀ ମାତ୍ର । ସେ ନିଜେ ଯାହା କରିଯାଇଛନ୍ତି କିମ୍ବା ନିଜେ ବିଭିନ୍ନ ସମୟରେ ଯେଉଁସବୁ ତାତ୍ପର୍ଯ୍ୟ ନିର୍ଣ୍ଣୟ କରିଛନ୍ତି, ତାହା ଆମ ପକ୍ଷରେ ଅତି ମୂଲ୍ୟବାନ । ସାକ୍ଷାତ୍ ସମ୍ବନ୍ଧ ନ ଥିଲେ ମଧ୍ୟ ସେ ଯେଉଁ ମତାମତ ପ୍ରକାଶ କରି ଯାଇଛନ୍ତି, ତାହା ମଧ୍ୟ ଆମ ପକ୍ଷରେ କମ୍ ଆଦରଣୀୟ ନୁହେଁ ।

କ୍ଷୁଦ୍ର ଜୟରାମବାଟୀ ଗ୍ରାମପ୍ରତି ଶ୍ରୀମା'ଙ୍କର ବିଶେଷ ଆକର୍ଷଣ ଥିଲା । ଥରେ କଲିକତାକୁ ଯିବା ପାଇଁ ଶ୍ରୀମା' ଯେତେବେଳେ ପ୍ରସ୍ତୁତ ହେଉଥିଲେ, ସେତେବେଳେ ତାଙ୍କର ଖୁଡ଼ୀ କହିଲେ, ''ସାରଦା, ପୁଣି ଆସିବୁ ।'' ଶ୍ରୀମା' ଆଗ୍ରହ ସହକାରେ କହିଲେ, ''ନିଶ୍ଚୟ ଆସିବି ଏବଂ ଘରର ମାଟି ମସ୍ତକରେ ସ୍ପର୍ଶ କରି କହିବାକୁ ଲାଗିଲେ, ''ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।''

ଗାଁର ସମସ୍ତଙ୍କ ସହିତ ସମ୍ପର୍କ ଥିଲା—ସେ ଯେତେ ଛୋଟ ବଡ଼ ବା ସମାଜର ଯେକୌଣସି ସ୍ତରର ଲୋକ ହେଉନା କାହିଁକି; ଭିନ୍ନ ଗ୍ରାମବାସୀମାନେ ମଧ୍ୟ ଏହି ଆଦରରୁ ବଞ୍ଚିତ ହେଉ ନ ଥିଲେ । ବିଜୟାଦଶମୀ ଦିନ ସକାଳେ ଯେତେବେଳେ ସମସ୍ତେ ତାଙ୍କୁ ପ୍ରଣାମ କରି ଆଶୀର୍ବାଦ ନେଉଥିଲେ, ସେତେବେଳେ ମା' ପ୍ରତିମାଶିଳ୍ପୀ କୁଞ୍ଜଦାଦାଙ୍କର ଖବର ନେଉଥିଲେ ଏବଂ ତାଙ୍କୁ ଡାକି ଆଦରଯତ୍ନ କରୁଥିଲେ । ଏହିସବୁ କ୍ଷେତ୍ରରେ ଉଚ୍ଚ ସମାଜିକ ସ୍ଥିତି କୌଣସି ବାଧା ସୃଷ୍ଟି କରିପାରୁ ନ ଥିଲା ।

ଭକ୍ତବୀର ଗିରିଶଚନ୍ଦ୍ର କହିଥିଲେ, ''ବର୍ତ୍ତମାନ ଯୁଗରେ ଶ୍ରୀରାମକୃଷ୍ଣ ପ୍ରଣାମାସ୍ତ୍ରଦ୍ୱାରା ସମସ୍ତଙ୍କ ମନ ଜୟ କରିଥିଲେ ।'' ଶ୍ରୀମା'ଙ୍କ ଜୀବନରେ ମଧ୍ୟ ଏହି ଭାବ ସୁପ୍ରତିଷ୍ଠିତ ହୋଇଥିଲା । ଶେଷ ବୟସରେ ସେ ଯେତେବେଳେ ଅଧିକ ପରିଶ୍ରମ କରିପାରୁ ନ ଥିଲେ, ସେତେବେଳେ ଜୟରାମବାଟୀରେ ଜଣେ ବୃଦ୍ଧା ବ୍ରାହ୍ମଣୀ ରନ୍ଧାବଢ଼ା କରୁଥିଲେ । ଶ୍ରୀମା' ତାଙ୍କୁ ମାଉସୀ ବୋଲି ଡାକୁଥିଲେ । ବିଜୟାଦଶମୀ ଦିନ ମା' ବୃଦ୍ଧାଙ୍କୁ ପ୍ରମାଣ କରିବାକୁ ଉଦ୍ୟତ ହେବାରୁ ବ୍ରାହ୍ମଣୀ କହିଲେ, ''ସେ କି କଥା ମା' ? ତୁମେ ଜଗତର ମା' । ତୁମକୁ ସମସ୍ତେ ପ୍ରଣାମ କରନ୍ତି । ମୁଁ ସାଧାରଣ ଜଣେ ସ୍ତ୍ରୀ ଲୋକ, ମୁଁ ତୁମର ପ୍ରଣାମ ନେଇ ପାରିବି ନାହିଁ ।'' କିନ୍ତୁ ମା' ଶୁଣିଲେ ନାହିଁ । ଏହି ସମ୍ପର୍କ ଭିତରେ କୌଣସି କୃତ୍ରିମତା ନ ଥିଲା । ଥରେ ଶ୍ରୀମା'ଙ୍କର ସମ୍ପର୍କୀୟ ଭାଇ ସୂର୍ଯ୍ୟନାରାୟଣ କଲିକତାରୁ ତାଙ୍କ ସହିତ ଗାଁକୁ ଯାଉଥିଲେ । ବିଷ୍ଣୁପୁରରେ ପହଞ୍ଚି ତାଙ୍କର ମନେପଡ଼ିଲା ଯେ, ସେ କଲିକତାରୁ ଗୋଟିଏ ଦରକାରୀ ଜିନିଷ ଆଣିବାକୁ ଭୁଲି ଯାଇଛନ୍ତି । ବିଷ୍ଣୁପୁରରୁ ଟେଲିଗ୍ରାମ ପଠାହେଲା ଯେପରିକି ପର ଗାଡ଼ିରେ ତାହା ଆସେ । ଜିନିଷଟି ନ

ଆସିବା ପର୍ଯ୍ୟନ୍ତ ମା' ତାଙ୍କୁ ସେଠାରେ ଏକାକୀ ରଖିଯିବାକୁ ଅସମ୍ମତ ହେଲେ । ମା' କହିଥିଲେ, ''ସୂର୍ଯ୍ୟ କଅଣ ମୋର ପର ?''

ଜାତିବିଚାର ସମ୍ପର୍କରେ ଶ୍ରୀମା'ଙ୍କର ଦୃଷ୍ଟିଭଙ୍ଗୀ ଆମେ ବହୁତଥର ଉଲ୍ଲେଖ କରିଛୁ । ଠାକୁରଙ୍କ ବାଣୀ ''ଭକ୍ତମାନଙ୍କର ଜାତି ନାହିଁ''—ମା' ଆକ୍ଷରିକ ଅର୍ଥରେ ଗ୍ରହଣ କରିଥିଲେ । ଧର୍ମଜଗତରେ ଏହି ସାମ୍ୟ ଯଦିଓ ମା' ମାନି ନେଇଥିଲେ, ତଥାପି ଲୌକିକ ବ୍ୟବହାରରେ ସାମଜିକ ବ୍ୟବସ୍ଥା ସେ ମାନି ଚଳୁଥିଲେ । ଜଣେ ଦୀକ୍ଷାର୍ଥୀଙ୍କର କୁଳଗୁରୁ ଅଛନ୍ତି ଜାଣି ମା' ତାଙ୍କୁ ମନ୍ତ୍ର ଦେବାକୁ ଅସମ୍ମତ ହେଲେ । ସମାଜିକ କ୍ଷେତ୍ରରେ ମା' ଜାତିବିଚାର ମାନି ଚଳୁଥିଲେ । ଶେଷ ଅସୁସ୍ଥତା ସମୟରେ ଯେତେବେଳେ ମା'ଙ୍କୁ ପାଉଁରୁଟି ଖାଇବାକୁ ଦେବାର ବ୍ୟବସ୍ଥା ହେଲା, ସେତେବେଳେ ସେ କହିଲେ, ''ବାବା, ମୋର ଏହି ଶେଷ ସମୟରେ ବିଧର୍ମୀମାନଙ୍କ ଦ୍ୱାରା ପ୍ରସ୍ତୁତ ସେସବୁ ଜିନିଷ ଦିଅ ନାହିଁ ।'' ଏହି ସମୟରେ ତାଙ୍କର ଖାଇବାରେ ଖୁବ୍ ଅରୁଚି, ଅଳ୍ପ ଭାତ ଖାଉଥିଲେ । ଦିନେ ଖାଇବା ସମୟରେ ଡାକ୍ତର  କାଞ୍ଜିଲାଲ ଆସି ଦେଖିଲେ, ଭାତର ପରିମାଣ ଟିକିଏ ବେଶୀ । ତେଣୁ ସେବିକାଙ୍କ ବଦଳରେ ଦୁଇଜଣ ନର୍ସ ନିଯୁକ୍ତ କରାଯିବ ବୋଲି ସେ କହିଲେ । ମା' କିନ୍ତୁ ସେବିକାଙ୍କୁ କହିଲେ, ''ମୁଁ ସେହି ଯୋତା ପିନ୍ଧିଥିବା ଝିଅମାନଙ୍କର ସେବା ନେବି ବୋଲି କ'ଣ ମନେ କରୁଛ ? ତା' ମୁଁ ପାରିବି ନାହିଁ । ତୁମେ ଯେପରି ସେବା କରୁଛ ସେପରି କର ।''

ଶିକ୍ଷିତ, ଉଚ୍ଚପଦସ୍ଥ ଏବଂ ସଦ୍‌ଗୁଣସମ୍ପନ୍ନ ଅବ୍ରାହ୍ମଣମାନଙ୍କ ପ୍ରତି ଶ୍ରୀମା' ସର୍ବଦା ଯଥୋଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ । କବିରାଜ ଶ୍ୟାମାଦାସ ବାଚସ୍ପତି ମହାଶୟ ଉଦ୍‌ବୋଧନରେ, ରାଧୁକୁ ଦେଖିବାକୁ ଆସିଥିଲେ । ଶ୍ରୀମା'ଙ୍କ ଆଦେଶ ଅନୁଯାୟୀ ରାଧୁ ତାଙ୍କୁ ପ୍ରଣାମ କଲା । କବିରାଜ ଚାଲିଯିବାରୁ ଅବ୍ରାହ୍ମଣଙ୍କୁ କାହିଁକି ପ୍ରଣାମ କରିବାକୁ କହିଲେ ବୋଲି ପ୍ରଶ୍ନ ହେଲା । ମା' କହିଲେ, ''ପ୍ରଣାମ କରିବ ନାହିଁ କାହିଁକି ? ସେ କିପରି ବିଜ୍ଞ ଲୋକ ! ସେମାନେ ବ୍ରାହ୍ମଣତୁଲ୍ୟ । ତାଙ୍କୁ ପ୍ରଣାମ କରିବ ନାହିଁ ତ କାହାକୁ କରିବ ?'' ଜଣେ ଭକ୍ତ ମା'ଙ୍କ ଦର୍ଶନଲାଭ କରିବା ପାଇଁ ଜୟରାମବାଟୀକୁ ଯାଇଥିଲେ । ଶ୍ରୀମା' ରାଧୁକୁ କହିଲେ, ''ରାଧୁ, ତୋର ବଡ଼ ଭାଇ ଆସିଛନ୍ତି ପ୍ରଣାମ କର ।'' ଦ୍ୱିଧା ସତ୍ତ୍ୱେ ଶ୍ରୀମା'ଙ୍କର ଆଦେଶ ବୋଲି ଭକ୍ତ ଆପତ୍ତି କଲେ ନାହିଁ । ଜଣେ ଭକ୍ତିମତୀ ମହିଳା ଉଦ୍‌ବୋଧନକୁ ଆସି ମା'ଙ୍କୁ ଜଣାଇଲେ ଯେ ସେ ସ୍ୱପ୍ନରେ ଦୀକ୍ଷା ପାଇଛନ୍ତି । ଶ୍ରୀମା' ସ୍ୱପ୍ନରେ ପାଇଥିବା ମନ୍ତ୍ରକୁ ଅନୁମୋଦନ କଲେ । ପରେ ପରିଚୟ ପାଇ ଜାଣିଲେ ସେ ମା'ଙ୍କ ଦୀକ୍ଷିତ ଜଣେ ଭକ୍ତଙ୍କର ସ୍ତ୍ରୀ; ତେଣୁ ରାଧୁ, ମାକୁ ଇତ୍ୟାଦିକୁ ଡାକି ତାଙ୍କୁ ପ୍ରଣାମ କରିବାକୁ କହିଲେ । ମହିଳା କାୟସ୍ଥ ହୋଇଥିବାରୁ ଆପତ୍ତି କଲେ, କିନ୍ତୁ ମା' କହିଲେ, ''ସେପରି କୁହ ନାହିଁ । ତୁମେ ଭକ୍ତ; ଭକ୍ତମାନଙ୍କର ଜାତି ନାହିଁ ।

ତୁମକୁ ପ୍ରଣାମ କଲେ ସେମାନଙ୍କର କଲ୍ୟାଣ ହେବ ।'' ସେ ଏକ ଉଚ୍ଚ ଭିତ୍ତିରେ ମାନବୀୟ ସମ୍ପର୍କକୁ ପ୍ରତିଷ୍ଠିତ କରିବାକୁ ଚାହୁଁଥିଲେ । କିନ୍ତୁ ସାଧାରଣ ମନୁଷ୍ୟ ତାହା ନ ବୁଝି ତାଙ୍କ କଥାକୁ କେବଳ ସାମାଜିକ ଅର୍ଥରେ ଗ୍ରହଣ କରୁଥିଲେ । ଶ୍ରୀମା' ଯେତେବେଳେ କାଶୀରେ ଥିଲେ, ତାଙ୍କ ଜନ୍ମତିଥିରେ ଦୁଇଜଣ ବ୍ରାହ୍ମଣକନ୍ୟା ଭାନୁପିଉସୀଙ୍କୁ ପ୍ରଣାମ କଲେ । ଭାନୁପିଉସୀ ଜାତିରେ ଗଉଡ଼ ବୋଲି ଗୋଲାପ –ମା' ଭାରୀ ରାଗିଗଲେ । ମା' କିନ୍ତୁ ଅସନ୍ତୁଷ୍ଟ ହୋଇ କହିଲେ, ''ଗୋଲାପର କାଣ୍ଡ ଦେଖ, ଉତ୍ସବଦିନ ସମସ୍ତେ ଆନନ୍ଦ କରିବେ, ଆଉ ସେ ବିନା କାରଣରେ ଏମାନଙ୍କ ମନରେ କଷ୍ଟ ଦେଉଛି ! ତୁମେ କିଛି ମନେ କର ନାହିଁ ମା' ! ଭକ୍ତ ହୋଇଥିଲେ ସମସ୍ତଙ୍କୁ ପ୍ରଣାମ କରିବା ଚଳେ ।''

ଜୟରାମବାଟୀର ଘଟଣା । ନଳିନୀଦେବୀ କହିଲେ, ''କାଉ ତାଙ୍କ ଲୁଗାରେ ପରିସ୍ରା କରିଛି, ତେଣୁ ଆଉଥରେ ସ୍ନାନ କରିବେ ।'' ମା' କହିଲେ, ''ମୋର ଏତେ ବୟସ ହେଲା, କିନ୍ତୁ କାଉ ପରିସ୍ରା କରେ ବୋଲି କେବେ ଶୁଣି ନାହିଁ । ଅସଂଖ୍ୟ ପାପ, ମହାପାପ ନ କଲେ ମନ ଅଶୁଦ୍ଧ ହୁଏ ନାହିଁ । ଯେତେ ଚେଷ୍ଟା କଲେ ବି ଶୁଚିବାଇଗ୍ରସ୍ତ ମନ ଶୁଦ୍ଧ ହେବ ନାହିଁ । ଯେତେ ବଢ଼େଇବ ତାହା ସେତେ ବଢ଼ିବ ।'' ଆଉ ଦିନେ ନଳିନୀଦେବୀଙ୍କୁ ମା' କହିଥିଲେ, ''ଗାଁରେ ମୁଁ କେତେଥର ମଇଳା ମାଡ଼ିଛି, ଦୁଇଥର ଗୋବିନ୍ଦ ଗୋବିନ୍ଦ କହିଲେ ସବୁ ଶୁଦ୍ଧ ହୋଇଯାଏ । ଶୁଦ୍ଧ ଅଶୁଦ୍ଧ — ସବୁ ମନ ଭିତରେ ।''

ଏପରି ବହୁ ସମସ୍ୟାର ସମାଧାନ ମା' କରୁଥିଲେ । ସମାଜରେ ବହୁ ପ୍ରାଚୀନ ଅଟଳ ଦେଶାଚାର ଜୀବନକୁ ଅସହନୀୟ କରିଦିଏ । କେବଳ ଧର୍ମର ସୁଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ ସହାନୁଭୂତି ପୂର୍ଣ୍ଣ ଏବଂ ପ୍ରଗତିଶୀଳ ମନ ଏପରି ସଙ୍କଟରେ ପଥ ପ୍ରଦର୍ଶନ କରିବାରେ ସମର୍ଥ ହୁଏ । ଶ୍ରୀମା' ଦେଶାଚାର ମାନୁଥିଲେ; କିନ୍ତୁ ଦେଶାଚାର ନାମରେ ମଣିଷ ଉପରେ ଅତ୍ୟାଚାର କରିବାକୁ ସେ ମାନୁ ନ ଥିଲେ । କୌଣସି କୌଣସି କ୍ଷେତ୍ରରେ ବିଧବା ସ୍ତ୍ରୀ–ଲୋକମାନେ ଆଚାର ବ୍ୟବହାରରେ ଖୁବ୍ କଠୋରତା କରନ୍ତି । ଏପରି ଜଣେ ବିଧବାଙ୍କୁ ମା' କହିଥିଲେ, ''ତୁମେ ରାତିରେ ଠାକୁରଙ୍କୁ ନିବେଦନ କରି ରୁଟି ଇତ୍ୟାଦି ଖାଇବ ।''

ଏହି ବିଷୟରେ ଶ୍ରୀମା'ଙ୍କର ବିଚାର ଠାକୁରଙ୍କ ବ୍ୟବହାର ଦ୍ୱାରା ପ୍ରଭାବିତ ହୋଇଥିଲା ବୋଲି ମନେହୁଏ । ସେଦିନ ଏକାଦଶୀ । ଯୋଗୀନ୍–ମା' ତାଙ୍କ ବିଧବା ଖୁଡ଼ୀଙ୍କୁ ନେଇ ଦକ୍ଷିଣେଶ୍ୱର ଯାଇଥିଲେ । ବୃଦ୍ଧାଙ୍କର ନିର୍ଜଳା ଉପବାସ । ପୂର୍ବଦିନ ମଧ୍ୟ କୌଣସି କାରଣବଶତଃ ସେ ଅନ୍ନ ଗ୍ରହଣ କରି ନ ଥିଲେ । ବାର୍ଦ୍ଧକ୍ୟ ଯୋଗୁଁ ସେ ସଳଖ ହୋଇ ଚାଲିପାରନ୍ତି ନାହିଁ; ଏଣେ ଦୁଇଦିନ ଉପବାସ କରିଥିବାରୁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲେ । ବୃଦ୍ଧା ଅଣନିଃଶ୍ୱାସୀ ହୋଇପଡ଼ିଥିବାର ଦେଖି ମା' ତାଙ୍କ ହାତ ଧରି ଆଣି ଘରେ ବସାଇଲେ ଏବଂ

ସର୍ବତ କରି ପିଇବାକୁ ଦେବେ କି ନାହିଁ ବୋଲି ପଚାରିଲେ । ବୃଦ୍ଧା ସାମାଜିକ ରୀତି ଅନୁଯାୟୀ ଅସମ୍ମତ ହୋଇଥିଲେ । ଟିକିଏ ସୁସ୍ଥ ହେବାରୁ ଯୋଗୀନ୍-ମା' ତାଙ୍କୁ ଠାକୁରଙ୍କ ନିକଟକୁ ନେଇଗଲେ । ସାଥିରେ ମା' ଥିଲେ । ଘରର ଶିଡ଼ି ଉଠିପାରୁ ନାହାନ୍ତି ଦେଖି ଠାକୁର ଶୀଘ୍ର ଆସି ଧରିଲେ ଏବଂ ବୃଦ୍ଧାଙ୍କର ଏଭଳି ଦୁର୍ବଳତାର କାରଣ ଜାଣିବାକୁ ଚାହିଁଲେ । ସେ ଉପବାସ କରିଥିବା କଥା ଯୋଗୀନ୍-ମା' କହିବାରୁ ଠାକୁର ମା'ଙ୍କୁ କହିଲେ, ''ତୁମେ ଟିକିଏ ସର୍ବତ ମଧ୍ୟ ଖୁଆଇପାରିଲ ନାହିଁ । ମା' କହିଲେ ଯେ ବୃଦ୍ଧା ସେଥିପାଇଁ ଅସମ୍ମତ । ଠାକୁର କିନ୍ତୁ ଗଙ୍ଗାଜଳରେ ଚିନି ମିଶାଇ ସର୍ବତ ପ୍ରସ୍ତୁତ କଲେ ଏବଂ ବୃଦ୍ଧାଙ୍କୁ କହିଲେ, ''ଖାଅ'' । ପ୍ରଥମେ ବୃଦ୍ଧା କିଛି ସମୟଧରି ଠାକୁରଙ୍କୁ ଚାହିଁରହିଲେ; କିନ୍ତୁ ପରେ କିଛି ନ କହି ସର୍ବତ ପିଇଲେ ଏବଂ ସୁସ୍ଥ ହୋଇ କହିଲେ, ''ଛାତିଟା ଏତେବେଳକେ ଥଣ୍ଡା ହେଲା ।''

ବାଳବିଧବା ଶ୍ରୀମତୀ କ୍ଷୀରୋଦବାଳା ରାୟ ଆହାରାଦିରେ ଅତ୍ୟନ୍ତ କଠୋରତା କରୁଥିବାରୁ ତାଙ୍କ ଦେହ ଶୀର୍ଣ୍ଣ ହୋଇ ଯାଇଥିଲା । ଶ୍ରୀମା' କହିଲେ, ''ଝିଅ, ତୁ ଅନେକ କଠୋରତା କରିଛୁ । ମୁଁ କହୁଛି ଆଉ ସେପରି କର ନାହିଁ । ଦେହଟା ଶୁଖି କାଠ ହୋଇ ଯାଇଛି । ଦେହ ନଷ୍ଟ ହେଲେ କିପରି ସାଧନ ଭଜନ କରିବୁ ମା' ? ଦେଶାଚାରାନୁଯାୟୀ କ୍ଷୀରୋଦବାଳା ଖୁବ୍ ଛୋଟ ଛୋଟ କରି କେଶ କାଟୁଥିଲେ, ଯାହା ଗୋଲାପ-ମା' ଓ ଯୋଗୀନ୍-ମା'ଙ୍କର ପସନ୍ଦ ନ ଥିଲା । କିନ୍ତୁ ମା' ବାଧା ଦେଇ କହିଲେ, ''ଭଲ କରିଛି; କେଶ ଥିଲେ ବିଳାସିତାର ଭାବ ଆସେ । ଯତ୍ନ କରିବାକୁ ପଡ଼େ । ଯାହା ହେଉ ମା', ବର୍ତ୍ତମାନ ତୁ ଏହିସବୁ ବାଧା ପାରିହୋଇ ଏଠାରେ ପହଞ୍ଚିଛୁ । ଯେଉଁଥିପାଇଁ ଏତେ କଠୋରତା, ତାହା ତୁ ଲାଭ କରିଛୁ । ବର୍ତ୍ତମାନ ମୁଁ କହୁଛି ଆଉ କଠୋରତାର ପ୍ରୟୋଜନ ନାହିଁ ।''

ଶବାସନାଦେବୀ ବାଳବିଧବା ଥିଲେ । ବ୍ରତ ଇତ୍ୟାଦିରେ ସେ ନିର୍ଜଳା ଉପବାସ କରୁଥିଲେ । ଶ୍ରୀମା' ଏହା ଲକ୍ଷ୍ୟ କରି କହିଲେ, ''ଆତ୍ମାକୁ କଷ୍ଟ ଦେଇ କଅଣ ହେବ ? ମୁଁ କହୁଛି, ଜଳ ଗ୍ରହଣ କର ।'' ସୁରବାଳା ଦେବୀଙ୍କର ପତି ବିୟୋଗ ହେବାରୁ ସେ ଅବଶିଷ୍ଟ ଜୀବନ ହବିଷ୍ୟାନ୍ନ ଗ୍ରହଣ କରିବେ ବୋଲି ସଂକଳ୍ପ କଲେ । କିନ୍ତୁ ମା' ତାଙ୍କୁ କହିଲେ, ''ଆତ୍ମା ଯଦି କିଛି ଖାଇବାକୁ ଚାହେଁ, ତେବେ ଆତ୍ମାକୁ ତାହା ଦେବା ଉଚିତ୍ । ନ ଦେଲେ ଅପରାଧ ହେବ; ଆତ୍ମା କାନ୍ଦିବ, କହିବ ମୋତେ ଖାଇବାକୁ ଦେଲା ନାହିଁ ।''

ଶ୍ରୀମା' ଏକାଦଶୀ ଦିନ ଭାତ ନ ଖାଇ ସମାନ୍ୟ ଲୁଚି ଖାଉଥିଲେ । ମା' କହୁଥିଲେ, ''ଖାଇପିଇ ଦେହକୁ ସୁସ୍ଥ କରି ଭଗବାନଙ୍କୁ ଡାକ ।'' ତାଙ୍କ ସହଚରୀ ଯୋଗୀନ୍-ମା' ଏବଂ ଗୋଲାପ-ମା' ମଧ୍ୟ ନିର୍ଜଳା ଉପବାସ କରୁ ନ ଥିଲେ । ଶ୍ରୀଶ୍ରୀଠାକୁର ବସ୍ତୁତଃ ଲୀଳାସମ୍ବରଣ କରିନାହାନ୍ତି—ଏହା ଜାଣି ଶ୍ରୀମା' ତାଙ୍କର

ସଧବା ଚିହ୍ନଗୁଡ଼ିକ ସମ୍ପୂର୍ଣ୍ଣଭାବରେ ତ୍ୟାଗ କରି ନ ଥିଲେ । କିନ୍ତୁ ଦେଶାଚାରପ୍ରତି ସମ୍ମାନ ହେତୁ ତାଙ୍କର ଆହାର ଓ ପରିଚ୍ଛଦରେ ଗୋଟିଏ ସଂଯମର ଭାବ ଆମେ ଲକ୍ଷ୍ୟ କରିଥାଉ । ଶ୍ରୀମା' କେବେ ଆମିଷ ଆହାର ଗ୍ରହଣ କରୁ ନ ଥିଲେ । ଜାମା ଇତ୍ୟାଦି ପିନ୍ଧିବାର ଅଭ୍ୟାସ ମଧ୍ୟ ତାଙ୍କର ନ ଥିଲା । ଶାଢ଼ୀ ବଦଳରେ ସେ ନାଲି ଧଡ଼ିଆ ଧୋତି ପିନ୍ଧୁଥିଲେ ।

ବାଲ୍ୟବିବାହ ସମ୍ବନ୍ଧରେ ଶ୍ରୀମା'ଙ୍କର ମତ ଅତି ସ୍ପଷ୍ଟ । ଦକ୍ଷିଣ ଦେଶରୁ ଦୁଇଟି କୁମାରୀ ଝିଅ ନିବେଦିତା ବିଦ୍ୟାଳୟରେ ରହୁଥିଲେ । ସେମାନଙ୍କର ବୟସ ପ୍ରାୟ କୋଡ଼ିଏ ବର୍ଷ ହେବ । ସେମାନଙ୍କର କଥା ଉଲ୍ଲେଖ କରି ମା' ଦିନେ କହିଥିଲେ, ''ଆହା, ସେମାନେ କିପରି କାମ ଶିଖୁଛନ୍ତି ! ଆଉ ଆମ ଝିଅମାନେ ! ଆମ ଲକ୍ଷ୍ମୀଛଡ଼ା ଦେଶରେ ଝିଅର ବୟସ ଆଠ ବର୍ଷ ନ ହେଉଣୁ କହିବେ ବିବାହ ଦେଇଦିଅ, ବିବାହ ଦେଇଦିଅ ! ଆହା ! ରାଧୁ ଯଦି ବିବାହ ନ କରିଥାଆନ୍ତା, ତା'ହେଲେ ତା'ର କ'ଣ ଏତେ ଦୁଃଖଦୁର୍ଦ୍ଦଶା ହୋଇଥାଆନ୍ତା !''

କାଳୀମାମୁଁଙ୍କର ଦୁଇ ପୁଅଙ୍କର ବିବାହ ଖୁବ୍ ଅଳ୍ପ ବୟସରେ ହୋଇଥିଲା । ଛୋଟ ପୁଅର ବିବାହ-ସମ୍ବାଦ ପାଇ ଶ୍ରୀମା' କଠୋର ମନ୍ତବ୍ୟ କରିଥିଲେ, ''ଛୋଟ ଛୋଟ ପିଲାମାନଙ୍କର ବିବାହ ଦେଉଛି — ମୋ ନିକଟରୁ ଆଦାୟ କରି ନେଉଛି । ଶେଷରେ ଯେ କଷ୍ଟ ପାଇବ ତାହା ଜାଣେ ନାହିଁ ।''

ଅନେକ ବିବାହିତ-ଜୀବନରେ ସଂଯମର ଅଭାବ ଦେଖି ମା' ଦୁଃଖ ପ୍ରକାଶ କରୁଥିଲେ — ସଂସାରୀ ଲୋକମାନେ କେବଳ ବଂଶବୃଦ୍ଧି କରିବା ହିଁ ଏକମାତ୍ର କର୍ତ୍ତବ୍ୟ ବୋଲି ମନେ କରନ୍ତି । ଏହି ପ୍ରସଙ୍ଗରେ ଶ୍ରୀମା' ଠାକୁରଙ୍କ କଥା ଉଲ୍ଲେଖ କରି କହୁଥିଲେ, ''ଗୋଟିଏ ଯୋଡ଼ିଏ ପିଲା ହେବା ପରେ ସଂଯମରେ ରହିବା ବିଧେୟ । ଇନ୍ଦ୍ରିୟସଂଯମ ଦରକାର । ବିଧବାମାନଙ୍କ ପାଇଁ ଯେଉଁ ସବୁ ବ୍ୟବସ୍ଥା ଅଛି ତାହା କେବଳ ଇନ୍ଦ୍ରିୟସଂଯମ ପାଇଁ ।''

ମା' ପୁରୁଷ ଭକ୍ତମାନଙ୍କୁ ଯେପରି ସ୍ତ୍ରୀଲୋକମାନଙ୍କଠାରୁ ସାବଧାନରେ ରହିବା ପାଇଁ କହୁଥିଲେ, ଠିକ୍ ସେହିପରି ସ୍ତ୍ରୀଲୋକମାନଙ୍କୁ ମଧ୍ୟ ପୁରୁଷଲୋକମାନଙ୍କଠାରୁ ଦୂରେଇ ରହିବାକୁ କହୁଥିଲେ । ଜଣେ ମହିଳାଙ୍କୁ ସେ ଉପଦେଶ ଦେଇଥିଲେ, ''ପୁରୁଷଜାତିକୁ କେବେ ବିଶ୍ୱାସ କରିବ ନାହିଁ । ଏପରିକି ଯଦି ସ୍ୱୟଂ ଭଗବାନ୍ ମଧ୍ୟ ପୁରୁଷ ରୂପ ଧରି ତୁମ ସମ୍ମୁଖକୁ ଆସନ୍ତି, ତେବେ ସୁଦ୍ଧା ତାଙ୍କୁ ବିଶ୍ୱାସ କରିବ ନାହିଁ ।'' ଏହା ଗୋଟିଏ ଅସାଧାରଣ ଦୃଷ୍ଟାନ୍ତ । ଯାହାକୁ ଏହି ଉପଦେଶ ଦେଇଥିଲେ ସେ ଅଳ୍ପ ବୟସରୁ ବିଧବା, ରୂପବତୀ ଏବଂ ବିପୁଳ ସମ୍ପତ୍ତିର ଅଧିକାରିଣୀ । ଆଉ ଜଣେ ସ୍ତ୍ରୀ-ଭକ୍ତଙ୍କୁ ମଠରେ ସାଧୁମାନଙ୍କ ଆବାସସ୍ଥଳକୁ ବାରମ୍ବାର ଯିବା ଆସିବା ନିଷେଧ କରିଥିଲେ । ମା' କହିଥିଲେ, ''ଦେଖ ମା', ତୁମେମାନେ ଭଲ ମନରେ ଭକ୍ତି କରି ଯିବ କିନ୍ତୁ ଏଥିଯୋଗୁଁ

ଯଦି ସେମାନଙ୍କର ମନର ଭାବ ନଷ୍ଟ ହୁଏ, ତେବେ ତୁମେ ମଧ୍ୟ ପାପରେ ଭାଗୀ ହେବ ।''

ଶ୍ରୀମା' ଯଦିଓ ବେଶୀ ବିଦ୍ୟାଶିକ୍ଷାର ସୁଯୋଗ ପାଇ ନ ଥିଲେ, ତଥାପି ଏହି ବିଷୟରେ ଝିଅମାନଙ୍କୁ ଖୁବ୍ ଉତ୍ସାହ ଦେଉଥିଲେ । ନିଜ ଝିଆରୀ ମାକୁ ଓ ରାଧୁକୁ ସେ ଲେଖିବା ପଢ଼ିବା ଶିଖାଇଥିଲେ ଏବଂ ତାଙ୍କୁ ଧର୍ମଗ୍ରନ୍ଥ ପଢ଼ି ଶୁଣାଇବାକୁ କହୁଥିଲେ, ଚିଠିପତ୍ର ମଧ୍ୟ ଲେଖାଉଥିଲେ । ତେର ଚଉଦ ବର୍ଷ ବୟସରେ ରାଧୁ ସ୍କୁଲକୁ ଯାଉଛି ଦେଖି ଗୋଲାପ-ମା' ଆପତ୍ତି କଲେ କିନ୍ତୁ ମା' କହିଲେ ସେଥିରେ କୌଣସି କ୍ଷତି ନାହିଁ । ମା' କହୁଥିଲେ ଯେ, ରାଧୁର ଯେଉଁ ଅଞ୍ଚଳରେ ବିବାହ ହେବ ସେଠାକାର ସ୍ତ୍ରୀ-ଲୋକମାନେ ଅଶିକ୍ଷିତ; ତେଣୁ ସେଠାରେ ରାଧୁ ରହିଲେ ସମସ୍ତଙ୍କର ଉପକାର ହେବ । ନିବେଦିତା ବିଦ୍ୟାଳୟ ସହିତ ତାଙ୍କର ଖୁବ୍ ଘନିଷ୍ଠ ସମ୍ବନ୍ଧ ଥିଲା । ସେ ନିବେଦିତାଙ୍କର ଉତ୍ସାହ ଓ କର୍ମଶକ୍ତିକୁ ପ୍ରଂଶସା କରୁଥିଲେ ଏବଂ ସୁଧୀରାଦେବୀ ପ୍ରଭୃତି ନିବେଦିତାଙ୍କ ଆଦର୍ଶରେ ସ୍ୱାଧୀନଭାବରେ ନାରୀଶିକ୍ଷାରେ ବ୍ରତୀ ହୋଇଛନ୍ତି ଦେଖି ଆନନ୍ଦ ପ୍ରକାଶ କରୁଥିଲେ । ଜଣେ ସ୍ତ୍ରୀ-ଭକ୍ତଙ୍କର ପାଞ୍ଚଟି ଅବିବାହିତ ଝିଅ ଥିଲେ । ତାଙ୍କର ଦୁଶ୍ଚିନ୍ତା କଥା ଶୁଣି ମା' କହିଲେ, ''ବିବାହ ଦେବା ପାଇଁ ଏତେ ଭାବନା କାହିଁକି ? ନିବେଦିତା ସ୍କୁଲରେ ରଖିଦିଅ — ଲେଖିବା ପଢ଼ିବା ଶିଖିବେ; ଭଲରେ ରହିବେ ।'' ମା' ସିଲାଇ କାମ ଭଲ ଜାଣିଥିଲେ ଏବଂ ନିଜର ପ୍ରୟୋଜନୀୟ ଅନେକ କାମ ନିଜେ କରୁଥିଲେ । ସ୍ତ୍ରୀ-ଲୋକମାନେ ପଶମରେ ଆସନ ଇତ୍ୟାଦି ପ୍ରସ୍ତୁତ କରି ଆଣିଲେ ବହୁତ ପ୍ରଶଂସା କରୁଥିଲେ । ପ୍ରତ୍ୟେକ ବିଷୟରେ ଶ୍ରୀମା'ଙ୍କର ଗୁଣଗ୍ରାହିତା ଗୋଟିଏ ଲକ୍ଷ୍ୟ କରିବାର ବିଷୟ । କୌଣସି ଭଲ କାମ ଦେଖିଲେ ସେ ତାହା ଅନ୍ୟମାନଙ୍କୁ ଦେଖାଉଥିଲେ ଏବଂ ଶିଳ୍ପୀଙ୍କୁ ଉତ୍ସାହିତ କରୁଥିଲେ । କୋଆଲପଡ଼ାରେ ସ୍ତ୍ରୀ-ଶିକ୍ଷା ପାଇଁ ମା' ଖୁବ୍ ଆଗ୍ରହୀ ଥିଲେ, କିନ୍ତୁ ଉପଯୁକ୍ତ ଶିକ୍ଷୟିତ୍ରୀ ନ ପାଇବାରୁ ତାହା ସମ୍ଭବପର ହେଲା ନାହିଁ । ଯେଉଁ କେତେଜଣ ଥିଲେ ସେମାନେ ଖୁବ୍ ବିଳାସୀ । ମା' କହୁଥିଲେ ଯେ, ମଣିଷ କୌଣସି ଭଲ କଥା ନ ଶିଖି ପ୍ରଥମେ ବାବୁଗିରି ଶିଖନ୍ତି, ଯାହା ପଲ୍ଲୀଜୀବନ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ ।

ଶ୍ରୀମା' ବିଳାସିତା ପସନ୍ଦ କରୁ ନ ଥିଲେ । ଜଣେ ସ୍ତ୍ରୀଲୋକ ସ୍ୱାମୀଙ୍କ ଅସୁସ୍ଥତା ହେତୁ ଶ୍ରୀମା'ଙ୍କର ଆଶୀର୍ବାଦ ନେବାକୁ ଆସିଥିଲେ । ସୁନ୍ଦର ବସନ ଭୂଷଣରେ ସଜ୍ଜିତ ହୋଇ ଆସିଥିବାର ଦେଖି ମା' ତାଙ୍କୁ ଦୂରରୁ ପ୍ରମାଣ କରିବାକୁ କହିଲେ ଓ କୋମଳ କଥାଦ୍ୱାରା ପ୍ରବୋଧ ଦେଇ ବିଦାୟ ଦେଲେ । ସେ ଚାଲିଯିବାରୁ ମା' କହିଲେ, ''ଏପରି ବିପଦ ସମୟରେ ଠାକୁରଙ୍କ ପାଖକୁ ଆସିଛି, କୁଆଡ଼େ ସଂଯତ ଭାବରେ ମାନସିକ କରିବ — ତା' ନୁହେଁ, କ'ଣ ସବୁ ବାସନା (ଅତର

ଇତ୍ୟାଦି) ଲଗାଇ ଆସିଛି ଦେଖିଲ ? ଠାକୁର ଦେବତାଙ୍କ ସ୍ଥାନକୁ କ'ଣ ଏପରି ଆସିବାର କଥା ? ଆଜିକାଲି ସବୁକଥା ବିପରୀତ ।''

ମାତା-ଠାକୁରାଣୀଙ୍କର ସାଧାରଣ ଆଚାର-ବ୍ୟବହାର ଏବଂ କଥାବାର୍ତ୍ତାରେ ଏହି ସଂଯତ ଈଶ୍ୱରପରାୟଣତା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା—ତାଙ୍କର ବ୍ୟବହାର ଦେଶପ୍ରଥାନୁଯାୟୀ ହେଲେ ସୁଦ୍ଧା ସେଥିରେ ଏକ ଆଧ୍ୟାତ୍ମିକ ଭାବ ନିହିତ ଥିଲା । ଦିନେ ଗଙ୍ଗାରେ ସ୍ନାନ କରି ଘାଟର ପଣ୍ଡାକୁ ଗୋଟିଏ କଦଳୀ, ଗୋଟିଏ ଆମ୍ବ ଓ ପଇସାଟିଏ ଦେଇ ମା' କହିଲେ—''ଫଳ ମୁଁ ଦେଲି, କିନ୍ତୁ ଦାନର ଫଳ ତୁମର ।''

ମା' ସ୍ୱଭାବତଃ ପ୍ରଚଳିତ ବିଧି ଲଙ୍ଘନ କରୁ ନ ଥିଲେ । କିନ୍ତୁ ବିଶେଷ କ୍ଷେତ୍ରରେ ଯେ ତାହା କରି ନାହାନ୍ତି, ତାହା ନୁହେଁ । ଥରେ ଆହାର ପାଇଁ ଦୁଧ, ଆମ୍ବ ଓ ସନ୍ଦେଶ ଶ୍ରୀମା'ଙ୍କୁ ଦିଆହେଲା । ସେ ସବୁ ଏକତ୍ର ମିଶାଇ ଅଳ୍ପ ଖାଇଲେ ଓ ଅବଶିଷ୍ଟ ଶିଷ୍ୟମାନଙ୍କ ପାଇଁ ରଖି ହାତ ଧୋଇବାକୁ ଗଲେ । ଫେରି ଆସି ଦେଖିଲେ ଜଣେ ସ୍ତ୍ରୀ-ଭକ୍ତ ତାହା ଖାଉଛନ୍ତି ଏବଂ କହୁଛନ୍ତି, ''ସବୁ ତାଙ୍କ ପୁଅମାନେ ଖାଇବେ ଓ ଆମେମାନେ ନ ଖାଇ ନ ପିଇ ମରିବୁ ।'' ମା' ଏହା ଦେଖି ସ୍ତମ୍ଭିତ ହୋଇ କିଛି ସମୟ ଛିଡ଼ା ହୋଇ ରହିଲେ । ପରେ ରୋଷେଇ ଘରୁ ଭାତ, ଡାଲି, ତରକାରି ଆଣି ସେଥିରୁ ଅଳ୍ପ ମୁହଁରେ ଦେଇ କହିଲେ, ''ବାକିତକ ପୁଅମାନଙ୍କ ପାଇଁ ରହିଲା ।'' ପାଖରେ ବସିଥିବା ଜଣେ ମହିଳା ଭାବିଲେ, ''ବ୍ରାହ୍ମଣଘରର ବିଧବା ହୋଇ ମା' ଦୁଇଥର ଖାଇଲେ କିପରି ?'' କିନ୍ତୁ ଆପତ୍ତି ଭାଷାରେ ବ୍ୟକ୍ତ ନ କରିବାରୁ ମା' କିଛି କହିଲେ ନାହିଁ । ଅନ୍ୟ ଦିନେ ଏହାର ପୁନରାବୃତ୍ତି ହେବାରୁ ଭକ୍ତ ମହିଳା କହି ପକାଇଲେ, ''ଆଚ୍ଛା ମା', ଆପଣ ବ୍ରାହ୍ମଣ କନ୍ୟା ହୋଇ ଦୁଇଥର ଭାତ ଖାଇଲେ—ମୁହଁ ଅଇଁଠା କଲେ ?'' ମା' ଉତ୍ତର ଦେଲେ, ''ପିଲାମାନଙ୍କ କଲ୍ୟାଣ ପାଇଁ ସବୁ କରିପାରେ । ସେଥିରେ କୌଣସି ଦୋଷ ନାହିଁ । ପ୍ରସାଦ ପାଞ୍ଚଥର ଖାଇଲେ ମଧ୍ୟ କୌଣସି ଦୋଷ ହେବ ନାହିଁ । ପ୍ରସାଦ କୌଣସି ଖାଦ୍ୟର ଅନ୍ତର୍ଗତ ନୁହେଁ । ଏହିପରି ଛୋଟ ଛୋଟ ବିଷୟରେ ମନକୁ ବିଚଳିତ କରିବ ନାହିଁ; ଯଦି କର ତା'ହେଲେ ଠାକୁରଙ୍କୁ ଭୁଲିଯିବ । ଯେ ଯାହା କହୁ, ଠାକୁରଙ୍କୁ ସ୍ମରଣ କରି ଯାହା ହିତକର ମନେ କରିବ ତାହା କରିବ ।''

ଏପରି ଉଦାହରଣ ବିରଳ ନ ହେଲେ ସୁଦ୍ଧା ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଅନିନ୍ଦନୀୟ ଥିଲା । ମା' କାମାରପୁକୁରରେ ଅବସ୍ଥାନ କରୁଥିବା ସମୟରେ ଜଣେ ଭକ୍ତ ତାଙ୍କର ପାଦଚିହ୍ନ ନେବାକୁ ଚାହିଁଲେ କିନ୍ତୁ ମା' ଆପତ୍ତି କରି କହିଲେ, ''ବର୍ତ୍ତମାନ ଏଠାରେ ସୁବିଧା ହେବ ନାହିଁ । ତୁମେ ମୋତେ ଯେଉଁ ଦୃଷ୍ଟିରେ ଦେଖ, ସମସ୍ତେ ସେହିପରି ଦେଖନ୍ତି ନାହିଁ । ଲାହାବାବୁଙ୍କ ଘରୁ ବହୁତ ଲୋକ ଏଠାକୁ ଆସନ୍ତି । ପାଦରେ ଅଳତାଚିହ୍ନ ଥିଲେ, ମୋତେ ସେମାନଙ୍କଠାରୁ ଦୂରେଇ

ରହିବାକୁ ହେବ ।'' ଶ୍ରୀମା'ଙ୍କର ଶେଷ ଅସୁସ୍ଥତା ସମୟରେ ଜଣେ ସାଧୁ ତାଙ୍କୁ ଦର୍ଶନ କରିବା ପାଇଁ ଉଦ୍‌ବୋଧନକୁ ଆସିଲେ । ମା' ଖଟରେ ଶୋଇଥିଲେ । ସାଧୁ ତାଙ୍କ ଗୋଡ଼ ଆଉଁସି ଦେଲେ । ସେହି ସମୟରେ ମା'ଙ୍କ ମୁଣ୍ଡରେ ଲୁଗା ନ ଥିଲା । ସାଧୁ ଚାଲିଯିବାରୁ ମା' ସେବିକାଙ୍କୁ କହିଲେ, ''ମୋ ମୁଣ୍ଡରେ ଲୁଗା ନ ଥିଲା, ଦେଇଦେଲ ନାହିଁ କାହିଁକି ?''

ଶ୍ରୀମା' ଗଙ୍ଗାସ୍ନାନ ପାଇଁ ଯିବା ସମୟରେ ଗୋଲାପ-ମା' ତାଙ୍କୁ ତେଲ ଲଗାଇ ଯିବାକୁ ଅନୁରୋଧ କଲେ କିନ୍ତୁ ଶ୍ରୀମା' ଆପତ୍ତି କରି କହିଲେ, ''ମୁଁ ତେଲ ଲଗାଇବି ନାହିଁ; ମୁଁ ତେଲ ଲଗାଇ ଗଙ୍ଗାସ୍ନାନକୁ ଗଲେ ସମସ୍ତେ ସେପରି କରିବେ । ତେଲ ଲଗାଇ ଗଙ୍ଗା ସ୍ନାନ କରିବା ବିଧି ନାହିଁ ।'' ରାଧୁର ଅସୁସ୍ଥତା ସମୟରେ ଶ୍ରୀମା' ତା' ହାତରେ ଡେଉଁରିଆ ପିନ୍ଧାଇଦେଲେ ଏବଂ ଦେବତାଙ୍କ ଉଦ୍ଦେଶ୍ୟରେ ପଇସା ଅଲଗା କରି ରଖିଲେ । ଏହା ଦେଖି ଜଣେ ସ୍ତ୍ରୀ-ଭକ୍ତ କହିଲେ ଯେ ଶ୍ରୀମା' ଇଚ୍ଛା କଲେ ସବୁ ସମ୍ଭବ, ତେବେ ଏପରି କରିବାର ତାତ୍ପର୍ଯ୍ୟ କଅଣ ? ମା' ତାଙ୍କୁ ବୁଝାଇ କହିଲେ, ''ଅସୁସ୍ଥ ହେଲେ ଠାକୁର ଦେବତାଙ୍କ ନିକଟରେ ମାନସିକ କରିବାକୁ ହୁଏ, ଯାହାର ଯାହା ପ୍ରାପ୍ୟ ତାହାକୁ ତାହା ଦେବା ଉଚିତ ।''

ବର୍ତ୍ତମାନ ଆମେ ଶ୍ରୀମା'ଙ୍କର ସାମାଜିକ ଦୃଷ୍ଟିକୋଣ ଓ ଦେଶାତ୍ମବୋଧ ବିଷୟରେ ଆଲୋଚନା କରିବା । ଅନେକେ ହୁଏତ ଏହା ବିଶ୍ୱାସ କରିପାରିବେ ନାହିଁ । କିନ୍ତୁ ସମାଜରେ ଯେଉଁମାନେ ବାସ କରନ୍ତି ଜ୍ଞାତସାରରେ କିମ୍ବା ଅଜ୍ଞାତସାରରେ ସମାଜ ଓ ଦେଶ ସମ୍ବନ୍ଧରେ ତାଙ୍କ ମନୋରାଜ୍ୟରେ କେତେଗୁଡ଼ିଏ ଧାରଣାର ସୃଷ୍ଟି ସ୍ୱତଃ ହୋଇଥାଏ ଏବଂ ଅପ୍ରତ୍ୟାଶିତ ଭାବରେ ତାହା ନିଜକୁ ଆତ୍ମପ୍ରକାଶ କରି ସମସ୍ତଙ୍କୁ ମୁଗଧ୍ କରିଥାଏ ।

ଶ୍ରୀମା'ଙ୍କର ଜଣେ ଦୀକ୍ଷିତ ଭକ୍ତଙ୍କୁ ପୁଲିସ୍ ଅନର୍ଥକ ବହୁତ କଷ୍ଟ ଦେଉଥିଲା । ଭକ୍ତ ଅତି ନିରୀହ ଓ ଧାର୍ମିକ ପ୍ରକୃତିର ଲୋକ । ଦିନେ ସକାଳେ ଧ୍ୟାନପୂଜାଦି ଶେଷ କରି ସେ ନିଜ ଠାକୁରଘରୁ ବାହାରିବା ମାତ୍ରେ ପୁଲିସ ତାଙ୍କୁ ଧରି ନେଇଗଲା—ପାଣି ଟୋପାଏ ପିଇବାକୁ ମଧ୍ୟ ସୁଯୋଗ ଦେଇ ନ ଥିଲା । ମା' ଏହି ସମ୍ବାଦ ପାଇ ଦୁଃଖ କରି କହିଲେ, ''ଦେଖୁଛ, ଇଂରେଜମାନଙ୍କର କିପରି ବିଚାର ! ମୋର ଭଲ ପୁଅଟିଏ, ତାକୁ ମିଛଟାରେ କଷ୍ଟ ଦେଲେ । ମୁହଁରେ ଟିକିଏ ଠାକୁରଙ୍କର ପ୍ରସାଦ ମଧ୍ୟ ଦେବାକୁ ଛାଡ଼ିଲେ ନାହିଁ । ଏପରି କଲେ ଇଂରେଜମାନଙ୍କର ରାଜ୍ୟ କଅଣ ରହିବ ?''

ପ୍ରଥମ ବିଶ୍ୱଯୁଦ୍ଧ ସମୟରେ (୧୯୧୪-୧୯୧୮) ଯେତେବେଳେ ଦେଶରେ ଅତ୍ୟଧିକ ବସ୍ତ୍ରାଭାବ, ସେତେବେଳେ କୋଆଲପଡ଼ା ଆଶ୍ରମରେ ଚରଖା ଓ ତନ୍ତ ସାହାଯ୍ୟରେ ଲୁଗା ବୁଣା ହେଉଛି ଶୁଣି ଶ୍ରୀମା' ଆନନ୍ଦିତ ହୋଇଥିଲେ

ଏବଂ କର୍ମୀମାନଙ୍କୁ ଉତ୍ସାହିତ କରି କହିଥିଲେ, ''ମୋତେ ମଧ୍ୟ ଗୋଟିଏ ଚରଖା ଦିଅ, ମୁଁ ସୂତା କାଟିବି ।'' ସ୍ୱାମୀ ଜ୍ଞାନାନନ୍ଦ ଯେତେବେଳେ ଅନ୍ୟାୟଭାବରେ ପୁଲିସଦ୍ୱାରା ନଜରବନ୍ଦୀ ହୋଇ କାଟିହାରରେ ଡାକ୍ତର ଅଘୋରବାବୁଙ୍କର ଘରେ ବାସ କରୁଥିଲେ, ସେତେବେଳେ କୋଆଲପଡ଼ାରେ ମା'ଙ୍କର କଠିନ ଅସୁସ୍ଥତାର ସମ୍ବାଦ ପାଇ ସେ ସେଠାରେ ଉପସ୍ଥିତ ହେଲେ । ଡାକ୍ତର ବାବୁ ବିପଦରେ ପଡ଼ିବେ ଭାବି ସମସ୍ତେ ଜ୍ଞାନାନନ୍ଦଙ୍କୁ ଶୀଘ୍ର କାଟିହାର ଫେରିଯିବାକୁ କହିଲେ କିନ୍ତୁ ମା' ନିଜ ସନ୍ତାନକୁ ଏତେ ଶୀଘ୍ର ଛାଡ଼ିବାକୁ ନାରାଜ । ଶେଷରେ ସମସ୍ତଙ୍କ ଅନୁରୋଧରେ ରାଜି ହେଲେ ସତ କିନ୍ତୁ ଅତ୍ୟାଚାରୀ ସରକାରଙ୍କ କାର୍ଯ୍ୟକଳାପରେ ଅସନ୍ତୋଷ ପ୍ରକାଶ କରିଥିଲେ ।

୧୯୧୩ ଖ୍ରୀଷ୍ଟାବ୍ଦରେ ଦାମୋଦର ନଦୀର ପ୍ଲାବନରେ ବହୁ ଲୋକ ସର୍ବସ୍ୱାନ୍ତ ହୋଇଛନ୍ତି ଶୁଣି ଶ୍ରୀମା' କରୁଣାବିଗଳିତ ସ୍ୱରରେ ଜଣେ ଭକ୍ତଙ୍କୁ କହିଥିଲେ, ''ବାବା, ଜଗତର ହିତ କର ।'' ମା'ଙ୍କ ଆଦେଶ ପାଇ ବିରାଟରୂପୀ ଭଗବାନଙ୍କ ସେବା କରିବାକୁ ବଦ୍ଧପରିକର ଏହି ଭକ୍ତ ଶ୍ରୀମା'ଙ୍କ ନିକଟରୁ ବିଦାୟ ନେବାକୁ ଯାଇ ଶୁଣିଲେ ମା' କହୁଛନ୍ତି, ''କେବଳ ଟଙ୍କା, ଟଙ୍କା, ଟଙ୍କା !'' ଏକଥା ଶୁଣି ଭକ୍ତ ଆଶ୍ଚର୍ଯ୍ୟ ହୋଇ ଭାବିଲେ, ବୋଧହୁଏ ତାଙ୍କ ଭିତରେ ଏହି ଭାବର ଆତିଶଯ୍ୟ ଦେଖି ମା' ଏପରି କଥା କହୁଛନ୍ତି । ଶ୍ରୀମା' ତାଙ୍କର ମନୋଭାବ ବୁଝି କହିଲେ, ''ନା, ବାବା, ଟଙ୍କାର ମଧ୍ୟ ପ୍ରୟୋଜନ ଅଛି । ଦେଖୁନା, କାଳୀ (ମାମୁଁ) କିପରି କେବଳ ଟଙ୍କା ଟଙ୍କା କହୁଛି ।'' ମଠର ସାଧୁ ବ୍ରହ୍ମଚାରୀମାନଙ୍କୁ ମଧ୍ୟ ଶ୍ରୀମା' ଜନସେବା କରିବା ପାଇଁ ଉତ୍ସାହିତ କରୁଥିଲେ ।

ଥରେ କଲିକତାକୁ ଯିବା ପଥରେ ବିଷ୍ଣୁପୁରଠାରେ ସୁରେଶ୍ୱରବାବୁଙ୍କ ଘରେ ମା' କିଛି ସମୟ ବିଶ୍ରାମ ନେଇଥିଲେ । ଏହି ସମୟରେ ବ୍ରହ୍ମଚାରୀ ବରଦା ଆସି ସେଠାରେ ଉପସ୍ଥିତ ହେଲେ । ସେ ବିଷ୍ଣୁପୁରଠାରୁ ଚାଉଳ କିଣି ଜୟରାମବାଟୀ ଓ ଅନ୍ୟାନ୍ୟ ଦୁର୍ଭିକ୍ଷପୀଡ଼ିତ ଗ୍ରାମମାନଙ୍କରେ ବିତରଣ ପାଇଁ ନେଇ ଯାଉଥିଲେ । ଶ୍ରୀମା'ଙ୍କ ସହିତ ଯେଉଁସବୁ ବଳଦଗାଡ଼ି ଆସିଥିଲା, ସେଥିରେ ଚାଉଳ ଲଦା ହେବ । ରାଧୁ ଜିଦ୍ କଲା ଯେ, ବରଦା ମଧ୍ୟ ତାଙ୍କ ସହିତ କଲିକତା ଯିବେ । କିନ୍ତୁ ଶ୍ରୀମା' ବାଧା ଦେଇ କହିଲେ, ''ସେ ଏଠାରୁ ଚାଉଳ ନେଇ ଗଲେ କେତେ ଲୋକ ଗଣ୍ଡାଏ ଖାଇବାକୁ ପାଇବେ; ତା' ହାତରେ ଏତେଗୁଡ଼ିଏ ପ୍ରାଣୀଙ୍କର ଜୀବନ ରହିଛି, ସେକଥା ମନେ ଅଛି ତ ?'' ରାଧୁର ଇଚ୍ଛା ପୂର୍ଣ୍ଣ ହେଲା ନାହିଁ ।

ଶ୍ରୀମା' ନିଜେ କାମ କରିବାକୁ ଭଲ ପାଉଥିଲେ ଏବଂ ଅନ୍ୟମାନଙ୍କୁ ମଧ୍ୟ କାମ କରିବାକୁ ଉତ୍ସାହିତ କରୁଥିଲେ । ଦିନେ ଖରାବେଳେ ବ୍ରହ୍ମଚାରୀ ଗୋପେଶ ଦେଖିଲେ, ମା' ଜୟରାମବାଟୀର ନୂଆ ଘରେ ବାରଣ୍ଡାରେ ବସି ଧୀରେ ଧୀରେ ଅଟା ଚକଟୁଛନ୍ତି । ସେତେବେଳେ ସେବକ, ସେବିକା ଓ କାମ କରିବା

ଲୋକମାନଙ୍କର ଅଭାବ ନ ଥିଲା; ଅଥଚ ବୃଦ୍ଧ ବୟସରେ ଓ ଅସୁସ୍ଥ ଦେହ ନେଇ ମା'ଙ୍କର ଏତେ ପରିଶ୍ରମ କରିବାର ସାର୍ଥକତା କଅଣ ? ବ୍ରହ୍ମଚାରୀ ମନର କଥା ବ୍ୟକ୍ତ କରିବାରୁ ମା' ଉତ୍ତର ଦେଲେ, ''ବାବା, କାମ କରିବା ଭଲ ।'' ତା'ପରେ କିଛି ସମୟ ନୀରବରେ ରହି ଗମ୍ଭୀର ଭାବରେ କହିଲେ, ''ଆଶୀର୍ବାଦ କର, ଯେତେଦିନ ବଞ୍ଚିବି, ଯେପରି କାମ କରିଯାଏ ।''

ଶ୍ରୀମା'ଙ୍କର କାମର ଅନ୍ତ ନ ଥିଲା । ଜୟରାମବାଟୀରେ ଭକ୍ତମାନଙ୍କର ତତ୍ତ୍ୱାବଧାନ କରିବା, ପ୍ରତିଦିନ ସକାଳେ ଦୁଇଘଣ୍ଟା ଧରି ପରିବା କାଟିବା; ଭଣ୍ଡାରରୁ ଜିନିଷ ବାହାର କରିବା, ପୂଜାର ଆୟୋଜନ କରିବା, ପୂଜା କରିବା, ପ୍ରସାଦ ବିତରଣ କରିବା, ଦୈନିକ ଅନ୍ତତଃ ଶହେ ଖିଲିପାନ ଭାଙ୍ଗିବା, ସନ୍ଧ୍ୟାବେଳେ ଅଟା ମଇଦା ଚକଟି ରୁଟି ବା ଲୁଚି ପ୍ରସ୍ତୁତ କରିବା, ଦୁଧ ଆଉଟିବା, ଲଣ୍ଠନ ପରିଷ୍କାର କରିବା ଇତ୍ୟାଦି କାମ ସେ ନିଜେ ପ୍ରତ୍ୟହ ଆନନ୍ଦରେ କରୁଥିଲେ । ଘରେ ଅନ୍ୟ ଲୋକ ଥିଲେ ମଧ୍ୟ ସବୁ ଯେପରି ତାଙ୍କରି କାମ—କାହାରି ସାହାଯ୍ୟକୁ ସେ ଅପେକ୍ଷା କରୁ ନ ଥିଲେ । ସେ କହୁଥିଲେ, ''ଦେହ ଦିନକୁ ଦିନ ଭାଙ୍ଗିଯାଉଛି ଏବଂ କାମ ମଧ୍ୟ କ୍ରମେ ବଢୁଛି ।'' ଉଦ୍‌ବୋଧନ ଘରେ ବର୍ଷାଦିନେ ଲୁଗା ବାରଣ୍ଡାରେ ଶୁଖାଇବାକୁ ଦେଇ ସମସ୍ତେ ନିଶ୍ଚିନ୍ତ ମନରେ ନିଜ ନିଜ ଘରେ ବସିଛନ୍ତି; ଏଣେ ହଠାତ୍ ବର୍ଷା ଆସିବାରୁ ଲୁଗା ଓଦା ହୋଇଗଲା । ଶ୍ରୀମା'ଙ୍କ ଗୋଡ଼ରେ ବାତ ଥିବା ସତ୍ତ୍ୱେ ସେ ଓଦା ବାରଣ୍ଡାରୁ ଲୁଗା ଉଠାଇ ଆଣି ଚିପୁଡ଼ି ଦକ୍ଷିଣ ଘରେ ଯତ୍ନ ସହକାରେ ଶୁଖାଇଦେଲେ । କେହି ଯଦି ଅନୁଯୋଗ କରେ ବା ବାତକଥା କହେ ତେବେ ମା' କହୁଥିଲେ, ''ନା, ବାବା, ଏଇ ଅଳ୍ପ ଟିକିଏ କାମ, ଏଥିରେ କଅଣ ଅଛି ।'' ମଠର କେତେଜଣ ସାଧୁ ତପସ୍ୟା କରିବାକୁ ଯିବେ ଶୁଣି କିଶୋରୀ ମହାରାଜ ମା'ଙ୍କୁ କହିଲେ, ''ଏହି କର୍ମ ଭିତରେ ସର୍ବଦା ରହିବାକୁ ଭଲ ଲାଗୁନାହିଁ ? ମୁଁ ମଧ୍ୟ ତପସ୍ୟା କରିବାକୁ ଯିବି, ମୋତେ ଅନୁମତି ଦିଅନ୍ତୁ ।'' କିନ୍ତୁ ମା' ଏକଥା ଶୁଣି କହିଲେ, ''ସେ କି କଥା ! ମୋ କାମ କରୁଛ, ଠାକୁରଙ୍କ କାମ କରୁଛ, ଏହା କଅଣ ତପସ୍ୟାଠାରୁ କମ୍ ? ଅନର୍ଥକ ବାହାରକୁ ଯାଇ କଅଣ ହେବ ?''

କାଶୀଧାମରେ ସ୍ୱାମୀ ଶାନ୍ତାନନ୍ଦଜୀଙ୍କୁ ମା' ଉପଦେଶ ଦେଇଥିଲେ, ''ଠାକୁରଙ୍କ କାମ କରିବ ଏବଂ ସାଧନ ଭଜନ କରିବ; ଅଳ୍ପ କିଛି କାମ କଲେ ମନରେ ବାଜେ ଚିନ୍ତା ଆସିବ ନାହିଁ । ଏକାକୀ ବସି ରହିଲେ ଅନେକ ପ୍ରକାର ଚିନ୍ତା ଆସିପାରେ ।'' ଯାହା ହେଉ, କୌଣସି କୌଣସି କ୍ଷେତ୍ରରେ ମା' ତପସ୍ୟା କରିବାକୁ ଅନୁମତି ମଧ୍ୟ ଦେଉଥିଲେ ।

ଅତି ସାମାନ୍ୟ ବିଷୟରେ ମଧ୍ୟ ଶ୍ରୀମା'ଙ୍କର ତୀକ୍ଷ୍ଣ ଦୃଷ୍ଟି ରହୁଥିଲା । ସେ ବିଶୃଙ୍ଖଳା ସହିପାରୁ ନ ଥିଲେ । ଦିନେ ଜୟରାମବାଟୀରେ ଗୃହକର୍ମରେ

ନିଯୁକ୍ତ ଜଣେ ସ୍ତ୍ରୀଲୋକ ଘର ଓଳେଇ ଝାଡୁ କୋଣକୁ ଫୋପାଡ଼ି ଦେବାରୁ ଶ୍ରୀମା' କହିଲେ, ''ଝାଡୁକୁ ମଧ୍ୟ ସମ୍ମାନ ଦେବା ଉଚିତ; କାମ ଛୋଟ ହେଲେ ସୁଦ୍ଧା ଶ୍ରଦ୍ଧା ସହକାରେ କରିବା କଥା, ଛୋଟ ଜିନିଷ ବୋଲି ତୁଚ୍ଛ ଭାବିବା ଉଚିତ ନୁହେଁ ।''

ଅଯଥା ଜିନିଷ ନଷ୍ଟ କରିବା ମା' ପସନ୍ଦ କରୁ ନ ଥିଲେ । ଦିନେ ବଳରାମବାବୁଙ୍କ ଘରୁ ଜଣେ ଟୋକେଇରେ ଆତ (ଫଳ) ଆଣି ଉଦ୍‌ବୋଧନର ଠାକୁରଘରେ ରଖିଲା ଏବଂ ପଚାରିଲା—ଟୋକେଇଟା କ'ଣ ହବ ? ତଳେ ଯେଉଁମାନେ ଥିଲେ ସେମାନେ କହିଲେ—''ତା' ଆଉ କ'ଣ ହେବ ? ରାସ୍ତାରେ ଫୋପାଡ଼ି ଦିଅ ।'' ମା' ଉପରୁ ଏକଥା ଶୁଣି ରାସ୍ତା ଉପରର ବାରଣ୍ଡାକୁ ଆସି ଦେଖିଲେ ଟୋକେଇଟା ସୁନ୍ଦର ଏବଂ ବ୍ୟବହାର ଯୋଗ୍ୟ; ସୁତରାଂ ଯେଉଁମାନେ ଫୋପାଡ଼ିବାକୁ କହିଥିଲେ ସେମାନଙ୍କୁ ନିନ୍ଦା କରି ଟୋକେଇ ଉପରକୁ ଅଣାଇଲେ ।

ରାମମୟ ପ୍ରତି ଶନିବାର ଦିନ ବଦନଗଞ୍ଜରୁ ଜୟରାମବାଟୀକୁ ଆସନ୍ତି । କୌଣସି ଭଲ ଖାଇବାର ଜିନିଷ ଥିଲେ ମା' ତାଙ୍କ ପାଇଁ ଅଲଗା ରଖିଦିଅନ୍ତି । ଥରେ ଶନିବାର ଦିନ ଜଣେ ଭକ୍ତ ମହିଳା ଭଲ ଖେଚୁଡ଼ି ରାନ୍ଧିଥିଲେ । ରାମମୟ ଆସିବାରୁ ମା' ତାଙ୍କୁ ପ୍ରଚୁର ପରିମାଣରେ ଖେଚୁଡ଼ି ଖାଇବାକୁ ଦେଲେ । ରାମମୟ ସବୁ ନ ଖାଇପାରି ବଳକା ଖେଚୁଡ଼ି ଫୋପାଡ଼ି ଦେବାକୁ ଉଠିଲେ; ମା' କିନ୍ତୁ ଏପରି କରିବାକୁ ନିଷେଧ କଲେ ଏବଂ ଗୋଟିଏ ନିମ୍ନ ଜାତୀୟ ଝିଅକୁ ଡାକି ତାହା ଦେବାକୁ କହିଲେ । ଝିଅଟି ଆସି ଅତି ଆନନ୍ଦରେ ତାହା ନେଇଯିବାରୁ ମା' କହିଲେ, ''ଯାହାର ଯାହା ପ୍ରାପ୍ୟ ତାହାକୁ ତାହା ଦେବା ଉଚିତ । ଯାହା ମଣିଷଙ୍କର ଖାଦ୍ୟ, ତାହା ଗାଈକୁ ଦେବା ଉଚିତ ନୁହେଁ; ଯାହା ଗାଈ ଖାଇବ, ତାହା କୁକୁରକୁ ଦେବା ଉଚିତ ନୁହେଁ; ଗାଈ କିମ୍ବା କୁକୁର ନ ଖାଇପାରିଲେ ତାହା ପୋଖରୀରେ ପକାଇଦେଲେ ମାଛ ଖାଇବ । କୌଣସି ଖାଇବା ଜିନିଷ ନଷ୍ଟ କରିବା ଉଚିତ ନୁହେଁ ।'' ମା' କୌଣସି ଜିନିଷ ନଷ୍ଟ ହେବାକୁ ଦେଉ ନ ଥିଲେ । ଫଳ କିମ୍ବା ପନିପରିବାର ଚୋପା ଗାଈମାନଙ୍କ ପାଇଁ ମା' ଅଲଗା କରି ରଖୁଥିଲେ ।

ଗତାନୁଗତିକ ଧାରାରେ ଚଳିବାରେ ଅଭ୍ୟସ୍ତ ମାନବ ସମାଜରେ ଏପରି କେତେଗୁଡ଼ିଏ ଘଟଣା ଘଟେ, ଯାହାର ସମାଧାନ ସମାଜ କେବଳ ଅବଜ୍ଞା ଦ୍ୱାରା କରିବାକୁ ଚାହେଁ କିନ୍ତୁ ମହାମାନବମାନଙ୍କର ଚିନ୍ତାଧାରା ସମ୍ପୂର୍ଣ୍ଣ ଭିନ୍ନ—ଯାହା ସାହାଯ୍ୟରେ ସମାଜ ନୂତନ ପଥର ସନ୍ଧାନ ପାଇଥାଏ । ଉଦ୍‌ବୋଧନ ନିକଟରେ ଜଣେ ଲୋକ ରହୁଥିଲା । ତା'ର ଉପପତ୍ନୀର କଠିନ ପୀଡ଼ା ହେବାରୁ ସେ ତାକୁ ପ୍ରାଣପଣେ ସେବା କରିଥିଲା । ଗୁଣଗ୍ରାହିଣୀ ମା' ଏହା ଦେଖି ଖୁବ୍ ପ୍ରଂଶସା କରି କହିଥିଲେ, ''କିପରି ସେବା କରୁଛି ମା' ! ଏପରି ମୁଁ କେବେ ଦେଖି ନାହିଁ । ଏହା ହିଁ ପ୍ରକୃତ ସେବା, ଏହା ହିଁ ପ୍ରକୃତ ଭଲପାଇବା ।'' ମା' ଯାହାଙ୍କୁ ଏହି କଥା

କହିଲେ, ସେ ସେତେବେଳେ ଏହି ଉଦାରଭାବ ଗ୍ରହଣ କରିବାରେ ସମର୍ଥ ହୋଇ ନ ଥିଲେ, ଯଦିଓ ମୁହଁ ଫିଟାଇ କିଛି କହିଲେ ନାହିଁ ।

ଆମେ ଏପର୍ଯ୍ୟନ୍ତ ଶ୍ରୀମା'ଙ୍କୁ ଗମ୍ଭୀର ପରିବେଶ ଭିତରେ ଦେଖିଆସିଛୁ । କିନ୍ତୁ କେହି ଯେପରି ମନେ ନ କରନ୍ତି ଯେ, ଶ୍ରୀମା'ଙ୍କର ବାଳିକା-ସୁଲଭ ସରଳତା ବା ନାରୀଜନୋଚିତ ରସିକତା ନ ଥିଲା । ପ୍ରକୃତପକ୍ଷରେ ତାଙ୍କର ସରଳ ଓ ସରସ ବ୍ୟବହାର ଅନେକ କ୍ଷେତ୍ରରେ ତାଙ୍କର ଗାରିମାକୁ ସାମୟିକ ଭାବରେ ଗୋପନ କରି ତାଙ୍କୁ ସାଧାରଣ ସ୍ତ୍ରୀ-ପୁରୁଷଙ୍କ ସହିତ ସମାନ କରି ଏକ ପରମ ଆତ୍ମୀୟତାସୂତ୍ରରେ ଆବଦ୍ଧ କରୁଥିଲା । ଯେଉଁ ସ୍ଥଳରେ ଲୋକେ ଅତ୍ୟଧିକ ବୁଦ୍ଧିମତ୍ତା ଦେଖାଇ ନିଜର ଅକ୍ଷମତା ଲୁଚାଇ ରଖିବାକୁ ଚେଷ୍ଟା କରନ୍ତି, ମା' ସେପରି ସ୍ଥଳରେ ନିଜର ଅପାରଗତା ସରଳଭାବରେ ସ୍ୱୀକାର କରୁଥିଲେ ଏବଂ ଅନ୍ୟମାନଙ୍କ ନିକଟରେ ସ୍ୱେଚ୍ଛାରେ ନିଜକୁ ହାସ୍ୟାସ୍ପଦ କରି ନିଜେ ମଧ୍ୟ ସେହି ହାସ୍ୟରସରେ ଯୋଗ ଦେଉଥିଲେ ।

କଲିକତାକୁ ପ୍ରଥମ ଆଗମନ ସମୟରେ ଦିନେ ସ୍ନାନାଗାରରେ ପ୍ରବେଶ କରି କଳ (ପାଇପ୍) ଖୋଲିବାରୁ ଫସ୍ ଫସ୍ ଶବ୍ଦ ହେବାକୁ ଲାଗିଲା । ଶ୍ରୀମା' ଖୁବ୍ ଡରିଗଲେ ଏବଂ ତତ୍‌କ୍ଷଣାତ୍ ବାହାରି ଆସି କହିବାକୁ ଲାଗିଲେ ଯେ କଳରେ ସାପ ପଶିଛି । ଏହା ଶୁଣି ସମସ୍ତେ ହସିବାକୁ ଲାଗିଲେ, କାରଣ ସହରର ଲୋକେ ଜାଣନ୍ତି ଯେ, କଳରୁ କିଛି ସମୟ ପାଣି ବନ୍ଦ ରହିବା ପରେ ଯେତେବେଳେ ପୁନର୍ବାର ପାଣି ଆସେ ସେତେବେଳେ କଳ ଭିତରେ ଥିବା ବାୟୁ ସବେଗରେ ବାହାରୁଥିବାରୁ ଏପରି ଶବ୍ଦ ହୁଏ । ଶ୍ରୀମା' କିନ୍ତୁ ସେମାନଙ୍କ ହସରେ ଅପ୍ରସ୍ତୁତ ନ ହୋଇ ବରଂ ତାହା ଉପଭୋଗ କରିଥିଲେ ଏବଂ ପରେ ମଧ୍ୟ ଏକଥା ଭକ୍ତମାନଙ୍କୁ କହି ପିଲାଙ୍କ ପରି ଆମୋଦ କରୁଥିଲେ ।

ଜୟରାମବାଟୀରେ ଶ୍ରୀମା' ଲଣ୍ଠନର କାଚ ଚାରିପଟେ ତାର ବାନ୍ଧି ରଖିଥିଲେ । ଲଣ୍ଠନଟିକୁ ମା' ଯତ୍ନରେ ରଖୁଥିଲେ ବୋଲି ତାହା ଦୀର୍ଘସ୍ଥାୟୀ ହୋଇଥିଲା । ମା' କିନ୍ତୁ କାଚ ଖୋଲି ପରିଷ୍କାର କରିପାରୁ ନ ଥିଲେ, କହୁଥିଲେ, ''ସେଥିରେ ଅନେକ କଳକବ୍‌ଜା ଅଛି, ମୁଁ ତାହା ଖୋଲିପାରିବି ନାହିଁ ।'' କଲିକତାର ଜଣେ ମହିଳାଙ୍କୁ ପ୍ରଶଂସା କରି ମା' କହିଲେ, ''ଅମୁକର ସ୍ତ୍ରୀ ଘଣ୍ଟାରେ ଚାବି ଦେଇପାରେ ।'' ଶ୍ରୀଶ୍ରୀଠାକୁର ଗଣିତକୁ ଗୋଲକଧନ୍ଦା ଭାବୁଥିଲେ ଏବଂ ଶ୍ରୀଶ୍ରୀମା' ମଧ୍ୟ କଳକବ୍‌ଜା କଥା ବୁଝିପାରୁ ନ ଥିଲେ । ଯୁଗପ୍ରବର୍ତ୍ତନ ପାଇଁ ଅବତୀର୍ଣ୍ଣ ଏହି ଦୁଇ ଆତ୍ମାଙ୍କର ଏହି ଦୃଷ୍ଟିଭଙ୍ଗୀ ବିଶେଷ ପ୍ରଣିଧାନଯୋଗ୍ୟ ।

ଝିଆରୀ ରାଧୁ ଦିନେ ମା'ଙ୍କ ନିକଟରେ ଅଭିଯୋଗ କଲା ଯେ, ତା'ର ସ୍ୱାମୀ ମନ୍ମଥ ତାଙ୍କୁ ମାରିଛି । ମା' କାରଣ ପଚାରିବାରୁ ସେ କହିଲା ଯେ, ସେ ମନ୍ମଥକୁ ଗାମୁଛାଦ୍ୱାରା ଆଘାତ କରିଥିଲା । ମା'ଙ୍କ କଥାବାର୍ତ୍ତାରୁ ମନେ ହେଲା,

ସେ ମନ୍ମଥ ଉପରେ ରୁଷ୍ଟ ହୋଇଛନ୍ତି ଏବଂ ତାକୁ ଦୋଷୀ ମନେ କରୁଛନ୍ତି । କିନ୍ତୁ ସେଠାରେ ଉପସ୍ଥିତ ଜଣେ ମହିଳା ଯେତେବେଳେ କହିଲେ ଯେ, ରାଧୁ ପ୍ରଥମେ ଆଘାତ କରିବାରୁ ମନ୍ମଥ ପକ୍ଷରେ ମାରିବା ଅସ୍ୱାଭାବିକ ନୁହେଁ, ସେତେବେଳେ ମା' ଆଶ୍ଚର୍ଯ୍ୟ ହୋଇ କହିଲେ, ''ଏପରି କଥା ବୋହୂ ? ତୁମମାନଙ୍କ ଘରେ ଏପରି କଅଣ ଘଟିଥାଏ ? ଠାକୁରଙ୍କ ସହିତ ତ ମୋର ଏପରି କେବେ ହୋଇନାହିଁ— ଏସବୁ କଥା ମୁଁ ଜାଣେ ନାହିଁ ।'' ପରେ ରାଧୁକୁ ଲକ୍ଷ୍ୟ କରି କହିଲେ, ''ଶୁଣ, ତା'ହେଲେ ତୋର ଦୋଷ — ବୋହୂ କହୁଛି ।''

ଅନେକ କ୍ଷେତ୍ରରେ ମା' ଇଚ୍ଛାପୂର୍ବକ ଅନ୍ୟମାନଙ୍କ ସହିତ ପିଲାଙ୍କପରି ଜିଦ୍ କରୁଥିଲେ । ବହୁ ସେବକ ଥିବା ସତ୍ତ୍ୱେ ମା' ଗୋଟିଏ ପିଲାକୁ କହିଲେ, ''ଚାରିଟା ଫୁଲ ତୋଳିଦେ ବାବା — ସୁନା ପିଲାଟି ମୋର ।'' ପିଲା ତୋଳିଲା ନାହିଁ କି ମା' ମଧ୍ୟ ତାକୁ ଛାଡ଼ିଲେ ନାହିଁ । ଶେଷ ପର୍ଯ୍ୟନ୍ତ ତାହାରି ଦ୍ୱାରା ଫୁଲ ତୋଳାଇଲେ । ସେବିକାମାନେ ଥିବା ସତ୍ତ୍ୱେ ଦିନେ ମା' ଗାଁର ଜଣେ ବୁଢ଼ୀକୁ କହିଲେ, ''ଦେ ମା, ଗୋଡ଼ରେ ଟିକିଏ ହାତ ବୁଲାଇ ଦେ, ଆଜି ଗୋଡ଼ଟା ଭାରୀ ବିନ୍ଧୁଛି ।'' ବୁଢ଼ୀ କିନ୍ତୁ ରାଜି ହେଲା ନାହିଁ, କହିଲା — ସାରାଦିନ ସେ କାମ କରି କରି କ୍ଳାନ୍ତ, ତା'ର ବିଶ୍ରାମର ପ୍ରୟୋଜନ । ମା' କିନ୍ତୁ ଛାଡ଼ିଲେ ନାହିଁ, କହିଲେ, ''ଦେ ନା, ଟିକିଏ ହାତ ବୁଲାଇ ଦେ; କ'ଣ ଆଉ କରିବୁ !'' ଶେଷରେ ମା' ଜୟୀ ହେଲେ ।

ରାମମୟ ସେତେବେଳେ ବଦନଗଞ୍ଜ ସ୍କୁଲରେ ପଢ଼ନ୍ତି ଏବଂ ଶନିବାର ଦିନ ସ୍କୁଲ ପରେ ଜୟରାମବାଟୀକୁ ଆସି ମା'ଙ୍କ ଘରେ କାମଦାମ କରନ୍ତି ଓ ସୋମବାର ଦିନ ଫେରି ଯାଆନ୍ତି । ଶ୍ରୀମା' ତାଙ୍କୁ ଦୀକ୍ଷା ଦେଇଥିଲେ ଏବଂ ଖୁବ୍ ସ୍ନେହ କରୁଥିଲେ । ଦିନେ ଅନେକ ଭକ୍ତ ଆସିଥାଆନ୍ତି । ମା' ଏବଂ ରାମମୟ ରୁଟି ବେଲୁଥିଲେ ଏବଂ ନଳିନୀଦେବୀ ସେକୁଥିଲେ । ରାମମୟ ଖୁବ୍ କ୍ଷିପ୍ରହସ୍ତ, ଏକା ସାଙ୍ଗରେ ତିନୋଟି ରୁଟି ବେଲିପାରନ୍ତି । ରୁଟିବେଲା ଚାଲିଛି, ହଠାତ୍ ନଳିନୀଦେବୀ କହି ପକାଇଲେ, ''ନାନୀ, ତୁମ ଅପେକ୍ଷା ରାମମୟ ରୁଟି ଭଲ ଫୁଲିଛି ।'' ମା' ଛୋଟ ଝିଅଟିପରି ଅଭିମାନ କରି ବେଲଣା ଦୂରେଇ ଦେଇ କହିଲେ, ''ତା' ହେଲେ ମୁଁ ଆଉ ବେଲିବି ନାହିଁ, ସେ ବେଲୁ । ମୁଁ ରୁଟି ବେଲି ବେଲି ବୁଢ଼ୀ ହୋଇଗଲି ! ସେ ଦୁଧଖିଆ ପିଲା, ଗାଲ ଚିପିଲେ ଦୁଧ ବାହାରିବ, ସେ ମୋଠାରୁ ଭଲ ବେଲୁଛି !'' ରାମମୟ ମଧ୍ୟ ବେଲଣାପେଡ଼ି ଘୁଞ୍ଚାଇ ଦେଇ କହିଲେ, ''ମା', ଆପଣ ନ ବେଲିଲେ ମୁଁ ମଧ୍ୟ ବେଲିବି ନାହିଁ'' ଏବଂ ନଳିନୀଦେବୀଙ୍କୁ କହିଲେ, ''ଆପଣ କିପରି ବୁଝିଲେ କେଉଁଟା ମୋର ଏବଂ କେଉଁଟା ମା'ଙ୍କର ?'' ଯାହା ହେଉ, ମା' ପୁଣି ବେଲିବାକୁ ବସିଲେ ।

ମା'ଙ୍କ ଜୀବନରେ ରଙ୍ଗପରିହାସର ମଧ୍ୟ ଅଭାବ ନ ଥିଲା । ଦିନେ ନିବେଦିତା ଓ କ୍ରିଷ୍ଟୀନ୍ ଆସିଥିଲେ । ନିବେଦିତା ଅଳ୍ପ ବଙ୍ଗଳା ଶିଖିଥିଲେ ଏବଂ ତାହାରି ସାହାଯ୍ୟରେ କହିଲେ, ''ମାତୃଦେବୀ, ଆପଣ ହେଉଛନ୍ତି ଆମମାନଙ୍କର କାଳୀ ।'' କ୍ରିଷ୍ଟୀନ୍ ମଧ୍ୟ ଇଂରାଜୀରେ ସେହି କଥା କହିଲେ । ମା' ଏକଥା ଶୁଣି ହସି ହସି କହିଲେ, ''ନା, ବାବା ! ମୁଁ କାଳୀଫାଳୀ ହୋଇପାରିବି ନାହିଁ । ତା'ହେଲେ ଜିଭ ବାହାର କରି ରହିବାକୁ ହେବ ।'' ଏକଥା ନିବେଦିତାଙ୍କୁ ବୁଝାଇ ଦେବାରୁ ସେ କହିଲେ, ''ମା'ଙ୍କୁ ଏତେ କଷ୍ଟ କରିବାକୁ ହେବ ନାହିଁ । ଆମେ ତାଙ୍କୁ ଜନନୀରୂପେ ଦେଖିବୁ । ଶ୍ରୀରାମକୃଷ୍ଣ ଆମମାନଙ୍କର ଶିବ ।'' ଶ୍ରୀମା'ଙ୍କୁ ସେକଥା ବୁଝାଇ ଦେବାରୁ ସେ କହିଲେ, ''ତା'ହେଲେ ମୁଁ ଚିନ୍ତା କରି ଦେଖିବି ।''

ଜୟରାମବାଟୀରେ ମା'ଙ୍କର ଜ୍ୱର ହୋଇଛି । ସାଗୁ ଖାଉ ଖାଉ ଭକ୍ତ ସନ୍ତାନମାନଙ୍କୁ ଲକ୍ଷ୍ୟ କରି କହିଲେ, ''କିହେ ଆଜି ଆଉ ପ୍ରସାଦରେ ଭକ୍ତି ନାହିଁ ?'' ଆଉ ଗୋଟିଏ ଦିନର କଥା । ପ୍ରସନ୍ନମାମୁଁଙ୍କ ଘରେ ମା' ବସିଛନ୍ତି । ପ୍ରକାଶ ମହାରାଜ ପଦ୍ମଫୁଲ ଦେଇ ଚରଣ-ବନ୍ଦନା କରି କହିଲେ, ''ମାଆ ମୋତେ ଆଉ ବୁଲେଇବେ ନାହିଁ ।'' ଶ୍ରୀମା' ଉତ୍ତର ଦେଲେ, ''ମୋତେ ଛାଡ଼ି ଏତେ ଦିନ ବୁଲିଲ, ମୁଁ ଟିକିଏ ବୁଲେଇବି ନାହିଁ ?''

ଶ୍ରୀମା' ନିଜେ ହାସ୍ୟରସରେ ଯୋଗ ଦେଉଥିଲେ କିନ୍ତୁ ଯେତେବେଳେ କେହି ମୂର୍ଖତା ଯୋଗୁଁ ଅନ୍ୟକୁ ଉପହାସ କରନ୍ତି, ସେତେବେଳେ ମା' ଅଯଥା ତାହାକୁ ବିଦ୍ରୂପ ନ କରି ବରଂ ସହାନୁଭୂତି ଦେଖାଉଥିଲେ । ଶେଷଥର ମାଆ ଯେତେବେଳେ ଜୟରାମବାଟୀରେ ଥିଲେ ସେତେବେଳେ ରାଞ୍ଚିର ଭକ୍ତମାନେ ଅନେକ ଫଳମୂଳ ଆଣିଥିଲେ । ଶ୍ରୀମା'ଙ୍କର ଜଣେ ଦୂରସମ୍ପର୍କୀୟ, ବିଧବା ଭଗିନୀ ଭାବିନୀଦେବୀ ସେତେବେଳେ ସେଠାରେ ଉପସ୍ଥିତ ଥିଲେ । ତାଙ୍କ ବୃଦ୍ଧ ମାତା ସେତେବେଳେ ଅସୁସ୍ଥ; ସେଥିପାଇଁ ଶ୍ରୀମା' ବୁଢ଼ୀଙ୍କ ପାଇଁ ଦୁଇଟି ବେଦନା ତାଙ୍କ ହାତରେ ଦେଇଥିଲେ । ରାଞ୍ଚିର ଭକ୍ତମାନେ ଫଳ ଦେଉଥିବାର ଦେଖି, ତାଙ୍କର ଲୋଭ ହେଲା । ସେ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, ''ଆହା, ପରମହଂସଦେବଙ୍କ ସହିତ ପ୍ରଥମେ ମୋର ବିବାହ ହେବାର କଥା ଥିଲା । ମୋ ପିତା ତାଙ୍କୁ ପାଗଳ ଭାବି ତାଙ୍କ ସହିତ ମୋର ବିବାହ ଦେଲେ ନାହିଁ । ବିବାହ ହୋଇଥିଲେ ଏହିସବୁ ଜିନିଷ ମୋ ଘରକୁ ଆସିଥାଆନ୍ତା ।'' ଏକଥା ଶୁଣି ସମସ୍ତେ ହସି ଉଠିଲେ । ଶ୍ରୀମା'ଙ୍କ ମୁହଁରେ ହସ ଫୁଟିଉଠିଥିଲା କିନ୍ତୁ ତାହା ବିଦ୍ରୂପର ନୁହେଁ ବରଂ ସହାନୁଭୂତିର । ସେ ଭାବିନୀଦେବୀଙ୍କୁ କହିଲେ, ''ନେ ତୋର ଆଉ କଅଣ ଦରକାର ।'' ମାଆ ସେବକଙ୍କୁ କହିଲେ, ''ଠାକୁରଙ୍କ ପାଇଁ ଫଳ ଅଲଗା କରି ରଖି ବାକି ଯାହା ରହିବ ତାହା ଭାବିନୀଙ୍କୁ ଦେଇଦିଅ ।'' ପରେ ମାଉସୀଙ୍କୁ ସହାନୁଭୂତି ସହକାରେ କହିଲେ, ''ଅମୃତଭଣ୍ଡା ଭାରୀ ଥଣ୍ଡା, ତୋ ମା'ଙ୍କୁ ତାହା ଦେବୁ ନାହିଁ ।''

ଅର୍ଥ ଓ ଅଳଙ୍କାରାଦି ବିଷୟରେ ତାଙ୍କର ଦୃଷ୍ଟିଭଙ୍ଗୀ ଶ୍ରୀରାମକୃଷ୍ଣଙ୍କଠାରୁ ଭିନ୍ନ । କାଞ୍ଚନକୁ ମା' ମୁଣ୍ଡରେ ଲଗାଉଥିଲେ । ଏହି ପାର୍ଥକ୍ୟ ବିଷୟରେ ତାଙ୍କୁ ସ୍ମରଣ କରାଇଦେବାରୁ ସେ ଅକପଟ ଅଥଚ ଅତି ଅର୍ଥପୂର୍ଣ୍ଣ ଭାଷାରେ କହିଥିଲେ, "ଠାକୁର ଆଉ ମୁଁ ! ବାବା, ମୁଁ ଯେ ସ୍ତ୍ରୀଲୋକ ! ଠାକୁର ଯେ ମୋତେ ସୁନାର ଗହଣା ପିନ୍ଧାଇ ଦେଇଥିଲେ !" ଅର୍ଥାଦି ପ୍ରତି ତାଙ୍କର ଶ୍ରଦ୍ଧା ଥିଲା, ଯେହେତୁ ତାହା ଲକ୍ଷ୍ମୀଙ୍କର ପ୍ରତୀକ । କିନ୍ତୁ ସେଥିରେ ତାଙ୍କର କୌଣସି ଆସକ୍ତି ନ ଥିଲା । ଦିନେ ଜୟରାମବାଟୀକୁ ଯିବା ପୂର୍ବରୁ ମା' ସେବକଙ୍କ ହାତରେ ଗୋଟିଏ ଦଶଟଙ୍କାର ନୋଟ ଦେଇ ଗାଁଆର ଏକ ଗରିବ ସ୍ତ୍ରୀଲୋକ ପାଇଁ ଖଣ୍ଡେ ଶାଢ଼ୀ କିଣି ଆଣିବାକୁ କହିଲେ । ସେବକ ଅଢ଼େଇ ଟଙ୍କା ମୂଲ୍ୟରେ ତାହା କିଣି ବାକି ଟଙ୍କା ମା'ଙ୍କୁ ଦେବାରୁ ମା' କହିଲେ ଯେ, ଯେହେତୁ ସେ ପାଞ୍ଚ ଟଙ୍କାର ନୋଟ ଦେଇଥିଲେ, ଅତଏବ ଏତେ ଟଙ୍କା ଫେରସ୍ତ ନେବେ ନାହିଁ । ସେବକ ଜାଣିବାକୁ ଚାହିଁଲେ ପେଟରାରେ କେତୋଟି ଦଶଟଙ୍କିଆ ଓ କେତୋଟି ପାଞ୍ଚଟଙ୍କିଆ ନୋଟ ଥିଲା । କିନ୍ତୁ ମା'ଙ୍କର ତାହା ମନେ ନ ଥିଲା । ପୁନର୍ବାର ସେବକ ପଚାରିଲେ ଯେ, ମୋଟ କେତେ ଟଙ୍କା ଥିଲା ତାହା ମା'ଙ୍କର ମନେ ଅଛି କି ନାହିଁ । କିନ୍ତୁ ମା' ତାହା ମଧ୍ୟ ଜାଣି ନ ଥିଲେ । ତେଣୁ ସେବକ କହିଲେ, "ତେବେ ଚିନ୍ତା କରି ଦେଖନ୍ତୁ । ମୁଁ ଆପଣଙ୍କୁ ବେଶୀ କାହିଁକି ଦେବି ? ଆଉ ବେଶୀ ଟଙ୍କା ପାଇବି ମଧ କେଉଁଠାରୁ ?" ଏ କଥା କହିବାରୁ ମା' ଟଙ୍କା ଫେରସ୍ତ ନେଲେ ।

ମା'ଙ୍କର ଅର୍ଥପ୍ରତି ଏହି ଅନାସକ୍ତି ଜନ୍ମଗତ । ଠାକୁର ଦକ୍ଷିଣେଶ୍ୱରରେ ଥାଆନ୍ତି । ତାଙ୍କର ତିରୋଧାନ ପରେ ଶ୍ରୀମା'ଙ୍କର ଭରଣପୋଷଣ ପାଇଁ ଗୋଟିଏ ବ୍ୟବସ୍ଥା ରହିବା ଉଚିତ ଭାବି ଠାକୁର ତାଙ୍କୁ ଦୁଇଶହ ଟଙ୍କା ଦେଇଥିଲେ । ମା' ଏହି ଟଙ୍କା ନେଇ ପୁଟୁଳି ବାନ୍ଧି ମସଲା ହାଣ୍ଡିରେ ରଖିଦେଲେ । ଠାକୁର ଏହା ଜାଣିପାରି ମା'ଙ୍କୁ ସାବଧାନ କରାଇ ଦେଲେ— "ଟଙ୍କା ଏହି ଭାବରେ ରଖିବା ଉଚିତ ନୁହେଁ ।" ଏ କଥା ଜଣେ ସେବକଙ୍କୁ କହି ମା' ସହଜ ଭାବରେ କହିଥିଲେ, "ଏବେ ଦେଖ, ତାଙ୍କ ଇଚ୍ଛାରୁ କେତେ ଟଙ୍କା ଆସୁଛି ଯାଉଛି !" ଅର୍ଥର ଏପରି ଯିବା ଆସିବାକୁ ଶ୍ରୀମା' ସାକ୍ଷୀରୂପେ ଦେଖୁଥିଲେ । ପ୍ରଥମ ଅବସ୍ଥାରେ ସେ ଭକ୍ତମାନଙ୍କର ପ୍ରଣାମୀ ଟଙ୍କା ସ୍ପର୍ଶ ମଧ କରୁ ନ ଥିଲେ; ଗୋଲାପ-ମା' ଇତ୍ୟାଦି ଯେଉଁମାନେ ତାଙ୍କ ସହିତ ରହୁଥିଲେ, ସେମାନେ ତା'ର ହିସାବ ରଖୁଥିଲେ । ପରେ ବିଧିର ବିଧାନ ଅନୁଯାୟୀ ରାଧୁକୁ ଆଶ୍ରୟ କରି ଯେତେବେଳେ ମା'ଙ୍କ ମନ ଲୋକକଲ୍ୟାଣ ପାଇଁ ଜାଗତିକ ଭୂମିକୁ ଅବତରଣ କଲା ଏବଂ ତାଙ୍କର ସଂସାର ବଢ଼ିଚାଲିଲା, ସେତେବେଳେ ତାଙ୍କୁ ସବୁ ବିଷୟରେ ମନଯୋଗ ଦେବାକୁ ପଡ଼ିଲା । ଏହି ସମୟରେ ଡାକଯୋଗେ ଟଙ୍କା ଆସିଲେ ମାମୁଁମାନେ ତାହା ରଖୁଥିଲେ । ପରେ କୌଣସି ସେବକ ସେଥିରେ ମା'ଙ୍କ ନାମ ଲେଖି ଦେଉଥିଲେ । ମା'

ଚିପଚିହ୍ନ ଦେଇ ଟଙ୍କା ଏକତ୍ର କରି ରଖୁଥିଲେ । ଟଙ୍କା ବିଷୟରେ ଚିନ୍ତା କରିବା ବା ତାକୁ ଗଣି ସାଇତି ରଖିବା ସେ ପସନ୍ଦ କରୁ ନ ଥିଲେ । ସେ କହୁଥିଲେ, ''ଟଙ୍କା ପଇସାର ଶବ୍ଦ ଶୁଣିଲେ ଗରୀବ ଲୋକଙ୍କ ମନରେ ଲୋଭ ହେବ ।'' ଟଙ୍କା ଗୋଟିଏ ସାଧାରଣ ବାକ୍ସରେ ରଖା ହେଉଥିଲା ଏବଂ ସେଥିରୁ ଖର୍ଚ୍ଚ ହେଉଥିଲା । କିନ୍ତୁ ତାହାର କୌଣସି ହିସାବ ରଖା ହେଉ ନ ଥିଲା । ମା' ବାକ୍ସର ଚାବି ସେବକଙ୍କୁ ଦେଇ ଟଙ୍କା ବହାର କରି ନେବାକୁ କହୁଥିଲେ କିମ୍ବା ନିଜେ ବାକ୍ସ ଖୋଲି ଦେଇ କହୁଥିଲେ, ''ଯାହା ପ୍ରୟୋଜନ ନେଇଯାଅ ।'' ବଜାରହାଟ ପରେ ବଳକା ଟଙ୍କା ନ ଗଣି ବାକ୍ସରେ ରଖିଦେଉଥିଲେ । ଅନେକ ସମୟରେ ମା' ନିଜେ ପ୍ରୟୋଜନୀୟ ଜିନିଷ କିଣୁଥିଲେ । ଜୟରାମବାଟୀରେ ଜଣେ ସ୍ତ୍ରୀଲୋକ ପରିବା ବିକ୍ରି କରିବାକୁ ଆସୁଥିଲେ । ଶ୍ରୀମା' ପ୍ରୟୋଜନ ଅନୁଯାୟୀ କିଣି ମୁଠାଏ ପଇସା ବାହାର କରି ତାଙ୍କ ସମ୍ମୁଖରେ ରଖୁଥିଲେ ଏବଂ ହିସାବ ଅନୁଯାୟୀ ତାଙ୍କର ଯାହା ପାଉଣା ତାହା ଉଠାଇ ନେବାକୁ କହୁଥିଲେ । ଅନେକ ସମୟରେ ସେ ବେଶୀ ପଇସା ନେଇଥିଲେ ପରେ ଆସି ଫେରାଇ ଦେଇ ଯାଉଥିଲେ ।

ଏହି ଘଟଣାରୁ କେହି ଯେପରି ମନେ ନ କରନ୍ତି ଯେ, ଶ୍ରୀମା' ଟଙ୍କା ଅପଚୟ କରୁଥିଲେ ବା ତାଙ୍କର କୌଣସି ସାଂସାରିକ ବୁଦ୍ଧି ବିବେଚନା ନ ଥିଲା । ନିଜେ ସବୁ ବିଷୟରେ ଅନାସକ୍ତ ଥିଲେ ସୁଦ୍ଧା ଅନ୍ୟମାନଙ୍କୁ ସତ୍‌ପଥରେ ପରିଚାଳିତ କରିବାର ଗୁରୁଦାୟିତ୍ୱ ସେ ଗ୍ରହଣ କରିଥିଲେ, ସୁତରାଂ ସବୁ ବିଷୟରେ ତାଙ୍କୁ ଦୃଷ୍ଟି ରଖିବାକୁ ହେଉଥିଲା । ଜୟରାମବାଟୀରେ ମା'ଙ୍କର ନୂତନ ଗୃହକୁ ଆସିବା ପରଠାରୁ ତାଙ୍କର ଦାୟିତ୍ୱ ଆହୁରି ବଢ଼ିଯାଇଥିଲା ।

ନୂଆ ଘର ଉପରେ ସ୍ଥାନୀୟ ପଞ୍ଚାୟତ ବାର୍ଷିକ ଚାରିଟଙ୍କା କର ଧାର୍ଯ୍ୟ କଲେ । ପ୍ରଥମ ବର୍ଷର କର ଦିଆ ହେଲା । ମା' ସେତେବେଳେ କଲିକତାରେ ରହୁଥିବାରୁ ଏକଥା ଜାଣିପାରିଲେ ନାହିଁ । ଦ୍ୱିତୀୟ ବର୍ଷ ମା'ଙ୍କ ଉପସ୍ଥିତିରେ ଚୌକିଦାର କର ନେବାକୁ ଆସିଲା । କିନ୍ତୁ ମା' ସେବକଙ୍କୁ ତାହା ଦେବାକୁ ନିଷେଧ କଲେ ଏବଂ କୁହାବୋଲା କରି ତାହା ଛାଡ଼ କରାଇଦେବା ପାଇଁ ଚେଷ୍ଟା କରିବାକୁ କହିଲେ । ଅଳ୍ପ କେତେଟା ଟଙ୍କା ପାଇଁ ମା'ଙ୍କର ଏପରି ଦୃଢ଼ତା ଦେଖି ସେବକ ଆଶ୍ଚର୍ଯ୍ୟ ହେଲେ କିନ୍ତୁ ମୁହଁ ଖୋଲି କିଛି କହିଲେ ନାହିଁ । ପରେ ମା' ନିଜେ ତାଙ୍କୁ ବୁଝାଇଲେ, ''ଆଜି ମୁଁ ଏଠାରେ ଅଛି, ଚୌକିଦାରକୁ ଟଙ୍କା ଦେଇଦେଲି, କିନ୍ତୁ ଭବିଷ୍ୟତରେ କୌଣସି ସାଧୁ ବା ବ୍ରହ୍ମଚାରୀ ଏଠାରେ ରହିବ, ହୁଏତ ତାକୁ ଭିକ୍ଷା କରି ଖାଇବାକୁ ପଡ଼ିବ—ଏତେ ଟଙ୍କା ସେ କେଉଁଠାରୁ ପାଇବ ?'' ଯାହା ହେଉ ପଞ୍ଚାୟତର ଅଧ୍ୟକ୍ଷଙ୍କ ନିର୍ଦ୍ଦେଶ ଅନୁଯାୟୀ ପରବର୍ଷଠାରୁ କର ଛାଡ଼ ହେଲା ।

ଜ୍ଞାନ ମହାରାଜ ଜୟରାମବାଟୀରେ ରହୁଥିବା ସମୟରେ ଦିନେ, ଦାମ୍ ଯାହା ପଡୁ ପଛେ ଖାଣ୍ଟି ଦୁଧ କିଣିବାକୁ ଚାହିଁଲେ । ସେ ଗଉଡ଼କୁ କହିଲେ,

''ଟଙ୍କାକୁ ଆଠ ସେର ପଛେ ଦେ, କିନ୍ତୁ ଖାଣ୍ଟି ଦୁଧ ଦେବୁ ।'' ମା' ଏକଥା ଶୁଣି ତାଙ୍କୁ ତିରସ୍କାର କରି କହିଲେ, ''କଅଣ କହୁଛୁ ଜ୍ଞାନ ? ଏଠାରେ ପଇସାକୁ ପାଏ ଦୁଧ ମିଳେ, ଗରିବମାନେ ମଧ୍ୟ ଦୁଧ କିଣନ୍ତି । ଆଉ ତୁ ଏଇ ଭାବରେ ଦର ବଢ଼ାଉଛୁ ! ଗଉଡ଼ ତ ଦୁଧରେ ପାଣି ମିଶାଇବ; ଦର ବଢ଼େଇ ଦେଲେ ଅଧିକ ମୂଲ୍ୟ ପାଇବା ଲୋଭରେ ଆହୁରି ଅଧିକ ପାଣି ମିଶାଇବ ।'' ନବାସନର ଆଶ୍ରମରୁ ଜ୍ଞାନ ମହାରଜା ଦିନେ ମା'ଙ୍କ ପାଇଁ ବେଶୀ ଦାମ୍ ଦେଇ ପ୍ରଚୁର ଖାଣ୍ଟି ଦୁଧ କିଣି ଗୋପେଶ ମହାରାଜଙ୍କ ହାତରେ ପ୍ରେରଣ କଲେ । ଗୋପେଶ ମହାରାଜ ଯାଉ ଯାଉ ଲକ୍ଷ୍ୟ କଲେ ଯେ ଦୁଧରେ ଛୋଟ ମାଛଟିଏ ଅଛି । ସୁତରାଂ ଠାକୁରପୂଜା ପାଇଁ ସେହି ଦୁଧ କାମରେ ଲାଗିବ ନାହିଁ ଭାବି ସେ ତାହା ଫୋପାଡ଼ି ଦେବେ କି ନାହିଁ ଚିନ୍ତା କରୁ କରୁ ଜୟରାମବାଟୀରେ ଆସି ପହଞ୍ଚିଲେ ଏବଂ ମା'ଙ୍କୁ ସବୁକଥା କହିଲେ । କିନ୍ତୁ ମା' କହିଲେ, ''ଫୋପାଡ଼ି ଦେବ କାହିଁକି ? ଠାକୁରପୂଜାରେ ନ ଲାଗିଲେ ମଧ୍ୟ ଘରେ ପିଲାପିଲି ଅଛନ୍ତି, ସେମାନେ ଖାଇବେ ।''

ଦିନେ କମ୍ବଳ ବିକ୍ରୟ କରିବାକୁ ଜଣେ ସ୍ତ୍ରୀଲୋକ ଉଦ୍‌ବୋଧନକୁ ଆସିଲା । ନଳିନୀଦେବୀ ଗୋଟିଏ କମ୍ବଳ ପାଇଁ ତା' ସହିତ ଦର କରିବାକୁ ଲାଗିଲେ । ସ୍ତ୍ରୀଲୋକ ଚାହେଁ ପାଞ୍ଚ ସୁଉକା ଏବଂ ନଳିନୀଦେବୀ କେବଳ ଟଙ୍କାଟିଏ ଦେବାକୁ ପ୍ରସ୍ତୁତ । ଦରଦାମ୍ ଚାଲିଛି ଦେଖି ମା' କହିଲେ, ''ତୁ ମାତ୍ର ଚାରିଅଣା ପଇସା ପାଇଁ ଏତେ ସମୟ ଧରି ପାଟିତୁଣ୍ଡ କରୁଛୁ, ଛି ! ସେ ଦୁଇ ପଇସା ଲାଭ ପାଇଁ ଏତେ ବଡ଼ ବୋଝ ମୁଣ୍ଡେଇ ସାଇ ସାଇ ବୁଲେ; ଆଉ ତୁ ସାମାନ୍ୟ କେତେଟା ପଇସା ପାଇଁ ତା'ର ସମୟ ନଷ୍ଟ କରୁଛୁ ! ତୋର କମ୍ବଳର ପ୍ରୟୋଜନ ବି ତ ବିଶେଷ ନାହିଁ । ତୋର ସବୁ ରହିଛି, ତଥାପି ତୁ ଆହୁରି କିଣିବାକୁ ଚାହୁଁ । ବରଂ ବୋହୂକୁ (ପାଖରେ ଥିବା କ୍ଷୀରୋଦବାଳା ରାୟଙ୍କୁ) ଖଣ୍ଡିଏ ଦେଲେ ଭଲ ହୁଅନ୍ତା । ସେ କମ୍ବଳ ଛଡ଼ା ଆଉ କିଛି ବ୍ୟବହାର କରେ ନାହିଁ; ତା'ର ଗୋଟିଏ ମାତ୍ର କମ୍ବଳ ଅଛି । ଏତେ ଶୀତରେ ବି ତା'ର ଏତିକି ମାତ୍ର ସମ୍ବଳ, ତଥାପି କାହାକୁ କିଛି ମାଗେ ନାହିଁ ।'' ମାଆ ତାଙ୍କ ସମ୍ବନ୍ଧରେ ଏତେ ଖବର ରଖନ୍ତି ଦେଖି କ୍ଷୀରୋଦବାଳାଙ୍କ ଆଖି ଅଶ୍ରୁସିକ୍ତ ହେଲା ।

ଜୟରାମବାଟୀରେ ପରିବାପତ୍ର ମିଳେ ନାହିଁ ବୋଲି ଗାଁର ଜଣେ ସ୍ତ୍ରୀଲୋକ ତାହା ଅନ୍ୟ ସ୍ଥାନରୁ ଆଣି ମା'ଙ୍କ ନିକଟରେ ବହୁତ ଚଢ଼ା ଦରରେ ବିକ୍ରି କରୁଥିଲା । ଏ ବିଷୟରେ ମା'ଙ୍କ ଦୃଷ୍ଟି ଆକର୍ଷଣ କରାଯିବାରୁ ସେ କହିଲେ, ''ଦେଖ, ସେ ମୋ ପାଇଁ ଚିନ୍ତା କରେ; ସମୟ ଅସମୟରେ ଯାହା ଦରକାର ତା ପାଖରୁ ତାହା ମିଳେ । ସେ ମୋର ଭଣ୍ଡାର ଦେଖେ ।''

ଶ୍ରୀମା' ସମସ୍ତଙ୍କର ମାଆ, ସୁତରାଂ ତାଙ୍କର ବ୍ୟବହାର ଓ ଉପଦେଶ ସମସ୍ତଙ୍କ ଉପଯୋଗୀ । ନିଜେ ବୈରାଗ୍ୟମଣ୍ଡିତ ଏବଂ ବହୁ ତ୍ୟାଗୀ ସନ୍ତାନମାନଙ୍କ

ଦ୍ୱାରା ପୂଜିତା ହେଲେ ସୁଦ୍ଧା ସେ ଗୃହସ୍ଥ ଭକ୍ତମାନଙ୍କୁ ସଞ୍ଚୟ କରିବାକୁ କହୁଥିଲେ । ଦିନେ ବଦନଗଞ୍ଜର ପ୍ରଧାନ ଶିକ୍ଷକ ପ୍ରବୋଧବାବୁ ଶ୍ରୀମା'ଙ୍କ ପାଇଁ ଅନେକ ଟଙ୍କାର ଫଳ, ମିଷ୍ଟାନ୍ନ ଇତ୍ୟାଦି କିଣି ଆଣିବାରୁ ମା' ତାଙ୍କୁ ତିରସ୍କାର କରି କହିଲେ, ''ତୁମେ ଏତେ ଟଙ୍କା କାହିଁକି ଖର୍ଚ୍ଚ କଲ ? ତୁମର ସ୍ତ୍ରୀପୁତ୍ର ଅଛନ୍ତି, ତାଙ୍କ ପାଇଁ କିଛି ସଞ୍ଚୟ କରିବା ଉଚିତ । ଠାକୁର କଅଣ ମୋର କୌଣସି ଅଭାବ ରଖିଛନ୍ତି ?'' ଏକଥା ଶୁଣି ପ୍ରବୋଧବାବୁଙ୍କର ଦୁଃଖ ହେଲା; ସେ ଭାବିଲେ, ସେ ଗରିବ ବୋଲି କଅଣ ତାଙ୍କର ସେବାର ଅଧିକାର ନାହିଁ ? ତାଙ୍କ ମନର ଦୁଃଖ ବୁଝି ମା' କହିଲେ, ''ଜାଣିଛ ବାବା ? କିଛି ସଞ୍ଚୟ କଲେ ନିଜ ସଂସାରରେ ଓ ଭବିଷ୍ୟତରେ ତାହା କାମରେ ଲାଗିବ । ସେହି ଅର୍ଥଦ୍ୱାରା ସାଧୁମାନଙ୍କର ସେବା ମଧ୍ୟ କରିପାରିବ । କିଛି ନ ଥିଲେ ସାଧୁ ସନ୍ନ୍ୟାସୀମାନଙ୍କୁ କଅଣ ଦେବ ?'' ପ୍ରବୋଧବାବୁ ଗୋଟିଏ ଘୋଡ଼ା କିଣିବାକୁ ଚାହିଁବାରୁ ମା' କହିଲେ, ''ନା, ବାବା, ତୁମେ ଘୋଡ଼ା କିଣ ନାହିଁ । ତୁମେ ବରଂ ଗୋଟିଏ ଶୂନଗାଡ଼ି (ସାଇକଲ) କିଣ ।''

ସଜନୀବାବୁ ମାତୃଭବନର ଦାତବ୍ୟ ହୋମିଓପାଥିକ୍ ଔଷଧାଳୟର ଡାକ୍ତର ନିଯୁକ୍ତ ହେଲେ । ସେ ମା'ଙ୍କ ନିକଟରୁ ଦୀକ୍ଷା ନେବା ସମୟରେ ଦୁଇଟି ଟଙ୍କା ପ୍ରଣାମୀ ଦେଇଥିଲେ କିନ୍ତୁ ମା' ସେ ଟଙ୍କା ଫେରାଇଦେଲେ । ପରେ କେବେ କେମିତି ନିଜ ବଗିଚାର ପନିପରିବା ଆଣିଲେ ମା' ତାହା ଆନନ୍ଦରେ ଗ୍ରହଣ କରୁଥିଲେ । ସେବକଙ୍କ ମନରେ ଏହି ଅସାମଞ୍ଜସ୍ୟପୂର୍ଣ୍ଣ ବ୍ୟବହାର ବିଷୟରେ କୌତୂହଳ ହୋଇଛି ବୁଝି ମା' ତାଙ୍କୁ କହିଲେ, ''ଦେଖ, ସଜନୀର ଟଙ୍କା ରଖିଲି ନାହିଁ, ନିଜ ବଗିଚାରୁ ପନିପରିବା ଆଣେ, ସେଇଟା ଅଲଗା କଥା; ତା' ଘରର ଲୋକ ଟଙ୍କା ନେବା କଥା ଶୁଣିଲେ ଡରିବେ, ଭାବିବେ ମୁଁ ସେମାନଙ୍କ ବିଷୟ ସଂପତ୍ତିରେ ହୁଏତ ହସ୍ତକ୍ଷେପ କରିବି । ସେମାନେ ଭାରୀ ବିଷୟୀ ଲୋକ, ତାଙ୍କ ମନରେ ସନ୍ଦେହ ହୋଇପାରେ ।''

ଗୋପେଶ ମହାରାଜ ଜୟରାମବାଟୀରେ ସମ୍ବାଦ ପାଇଲେ ଯେ, ଢାକାର ଭକ୍ତମାନେ ଶ୍ରୀମା'ଙ୍କୁ ସେଠାକୁ ନେଇଯିବା ପାଇଁ ଉଦ୍ୟମ କରୁଛନ୍ତି । ଦେଢ଼ ହଜାର ଟଙ୍କା ବ୍ୟୟ ଧାର୍ଯ୍ୟ ହୋଇଥିବାରୁ ଚାନ୍ଦା ପାଇଁ ଛାପା ଆବେଦନ ବଣ୍ଟା ହେଉଛି । ଗୋପେଶ ମହାରାଜ ଚାନ୍ଦା କଥା ଉଲ୍ଲେଖ ନ କରି ଶ୍ରୀମା'ଙ୍କୁ ପଚାରିଲେ, ''ମାଆ, ଆପଣଙ୍କର ପୂର୍ବବଙ୍ଗ ଯିବାର ସମ୍ଭାବନା ଅଛି କି ?'' ମା' କହିଲେ, ''ମୁଁ ଜାଣିନାହିଁ ବାବା, ଠାକୁରଙ୍କର ଯାହା ଇଚ୍ଛା ।'' ଢାକାର ଭକ୍ତମାନେ ତାଙ୍କୁ ସେଠାକୁ ନେବାର ଉଦ୍ୟମ କରୁଛନ୍ତି ଶୁଣି ମା' କହିଲେ, ''ସେଥିପାଇଁ ଚାନ୍ଦା ଆଦାୟ କରିବେ ତ ?'' କିଛି ସମୟ ମୌନ ରହି ପୁନର୍ବାର କହିଲେ, ''ଲୋକମାନେ ଯେ କୌଣସି କଥାରେ ମାତିବାକୁ ଭଲ ପାଆନ୍ତି ! ଦେଖୁନ, ଠାକୁରଙ୍କୁ ନେଇ ଏସବୁ କଅଣ କରୁଛନ୍ତି !''

ଗଡ଼ବେତାରୁ ଦୁଇଜଣ ବ୍ରହ୍ମଚାରୀ ଜୟରାମବାଟୀକୁ ଆସିଲେ ଏବଂ ମା'ଙ୍କୁ କହିଲେ ଯେ ସେମାନେ ନୂତନ ଆଶ୍ରମ ନିର୍ମାଣ ପାଇଁ ଏହି ଅଞ୍ଚଳର ବଡ଼ ବଡ଼ ଗାଁରୁ ଅର୍ଥ ସଂଗ୍ରହ କରିବାକୁ ଚାହାଁନ୍ତି । ମା' କିନ୍ତୁ ସେମାନଙ୍କୁ ନିଷେଧ କରି କହିଲେ, ''ଦେଖ, ଠାକୁରଙ୍କ ନାମରେ ଏହି ଅଞ୍ଚଳରୁ ସେବାଶ୍ରମ ଇତ୍ୟାଦି ପାଇଁ ଚାନ୍ଦା ଆଦାୟ କର ନାହିଁ । ପ୍ରୟୋଜନ ହେଲେ ସହର ବା ଅନ୍ୟ କେଉଁଠାରୁ କର ।''

ଜୟରାମବାଟୀରେ ମା'ଙ୍କର ନୂତନ ଗୃହ ପ୍ରତିଷ୍ଠା ସମୟରେ ଲଳିତବାବୁ ସେଠାରେ ଅବୈତନିକ ବିଦ୍ୟାଳୟ ଓ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ ପାଇଁ ଉତ୍ସାହୀ ହୋଇ ମା'ଙ୍କୁ କହିଲେ, ''ମା' ! ଆପଣଙ୍କ ନାମରେ ଚାନ୍ଦା ପାଇଁ ଆବେଦନ କଲେ ଏଠାକାର ଗରିବ ଲୋକମାନଙ୍କର ବହୁ ଉପକାର ହେବ ।'' ଏହି ଭାବରେ ଟଙ୍କା ସଂଗ୍ରହ କରିବା ମା'ଙ୍କ ମନଃପୂତ ହେଲା ନାହିଁ; କିନ୍ତୁ ଚକ୍ଷୁଲଜ୍ଜା ଯୋଗୁଁ କୌଣସ ମତ ପ୍ରକାଶ କଲେ ନାହିଁ । ସେତେବେଳେ ଜନୈକ ବ୍ରହ୍ମଚାରୀ ସେଠାକୁ ଆସି ଏହି ପ୍ରସ୍ତାବର ଘୋର ପ୍ରତିବାଦ କଲେ । ମା' ସ୍ୱସ୍ତିର ନିଃଶ୍ୱାସ ଛାଡ଼ି କହିଲେ, ''ଠିକ୍ ମୋର ଯୋଗୀନ୍ ପରି ସେ ମତେ ରକ୍ଷା କଲା । ଛି, ଛି, ଟଙ୍କା ମାଗିବା !''

ଅପରାହ୍ଣ ପ୍ରାୟ ଦୁଇଟା ସମୟରେ ଜିବଟା ଗାଁର ଜମିଦାରଙ୍କ ଘରୁ ଗୋଟିଏ ବାଳକ ଜୟରାମବାଟୀରେ ଆସି ପହଞ୍ଚିଲା । ମାଆଙ୍କ ଘରେ ତା' ସାଙ୍ଗ ରାମମୟଙ୍କୁ ଦେଖି ସେ ବୈଠକଖାନାରେ ବସି ଗପିବାକୁ ଲାଗିଲା । ମା' ଏକଥା ଜାଣିପାରି ଚୁଲୀ ଲଗାଇ ଆଗନ୍ତୁକ ବାଳକ ପାଇଁ ହାଲୁଆ କରିବାକୁ ଆୟୋଜନ କଲେ । ରାମମୟ କିନ୍ତୁ କହିଲେ, ''ମା', ସେ ଆପଣଙ୍କ ନିକଟକୁ ଆସିନାହିଁ । ସେ ମୋର ସାଙ୍ଗ, ତେଣୁ ଗପସପ କରିବା ପାଇଁ ଆସିଛି । ତା'ପାଇଁ ଏତେ କଷ୍ଟ କରିବା ପ୍ରୟୋଜନ ନାହିଁ ।'' ମା' ଉତ୍ତର ଦେଲେ, ''ସେଥିରେ କିଛି ଯାଏ ଆସେ ନାହିଁ । ସେମାନେ ଆମର ଜମିଦାର—ରାଜା ! ସେମାନଙ୍କ ପାଇଁ କିଛି କରିବା ଦରକାର ।''

ଶ୍ରୀମା'ଙ୍କ ଭାଷା ବା ଉପଦେଶ-ପ୍ରଣାଳୀରେ ବୈଶିଷ୍ଟ୍ୟ ଥିଲା । ସେ କଲିକତାର ଲୋକମାନଙ୍କ ସହିତ କଲିକତାର ଭାଷାରେ କଥାବାର୍ତ୍ତା କରୁଥିଲେ । କିନ୍ତୁ ଆତ୍ମୀୟ ସ୍ୱଜନଙ୍କ ସହିତ ନିଜ ଗ୍ରାମ୍ୟ ଭାଷାରେ କଥା କହୁଥିଲେ । ଯଦିଓ ତା' ସହିତ ପ୍ରାୟ କଲିକତା ଭାଷା ମିଶିଯାଉଥିଲା ଏବଂ କଲିକତା ଭାଷାରେ ମଧ୍ୟ ଗାଁରେ ବ୍ୟବହାର ହେଉଥିବା ଦୁଇ ଚାରୋଟି କଥା ବା ଉଚ୍ଚାରଣଭଙ୍ଗୀ ମିଶିଯାଉଥିଲା ।

ତାଙ୍କର ପ୍ରତ୍ୟେକ କଥା ଥିଲା ସୁମଧୁର ଏବଂ କୋମଳ । ଭକ୍ତମାନଙ୍କୁ ସେ ଆଦେଶ ନ ଦେଇ ବରଂ କହୁଥିଲେ, ''ବାବା, ଏପରି କଲେ ଭଲ ହୁଅନ୍ତା

ନାହିଁ କି ?'' ତେବେ ସମୟ ବିଶେଷରେ ସନ୍ତାନମାନଙ୍କର ମଙ୍ଗଳ ପାଇଁ ସେ ଆଦେଶ ମଧ୍ୟ କରୁଥିଲେ । କେବେ କେବେ କୌଣସି ଶବ୍ଦ ବା ବାକ୍ୟ ଉପରେ ଗୁରୁତ୍ୱ ଦେବା ପାଇଁ ମା' ତାହା ଲମ୍ବାଇ କହୁଥିଲେ । କଥାବାର୍ତ୍ତା ସମୟରେ ସୁନ୍ଦର ସୁନ୍ଦର ଢଗ ମଧ୍ୟ ମା' କହୁଥିଲେ । 'ଶ୍ରୀଶ୍ରୀରାମକୃଷ୍ଣପୋଥି'ର ପ୍ରଣେତା ଶ୍ରୀଅକ୍ଷୟକୁମାର ସେନ୍ ଦିନେ ଜୟରାମବାଟୀକୁ ଆସି ଶ୍ରୀମାଙ୍କ ସହିତ ସାକ୍ଷାତ୍ କଲେ ଏବଂ ତାଙ୍କୁ ମା' ବୋଲି ସମ୍ବୋଧନ କଲେ । ମା' ଉତ୍ତରରେ କହିଲେ, ''ହଁ ବାବା !'' ଅକ୍ଷୟବାବୁ କହିଲେ, ''ମା, ମୁଁ କହିଲି ମା' ଆଉ ତୁମେ କହିଲ ହଁ । ଆଉ କାହାକୁ ଭୟ ?'' ଶ୍ରୀମା' ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ନା ବାବା, ଏପରି କଥା କୁହ ନାହିଁ; ଯାହାର ଅଛି ଭୟ, ତାହାର ହୁଏ ଜୟ ।'' ଜଣେ ସ୍ତ୍ରୀ-ଭକ୍ତଙ୍କୁ ଶ୍ରୀମା' ବୁଝାଇ କହିଲେ, ''ମଣିଷଠାରୁ ପାଇଥିବା ଜିନିଷ ସ୍ଥାୟୀ ହୁଏ ନାହିଁ । ସୁତରାଂ ସେମାନଙ୍କୁ କିଛି ମାଗିବା ଉଚିତ ନୁହେଁ । ଏପରିକି, ପିତା ବା ସ୍ୱାମୀଙ୍କ ନିକଟରୁ ମଧ୍ୟ ନୁହେଁ । ଠାକୁର ଯେତେବେଳେ ଦେବେ ସେତେବେଳେ ରଖିବାକୁ ସ୍ଥାନ ମିଳିବ ନାହିଁ । ଠାକୁରଙ୍କଠାରୁ ପାଇଥିବା ଜିନିଷର ଶେଷ ନାହିଁ । ଯେ ଚାହେଁ, ସେ ପାଏ ନାହିଁ; ଯେ ନ ଚାହେଁ, ସେ ପାଏ ।'' ନିବେଦିତାଙ୍କ ଦେହତ୍ୟାଗ ପ୍ରସଙ୍ଗରେ ମା' ଦିନେ କହିଥିଲେ, ''ଯେ ହୁଏ ସୁପ୍ରାଣୀ, ତା'ପାଇଁ କାନ୍ଦେ ମହାପ୍ରାଣୀ (ଅନ୍ତରାତ୍ମା) ।''

ଏହିସବୁ ଭାବବହୁଳ ପ୍ରବାଦବାକ୍ୟ ପ୍ରୟୋଗ ବ୍ୟତୀତ ଶ୍ରୀମା'ଙ୍କର ଏପରି ସୁନ୍ଦର ଶବ୍ଦ ବିନ୍ୟାସ-ପଦ୍ଧତି ଥିଲା, ଯାହା କେବଳ ସରଳ ନୁହେଁ, ବରଂ ଅତି ଚିତ୍ତାକର୍ଷକ ଅଥଚ ମାର୍ଜିତରୁଚି ଏବଂ ଚିନ୍ତାଶୀଳତାର ପରିଚାୟକ ମଧ୍ୟ । ପ୍ରଥମ ମହାଯୁଦ୍ଧ ଅବସାନର ସମ୍ବାଦ ଶ୍ରୀଯତୀନ୍ଦ୍ରନାଥ ଘୋଷ ଶ୍ରୀମା'ଙ୍କୁ ଜଣାଇଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ ଉଇଲ୍‌ସନ୍‌ଙ୍କ ୧୪ ଦଫା ସନ୍ଧିସର୍ତ୍ତ ଅଳ୍ପ ଶୁଣି ମା' କହିଲେ, ''ସେମାନେ ଯାହା କହନ୍ତି, ସେସବୁ କଥା ମୁଖସ୍ଥ ।'' ଯତୀନ୍ଦ୍ରବାବୁ କଥାର ତାତ୍ପର୍ଯ୍ୟ ବୁଝି ନ ପାରିବାରୁ ମା ' କହିଲେ, ''ଯଦି କଥା ଅନ୍ତସ୍ଥ ହୁଏ, ତେବେ ଭଲ ।''

ଶ୍ରୀମା'ଙ୍କର ଉପମା-ପ୍ରୟୋଗ ବିଶେଷ ଚିତ୍ତାକର୍ଷକ ଥିଲା । ଈଶ୍ୱରଦର୍ଶନ କେବଳ ତାଙ୍କରି କୃପାରୁ ମିଳିଥାଏ, ତେବେ ସାଧନର ପ୍ରୟୋଜନ ରହିଛି କେବଳ ଚିତ୍ତଶୁଦ୍ଧି ପାଇଁ—ଏହି କଥା ବୁଝାଇବା ପାଇଁ ମା' କହିଲେ, ''କେବଳ ତାଙ୍କରି କୃପାଦ୍ୱାରା ସେ ଲଭ୍ୟ । ତେବେ ଜପଧ୍ୟାନ କରିବାକୁ ହୁଏ । ସେଥିରେ ମନର ମଇଳା କଟିଯାଏ । ଯେପରି ଫୁଲକୁ ହାତରେ ନେଲେ ଆମେ ସୁଗନ୍ଧ ପାଉ, ଚନ୍ଦନକୁ ଘଷିଲେ ସେଥିରୁ ସୁଗନ୍ଧ ପାଉ, ସେପରି ଭଗବତ୍-ତତ୍ତ୍ୱର ଆଲୋଚନା କରୁ କରୁ ତତ୍ତ୍ୱଜ୍ଞାନର ଉଦୟ ହୁଏ । ନିର୍ବାସନା ହେଲେ ଏହି ମୁହୂର୍ତ୍ତରେ ହେବ ।''

ଦୁଇଜଣ ଲୋକଙ୍କର ମନୋମାଳିନ୍ୟ ହୋଇଛି ଶୁଣି ମା' ପତ୍ରଦ୍ୱାରା ଜଣାଇଲେ, ''ସମୟ ଆସିଲେ ସବୁ ସହିବାକୁ ପଡ଼େ; ବେଳ ପଡ଼ିଲେ ଏପରି କି ଛେଳିଗୋଡ଼ରେ ଫୁଲ ଦେବାକୁ ପଡ଼େ ।'' ଅନେକ ଭକ୍ତ ଦୁଃଖ କରି ଶ୍ରୀମା'ଙ୍କୁ କହୁଥିଲେ ଯେ, ତାଙ୍କପରି ଗୁରୁ ପାଇ ମଧ୍ୟ ଦୁର୍ଭାଗ୍ୟବଶତଃ ସେମାନଙ୍କର କିଛି ହେଲା ନାହିଁ । ଏପରି ସ୍ଥଳରେ ମା' ଆଶ୍ୱାସ ଦେଇ କହୁଥିଲେ, ''ମୋର ଯାହା କରିବାର, ତାହା ମୁଁ ସେହି ସମୟରେ (ଦୀକ୍ଷାଦେବା ସମୟରେ) କରି ଦେଇଛି । ତେବେ ଯଦି ବର୍ତ୍ତମାନ ଶାନ୍ତି ଚାହଁ ତେବେ ସାଧନ ଭଜନ କର, ନ ହେଲେ ଦେହାନ୍ତ ହେଲେ ହେବ !'' କୃପାଲାଭ ଓ କୃପା ବିଷୟରେ ସଚେତନ ହେବାର ପାର୍ଥକ୍ୟ ବୁଝାଇ ସେ କହୁଥିଲେ, ''ବାବା, ତୁମେ ଯଦି ଗୋଟିଏ ଖଟରେ ଶୋଇଥାଅ ଏବଂ କେହି ତୁମକୁ ଖଟ ସମେତ ଅନ୍ୟତ୍ର ନେଇଯାଏ, ତା'ହେଲେ ତୁମେ ନିଦ ଭାଙ୍ଗିବା ସଙ୍ଗେସଙ୍ଗେ କ'ଣ ବୁଝିପାରିବ ଯେ ସ୍ଥାନାନ୍ତର ହୋଇଛି ? ନା, ଯେତେବେଳେ ସମ୍ପୂର୍ଣ୍ଣ ନିଦର ପ୍ରଭାବ ଚାଲିଯିବ, ସେତେବେଳେ ବୁଝିବ ଯେ ମୁଁ ଅନ୍ୟତ୍ର ଆସିଛି ।''

କୋମଳତାର ପ୍ରତିମୂର୍ତ୍ତି ଶ୍ରୀମା' କାହାରି ମନରେ କଷ୍ଟ ଦେଇପାରୁ ନ ଥିଲେ । ଅନ୍ୟମାନେ ଯେଉଁ ସ୍ଥଳରେ କାହାରି ଦୋଷକୁ ଅଯଥା ବଢ଼େଇ ଦେଖୁଥିଲେ ସେହି କ୍ଷେତ୍ରରେ ମା' ତାହାର ସାମାନ୍ୟ ଗୁଣକୁ ମଧ୍ୟ ସହସ୍ର ଗୁଣ ବଢ଼ାଇ ପ୍ରଶଂସା କରୁଥିଲେ । ଭକ୍ତମାନଙ୍କ ଉପରେ ତାଙ୍କର କେବଳ ଆଶୀର୍ବାଦ ବର୍ଷିତ ହେଉଥିଲା । ଜଣେ ଭକ୍ତ ଦିନେ ବଜାରରୁ କିଛି ଆମ୍ବ କିଣି ଆଣି ମା'ଙ୍କ ଘରେ ପହଞ୍ଚିଲେ । ଅଗ୍ରଭାଗ ଖାଇଲେ ଦେବତାଙ୍କୁ ତାହା ନିବେଦନ କରିହେବ ନାହିଁ—ଦୋକାନୀର ଏହି ପରାମର୍ଶ ଶୁଣି ସେ ଆମ୍ବ ଚାଖି ନ ଥିଲେ । ମଧ୍ୟାହ୍ନ ଭୋଗ ପରେ ସମସ୍ତେ ଯେତେବେଳେ ପ୍ରସାଦ ପାଇବାକୁ ବସିଲେ ସେତେବେଳେ ଆମ୍ବ ଖଟା ହୋଇଥିବାରୁ ତାହା କେହି ମୁହଁରେ ଦେଇ ପାରିଲେ ନାହିଁ । ମା' କିନ୍ତୁ ଗୋଟିଏ ଆମ୍ବ ଖାଇ ମନ୍ତବ୍ୟ କଲେ, ''ନା, ଏ ଭଲ ଖଟା ଆମ୍ବ ।'' ମା' ଅଳ୍ପ ଖଟା ଖାଇବାକୁ ପସନ୍ଦ କରୁଥିଲେ, କିନ୍ତୁ ବର୍ତ୍ତମାନ କ୍ଷେତ୍ରରେ ଏହି ମନ୍ତବ୍ୟ କରିବାର ପ୍ରକୃତ ଉଦ୍ଦେଶ୍ୟ ଥିଲା ଭକ୍ତର ମାନ ରକ୍ଷା କରିବା । କେବେ କେବେ ଭକ୍ତମାନଙ୍କର ଆଣିଥିବା ମିଷ୍ଟାନ୍ନ ଖରାପ ହେଲେ ସୁଦ୍ଧା ସେ ତାହାର କିଛି ଅଂଶ ଗ୍ରହଣ କରୁଥିଲେ ।

ଭକ୍ତମାନଙ୍କୁ ଶ୍ରୀମା' ମୁକ୍ତହସ୍ତରେ ଦାନ କରୁଥିଲେ । ତାଙ୍କ ପାଇଁ ଯେଉଁ ଜଳଖିଆ ରଖା ହେଉଥିଲା ସେଥିରୁ କିଛି କିଛି ଭକ୍ତମାନଙ୍କୁ ଦେଉ ଦେଉ ଅନେକ ସମୟରେ ତାଙ୍କ ପାଇଁ କିଛି ରହୁ ନ ଥିଲା । ମା' ପ୍ରତ୍ୟେକ ଦିନ ମିଶ୍ରିର ସର୍ବତ ପିଉଥିଲେ, ତା' ମଧ୍ୟ ଅନେକ ସମୟରେ ଭକ୍ତମାନଙ୍କୁ ଦେବାରେ ଶେଷ ହୋଇଯାଉଥିଲା ।

ଆଧୁନିକ ଅର୍ଥରେ ଶିକ୍ଷିତା ନ ହେଲେ ସୁଦ୍ଧା ଶ୍ରୀମା'ଙ୍କର ବ୍ୟବହାର, ଉପଦେଶସମୂହ ଏତେ ସୁନ୍ଦର, ଉଦାର, ତଥ୍ୟବହୁଳ ଓ ମର୍ମସ୍ପର୍ଶୀ ଥିଲା ଯେ, ନିବେଦିତାଙ୍କ ପରି ଜଣେ ସୁଶିକ୍ଷିତା ପାଶ୍ଚାତ୍ୟ ମହିଳା ଲେଖିଥିଲେ, ''ତାଙ୍କଠାରେ ଯେଉଁ ଜ୍ଞାନ-ମାଧୁର୍ଯ୍ୟର ବିକାଶ ହୋଇଥିଲା, ତାହା ହୁଏତ ଅତି ସରଳ ସ୍ତ୍ରୀଲୋକମାନଙ୍କ ପକ୍ଷରେ ମଧ୍ୟ ଲାଭ କରିବା ସହଜ । ତଥାପି ମୋ ଦୃଷ୍ଟିରେ ତାଙ୍କର ପବିତ୍ରତା ଯେପରି ଚମକପ୍ରଦ ଥିଲା, ସେପରି ଅପୂର୍ବ ଥିଲା ତାଙ୍କର ସୁମାର୍ଜିତ ସୌଜନ୍ୟ ଏବଂ ଅନ୍ୟମାନଙ୍କର ଭାବ ବୁଝିବାରେ ସକ୍ଷମତା ଓ ପରମ ଉଦାର ମନ । ତାଙ୍କ ନିକଟରେ ଉତ୍‌ଥାପିତ ପ୍ରଶ୍ନଗୁଡ଼ିକ ଯେତେ କଠିନ ବା ଅଭିନବ ହେଉନା କାହିଁକି, ମୁଁ ତାଙ୍କୁ କଦାପି ଉତ୍ତର ଦେବାରେ ଇତସ୍ତତଃ ହେବାର ଦେଖି ନାହିଁ । ମା'ଙ୍କ ଅଗୋଚରରେ ଯେଉଁସବୁ ବିପ୍ଳବ ସମାଜରେ ଘଟିଯାଇଛି, ସେଥିରେ ବିଭ୍ରାନ୍ତ ବା ବିପର୍ଯ୍ୟସ୍ତ ହୋଇ ଯଦି କେହି ତାଙ୍କ ନିକଟରେ ଉପସ୍ଥିତ ହୁଏ, ତେବେ ସେ ଅଭ୍ରାନ୍ତ ଦୃଷ୍ଟି ଦ୍ୱାରା ସେହି ସମସ୍ୟାର ମର୍ମୋଦ୍‌ଘାଟନ କରି ପ୍ରଶ୍ନକର୍ତ୍ତାର ମନକୁ ସେ ବିପଦ ଅତିକ୍ରମ କରିବା ପାଇଁ ପ୍ରସ୍ତୁତ କରିଦେଉଥିଲେ ।'' ('ଦି ମାଷ୍ଟର ଆଜ ଆଇ ସ ହିମ୍')

ତାଙ୍କର ଦୈନନ୍ଦିନ ଜୀବନଧାରାର ସଂକ୍ଷିପ୍ତ ପରିଚୟ ଦେଇ ଆମେ ଅନ୍ୟ ପ୍ରସଙ୍ଗକୁ ଯିବା । ଦକ୍ଷିଣେଶ୍ୱରରେ ଅତିଭୋରରୁ ଶଯ୍ୟାତ୍ୟାଗ କରିବାରେ ତାଙ୍କର ଯେଉଁ ଅଭ୍ୟାସ ଥିଲା, ତାହା ସେ ସାରାଜୀବନ ଅବ୍ୟାହତ ରଖିଥିଲେ । ରାତି ତିନିଟାରେ ଦେବଦେବୀମାନଙ୍କର ନାମ କରୁକରୁ ଶଯ୍ୟାତ୍ୟାଗ କରୁଥିଲେ ଏବଂ ପ୍ରଥମେ ଶ୍ରୀଶ୍ରୀଠାକୁରଙ୍କ ଛବି ଦର୍ଶନ କରୁଥିଲେ । ପ୍ରାତଃକୃତ୍ୟ ସମାପନ କରି ଠାକୁରଙ୍କୁ ଶୟନରୁ ଉଠାଉଥିଲେ ଏବଂ ଜପରେ ବସୁଥିଲେ । ସ୍ୱାସ୍ଥ୍ୟ ଖରାପ ହେଲେ ମଧ୍ୟ ଏହି ନିୟମର ବ୍ୟତିକ୍ରମ ହେଉ ନ ଥିଲା । ସେପରି ଅବସ୍ଥାରେ ସକାଳୁ ଉଠି ହାତମୁହଁ ଧୋଇ ପୁଣି ବିଶ୍ରାମ କରୁଥିଲେ । ନିର୍ଦ୍ଧାରିତ ସମୟରେ ଉଠିବା ବିଷୟରେ ସେ କହିଛନ୍ତି, ''ରାତି ତିନିଟା ବାଜିଲେ ଯେଉଁଠାରେ ହେଉନା କାହିଁକି ମନେ ହେଉଥିଲା ଯେପରିକି କିଏ କାନ ପାଖରେ ବଂଶୀ ବଜାଉଛି ।'' ପୂଜାର ଫୁଲ ବେଲପତ୍ର ଓ ଫଳ ନିଜ ହାତରେ ସଜାଇ ସେ ନଅଟା ସମୟରେ ପୂଜା କରିବା ପାଇଁ ବସୁଥିଲେ । ପୂଜା ସରିବାକୁ ଘଣ୍ଟାଏ ସମୟ ଲାଗୁଥିଲା । ପରେ ସେ ପତରରେ ସଜାଇ ସମସ୍ତଙ୍କୁ ପ୍ରସାଦ ଦେଉଥିଲେ । ଶେଷ ଆଡ଼କୁ ସ୍ତ୍ରୀ-ଭକ୍ତମାନେ ମା'ଙ୍କୁ ଏହି କାମରେ ସାହାଯ୍ୟ କରୁଥିଲେ ଏବଂ ସମୟ ସମୟରେ ସାଧୁମାନେ ମଧ୍ୟ ପୂଜା କରିଦେଉଥିଲେ । ପୂଜା ଓ ସ୍ତବପାଠରେ ବିଳମ୍ବ ହେଲେ ମା' ବିରକ୍ତ ହେଉଥିଲେ; କୁହୁଥିଲେ, ''ଆଗେ ପୂଜା-ଭୋଗ ନିବେଦନ କରି ପରେ ଯେତେ ପାରିବ ସ୍ତବ ପାଠ କର । ଏ କି କଥା ! ଲୋକମାନେ ପ୍ରସାଦ ପାଇପାରନ୍ତି ନାହିଁ; ବିଳମ୍ବ ହୁଏ ।'' ମା' ନିଜେ ଯେପରି ନିରଳସ ଭାବରେ ସମୟାନୁଯାଇ ପ୍ରତ୍ୟେକ

କାର୍ଯ୍ୟ ସଂପାଦନା କରୁଥିଲେ, ଅନ୍ୟମାନେ ମଧ୍ୟ ସେହିପରି କରନ୍ତୁ ଏହା ତାଙ୍କର ଅଭିପ୍ରେତ ଥିଲା ।

ମଧ୍ୟାହ୍ନ ଆହାର ଶେଷ ହେଉ ହେଉ ଦୁଇଟା ବାଜି ଯାଉଥିଲା । ସେତେବେଳେ ଶ୍ରୀମା' ଯାଇ ବିଶ୍ରାମ କରୁଥିଲେ; କିନ୍ତୁ ଏହି ସମୟରେ ମଧ୍ୟ ଅନେକ ଭକ୍ତମହିଳା ପ୍ରାୟ ଆସୁଥିଲେ । ମା' ଶୋଇ ଶୋଇ ସେମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ । ପ୍ରାୟ ସାଢ଼େ ତିନିଟା ବେଳେ ଉଠି ହାତମୁହଁ ଧୋଇ, ଲୁଗାପଟା କାଚି ଠାକୁରଙ୍କୁ ଶୀତଳ ଭୋଗ ଦେଉଥିଲେ । ସେତେବେଳକୁ ଆହୁରି ସ୍ତ୍ରୀ-ଭକ୍ତମାନେ ଆସି ପହଞ୍ଚୁଥିଲେ । ଭୋଗ ଦେବା ପରେ ମା' ଜପମାଳା ନେଇ ବସୁଥିଲେ ଏବଂ ମଝିରେ ମଝିରେ ସ୍ତ୍ରୀ-ଭକ୍ତମାନଙ୍କ ସହିତ କଥା କହୁଥିଲେ । ପୁରୁଷ ଭକ୍ତମାନେ ସନ୍ଧ୍ୟା ସାଢ଼େ ପାଞ୍ଚଟାରେ ଦର୍ଶନ କରିବାକୁ ଆସୁଥିଲେ । ସ୍ତ୍ରୀଭକ୍ତମାନେ ସେତେବେଳେ ଅନ୍ୟ ଘରେ ଯାଇ ବସୁଥିଲେ । ମା' ସର୍ବାଙ୍ଗ ଚଦରରେ ଘୋଡ଼ାଇ ହୋଇ ପଲଙ୍କ ଉପରେ ଗୋଡ଼ ଝୁଲାଇ ବସୁଥିଲେ ଏବଂ ପୁରୁଷମାନଙ୍କର ପ୍ରଣାମ ଗ୍ରହଣ କରୁଥିଲେ । ଗ୍ରୀଷ୍ମକାଳ ହେଲେ କେହି କେହି ତାଙ୍କୁ ପଙ୍ଖା କରୁଥିଲେ । ମା' ଭକ୍ତମାନଙ୍କର ସାଧାରଣ ପ୍ରଶ୍ନାଦିର ଉତ୍ତର ମୁଣ୍ଡ ହଲାଇ ବା ଅନୁଚ୍ଚସ୍ୱରରେ କହୁଥିଲେ । ଉପସ୍ଥିତ କୌଣସି ଭକ୍ତ ମା'ଙ୍କ କଥା ସ୍ପଷ୍ଟ କରି କହି ଦେଉଥିଲେ । କୌଣସି ବିଶେଷ ଜ୍ଞାତବ୍ୟ ବିଷୟ ଥିଲେ ସେ ବ୍ୟକ୍ତି ଶେଷରେ ଆସୁଥିଲେ । ବ୍ୟକ୍ତି ପରିଚିତ ହେଲେ ମା' ନିଜେ କଥା କହୁଥିଲେ ନତୁବା ଅନ୍ୟମାନଙ୍କ ସାହାଯ୍ୟ ନେଉଥିଲେ । ସନ୍ଧ୍ୟା ପୂର୍ବରୁ ସେ ପୁନର୍ବାର ଜପ କରିବା ପାଇଁ ବସୁଥିଲେ ଏବଂ ସଂଧ୍ୟା ପରେ ତାହା ଶେଷ କରି ଭୋଗର ପୂର୍ବ ପର୍ଯ୍ୟନ୍ତ ଚଟାଣରେ ପଟି ପକାଇ ବିଶ୍ରାମ କରୁଥିଲେ । ଏହି ସମୟରେ କୌଣସି କୌଣସି ସ୍ତ୍ରୀ-ଭକ୍ତ ତାଙ୍କ ଗୋଡ଼ରେ ବାତ ପାଇଁ ତେଲ ମାଲିସ କରି ଦେଉଥିଲେ । ଠାକୁରଙ୍କ ଭୋଗ ପରେ ଆହାରାଦି ସାରି ଶୋଉ ଶୋଉ ରାତି ଏଗାରଟା ବାଜିଯାଉଥିଲା ।

ଶ୍ରୀମା'ଙ୍କ ଆହାରରେ କେତେଗୁଡ଼ିଏ ବିଶେଷତ୍ୱ ଥିଲା । ଶାଗ ଭିତରେ ମଟରଶାଗ, ମୂଳାଶାଗ ତାଙ୍କର ପ୍ରିୟ ଥିଲା । ଜ୍ୱର ପରେ ଅରୁଚି ହେଲେ ତାଙ୍କୁ ଅନେକ ସମୟରେ ମଟରଶାଗ ଦିଆଯାଉଥିଲା । ବାଇଗଣି, ଫୁଲୁରି, ବରା, ଆଳୁଚପ୍ ଇତ୍ୟାଦି ଭଜା ଜିନିଷ ସେ ପସନ୍ଦ କରୁଥିଲେ । ଶୀତଦିନେ ସକାଳର ପୂଜାରେ ମୁଢ଼ି ସହିତ ଏହି ସବୁ ଛଣା ଜିନିଷ ଠାକୁରଙ୍କୁ ଭୋଗ ଦିଆଯାଉଥିଲା । ମୁଗର ଲଡ୍ଡୁ, ସେଓ ଇତ୍ୟାଦି ମଧ୍ୟ ମା' ଭଲ ପାଉଥିଲେ । ଲାଳଝାଡ଼ା ପ୍ରାୟ ହେଉଥିବାରୁ କବିରାଜ ଦୁର୍ଗାପ୍ରସାଦ ସେନ୍ 'ଆମ୍‌ରୁଲ' ଶାଗ ଖାଇବାକୁ ପରାମର୍ଶ ଦେଇଥିଲେ । ଶେଷଆଡ଼କୁ ମା' ପ୍ରାୟ ଏହି ଶାଗ ଖାଉଥିଲେ । ମଠରୁ କେହି ଉଦ୍‌ବୋଧନକୁ ଆସିଲେ ପୂଜନୀୟ ବାବୁରାମ ମହାରାଜ ତାଙ୍କ ହାତରେ

ଏହା ପଠାଇ ଦେଉଥିଲେ । ରାତାବି ସନ୍ଦେଶ (ଏକ ପ୍ରକାରର ସନ୍ଦେଶ) ଏବଂ କନ୍ଦମୂଳରେ ତିଆରି ପିଠା ତାଙ୍କର ବିଶେଷ ପ୍ରିୟ ଥିଲା । ସକାଳେ ମା' ମିଶ୍ରିସର୍ବତ ପିଉଥିଲେ । ମିଠା ଆମ୍ବ ଅପେକ୍ଷା ଖଟା ମିଠା ଆମ୍ବ ଅଧିକ ପସନ୍ଦ କରୁଥିଲେ । ପିଆରାଫୁଲ, ଛୋଟ ଲେଙ୍ଗଡ଼ା ଏବଂ ଆଲଫାନ୍‌ସୋ ଆମ୍ବକୁ ଭଲ ପାଉଥିଲେ । ଡାହାଣ ଆଣ୍ଠୁରେ ବାତ ଥିବାରୁ ସେ ଦହି ବିଶେଷ ଖାଉ ନ ଥିଲେ । ପେଟରୋଗ ଓ ବାତ ପାଇଁ ସେ ପରାମର୍ଶ ଅନୁଯାୟୀ ଅତି ଅଳ୍ପ ମାତ୍ରାରେ ଅଫିମ ଖାଉଥିଲେ । ତେଣୁ ମଧ୍ୟାହ୍ନ ଓ ରାତ୍ରିରେ ଅଧସେର କରି ଦୁଧର ବ୍ୟବସ୍ଥା ଥିଲା । ମଧ୍ୟାହ୍ନରେ ପାଏ ଦୁଧ ପିଉଥିଲେ ଏବଂ ଅବଶିଷ୍ଟ ଦୁଧ ଭାତରେ ଗୋଳାଇ ଭକ୍ତମାନଙ୍କ ପାଇଁ ରଖିଦେଉଥିଲେ । ଉଦ୍‌ବୋଧନରେ ଯେଉଁମାନେ ରହୁଥିଲେ, ସେମାନଙ୍କ ବ୍ୟତୀତ ଅପରାହ୍ନରେ ଯେଉଁମାନେ ଆସୁଥିଲେ ସେମାନେ ଏହି ପ୍ରସାଦରୁ କିଛି କିଛି ପାଉଥିଲେ । ଉପରଓଳି କେବଳ ଗୋଟିଏ ପାନ ଖାଉଥିଲେ । ରାତିରେ ଦୁଇଟି କିମ୍ବା ତିନୋଟି ଲୁଚି, ଅଳ୍ପ ତରକାରୀ ଏବଂ ପ୍ରାୟ ଦେଢ଼ପାଆ ଦୁଧ ପିଉଥିଲେ । ପ୍ରତ୍ୟେକ ଦିନ ଚାରିଥର ଦାନ୍ତ ଘଷୁଥିଲେ । ନଡ଼ିଆପତ୍ର ଏବଂ ଦୋକ୍ତା ପାଉଁଶରେ ତାହା ପ୍ରସ୍ତୁତ ହେଉଥିଲା ।

ମା' ଯେତେବେଳେ ତାଙ୍କ ଭାଇମାନଙ୍କ ଘରେ ରହୁଥିଲେ, ସେତେବେଳେ ସକାଳ ୭ଟାରୁ ୯ଟା ପର୍ଯ୍ୟନ୍ତ ବାରଣ୍ଡାରେ ବସି ପରିବା କାଟୁଥିଲେ । ଏହି ସମୟରେ ଭକ୍ତ ଓ ଶିଷ୍ୟମାନେ ଆସି ତାଙ୍କ ସହିତ କଥାବାର୍ତ୍ତା କରୁଥିଲେ ଏବଂ ଶାଗସବ୍‌ଜିରୁ ପତ୍ର ବାଛି ଦେଉଥିଲେ । ସ୍ନାନ ସାରି ସେ ପ୍ରାୟ ୯ଟା ବେଳେ ପୂଜାରେ ବସୁଥିଲେ । ପୂଜା ଶେଷ କରି ଭକ୍ତମାନଙ୍କୁ ପ୍ରସାଦ ଦେଉଥିଲେ । ଭକ୍ତମାନେ ସାଧାରଣତଃ ମୁଢ଼ି, ମିଠା ଓ ହାଲୁଆ ପ୍ରସାଦ ପାଉଥିଲେ । କେବେ କେମିତି ତାହା ସହିତ ସେମାନେ ଆଣିଥିବା ଫଳମୂଳ ମଧ୍ୟ ରହୁଥିଲା । ପ୍ରସାଦ ବିତରଣ ପରେ ବ୍ରାହ୍ମଣୀ ରୋଷେଇଆକୁ ଜଳଖିଆ ଖାଇବାକୁ ଦେଇ ମା' ନିଜେ ରୋଷେଇ ଆରମ୍ଭ କରୁଥିଲେ । ତରକାରୀରେ ଲୁଣ, ରାଗ ଏବଂ ମସଲା ଅଳ୍ପ ଦେବା ତାଙ୍କର ଅଭ୍ୟାସ ଥିଲା, ଯେହେତୁ ଶ୍ରୀଶ୍ରୀଠାକୁର ଏପରି ରୋଷେଇ ପସନ୍ଦ କରୁଥିଲେ ।

ଭକ୍ତମାନେ ମା'ଙ୍କୁ ପ୍ରଣାମ କରିବା ପାଇଁ ଆସିଲେ ମା' ସେମାନଙ୍କୁ ମିଠା ଏବଂ ଦୁଇଖଣ୍ଡ ପାନ ଦେଉଥିଲେ । ମା'ଙ୍କ ପାଇଁ ସେମାନେ ଯାହା ଆଣୁଥିଲେ ଅଥବା କଲିକତାରୁ ଯାହା ପଠାଉଥିଲେ ତାହା ସେ ଆନନ୍ଦରେ ଗ୍ରହଣ କରୁଥିଲେ ଏବଂ ପରେ ଭକ୍ତମାନଙ୍କ ମଧ୍ୟରେ ତାହା ବିତରଣ କରିଦେଉଥିଲେ । ଗାଁର ଅନେକ ବୃଦ୍ଧ, ସ୍ତ୍ରୀ-ପୁରୁଷ ଓ ପିଲାମାନେ ପ୍ରାୟ ମା' ଠାକୁରାଣୀଙ୍କୁ ପ୍ରଣାମ କରିବା ପାଇଁ ଆସୁଥିଲେ ଓ ପ୍ରଚୁର ଫଳ ମିଠା ପ୍ରଭୃତି ନେଇ ହସହସ ମୁହଁରେ ଘରକୁ ଫେରୁଥିଲେ । ସ୍ୱାମୀ ସାରଦାନନ୍ଦଜୀ ଓ ଶ୍ରୀରାମକୃଷ୍ଣଗତପ୍ରାଣ ବଳରାମ

ବସୁ ମହାଶୟଙ୍କ ପତ୍ନୀ ଶ୍ରୀମତୀ କୃଷ୍ଣଭାବିନୀ ଦେବୀଙ୍କ ପ୍ରେରିତ ବେଦନା ଓ ଆମ୍ବ ପ୍ରଭୃତି ଭାଗକରି ପ୍ରଥମେ ସିଂହବାହିନୀ, ଧର୍ମଠାକୁର ଓ ଅନ୍ୟାନ୍ୟ ଦେବତାଙ୍କ ନିକଟକୁ ପଠାଉଥିଲେ, ପରେ ଆତ୍ମୀୟସ୍ୱଜନ ଓ ଗ୍ରାମବାସୀମାନଙ୍କୁ ଦେଉଥିଲେ । ଅଧିକନ୍ତୁ କୌଣସି ଭକ୍ତ ଅନୁପସ୍ଥିତ ଥିଲେ ବା ସେ ଶୀଘ୍ର ଆସିବାର କଥା ଥିଲେ ତାଙ୍କ ଭାଗ ଅଲଗା କରି ରଖୁଥିଲେ । ଥରେ କୌଣସି ପର୍ବ ଉପଲକ୍ଷେ ମଣ୍ଡାପିଠା ପ୍ରସ୍ତୁତ ହୋଇଥିଲା । ବିଭୂତିବାବୁ ଛୁଟି ପାଇଲେ ଜୟରାମବାଟୀକୁ ଆସନ୍ତି ଜାଣି ମା' ତାଙ୍କ ପାଇଁ ପିଠା ରଖିଥିଲେ । ବିଭୂତିବାବୁଙ୍କର ସେଥର ଆସିବାରେ ବହୁତ ଡେରି ହେଲା । ତଥାପି ମା' ତାଙ୍କ ଆସିବା ଆଶାରେ ପ୍ରତିଦିନ ପିଠାକୁ ପୁନର୍ବାର ଭାଜି ରଖୁଥିଲେ ଏବଂ କହୁଥିଲେ, ''କାଲି ହୁଏତ ଆସିବ, ଯଦି ଆସେ ମନେ କରିବ, ଆହା ଖାଇପାରିଲି ନାହିଁ ।'' ତିନି ଚାରିଦିନ ପରେ ବିଭୂତିବାବୁ ଆସି ନିଜର ଭାଗ ପାଇଲେ ।

ଜୟରାମବାଟୀରେ ନୂତନ ଗୃହରେ ତାଙ୍କର ଜୀବନଧାରା ପ୍ରାୟ ସମାନ ଥିଲା । ତଫାତ୍ ଏତିକି ଯେ, ଦେହ ଦୁର୍ବଳ ହୋଇ ପଡ଼ିବାରୁ ବେଶୀ କାମ କରିବା ଓ ବେଶୀ ସମୟ ବସିବା ସମ୍ଭବ ହେଉ ନ ଥିଲା । ପୂର୍ବାପେକ୍ଷା ବେଶୀ ସମୟ ମା' ଶୋଇ କଟାଉଥିଲେ ଏବଂ ଏହି ଅବସ୍ଥାରେ ନାମଜପ କରୁଥିଲେ । ସକାଳେ ଖରା ପଡ଼ିଲେ ସେ ବାହାରକୁ ଆସି ଧନିଆ, ମହୁରୀ, ଡାଲଣ (ଗୋଟିଏ ପତ୍ର) ବତୁରା ପାଣି ପିଇ ପରିବା କାଟିବାକୁ ବସୁଥିଲେ । ସେହି ସମୟରେ ଭକ୍ତମାନଙ୍କ ସହିତ କଥାବାର୍ତ୍ତା ମଧ୍ୟ ଚାଲୁଥିଲା । ସକାଳ ନଅଟାରେ ଅଳ୍ପ ଉଷୁମ ପାଣିରେ ଦେହ ହାତ ପୋଛି ହୋଇ ଠାକୁର ଓ ଗୋପାଳଙ୍କର ପୂଜା କରୁଥିଲେ । ତା' ପରେ କୌଣସି ଦୀକ୍ଷାର୍ଥୀ ଥିଲେ ଦୀକ୍ଷା ଦେଉଥିଲେ । ଠାକୁରଘରୁ ବାହାରି ସମସ୍ତଙ୍କୁ ପ୍ରସାଦ ଦେଉଥିଲେ ଓ ନିଜେ ଅଳ୍ପ ମିଶ୍ରି ସର୍ବତ ଏବଂ ଅଳ୍ପ କିଛି ଜଳଖିଆ ଖାଇ ରୋଷେଇର ତଦାରଖ କରୁଥିଲେ । ଠାକୁର ତାଙ୍କୁ ଯେଉଁଭାବରେ ପାନ ଭାଙ୍ଗିବା ଶିଖାଇଥିଲେ ସେହି ଭାବରେ ଦୁଇଶହ ଖିଲିପାନ ଭାଙ୍ଗୁଥିଲେ । କୌଣସି କୌଣସି ଦିନ ଏହି ସମୟରେ ଚିଠି ପଢ଼ା ହେଉଥିଲା । ମା' ଶୁଣି ଉତ୍ତର କହି ଦେଉଥିଲେ । ରୋଷେଇ ସରିଲେ ମା' ହାତଗୋଡ଼ ଧୋଇ ପଞ୍ଚପାତ୍ର ହାତରେ ଠାକୁରଙ୍କ ଛବିକୁ ଚାହିଁ କହୁଥିଲେ, ''ରୋଷେଇ ହୋଇଛି, ଖାଇବ ଚାଲ'' — ଯେପରିକି ଠାକୁରଙ୍କୁ ରୋଷେଇ ଘରକୁ ଡାକି ନେଇ ଯାଉଛନ୍ତି । ଭୋଗ ନିବେଦନ ପରେ ମା' ସେବକମାନଙ୍କ ସହିତ ଖାଇ ବସୁଥଲେ । ଶ୍ରୀମା'ଙ୍କର ପିତ୍ତ ଆଧିକ୍ୟଥିଲା ଏବଂ ଦେହ ଜଳାପୋଡ଼ା କରୁଥିଲା ବୋଲି ବିରିଡାଲି ଖାଉଥିଲେ । ଗାଁରେ ମଧ୍ୟ ଉଦ୍‌ବୋଧନ ପରି ଭାତରେ ଦୁଧ ଗୋଳାଇ ସମସ୍ତଙ୍କୁ ପ୍ରସାଦ ଦେଉଥିଲେ । ଅପରାହ୍ନ ତିନିଟାରେ ଉଠି ହାତଗୋଡ଼ ଧୋଇ ରାତିର ପରିବା କାଟିବାକୁ ବସୁଥିଲେ । ଏହି ସମୟରେ ପଡ଼ିଶା ଘରର ସ୍ତ୍ରୀଲୋକମାନେ ତାଙ୍କ

ସହିତ କଥାବାର୍ତ୍ତା କରିବା ପାଇଁ ଆସୁଥିଲେ । ରୋଷେଇର ଦାୟିତ୍ୱ ଜଣେ ବ୍ରାହ୍ମଣ ଓ ସେବକମାନଙ୍କ ଉପରେ ନ୍ୟସ୍ତ ଥିବା ସତ୍ତ୍ୱେ ମା' କେବେ କେମିତି ଗୋଟିଏ ଯୋଡ଼ିଏ ତରକାରୀ ରାନ୍ଧୁଥିଲେ ଏବଂ ନିଜେ ପରିବେଷଣ କରୁଥିଲେ । ଯେଉଁଦିନ ସକାଳେ ଚିଠି ପଢ଼ା ହେଉ ନ ଥିଲା, ସେଦିନ ସନ୍ଧ୍ୟା ପରେ ପଢ଼ା ହେଉଥିଲା । ରାତି ନଅଟାରେ ମା' ଠାକୁରଙ୍କୁ ଭୋଗ ଦେଉଥିଲେ କିମ୍ବା ଅସୁସ୍ଥ ଥିଲେ ଅନ୍ୟ କେହି ଦେଉଥିଲା । ଭକ୍ତ ଓ ଆଗନ୍ତୁକମାନଙ୍କର ସୁଖସୁବିଧା ଦେଖି, ସମସ୍ତ କାମ ସାରି ରାତିରେ ଶୋଉ ଶୋଉ ପ୍ରାୟ ଏଗାରଟା ବାଜୁଥିଲା ।

## ଲୀଳାସମ୍ବରଣ

୧୯୧୯ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୩ ତାରିଖ । ଶ୍ରୀମା' ସେତେବେଳେ ଜୟରାମବାଟୀରେ ଥାଆନ୍ତି । ଭକ୍ତମାନେ ତାଙ୍କର ଜନ୍ମୋତ୍ସବ ପାଳନ କରିବେ । ଏହି ଶୁଭ ଦିନରେ ମାତୃଦର୍ଶନ ପାଇବା ଆକାଙ୍‌କ୍ଷା ନେଇ କୌଣସି କୌଣସି ଭକ୍ତ ସେଠାରେ ଉପସ୍ଥିତ ହୋଇଛନ୍ତି; କେହି କେହି ବସ୍ତ୍ରାଦି ପଠାଇଥାନ୍ତି । ମା' ଅଳ୍ପ ଉଷୁମ ପାଣିରେ ଦେହହାତ ପୋଛି ହୋଇ ସ୍ୱାମୀ ସାରଦାନନ୍ଦଜୀଙ୍କ ପ୍ରେରିତ ଶାଢ଼ୀଟି ବାଛି ପିନ୍ଧିଲେ ଏବଂ ଶ୍ରୀଶ୍ରୀଠାକୁରଙ୍କର ପୂଜା ସମାପନ କଲେ । ପରେ ଭକ୍ତମାନେ ତାଙ୍କ କପାଳରେ ସିନ୍ଦୁର ଓ ଚନ୍ଦନ ଏବଂ ଗଳାରେ ପୁଷ୍ପମାଲ୍ୟ ଅର୍ପଣ କଲେ । ମା' ପାଦଝୁଲାଇ ପଲଙ୍କ ଉପରେ ବସିଲେ ଏବଂ ଭକ୍ତମାନେ ଜଣେ ଜଣେ ଆସି ତାଙ୍କ ଚରଣତଳେ ପୁଷ୍ପାଞ୍ଜଳି ଦେଇ ପ୍ରଣାମ କଲେ । ଶ୍ରୀମା' ସନ୍ତାନମାନେ ଖାଇବାପୂର୍ବରୁ କେବେ ଖାଉ ନ ଥିଲେ । କିନ୍ତୁ ସେଦିନ ସମସ୍ତଙ୍କ ଅନୁରୋଧ ରକ୍ଷା କରି ଶ୍ରୀଶ୍ରୀଠାକୁରଙ୍କ ଅନ୍ନଭୋଗ ପରେ ପ୍ରସାଦ ଗ୍ରହଣ କଲେ । ତା'ପରେ ଭକ୍ତମାନେ ଓ ଗ୍ରାମବାସୀମାନେ ପ୍ରସାଦ ପାଇଲେ ।

ସେତେବେଳେ ଶ୍ରୀମା'ଙ୍କର ଦେହ ଭଲ ନ ଥିଲା । ସେଦିନର ପରିଶ୍ରମରେ ଉପରଓଳି ଖୁବ୍ ଜ୍ୱର ହେଲା । ପ୍ରଥମେ ଲୋକ ଭାବିଲେ ସ୍ଥାନୀୟ ଚିକିତ୍ସାରେ ଭଲ ହୋଇଯିବ; ସୁତରାଂ ସେହି ପ୍ରକାର ବ୍ୟବସ୍ଥା କରାଗଲା; କିନ୍ତୁ ଜ୍ୱର ସମ୍ପୂର୍ଣ୍ଣ ଭଲ ହେଲା ନାହିଁ । ଭଲ ହୋଇଯାଏ, ପୁଣି ହୁଏ । ବାରମ୍ବାର ଏହିପରି ଭୋଗି ଭୋଗି ମା' ଅତି ଦୁର୍ବଳ ହୋଇପଡ଼ିଲେ । ସାମାନ୍ୟ ଜ୍ୱର ହେଲେ ତାଙ୍କ ଦେହ ଅବସନ୍ନ ହୋଇପଡୁଥିଲା । ଏହା ମଧ୍ୟରେ ଦୀକ୍ଷା ମଧ୍ୟ ଚାଲିଥାଏ । ଜ୍ୱର ଛାଡ଼ି ପଥ୍ୟ ଖାଇବା ପୂର୍ବରୁ ମଧ୍ୟ ସେ ଦୀକ୍ଷାର୍ଥୀମାନଙ୍କର ଅଭିଳାଷ ପୂର୍ଣ୍ଣ କରୁଥିଲେ । ଭକ୍ତମାନେ ବହୁ ଆଶା ନେଇ ଦୂର ଦେଶରୁ ଆସନ୍ତି । ମା' ସେମାନଙ୍କୁ ଅଯଥା ବସାଇ ରଖିବାକୁ ରାଜି ହୁଅନ୍ତି ନାହିଁ ।

ଅବସ୍ଥା କ୍ରମେ ଖରାପ ଦିଗକୁ ଗତି କରୁଛି ଦେଖି ସ୍ୱାମୀ ସାରଦାନନ୍ଦଜୀଙ୍କୁ ଲେଖି ସବୁକଥା ଜଣାଇଦିଆଗଲା, କିନ୍ତୁ ସେ ସେତେବେଳେ କାଶୀରେ । ସେ

ନ ଥିଲେ ଶ୍ରୀମା' କଲିକତାରେ ରହିବାକୁ ଭଲପାଆନ୍ତି ନାହିଁ । କାଶୀରୁ ଫେରି ଆସି ଶରତ ମହାରାଜ ଜରୁରୀ କାମ ନେଇ ଭୁବନେଶ୍ୱର ଗଲେ । ସେଠାରୁ ୧୭ ଫେବୃଆରୀରେ କଲିକତା ଫେରି ଯେତେବେଳେ ଜାଣିଲେ ଯେ ମାଆଙ୍କ ଅବସ୍ଥା ଉଦ୍‌ବେଗଜନକ, ସେତେବେଳେ କଲିକତାରେ ତାଙ୍କ ଚିକିତ୍ସା ପାଇଁ ସ୍ୱାମୀ ଆତ୍ମପ୍ରକାଶାନନ୍ଦ ଏବଂ ଅନ୍ୟ ଦୁଇଜଣଙ୍କୁ ଜୟରାମବାଟୀ ପଠାଇଲେ । ସାରଦାନନ୍ଦଜୀଙ୍କ ଅଭିପ୍ରାୟ ଜାଣି ମାଆ କଲିକତା ଯିବାକୁ ସମ୍ମତ ହେଲେ । ମଙ୍ଗଳବାର ୨୪ ଫେବୃଆରୀ ସକାଳ ୧୦ଟା ବେଳେ ଯାତ୍ରାର ସମୟ ନିର୍ଦ୍ଦିଷ୍ଟ ହେଲା ଏବଂ ଶ୍ରୀମା'ଙ୍କ ସହିତ ରାଧୁ, ରାଧୁର ମାଆ, ମାକୁ, ନଳିନୀଦେବୀ, ନବାସନର ବୋହୂ ଏବଂ ବ୍ରହ୍ମଚାରୀ ବରଦାଙ୍କ ଯିବା ସ୍ଥିର ହେଲା ।

ଶ୍ରୀମାଆଙ୍କର ଦେହ ସେତେବେଳେ ଏତେ ଦୁର୍ବଳ ଯେ କଲିକତା ଯିବାର ଦିନେ ଦୁଇଦିନ ପୂର୍ବେ ସିଂହବାହିନୀଦେବୀଙ୍କ ମନ୍ଦିରକୁ ଯିବା ଆସିବାରେ ଅତ୍ୟନ୍ତ କ୍ଲାନ୍ତ ହୋଇପଡ଼ିଥିଲେ । ବାହାରିବା ଦିନ ପୁଣ୍ୟପୁଷ୍କରର ଘାଟରେ ମା' ହଠାତ୍ ପଡ଼ିଯାଇଥିଲେ । ପୂର୍ବରୁ ଠିକ୍ ହୋଇଥିଲା ଯେ ଶ୍ରୀଶ୍ରୀମା' ଓ ରାଧୁ ଦୁଇଟି ପାଲିଙ୍କିରେ ଜୟରାମବାଟୀରୁ ବିଷ୍ଣୁପୁରକୁ ଯିବେ, ଅନ୍ୟ ସମସ୍ତେ ଚାଲି ଚାଲି ଆମୋଦର ନଦୀଯାଏ ଯିବେ ଏବଂ ନଦୀ ପାରିହୋଇ ବଳଦ ଗାଡ଼ିରେ ଯିବେ । କିନ୍ତୁ ରାଧୁ ପାଲିଙ୍କିରେ ଯିବାକୁ ରାଜି ହେଲା ନାହିଁ; ଶ୍ରୀଶ୍ରୀମା' ତିଳେ ହେଲେ ବାଧ ନ କରି ମାକୁକୁ ତା' ପୁଅ ସହିତ ଦ୍ୱିତୀୟ ପାଲିଙ୍କିରେ ବସିବାକୁ କହିଲେ । ସକାଳୁ ବଳଦଗାଡ଼ିରେ ଯେଉଁମାନଙ୍କର ଯିବାର କଥା ସେମାନେ ଯାତ୍ରା ଆରମ୍ଭ କଲେ । ଶ୍ରୀଶ୍ରୀମା' ଠାକୁରପୂଜା ସାରି ଯିବାକୁ ପ୍ରସ୍ତୁତ ହେଉଛନ୍ତି, ଗାଁର ବହୁ ସ୍ତ୍ରୀ-ପୁରୁଷ ମାଆଙ୍କ ଘରେ ରୁଣ୍ଡ ହୋଇଛନ୍ତି ଏବଂ ଅଶ୍ରୁପୂର୍ଣ୍ଣ ନୟନରେ କହୁଛନ୍ତି, ''ଶୀଘ୍ର ଭଲ ହୋଇ ଫେରିଆସ । ଆମକୁ ବେଶୀ ଦିନ ଭୁଲି ରହିବ ନାହିଁ ।'' ମାଆ କହିଲେ, ''ସବୁ ଠାକୁରଙ୍କ ଇଚ୍ଛା; ତୁମମାନଙ୍କୁ ଭୁଲିବି କିପରି ?'' ଠାକୁରଙ୍କର ଫଟୋଟି ଲୁଗାରେ ଗୁଡ଼ାଇ ବାକ୍ସରେ ରଖିଲେ ଏବଂ ପ୍ରଣାମ କରି ଗାତ୍ରୋତ୍‌ଥାନ କଲେ । ସଦର ଦରଜା ପାରିହୋଇ ସେ ସିଂହବାହିନୀଦେବୀ ଓ ଗ୍ରାମର ଅନ୍ୟାନ୍ୟ ଦେବଦେବୀଙ୍କ ଉଦ୍ଦେଶ୍ୟରେ କରଯୋଡ଼ି ପ୍ରଣାମ କଲେ ଏବଂ ଧୀରେ ଧୀରେ ମାମୁଁମାନଙ୍କ ଘର ପାଖଦେଇ ପଶ୍ଚିମ ଦିଗକୁ ଅଗ୍ରସର ହେଲେ । ଗ୍ରାମରୁ ବାହାରି ଆସି ଆହେର୍ ଜଳାଶୟ କୂଳରେ ପାଲିଙ୍କିରେ ବସିବା କଥା; କାରଣ ଗ୍ରାମରେ ସିଂହବାହିନୀ ବିରାଜିତ ଥିବାରୁ ମା' ପାଲିଙ୍କିରେ ବସି ଗ୍ରାମ ଭିତର ଦେଇ ଯିବାଆସିବା କରୁ ନ ଥିଲେ । ପାଲିଙ୍କିରେ ବସିଲେ ତାଙ୍କ ପାଦ ଧୋଇବା ପାଇଁ ବଡ଼ ମାଇଁ ଡାଳେ ପାଣି ଓ ଗାଡ଼ୁଲା ଧରି ଘର ବାହାରେ ଛିଡ଼ା ହୋଇଥିଲେ । ମାଆ ତାଙ୍କୁ କହିଲେ, ''ପାଣି ନେଇ ତୁ କାହିଁକି ଆଉ ଆସିବୁ; ହରି ହାତକୁ ପାଣିଡାଳ ଓ ଗାଡ଼ୁଲା ଦେଇଦେ, ସେ ଧୋଇଦେବ ।'' ମାଇଁ ତାହା

କଲେ ଏବଂ ଗୋଟିଏ ଗ୍ଲାସରେ ପାଣି, କିଛି ମିଠା ଓ ପାନ ନେଇ ଆହେର୍ କୂଳକୁ ଆସିଲେ । ଘୋଷପଡ଼ାର ଯାତ୍ରାସିଦ୍ଧିରାୟ (ଦେବତା)ଙ୍କୁ ପ୍ରଣାମ କଲେ ଏବଂ ଗ୍ରାମକୁ ଫେରି ଚାହିଁ ଜନନୀ ଜନ୍ମଭୂମିକୁ ପ୍ରଣାମ କରି ମା' ପାଲିଙ୍କିରେ ବସିଲେ । ହରି ତାଙ୍କ ପାଦ ଧୋଇ ଦେଲେ । ବଡ଼ ମାଈଁ ମିଠା ଇତ୍ୟାଦି ମାଆଙ୍କୁ ଦେଲେ । ମାଆ ନିଜର ଗୋଟିଏ ଚାଦର ହରିକୁ ଦେଇ କହିଲେ, ''ହରି, ଏଇଟା ରଖ ।''

ବରଦା ମହାରାଜ ସାଇକେଲ ଚଢ଼ି ମାଆଙ୍କ ସାଥିରେ ଚାଲିଲେ । ସେମାନେ ପଶ୍ଚିମ ଦିଗକୁ ଯାଉଥାଆନ୍ତି । ଗ୍ରାମବାସୀମାନେ ଛିଡ଼ା ହୋଇ ଅଶ୍ରୁପୂର୍ଣ୍ଣ ନୟନରେ ସେମାନଙ୍କର ଯିବା ବାଟକୁ ଚାହିଁ ରହିଥାଆନ୍ତି । ସେତେବେଳେ ଆମୋଦର ନଦୀରେ ବନ୍ଧ ଦିଆ ହୋଇଥିବାରୁ ଦୁଇ ତିନି ମାଇଲ ବାଟ ଅଧିକ ଯିବାକୁ ପଡୁଥିଲା । ଶିହଡ଼ ଗାଁରେ ଶାନ୍ତିନାଥ ଶିବମନ୍ଦିର ନିକଟରେ ପାଲିଙ୍କିରୁ ଓହ୍ଲାଇ ଶ୍ରୀମା' ପୋଖରୀରେ ହାତଗୋଡ଼ ଧୋଇ ଶିବଙ୍କୁ ପ୍ରଣାମ କଲେ ଏବଂ ଦୁଇ ଟଙ୍କାର ସନ୍ଦେଶ, ଚିନି ଓ ସରାଗୁଡ଼ ଭୋଗ ଦେଲେ । ଗାଁର ବହୁତ ପିଲା ସେଠାରେ ଉପସ୍ଥିତ ଥିଲେ । ଶ୍ରୀମା' ସମସ୍ତଙ୍କୁ ପ୍ରସାଦ ଦେଲେ । ନିଜେ ମଧ୍ୟ କିଛି ଗ୍ରହଣ କଲେ ଏବଂ ସାଥିମାନଙ୍କୁ କିଛି କିଛି ଦେଇ ବାକି ପ୍ରସାଦ ରାଧୁ ପାଇଁ ପଣତକାନିରେ ବାନ୍ଧି ରଖିଲେ । ଦିନ ୧୧ଟା ବେଳେ ସମସ୍ତେ କୋଆଲପଡ଼ାରେ ପହଞ୍ଚିଲେ ।

ବରଦା ମହାରାଜ ଶୁଣିଲେ ଯେ ବାଟଖର୍ଚ୍ଚ ଭୁଲ୍‌ବଶତଃ କାଳୀମାମୁଁଙ୍କ ଘରେ ରହିଯାଇଛି; ତେଣୁ ମା'ଙ୍କୁ ନ ଜଣାଇ ବରଦା ମହାରାଜ ତାହା ଆଣିବାକୁ ଗଲେ । ଏଣେ ମା' ଗୋଟିଏ କଳା ରଙ୍ଗର ମଶାରୀ ନ ପାଇ ତାହା ଖୋଜି ବାହାର କରିବା ପାଇଁ ବରଦା ମହାରାଜଙ୍କୁ ଡାକିଲେ । ପରେ ବରଦା ମହରାଜ ଫେରିଆସିବାରୁ ମା' ତାଙ୍କର ଅନୁପସ୍ଥିତିର କାରଣ ପଚାରିଲେ । ମହାରାଜ ସବୁକଥା ଜଣାଇଲେ । ମଶାରୀ କିନ୍ତୁ ମିଳିଲା ନାହିଁ । ମା' କହିଲେ, ''ସବୁ ଅମଙ୍ଗଳର ଲକ୍ଷଣ ।'' ଯାତ୍ରା କଲାବେଳେ କୌଣସି ଜିନିଷ ହଜିଯିବା ଅଶୁଭ, ଏପରି ବିଶ୍ୱାସ ସେ ଅଞ୍ଚଳରେ ଥିଲା ।

ଅପରାହ୍ନରେ ପାଞ୍ଚଟି ବଳଦଗାଡ଼ି ବିଷ୍ଣୁପୁର ଅଭିମୁଖେ ଯାତ୍ରା କରିବ । ପାଲିଙ୍କି ଦୁଇଟିରେ ଶ୍ରୀମା' ଓ ମାକୁ ପରଦିନ ସକାଳେ ଯିବା କଥା ଏବଂ ଶେଷ ବଳଦଗାଡ଼ିଟି ମଧ୍ୟ ସେଦିନ ଅପରାହ୍ନରେ ଯିବ । ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ ଆଶ୍ରମର ଠାକୁରଘରକୁ ଆସି ଶ୍ରୀମା' ପ୍ରଣାମ କଲେ । ସୂର୍ଯ୍ୟୋଦୟ ପରେ ସେବକ ଶ୍ରୀମା'ଙ୍କ ବାସସ୍ଥାନ ଜଗଦମ୍ବା ଆଶ୍ରମକୁ ଯିବାରୁ ମା' ତାକୁ କହିଲେ, ''ଏତେ ଡେରି କରି ଆସୁଛ କାହିଁକି ? ଖରା ଟାଣ ହେବ । ଯାତ୍ରାର ଫୁଲଟି ନିଅ ।'' ପୂଜାର ଗୋଟିଏ ଫୁଲ ମସ୍ତକରେ ସ୍ପର୍ଶ କରାଇ ସେବକର ହାତରେ ଦେଇ କହିଲେ, ''ଲୁଗାକାନିରେ ବାନ୍ଧି ଦିଅ ।'' ସେବକ ତାଙ୍କୁ ପ୍ରଣାମ କରିବାରୁ ସେ ତାଙ୍କ

ମସ୍ତକ ଓ ହୃଦୟରେ କରଜପ କଲେ ଏବଂ ଓଠ ଧରି ଚୁମା ଖାଇଲେ । ସମସ୍ତଙ୍କ ନିକଟରୁ ବିଦାୟ ନେଇ ମା' ପାଲିଙ୍କିରେ ବସିଲେ ଏବଂ ଗଗନ ମହାରାଜଙ୍କୁ ନିଜର ଆଶାବାଡ଼ି ଦେଇ ପ୍ରସନ୍ନ ମାମୁଁଙ୍କୁ ଦେଇଦେବାକୁ କହିଲେ, କାରଣ ବାଡ଼ିଟି ମାମୁଁଙ୍କର । ଦୁର୍ବଳତା ଯୋଗୁଁ ମା' ସେଥିରେ ଭରା ଦେଇ ଚାଲୁଥିଲେ । ପ୍ରସନ୍ନ ମାମୁଁଙ୍କ ପାଇଁ ଗୋଟିଏ ମଶାରୀ ମଧ୍ୟ ଗଗନ ମହାରାଜଙ୍କ ହାତରେ ଦେଲେ । ଶେଷରେ ତାଙ୍କୁ କହିଲେ, ''ବାବା, ଶରତ ରହିଲା ।'' ପାରିପାର୍ଶ୍ୱିକ ଘଟଣାବଳୀ ସହିତ ଏ କଥାର କଅଣ ସମ୍ପର୍କ ଥିଲା, ସେ କଥା ଗଗନ ମହାରାଜ ଅବାକ୍ ହୋଇ ଭାବିବାକୁ ଲାଗିଲେ ।

ପାଲିଙ୍କି ଚାଲିଛି । କୋତୁଲପୁର ପାରିହୋଇ ଶ୍ରୀମା' ବରଦାଙ୍କୁ ଡାକି କହିଲେ, ''ସର୍ବଦା ମୋ ପାଖରେ ରହ ଏବଂ ସାବଧାନରେ ବାଟ ଚାଲ । ରାଧୁ ଓ ମାକୁର ଗହଣାଗାଣ୍ଠି ମାକୁର ପାଲିଙ୍କିରେ ଅଛି ।'' କଥା ଶୁଣି ବରଦା ମହାରାଜ ସତର୍କ ହେଲେ ଏବଂ ବେହେରା ସର୍ଦ୍ଦାରକୁ ଏକାନ୍ତରେ ଡାକି କହିଲେ, ''ମା' ଡରୁଛନ୍ତି; ସାବଧାନରେ ଚାଲ, ବିଶେଷ କରି ବିଷ୍ଣୁପୁର ପାଖ ଜଙ୍ଗଲ ନିରାପଦ ନୁହେଁ ।'' ସର୍ଦ୍ଦାର ତାଙ୍କୁ ସାହସ ଦେଇ କହିଲା, ''ଆମେ ବତିଶ ଜଣ ବେହେରା ଅଛୁ ଏବଂ ସମସ୍ତଙ୍କର ଗୋଟିଏ ଗୋଟିଏ ଠେଙ୍ଗା ପାଲିଙ୍କି ତଳେ ଅଛି ।''

ଜୟପୁରରେ ପହଞ୍ଚି ମା' ପାଲିଙ୍କି ରଖିବାକୁ କହିଲେ । ପୂର୍ବଥର ଜୟରାମବାଟୀ ଯିବା ସମୟରେ ସେମାନେ ଯେଉଁ ଚଟିରେ ରୋଷେଇ କରିଥିଲେ ତାହା ପ୍ରାୟ ଭାଙ୍ଗି ଯାଇଥାଏ । ମା' ସେହି ଚଟିଘର ଦେଖି ହସିହସି କହିଲେ, ''ଆହା ! ଦେଖ, ଆମର ସେହି ଚଟିଘରଟିର କି ଅବସ୍ଥା !'' ମା' ନିକଟରେ ଗୋଟିଏ ଗଛମୂଳେ କମ୍ବଳ ପାରି ବସିଲେ ଏବଂ ବେହେରାମାନଙ୍କୁ ମୁଢ଼ି କିଣିବା ପାଇଁ ଦୁଇଟଙ୍କା ଦେଲେ । ମାକୁର ପୁଅ ପାଇଁ ଦୁଧ ଗରମ କରି ପୋଖରୀରେ ହାତଗୋଡ଼ ଧୋଇ ଆସିଲେ । ନିଜ ପାଇଁ ଗୋଟିଏ ପଇସାର ମୁଢ଼ି ଏବଂ ମାକୁ ଓ ବରଦା ପାଇଁ ମୁଢ଼ି ସହିତ କିଛି ବରା ପିଆଜି କିଣି ଆଣିବାକୁ କହିଲେ । ମା' ଅଳ୍ପ ମୁଢ଼ି ଖାଇ ଅନ୍ୟମାନଙ୍କୁ ଦେଇ କହିଲେ, ''ଆଉ ମୁଢ଼ି ଚୋବାଇ ପାରୁନି ।'' ସମସ୍ତଙ୍କର ଖାଇବା ସରିବାରୁ ପୁନର୍ବାର ଯାତ୍ରା ଆରମ୍ଭ ହେଲା । ଜୟପୁରଠାରୁ ବିଷ୍ଣୁପୁର ଆଠମାଇଲ ବାଟ ଗଭୀର ଜଙ୍ଗଲ; ତେଣୁ ଭୀତ ହେବା ସ୍ୱାଭାବିକ । ଚାରି ମାଇଲ ବାଟ ଜଙ୍ଗଲ ପାରିହୋଇ ତନ୍ତୀ ପୋଖରୀଠାରେ ଗୋଟିଏ ଛୋଟ ଦୋକାନ ଖରାବେଳେ ଖୋଲାଥାଏ । ସେଠାରେ ପହଞ୍ଚି ସେମାନେ ଦେଖିଲେ କେତେଜଣ କୁଲି ମଜୁରିଆ ଦୋକାନରେ ବସି ଗପସପ କରୁଛନ୍ତି । ଏଠାରୁ ଅତିଶୀଘ୍ର ଜଙ୍ଗଲପାରି ହୋଇଗଲେ ଦୁଇମାଇଲ ପରେ ଲୋକାଳୟ ପଡ଼ିବ । କିନ୍ତୁ ମା' ପାଲିଙ୍କିରୁ ଦୋକାନ ଦେଖି କହିଲେ, ''ପାଲିଙ୍କି ରଖିବାକୁ କୁହ, ବସି ବସି ମୋ ଗୋଡ଼ ବିନ୍ଧୁଛି । ଦୋକାନରୁ ଅଧ ପଇସାର ତେଲ ଗୋଟିଏ ଶାଳପତ୍ରରେ

ଆଣ; ଗୋଡ଼ରେ ତେଲ ମାଲିସ କରିବି ।'' କଥା ଶୁଣି ବରଦା ଡରିଲେ; ଧୀରେ ଧୀରେ କହିଲେ, ''ଏଠାରେ ଅଚିହ୍ନା ଲୋକ ଅଛନ୍ତି; ଆପଣ ଓହ୍ଲାନ୍ତୁ ନାହିଁ । ଆପଣ ବସିଥାଆନ୍ତୁ, ମୁଁ ତେଲ ନେଇ ଆସୁଛି ।'' ଏଣେ ମାକୁ କହିଲା, ''ମୁଢ଼ି ଖାଇଲା ପରଠାରୁ ଖୁବ୍ ଶୋଷ ହେଉଛି, ମୁଁ ପାଣି ପିଇବି ।'' ମା' କହିଲେ, ''ଭଲ କଥା, ଏହି ପୋଖରୀରୁ ପାଣି ପି' ଆସ ।'' ବରଦା ତ୍ରସ୍ତ ହୋଇ କହିଲେ, ''ସେ ପାଣି କ'ଣ କିଏ ପିଅନ୍ତି ! ଅତି ଖରାପ ପାଣି ।'' କିନ୍ତୁ ମା' କହିଲେ, ''ରାସ୍ତାରେ କେତେ ଲୋକ ଯାଉଛନ୍ତି, କିଛି ହେବ ନାହିଁ, ଯାଅ । ତୁମେ ମାକୁ ସହିତ ଯାଅ !'' ସୁତରାଂ ତେଲ କିଣି, ମାକୁକୁ ପାଣି ପିଆଇ ସେମାନେ ସେଠାରୁ ବାହାରିଗଲେ ।

ପ୍ରାୟ ଦୁଇଟା ସମୟରେ ବିଷ୍ଣୁପୁର ଗଡ଼ଦରଜାରେ ସୁରେଶ୍ୱରବାବୁଙ୍କ ଘରେ ପହଞ୍ଚିଲେ । ସ୍ୱାମୀ ଆତ୍ମପ୍ରକାଶାନନ୍ଦଜୀ ଓ ଅନ୍ୟମାନେ ବଳଦଗାଡ଼ିରେ ସକାଳ ଆଠଟା ବେଳେ ପହଞ୍ଚିଥିଲେ । ସେମାନେ ପଚାରିଲେ, ''ଏତେ ଡେରି କାହିଁକି ହେଲା ?'' ମୁଢ଼ି ଖାଇଥିବାରୁ ବିଳମ୍ବ ହୋଇଥିବା ଶୁଣି ସେମାନେ ହସିଲେ; କାରଣ ବାଙ୍କୁଡ଼ା ଜିଲ୍ଲାର ଲୋକେ ମୁଢ଼ି ଖାଇବାକୁ ଭଲ ପାଆନ୍ତି, ଏକଥା ତାଙ୍କ ନିକଟରେ ଏକ କୌତୂହଳର ବିଷୟ । ସୁରେଶ୍ୱରବାବୁ କେତେମାସ ପୂର୍ବରୁ ଦେହତ୍ୟାଗ କରିଥିଲେ । ଶ୍ରୀମା' ତାଙ୍କ ବିଷୟରେ କହିଲେ, ''ଆହା, ମୁଁ ଏଠାକୁ ଆସିଲେ ମୋ ସୁରେଶ ସର୍ବଦା ହାତଯୋଡ଼ି ଏଠାରେ ଠିଆ ହୋଇ ରହୁଥିଲା; ବାରଣ୍ଡାକୁ ମଧ୍ୟ ଉଠୁ ନ ଥିଲା, କିପରି ଭକ୍ତି ଥିଲା ତା'ର ।'' ତାଙ୍କ ବିଷୟରେ ମା' କେବେ କେବେ କହୁଥିଲେ, ''ସୁରେଶ ସତେ ଯେପରି ଦ୍ୱିତୀୟ ଗିରିଶବାବୁ ।'' ଦୁଇଦିନ ବିଷ୍ଣୁପୁରରେ ବିଶ୍ରାମ କରି ତୃତୀୟ ଦିନ ମଧ୍ୟାହ୍ନରେ ଖାଇ ପିଇ ସାରି ସମସ୍ତେ ତୃତୀୟ ଶ୍ରେଣୀ ଡବାରେ କଲିକତା ଅଭିମୁଖେ ଯାତ୍ରା କଲେ । ୨୭ ଫେବୃଆରୀ, ଶୁକ୍ରବାର ରାତି ନଅଟା ସମୟରେ ସମସ୍ତେ ଉଦ୍‌ବୋଧନରେ ପହଞ୍ଚିଲେ ।

ମା'ଙ୍କର ଅସ୍ଥିଚର୍ମସାର ଦେହ ଦେଖି ଯୋଗୀନ୍-ମା' ଓ ଗୋଲାପ-ମା' ସଙ୍ଗୀମାନଙ୍କୁ ଅନୁଯୋଗ କରି କହିଲେ, ''ତୁମେମାନେ ମା'ଙ୍କୁ ଏହି ଅବସ୍ଥାରେ ଆଣିଛ ? ଦେହର ରଙ୍ଗ ଭୂତପରି କଳା ପଡ଼ିଯାଇଛି । କେବଳ ଚମଡ଼ା ଓ ହାଡ଼ କେତୋଟି ଆଣି ହାଜର କଲ ? ମା'ଙ୍କ ଦେହ ଯେ ଏତେ ଖରାପ, ତାହା ଆମର ଧାରଣାରେ ନ ଥିଲା ।'' ପରଦିନଠାରୁ ସ୍ୱାମୀ ସାରଦାନନ୍ଦଜୀ ମା'ଙ୍କର ଚିକିତ୍ସାର ବ୍ୟବସ୍ଥା କଲେ ।

୨୮ ଫେବୃଆରୀଠାରୁ ଡାକ୍ତର କାଞ୍ଜିଲାଲ ହୋମିଓପାଥିକ୍ ଚିକିତ୍ସା ଆରମ୍ଭ କଲେ । ଚାରିଦିନ ପରେ ଜ୍ୱର କମିଗଲା, କିନ୍ତୁ ଦୁଇଦିନ ପରେ ପୁଣି ୧୦୧ ଡିଗ୍ରୀ ଜ୍ୱର ହେଲା । ଜ୍ୱର ନ କମିବାରୁ କବିରାଜ ଶ୍ୟାମାଦାସ ବାଚସ୍ପତିଙ୍କୁ ଡକାଗଲା ।

ତାଙ୍କ ଚିକିତ୍ସାରେ ପନ୍ଦରଦିନ ଆଉ ଜ୍ୱର ହେଲା ନାହିଁ । ସମସ୍ତଙ୍କ ମନ ଆନନ୍ଦରେ ଭରିଗଲା । ଦିନେ ଭକ୍ତମାନେ ଆସି ମା'ଙ୍କୁ ପ୍ରଣାମ କରିଗଲେ; କିନ୍ତୁ ପୁଣି ରୋଗ ଦେଖା ଦେଲା ଏବଂ ତା' ସହିତ ଗୋଟିଏ ଅସୁବିଧା ମଧ୍ୟ ହେଲା । କବିରାଜ ପ୍ରତିଦିନ ସକାଳେ ଗୋଟିଏ ତିକ୍ତ ପାଚନ ଖାଇବାକୁ କହିଥିଲେ, ଖାଇବାରେ ମା'ଙ୍କର କଷ୍ଟ ହେଉଥିଲା ଏବଂ ମୁହଁ ଏତେ ପିତା ହୋଇଯାଉଥିଲା ଯେ ମଧ୍ୟାହ୍ନ ପର୍ଯ୍ୟନ୍ତ ରୁଚି ହେଉ ନ ଥିଲା । କବିରାଜଙ୍କୁ ଏ କଥା କହିବାରୁ ସେ ଜଣାଇଲେ ଯେ, ଏହି ରୋଗ ପାଇଁ ତାଙ୍କ ଶାସ୍ତ୍ରରେ ଅନ୍ୟ କୌଣସି ଔଷଧ ନାହିଁ । ଅନ୍ୟ କୌଣସି ଉପାୟ ନ ଦେଖି ଆଠ ଏପ୍ରିଲଠାରୁ ଡାକ୍ତରୀ ଚିକିତ୍ସା ପାଇଁ ଶ୍ରୀ ବିପିନ ବିହାରୀ ଘୋଷଙ୍କୁ ଡକାଗଲା । ସେ ମାସେ କାଳ ଚିକିତ୍ସା କରିଥିଲେ; କିନ୍ତୁ ସେଥିରେ କିଛି ଫଳ ନ ହେବାରୁ ମେ ପହିଲାରୁ ଡାକ୍ତର ପ୍ରାଣଧନ ବସୁ ଚିକିତ୍ସାର ଭାର ଗ୍ରହଣ କଲେ । ରୋଗ ନିର୍ଣ୍ଣୟ କରିବା ପାଇଁ ଡାକ୍ତର ସୁରେଶଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓ ଡାକ୍ତର ନୀଳରତନ ସରକାରଙ୍କୁ ମଧ୍ୟ ଅଣା ହୋଇଥିଲା । ମେ ୧୬ରେ ଡାକ୍ତର ବସୁ ଶ୍ରୀମା'ଙ୍କର କଳାଜ୍ୱର ହୋଇଛି ବୋଲି ମତ ପ୍ରକାଶ କଲେ । ସେ ଖୁବ୍ ଯତ୍ନସହକାରେ ଚିକିତ୍ସା କରୁଥିଲେ । କିନ୍ତୁ ସେଥିରେ ମଧ୍ୟ ରୋଗ ଭଲ ହେଲା ନାହିଁ । ପହିଲା ଜୁନ ପୂର୍ବରୁ ଭକ୍ତମାନେ ଜାଣିପାରିଲେ ଯେ ଡାକ୍ତରମାନେ ନିରାଶ ହୋଇପଡ଼ିଛନ୍ତି । ଡାକ୍ତରୀ ଚିକିତ୍ସା ପରିବର୍ତ୍ତନ କରି କବିରାଜ ରାଜେନ୍ଦ୍ରନାଥ ସେନଙ୍କୁ ଚିକିତ୍ସାଭାର ଦିଆଗଲା । କବିରାଜ କାଳୀଭୂଷଣ ସେନ ମଧ୍ୟ ମା'ଙ୍କୁ ଦେଖିବାକୁ ଆସିଥିଲେ । ପରେ କବିରାଜ ଶ୍ୟାମାଦାସଙ୍କୁ ପୁନର୍ବାର ଡକା ହେଲା । ତାଙ୍କ ଛାତ୍ର ରାମଚନ୍ଦ୍ର ମଲ୍ଲିକ ପ୍ରତିଦିନ ମା'ଙ୍କୁ ଦେଖିବାକୁ ଆସୁଥିଲେ ଏବଂ ସ୍ୱହସ୍ତରେ ଔଷଧ ପ୍ରସ୍ତୁତ କରି ଦେଉଥିଲେ । ଶେଷ ତିନିଦିନ ଡାକ୍ତର କାଞ୍ଜିଲାଲ ପୁନରାୟ ହୋମିଓପାଥିକ ଔଷଧ ଦେଇଥିଲେ ।

ଶ୍ରୀମା' ଉଦ୍‌ବୋଧନକୁ ଆସିବା ପରଠାରୁ ସ୍ୱାମୀ ସାରଦାନନ୍ଦଜୀ ତାଙ୍କୁ ଆରୋଗ୍ୟ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ପୂର୍ବୋକ୍ତ ତିନି ପ୍ରକାରର ଚିକିତ୍ସାଛଡ଼ା ସେ ଶାନ୍ତି-ସ୍ୱସ୍ତ୍ୟୟନାଦିର ବ୍ୟବସ୍ଥା ମଧ୍ୟ କରିଥିଲେ; କିନ୍ତୁ ଅବସ୍ଥା କ୍ରମେ ମନ୍ଦ ଦିଗକୁ ଗତିକଲା । ପ୍ରତ୍ୟେକ ଦିନ ତିନି ଚାରିଥର ଜ୍ୱର ହେଉଥିଲା, ଜ୍ୱର ବଢ଼ିଲେ ହୋସ୍ ରହୁ ନ ଥିଲା । ଏଣେ ଗ୍ରୀଷ୍ମକାଳ, ପୁଣି ସେଥିରେ ପିତ୍ତାଧିକ୍ୟ ହେବାରୁ ଦେହ ଏତେ ପୋଡ଼ାଜଳା କରୁଥିଲା ଯେ, ଶ୍ରୀମା' କହୁଥିଲେ, ''ଦଳପୋଖରୀରେ ବୁଡ଼ି ରହିବି ।'' ସେବକ ଓ ସେବିକାମାନେ ବରଫରେ ନିଜ ହାତ ଥଣ୍ଡା କରି ତାଙ୍କ ଦେହରେ ହାତ ବୁଲାଇ ଦେଉଥିଲେ । ବରଫ ନ ଥିଲେ ଯେଉଁମାନଙ୍କର ଦେହ ଥଣ୍ଡା ମା' ତାଙ୍କ ଦେହରେ ହାତ ରଖୁଥିଲେ; ଦୀର୍ଘକାଳ ରୋଗ ଭୋଗି ଭୋଗି ତାଙ୍କର ବ୍ୟବହାର ଶିଶୁମାନଙ୍କ ପରି ହୋଇଯାଇଥିଲା । ସବୁ ସମୟରେ ଶୋଇ ରହିବାକୁ ମଧ୍ୟ ଭଲ ଲାଗୁ ନ ଥିଲା । ଦିନେ ସକାଳେ

ରାସବିହାରୀ ମହାରାଜଙ୍କୁ ଡାକି କହିଲେ, ''ମୋତେ କୋଳରେ ନେଇ ବସ !'' ନିକଟରେ ସରଳା ଦେବୀ ଥିଲେ । ରାସବିହାରୀ ମହାରାଜ ତାଙ୍କୁ କହିଲେ, ''ମା'ଙ୍କୁ କୋଳରେ ନେଇ ବସ ।'' ସେ ରାଜି ନ ହେବାରୁ ଶେଷରେ ତକିଆ ପିଠି ତଳେ ଦେଇ ମା'ଙ୍କୁ ବସାଇ ଦିଆଗଲା ଏବଂ ଦେହରେ ହାତ ବୁଲାଇ ତାଙ୍କୁ ଶାନ୍ତ କରାଗଲା ।

ଏପରି ଅସୀମ ଯନ୍ତ୍ରଣାଦାୟକ ଅସୁସ୍ଥତା ସତ୍ତ୍ୱେ ମା'ଙ୍କର ମାତୃହୃଦୟ ସର୍ବଦା ସ୍ନେହରେ ଉଦ୍‌ବେଳିତ ହେଉଥିଲା, ବରଂ ଏହି ସମୟରେ ଯେପରିକି ସ୍ନେହ ଅଧିକତର ବିକାଶ ଲାଭ କରିଥିଲା । ସକାଳେ କବିରାଜ ଘରକୁ ଯିବା ପୂର୍ବରୁ ସେବକ ଯେତେବେଳେ ଦେହ କିପରି ଅଛି ଖବର ନେବାକୁ ଯାଉଥିଲେ, ସେତେବେଳେ ମା' କହୁଥିଲେ, ''ଖାଇକରି ଯାଅ, ଆସୁ ଆସୁ ଡେରି ହେବ ।'' କବିରାଜମାନେ ତାଙ୍କୁ ଦେଖି ଚାଲିଗଲେ ମା' କହୁଥିଲେ, ''ବୁଢ଼ାର (ଦୁର୍ଗାପ୍ରସାଦ ସେନଙ୍କ) ନାତିକୁ (କବିରାଜ କାଳିଭୂଷଣ ସେନଙ୍କୁ) ଜଳଖିଆ ଖାଇବାକୁ ଦିଅ, ସନ୍ଦେଶ ଦିଅ, ଆମ୍ବ ଦିଅ । ରାମ କବିରାଜଙ୍କୁ ଦିଅ, ବୁଢ଼ା କବିରାଜଙ୍କୁ (ରାଜେନ୍ଦ୍ର ସେନଙ୍କୁ) ଦିଅ ।'' ଡାକ୍ତର କାଞ୍ଜିଲାଲ, ଦୁର୍ଗାପଦ ବାବୁ ବା ଶ୍ୟାମପଦ ବାବୁ ଯେ ଆସନ୍ତୁନା କାହିଁକି, ମା' ସମସ୍ତଙ୍କ ପ୍ରତି ଏହିପରି ସ୍ନେହମମତା ଦେଖାଉଥିଲେ ଏବଂ କୁଶଳପ୍ରଶ୍ନ କରୁଥିଲେ । ଦିନେ ଆରାମବାଗର ପ୍ରଭାକର ବାବୁ ଓ ମଣୀନ୍ଦ୍ରବାବୁ ଆସି ପହଞ୍ଚିବାରୁ ମା' କ୍ଷୀଣସ୍ୱରରେ ରହି ରହି କହିଲେ, ''ଭଲ ଅଛ ବାବା ! ବଞ୍ଚିବି କି ? କିଛି ଖାଇପାରୁ ନାହିଁ, ଭାରୀ ଦୁର୍ବଳ ।'' ସେ ଅଞ୍ଚଳର ଖବର ନେଇ କହିଲେ, ''ବର୍ଷା ହୋଇଛି କି !'' ମା'ଙ୍କ ପରିଚିତ ରମଣୀ ନାମକ ଜଣେ ସ୍ତ୍ରୀଲୋକଙ୍କ ହାତରେ ମଣୀନ୍ଦ୍ରବାବୁ ମା'ଙ୍କ ପାଇଁ ତାଳସଜ ପଠାଇଥିଲେ— ଶ୍ରୀମା'ଙ୍କର ସେକଥା ମନେ ଥିଲା । ତେଣୁ କହିଲେ, ''ରମଣୀ କେତେବେଳେ ଆସିଥିଲା ଜଣା ନାହିଁ—ଜ୍ୱର ବଢ଼ି ହୋସ୍ ନ ଥିଲା । ତାକୁ କୁହ ସେ ଯେପରି ମନ ଦୁଃଖ ନ କରେ ।'' କାଶୀରେ ସେତେବେଳେ ସ୍ୱାମୀ ଅଦ୍ଭୁତାନନ୍ଦଜୀ କଠିନ ରୋଗ ଭୋଗୁଥିଲେ । ମାତାଠାକୁରାଣୀ ଏହି ପୀଡ଼ାର ସମ୍ବାଦ ପାଇଥିଲେ । ତେଣୁ କାଶୀରୁ କେହି ଆସିଲେ ପଚାରୁଥିଲେ, ''ଲାଟୁ କିପରି ଅଛି ?''

ମା'ଙ୍କ ସେବା ପାଇଁ ଉଦ୍‌ବୋଧନରେ ବହୁ ଭକ୍ତ ଉପସ୍ଥିତ ଥିଲେ । ମା'ଙ୍କ ପାଇଁ ସାମାନ୍ୟ କିଛି କରିବାର ସୁଯୋଗ ପାଇଲେ ଏମାନେ ନିଜକୁ ଧନ୍ୟ ମନେ କରୁଥିଲେ; କିନ୍ତୁ ମା' ସେବା ଗ୍ରହଣ କରିବାରେ ଏତେ ସଙ୍କୁଚିତ ଥିଲେ ଯେ, ସେପରି ସୁଯୋଗ ଅତି ଅଳ୍ପ ଜୁଟୁଥିଲା । ଦିନେ ପଥ୍ୟ ଗ୍ରହଣ କରି ମା' ଖଟ ଉପରେ ଶୋଇଛନ୍ତି ଦେଖି ଜଣେ ସେବକ ଭାବିଲେ, ''ବର୍ତ୍ତମାନ ପଙ୍ଖା କଲେ ମାଆ ଆରାମରେ ଶୋଇପାରିବେ ।'' କିନ୍ତୁ ଚାରି ପାଞ୍ଚ ମିନିଟ୍ ପଙ୍ଖା କରୁ ନ କରୁଣୁ ମା' କହିଲେ, ''ଥାଉ, ତୁମ ହାତ ବିନ୍ଧିବ ।'' ସେବକ ବୁଝାଇଲେ ଯେ

ହାତପଙ୍ଖାରେ ବିଶେଷ କଷ୍ଟ ହୁଏ ନାହିଁ, ଯଦି କଷ୍ଟ ହେବ ସେ ଆପେ ବନ୍ଦ କରିବେ । କିନ୍ତୁ ମା' ଅଳ୍ପ ସମୟ ପରେ ପୁର୍ନବାର କହିଲେ, ନା, ବାବା, ତୁମକୁ କଷ୍ଟ ହେବ, ଥାଉ, ମୁଁ ସେମିତି ଶୋଇବି ।'' ତଥାପି ସେବକ ନିଜେ ସେବାରୁ କ୍ଷାନ୍ତ ନ ହେବାରୁ ମା' କହିଲେ, ''ବାବା, ତୁମକୁ କଷ୍ଟ ହେବ ଭାବି ମୁଁ ଶୋଇପାରୁ ନାହିଁ । ତୁମେ ପଙ୍ଖା କର ନାହିଁ, ତା'ହେଲେ ମୁଁ ନିଶ୍ଚିନ୍ତରେ ଶୋଇପାରିବି ।'' ଅଗତ୍ୟା ପଙ୍ଖା କରିବା ବନ୍ଦ ହେଲା—ବୋଧହୁଏ ସେବକ ଦଶ ମିନିଟ୍ ମଧ୍ୟ ସେବା କରିପାରିଲେ ନାହିଁ ।

ଡାକ୍ତର ପ୍ରାଣଧନ ବାବୁ ପ୍ରଥମେ ପ୍ରଥମେ ଯେତେବେଳେ ଆସୁଥିଲେ, ସେତେବେଳେ ତାଙ୍କୁ ଷୋହଳ ଟଙ୍କା ଭିଜିଟ୍ ଏବଂ ପାଞ୍ଚଟଙ୍କା ଟ୍ୟାକ୍‌ସି ଭଡ଼ା ଦିଆ ଯାଉଥିଲା । ଦିନେ ମା'ଙ୍କ ପାଇଁ ଫୁଲ, ଫଳ, ମିଠାଦହି ଇତ୍ୟାଦି ଆସିଥିଲା । ପ୍ରାଣଧନବାବୁ ନିୟମାନୁଯାୟୀ ସଂଧ୍ୟା ପରେ ପରେ ମା'ଙ୍କୁ ଦେଖିସାରି ଯେତେବେଳେ ତଳେ ପୂଜନୀୟ ଶରତ ମହାରାଜଙ୍କ ସହିତ କଥାବାର୍ତ୍ତା କରୁଥିଲେ, ସେତେବେଳେ ମାଆଙ୍କ ଆଦେଶ ଅନୁଯାୟୀ ପ୍ରଚୁର ଫୁଲ ଏବଂ ଫଳ-ମିଷ୍ଟାନ୍ନାଦି ଡାକ୍ତରବାବୁଙ୍କ ଗାଡ଼ିରେ ରଖିଦିଆଗଲା । ଗାଡ଼ିରେ ବସିବା ସମୟରେ ଡାକ୍ତର ବାବୁଙ୍କୁ ଦେଖି ମନେହେଲା, ସେ ଏତେ ଜିନିଷ ପାଇ ଖୁବ୍ ଖୁସି ହୋଇଛନ୍ତି । ପରଦିନ ମଧ୍ୟ ମା'ଙ୍କୁ ଦେଖିବାକୁ ସେ ଆସିଲେ ଏବଂ ମା'ଙ୍କ ଘର ଭଲଭାବରେ ନିରୀକ୍ଷଣ କରି ଦେଖିଲେ, ସେଠାରେ ପରମହଂସଦେବଙ୍କର ଛବି ରହିଛି । ଡାକ୍ତରବାବୁ ଖ୍ରୀଷ୍ଟାନ ସଂପ୍ରଦାୟଭୁକ୍ତ, କିନ୍ତୁ ଠାକୁରଙ୍କ ଛବି ଦେଖି ତାଙ୍କ ମନରେ ଏକ ଉଦାର ଭାବର ଉଦୟ ହେଲା । ସେ ତଳକୁ ଯାଇ ସାରଦାନନ୍ଦଜୀଙ୍କୁ ପଚାରିଲେ, ''ମୁଁ ଏତେଦିନ ଧରି କାହାର ଚିକିତ୍ସା କରୁଛି ?'' ଶରତ ମହାରାଜ ସବୁ କଥା କହିଲେ, ଏବଂ ଏ କଥା ମଧ୍ୟ ଜଣାଇଲେ ଯେ, ଚିକିତ୍ସା ବ୍ୟୟ ଭକ୍ତମାନେ ବହନ କରିଥାଆନ୍ତି । ସହୃଦୟ ଡାକ୍ତରବାବୁ ସେଦିନଠାରୁ ଆଉ ଭିଜିଟ୍ ନେଲେ ନାହିଁ । କେବଳ ସେତିକି ନୁହେଁ, କିଛିଦିନ ପରେ ଯେତେବେଳେ ଚିକିତ୍ସାର ପରିବର୍ତ୍ତନ ହେଲା, ସେତେବେଳେ ମଧ୍ୟ ସେ ନିଜ ଖର୍ଚ୍ଚରେ ଟ୍ୟାକ୍‌ସି କରି ପ୍ରତିଦିନ ଆସୁଥିଲେ ଏବଂ ଅନେକ ସମୟ ରହି ମା'ଙ୍କର ଭଲମନ୍ଦ ବୁଝୁଥିଲେ ।

ରୋଗର ପ୍ରଥମ ଅବସ୍ଥାରେ ଶ୍ରୀମା'ଙ୍କର ସ୍ନେହ ଓ ସୌଜନ୍ୟ ନିଜ ଆତ୍ମୀୟବର୍ଗଙ୍କ ପ୍ରତି ମଧ୍ୟ ପ୍ରସାରିତ ଥିଲା । ଚୈତ୍ର ମାସରେ କଲିକତାରେ ଏଣ୍ଟାଲି ଅଞ୍ଚଳରେ ଠାକୁରଙ୍କ ଉତ୍ସବରେ ଯୋଗ ଦେବାକୁ ଲକ୍ଷ୍ମୀଦେବୀ ଏବଂ ରାମଲାଲ ଦାଦା ଯାଉଥିଲେ । ବାଟରେ ଉଦ୍‌ବୋଧନ ପଡ଼ିବାରୁ ମା'ଙ୍କୁ ଦେଖିବାକୁ ସେମାନେ ଆସିଲେ । ଅନେକ ସମୟ କଥାବାର୍ତ୍ତା ପରେ ମା' କହିଲେ ଯେ ଯୋଗୀନ୍-ମା' ଜ୍ୱରରେ ପଡ଼ି କଷ୍ଟ ପାଉଛନ୍ତି । ଏ କଥା ଶୁଣି ଲକ୍ଷ୍ମୀଦେବୀ ତାଙ୍କୁ ଦେଖିବା ପାଇଁ ଗଲେ ଏବଂ ସେଠାରୁ ବିଦାୟ ନେଇ ସିଧା ଏଣ୍ଟାଲିକୁ ଚାଲିଗଲେ । ଏଣେ ମା'

ସେମାନଙ୍କ ଫେରିବା ବାଟକୁ ଚାହିଁ ବସିଥାଆନ୍ତି । କିନ୍ତୁ ନ ଆସିବାରୁ ଅନୁସନ୍ଧାନ କରି ଜାଣିଲେ ଯେ ସେମାନେ ଚାଲିଯାଇଛନ୍ତି । ଅତଏବ ସେବକଙ୍କୁ କହିଲେ, ''ଦେଖ, ଲକ୍ଷ୍ମୀ ସହିତ କଥା କହୁକହୁ ତାଙ୍କୁ ଶାଢ଼ୀ ଓ ଟଙ୍କା ଦେବାକୁ ଭୁଲି ଯାଇଛି । ତୁମେ କୃଷ୍ଣଲାଲ (ସ୍ୱାମୀ ଧୀରାନନ୍ଦ) ସହିତ ଏଣ୍ଡାଲିକୁ ଯାଅ ଏବଂ ସେଠାରେ ଉତ୍ସବ ଦେଖି ଲକ୍ଷ୍ମୀଙ୍କୁ ଶାଢ଼ୀ ଓ ଟଙ୍କା ଦେଇଆସ । ଏଣ୍ଡାଲିରେ ଉତ୍ସବଦିନ ଭକ୍ତମାନେ ଠାକୁରଙ୍କୁ ସୁନ୍ଦରଭାବେ ସଜାନ୍ତି ।'' ଏତିକି କହି ମା' ଗୋଟିଏ ସରୁଧଡ଼ି ଶାଢ଼ୀ ଏବଂ ଦୁଇଟି ଟଙ୍କା ବାହାର କରି ଦେଲେ ।

ଏହି ଅବସ୍ଥାରେ ଯେ ସେ ଭକ୍ତମାନଙ୍କୁ ଇଷ୍ଟଲାଭ-ପଥରେ ସାହାଯ୍ୟ କରିଛନ୍ତି — କେବଳ ସେତିକି ନୁହେଁ, ବିଶେଷ ବିଶେଷ କ୍ଷେତ୍ରରେ ମନ୍ତ୍ରଦୀକ୍ଷା ମଧ୍ୟ ଦେଇଛନ୍ତି; ତାହାର ପ୍ରମାଣ ରହିଛି । ଏ ବିଷୟରେ ସେ କାହାରି ନିଷେଧ ଶୁଣୁ ନ ଥିଲେ । ରୋଗଶଯ୍ୟାରେ ପଡ଼ିଥିବା ଅବସ୍ଥାରେ ତିନୋଟି ଗଭୀର ବେଦନାଦାୟକ ସମ୍ବାଦ ମା' ପାଇଥିଲେ । ଏପ୍ରିଲ ୨୪ ତାରିଖ ଦିନ ସ୍ୱାମୀ ଅଦ୍ଭୁତାନନ୍ଦଜୀ ଦେହରକ୍ଷା କଲେ ଏବଂ ୧୪ ମେ ଦିନ ଶ୍ରୀମା' ଙ୍କ ଆଶ୍ରିତ ପରମ ଭକ୍ତ ରାମକୃଷ୍ଣ ବସୁ ଶ୍ରୀଶ୍ରୀଠାକୁରଙ୍କ ପାଦପଦ୍ମରେ ଲୀନ ହେଲେ । ଶ୍ରୀମା'ଙ୍କର ଶାରୀରିକ ଅବସ୍ଥା କଥା ଚିନ୍ତାକରି ତାଙ୍କଠାରୁ ସେହି ସମ୍ବାଦ ଗୋପନ ରଖାଗଲା । କିନ୍ତୁ ଅସାବଧାନତାବଶତଃ ଗୋଲାପ-ମା' ସେକଥା କହି ପକାଇଲେ । ସମ୍ବାଦ ପାଇ ଶ୍ରୀମା'ଙ୍କ ଆଖିରୁ ଅବିରଳ ଅଶ୍ରୁ ଝରିବାକୁ ଲାଗିଲା । ସେଦିନ ଜ୍ୱର ବଢ଼ିଲା ଏବଂ ରାତିରେ ଭଲ ନିଦ ମଧ୍ୟ ହେଲା ନାହିଁ । ଏହାର କିଛି ଦିନ ପରେ ଜ୍ୟେଷ୍ଠ ମାସରେ ଶ୍ରୀମା'ଙ୍କର ସହୋଦର ବରଦାପ୍ରସାଦ ଜୟରାମବାଟୀରେ ନିଉମୋନିଆଁ ଜ୍ୱରରେ ଆକ୍ରାନ୍ତ ହୋଇ ଦେହତ୍ୟାଗ କଲେ । ଏ ଖବର ମଧ୍ୟ ଗୋପନ ରଖାଗଲା । ପୂର୍ବରୁ ସେ ଅସୁସ୍ଥ ଥିଲେ ବୋଲି ମା' ସମ୍ବାଦ ପାଇଥିଲେ । ତେଣୁ ମଝିରେ ମଝିରେ ପଚାରୁଥିଲେ, ''ବରଦା କିପରି ଅଛି ?'' ଭାଇଙ୍କ ଦେହତ୍ୟାଗ ପରେ ଶ୍ରୀମା' କହିଲେ, ''ବରଦା ଆଉ କଅଣ ନାହିଁ ? ଦେଖିଲି ସେ ବାରଣ୍ଡାରେ ରେଲିଂକୁ ଆଉଜି ଛିଡ଼ା ହୋଇଛି ଓ ମୋ ଆଡ଼କୁ ଚାହିଁ ରହିଛି ।'' ସେତେବେଳେ ସବୁ କଥା ଖୋଲି କହିବାକୁ ପଡ଼ିଲା । ମା'ଙ୍କ ପକ୍ଷରେ ଏ ସମ୍ବାଦ ଅତ୍ୟନ୍ତ ମର୍ମାନ୍ତିକ । ସ୍ନେହର ଭାଇକୁ ହରାଇ ସେ ଅଶ୍ରୁରୋଧ କରିପାରିଲେ ନାହିଁ ।

ଶ୍ରୀମା'ଙ୍କର ଏହି ଶୋକ ଓ ଅଶ୍ରୁ ଦର୍ଶନ ସମୟରେ ତାଙ୍କର ବୈରାଗ୍ୟ କଥା ମଧ୍ୟ ସ୍ମରଣ ରଖିବାକୁ ପଡ଼ିବ । ଭ୍ରାତାଙ୍କ ପାଇଁ ସେ କାନ୍ଦିଥିଲେ କିନ୍ତୁ ଏହି ଘଟଣାର କିଛି ଦିନ ପରର କଥା ପ୍ରତ୍ୟକ୍ଷ ଦ୍ରଷ୍ଟା ଗୋପେଶ ମହାରାଜ ଏହି ଭାବରେ ବର୍ଣ୍ଣନା କରିଛନ୍ତି — ''ସେତେବେଳେ ମା'ଙ୍କର ଗୋଟିଏ କଥା ଶୁଣି ଅତ୍ୟନ୍ତ ବିସ୍ମିତ ହେଲି । କେତେ ଦିନ ପୂର୍ବରୁ ବରଦା ମାମୁଁ ଦେହତ୍ୟାଗ କରିଥାଆନ୍ତି । ମା' ସେହି ସମ୍ବାଦରେ ସାମୟିକ ଶୋକାର୍ତ୍ତ ହେଲେ ସୁଦ୍ଧା ଅତି ସହଜରେ ତାହା

ମନରୁ ପୋଛି ଦେଇଥାଆନ୍ତି । କୌଣସି ଉଦ୍‌ବେଗ ପ୍ରକାଶ ନ କରି ମା' ମୋତେ କହିଲେ, ''ଶୁଣିଛ, ବରଦା ମରିଯାଇଛି ।'' କାହା କଥା କହୁଛନ୍ତି ନ ବୁଝିପାରି ମୁଁ ତାଙ୍କୁ ଚାହିଁ ରହିଲି, କାରଣ ସେ ବିନ୍ଦୁମାତ୍ର ଶୋକର ଭାବ ପ୍ରକାଶ ନ କରି ଅଚଞ୍ଚଳ ଚିତ୍ତରେ ପ୍ରାଣପ୍ରତିମ ଭାଇର ମୃତ୍ୟୁ ସମ୍ବାଦ ଦେବେ—ଏକଥା ଚିନ୍ତା କରିପାରି ନ ଥିଲି । ମା' ସ୍ପଷ୍ଟ କହିଲେ, ''ଜୟରାମବାଟୀର ଫୁଦେର (କ୍ଷୁଦେର) ବାପା ।'' ଖବର ଶୁଣି ମୁଁ ଅତ୍ୟନ୍ତ ଦୁଃଖିତ ହେଲି କିନ୍ତୁ ତତୋଽଧିକ ବିସ୍ମିତ ହେଲି ମା'ଙ୍କର ବ୍ୟାକୁଳତାର ଅଭାବ ଦେଖି ।''

ଭକ୍ତମାନଙ୍କର ସମ୍ମୁଖରେ ଏହାଠାରୁ ଆହୁରି ବିସ୍ମୟକର ଗୋଟିଏ ଘଟଣା ସେମାନଙ୍କୁ ନିଦାରୁଣ ଭାବରେ ଜଣାଇ ଦେଲା ଯେ, ଶ୍ରୀମା' କ୍ରମେ ମାୟାତୀତ ରାଜ୍ୟକୁ ଚାଲିଯାଉଛନ୍ତି । ତେଣୁ ସ୍ୱେଚ୍ଛାରେ ଗୃହୀତ ସକଳ ବନ୍ଧନ ଆପେ ଆପେ ଅପସରି ଯାଉଛି । ଚୈତ୍ରମାସର ପ୍ରଥମ ସପ୍ତାହରେ ଜଣେ ଭକ୍ତ ଯେତେବେଳେ କହିଲେ, ''ମା' ! ଆପଣଙ୍କ ଶରୀର ଏଥର ଅତ୍ୟନ୍ତ ଖରାପ । ଏତେ ଦୁର୍ବଳ ଦେହ ମୁଁ କେବେ ହେଲେ ଦେଖି ନ ଥିଲି ।'' ସେତେବେଳେ ମା' କହିଲେ, ''ହଁ ବାବା, ଖୁବ୍ ଦୁର୍ବଳ ହୋଇଯାଇଛି । ମନେ ହଏ, ଏହି ଦେହଦ୍ୱାରା ଠାକୁରଙ୍କର ଯାହା କରିବାର ଥିଲା, ତାହା ଶେଷ ହୋଇଛି । ବର୍ତ୍ତମାନ ସର୍ବଦା ତାଙ୍କୁ ଚାହେଁ । ଅନ୍ୟ କିଛି ଆଉ ଭଲ ଲାଗୁ ନାହିଁ । ଏଇ ଦେଖୁନା, ରାଧୁକୁ ଏତେ ଭଲ ପାଉଥିଲି, ତା'ର ସୁଖସୁବିଧା ପାଇଁ କେତେ କରିଛି; ଏବେ ଭାବ ସମ୍ପୂର୍ଣ୍ଣ ବଦଳିଯାଇଛି । ସେ ମୋ ଆଗକୁ ଆସିଲେ ନିରର୍ଥକ ବୋଧହୁଏ, ମନେ ହୁଏ—ସେ କାହିଁକି ମୋ ଆଗକୁ ଆସି ମୋ ମନକୁ ତଳକୁ ଟାଣୁଛି ? ଠାକୁର ତାଙ୍କ କାମ ପାଇଁ ଏତେ ଦିନ ଧରି ଏହିସବୁରେ ମନକୁ ତଳେ ରଖିଥିଲେ, ନ ହେଲେ ସେ ଯେତେବେଳେ ଚାଲିଗଲେ, ତା'ପରେ ମୋର ବଞ୍ଚିରହିବା କଅଣ ସମ୍ଭବ ହୋଇଥାଆନ୍ତା ?''

ଶ୍ରୀମା'ଙ୍କ ମନ ବାସ୍ତବିକ ଜଗତରୁ ଉଠିଯାଇଥିଲା । ଜ୍ୱରରେ ଛଟପଟ ହେଲାବେଳେ ସେ ପ୍ରାୟ କହୁଥିଲେ, ''ମୋତେ ଗଙ୍ଗାତୀରକୁ ନେଇଚାଲ, ଗଙ୍ଗାକୂଳରେ ମୋର ପ୍ରାଣ ଶୀତଳ ହେବ ।''

ଶ୍ରୀମା' ପୁରାତନ ଆବେଷ୍ଟନୀରୁ ମୁକ୍ତ ହେବାକୁ ଚାହୁଁଥିଲେ । ଶରତ ମହାରାଜ ଗଙ୍ଗାକୂଳରେ ଭଡ଼ାଘର ସଂଗ୍ରହ ପାଇଁ ଚେଷ୍ଟା କରୁଥିଲେ । କାଶୀକୁ ନେଇଯିବା କଥା ମଧ୍ୟ ସେ ଭାବୁଥିଲେ କିନ୍ତୁ ଡାକ୍ତରମାନେ ମାଆଙ୍କର ସେହି ଅବସ୍ଥାରେ ଅନ୍ୟ ସ୍ଥାନକୁ ଯିବା ନିଷେଧ କରିଥିଲେ ।

ସ୍ଥାନ ପରିବର୍ତ୍ତନ ଆଉ ହେଲା ନାହିଁ କିନ୍ତୁ ଜାଗତିକ ମାୟା କଟାଇବାରେ କୌଣସି ବାଧା ନାହିଁ । ଗୌରୀ-ମା' ଓ ଦୁର୍ଗାଦେବୀ ପ୍ରତିଦିନ ସକାଳେ ଗଙ୍ଗାସ୍ନାନ କରି ଫେରିବା ପଥରେ ମାଆଙ୍କ ସହିତ ଦେଖା କରୁଥିଲେ ଏବଂ ସେଠାରେ କିଛି ସମୟ ତାଙ୍କୁ ପଙ୍ଖା କରୁଥିଲେ । ଦିନେ ମାଆଙ୍କ ନିକଟକୁ ଆସିବାରୁ ସେ କହିଲେ,

''ମୋତେ ସ୍ପର୍ଶ କର ନାହିଁ । ପ୍ରତିଦିନ କଅଣ କରିବାକୁ, କଅଣ ଦେଖିବାକୁ, ମୋତେ ବିରକ୍ତ କରିବାକୁ ଆସ ?''

ଗୌରୀ-ମା' ଶ୍ରୀମା'ଙ୍କର ଏହି ଅପ୍ରତ୍ୟାଶିତ ଔଦାସୀନ୍ୟ ଦେଖି କାତର କଣ୍ଠରେ କହିଲେ, ''ମାଆ, ଆପଣ ଅସୁସ୍ଥ, ଆମ ମନରେ ଶାନ୍ତି ନାହିଁ । ସର୍ବଦା ଆପଣଙ୍କୁ ଦେଖିବାକୁ ଇଚ୍ଛା ହୁଏ, କିନ୍ତୁ ସମୟ ଅଭାବ । ତେଣୁ ପ୍ରତିଦିନ ଥରେ ଆପଣଙ୍କ ସହିତ ଦେଖା କରି ଯାଏ ।'' ମାଆ କହିଲେ, ''ମୋ ସହିତ ଦେଖା କରି କଅଣ ହେବ ? ମୋତେ ଆଉ କାହାରି ଜଞ୍ଜାଳ ଭଲ ଲାଗୁନାହିଁ ।'' ପରେ କହିଲେ, ''ଯଦି ଆସିବ, ତେବେ ମୋ ଘରେ ପଶିବ ନାହିଁ, କବାଟ ଫାଙ୍କଦେଇ ଦେଖି ଚାଲିଯିବ । କୌଣସି କଥା ମୋତେ କହିବ ନାହିଁ ।'' ଗୌରୀ-ମା' ଏକାବେଳକେ ସ୍ତମ୍ଭୀଭୂତ ! ସେ କୌଣସି କଥା କହିପାରିଲେ ନାହିଁ । ଆଖିରୁ ଅବିରଳ ଅଶ୍ରୁ ଝରିବାକୁ ଲାଗିଲା; ସେ କାନ୍ଦି କାନ୍ଦି ବିଦାୟ ନେଲେ । ପରଦିନଠାରୁ ସେମାନେ ନିୟମିତ ସମୟରେ ଆସି ନିର୍ଦ୍ଦିଷ୍ଟ ସ୍ଥାନରୁ ଅନେକ ସମୟ ଧରି ନୀରବରେ ହୃଦୟର ବେଦନା ଜ୍ଞାପନ କରିବାକୁ ଲାଗିଲେ । ମାଆ ସବୁ ଦେଖନ୍ତି, କିନ୍ତୁ କିଛି କହନ୍ତି ନାହିଁ ।

କେତେଦିନ ପରେ ଠିକ୍ ଏହି ଭାବରେ ଶ୍ରୀମା' ରାଧୁକୁ ମଧ୍ୟ ବିଦାୟ ଦେଲେ । ଏହା ଅବିଶ୍ୱାସ ହେଲେ ମଧ୍ୟ ସତ୍ୟ । ଦେହତ୍ୟାଗ କରିବାର କିଛିଦିନ ପୂର୍ବେ ଶ୍ରୀଶ୍ରୀମା' ରାଧୁକୁ କହିଲେ, ''ଦେଖ୍, ତୁ ଜୟରାମବାଟୀ ଚାଲିଯା, ଏଠାରେ ଆଉ ରହ ନାହିଁ ।'' ସେବିକା ସରଳାଦେବୀଙ୍କୁ କହିଲେ, ''ଶରତକୁ କହ ସେମାନଙ୍କୁ ଜୟରାମବାଟୀ ପଠାଇ ଦେବ ।'' ସେବିକା ପଚାରିଲେ, ''କାହିଁକି ସେମାନଙ୍କୁ ପଠାଇ ଦେବାକୁ କହୁଛନ୍ତି ? ରାଧୁକୁ ଛାଡ଼ି ଆପଣ ରହିପାରିବେ କି ?'' ମା' ଦୃଢ଼ସ୍ୱରରେ କହିଲେ, ''ଖୁବ୍ ପାରିବି, ମନ ଛାଡ଼ିଯାଇଛି ।'' ସେବିକା ଯୋଗୀନ୍-ମା' ଓ ସାରଦାନନ୍ଦଜୀଙ୍କୁ ଜଣାଇବାରୁ ଯୋଗୀନ୍-ମା' ଶ୍ରୀମା'ଙ୍କୁ ପ୍ରଶ୍ନ କଲେ, ''ମା', କାହିଁକି ସେମାନଙ୍କୁ ପଠାଇଦେବାକୁ କହୁଛ ?'' ମାଆ ଉତ୍ତର ଦେଲେ, ''ଯୋଗୀନ୍, ପରେ ସେମାନଙ୍କୁ ସେଠାରେ ହିଁ ରହିବାକୁ ହେବ । ହରି (ସ୍ୱାମୀ ହରିପ୍ରେମାନନ୍ଦ) ଜୟରାମବାଟୀ ଯାଉଛି, ତା' ସହିତ ପଠାଇଦିଅ । ତା'ଠାରୁ ମନ ଉଠିଯାଇଛି, ଆଉ ତା'ର ପ୍ରୟୋଜନ ନାହିଁ ।'' ଯୋଗୀନ୍-ମା' ଅନୁନୟ କରି କହିଲେ, ''ସେପରି କଥା କୁହ ନାହିଁ ମା' ! ତୁମେ ମନ ଉଠାଇ ନେଲେ ଆମେ ବଞ୍ଚି ରହିବୁ କିପରି ?'' ମାୟାତୀତ ଲୋକକୁ ପ୍ରସାରିତଦୃଷ୍ଟି ଶ୍ରୀମା' କହିଲେ, ''ଯୋଗେନ୍, ମାୟା କାଟିଦେଇଛି, ଆଉ ନୁହେଁ ।'' ଯୋଗୀନ୍-ମା' ଆଉ କଅଣ କହିବେ ? ମନର ବେଦନା ସାରଦାନନ୍ଦଜୀଙ୍କୁ ଯାଇ ଜଣାଇଲେ । ସେ ସବୁ କଥା ଶୁଣି ହତାଶ ହୋଇ କହିଲେ, ''ତେବେ ଆଉ ମା'ଙ୍କୁ ରଖି ହେବ ନାହିଁ । ରାଧୁ ଉପରୁ ଯେତେବେଳେ ମନ ଉଠିଯାଇଛି, ଆଉ କୌଣସି

ଆଶା ନାହିଁ ।'' ସେବିକା ନିକଟରେ ଥିଲେ । ତାଙ୍କୁ ସାରଦାନନ୍ଦଜୀ କହିଲେ, ''ତୁମେମାନେ ଚେଷ୍ଟା କରି ଦେଖ, ଯଦି ମା'ଙ୍କ ମନ ରାଧୁପ୍ରତି ଆକୃଷ୍ଟ ହୁଏ ।'' କିନ୍ତୁ ସେମାନଙ୍କ ଚେଷ୍ଟାରେ କୌଣସି ଫଳ ହେଲା ନାହିଁ; ସେମାନଙ୍କର ଉଦ୍ଦେଶ୍ୟ ବୁଝି ଶ୍ରୀମା' ଦିନେ ସ୍ପଷ୍ଟ କହିଲେ, ''ଯେଉଁ ମନ ଥରେ ଉଠେଇ ନେଇଛି, ତାହା ଆଉ ତଳକୁ ଆସିବ ନାହିଁ ।''

ଶ୍ରୀମାଆଙ୍କର ଏହି ଦୃଢ଼ନିଶ୍ଚୟ କ୍ରମେ ସ୍ପଷ୍ଟ ହୋଇ ଉଠିଲା ଏବଂ ସମସ୍ତେ ଅତିଶୟ ଶଙ୍କିତ ହେଲେ । ବ୍ରହ୍ମଚାରୀ ହରି ଜୟରାମବାଟୀକୁ ଚାଲିଯିବା ପରେ ଶ୍ରୀମା' ଦିନେ ସେବକ ବରଦାଙ୍କୁ କହିଲେ, ''ରାଧୁ, ନଳିନୀ—ସେମାନେ ହରି ସହିତ ଗାଁକୁ ଗଲେ ନାହିଁ କାହିଁକି ? ସେମାନଙ୍କୁ ଜୟରାମବାଟୀରେ ଛାଡ଼ିଦେଇ ଆସ ।'' ଏକଥା ସାରଦାନନ୍ଦଜୀଙ୍କୁ ଜଣାଇବାରୁ ସେ କର୍ତ୍ତବ୍ୟ ସ୍ଥିର କରିପାରିଲେ ନାହିଁ । ଭକ୍ତମାନେ ମଧ୍ୟ ଭାବିଲେ—''ମା' ରାଧୁଗତପ୍ରାଣ, ତାଙ୍କୁ ଏତେ ଭଲ ପାଆନ୍ତି, ତାକୁ ଛାଡ଼ି ମୁହୂର୍ତ୍ତେ ରହି ପାରନ୍ତି ନାହିଁ । ଏତେ ରୋଗ ଥିବାସତ୍ତ୍ୱେ ରାଧୁ ଓ ତା' ପୁଅର ସନ୍ଧାନ ନିଅନ୍ତି; ଅଥଚ ବର୍ତ୍ତମାନ ଏହି ଅବସ୍ଥାରେ ସେମାନଙ୍କୁ ଜୟରାମବାଟୀରେ ଛାଡ଼ିଦେଇ ଆସିବାକୁ କହୁଛନ୍ତି ! ଘଟଣା କ'ଣ ?'' ଶ୍ରୀମା'ଙ୍କର ମନୋଭାବ ସେଦିନ ଯଦିଓ ସମସ୍ତେ ବୁଝିପାରିଲେ ନାହିଁ, ତଥାପି ଅଳ୍ପ କେତେକ ଦିନ ଭିତରେ ମା'ଙ୍କର ଦୃଢ଼ତାପୂର୍ଣ୍ଣ ବ୍ୟବହାର ଦେଖି ଏ ବିଷୟରେ ଆଉ କାହାର ସନ୍ଦେହ ରହିଲା ନାହିଁ । ମା'ଙ୍କର ବିରକ୍ତି ଦେଖି ନଳିନୀଦେବୀ ମାଆଙ୍କ ନିକଟକୁ ଯିବାକୁ ଆଉ ସାହସ କଲେ ନାହିଁ ଏବଂ ସୁଶୀଳା (ମାକୁ) ତାଙ୍କ ଔଦାସୀନ୍ୟ ଦେଖି ମର୍ମାହତ ହେଇ ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଏହି ଅବସ୍ଥା ଦେଖି ନଳିନୀଦେବୀ କହିଲେ, ଆମେ ରହିଲେ ଯଦି ପିଉସୀଙ୍କର କଷ୍ଟ ହୁଏ ତେବେ ଆମେ ଚାଲିଯିବୁ; କିନ୍ତୁ ଲୋକେ କ'ଣ କହିବେ ? ଲୋକେ କହିବେ, ଦେଖୁଛ, ତାଙ୍କର ଏପରି ରୋଗ, ଆଉ ଏମାନେ ଏହି ସମୟରେ ତାଙ୍କୁ ଛାଡ଼ି ଚାଲି ଆସିଛନ୍ତି !''

ସାରଦାନନ୍ଦଜୀ ଏକଥା ଶୁଣି ଶ୍ରୀମା'ଙ୍କୁ ବୁଝାଇଲେ, ''ଆପଣଙ୍କର ଏପରି ଅବସ୍ଥାରେ ଏମାନେ ଚାଲିଯିବେ କିପରି ? ଆପଣ ଟିକେ ସୁସ୍ଥ ହେଲେ ସେମାନେ ଚାଲିଯିବେ ।'' ତଥାପି ମାଆ କହିଲେ, ''ତାଙ୍କୁ ପଠାଇଦେଲେ ଭଲ ହୋଇଥାଆନ୍ତା । ସେମାନେ ରହନ୍ତୁ ପଛେ, କିନ୍ତୁ ମୋ ନିକଟକୁ ଯେପରି ନ ଆସନ୍ତି । ମୁଁ ସେମାନଙ୍କର ଛାୟା ମଧ୍ୟ ଦେଖିବାକୁ ଚାହେଁ ନାହିଁ । ମା' ସମ୍ପୂର୍ଣ୍ଣ ମାୟାନିର୍ମୁକ୍ତ । କେବଳ କଥାରେ ନୁହେଁ, ବ୍ୟବହାରରେ ଅଧିକତର ବୈରାଗ୍ୟ ପ୍ରକାଶ ପାଇଲା । ଦେହରକ୍ଷା କରିବାର ପ୍ରାୟ ୧୦ଦିନ ପୂର୍ବରୁ ମା' ଖଟ ଛାଡ଼ି ତଳେ ଶୋଉଥିଲେ । ଦିନେ ଖରାବେଳେ ସେବିକାମାନେ ଆହାର କରିବାକୁ ଯାଉଛନ୍ତି, ଜଣେ ସେବକ ମା'ଙ୍କ ପାଖରେ ବସି ତାଙ୍କ ଗୋଡ଼ ଘସୁଛନ୍ତି । ରାଧୁ

ପାଖ ଘରେ ଶୋଇଥାଏ । ତା'ପୁଅ ଉଠି ହାମୁଡ଼େଇ ହାମୁଡ଼େଇ ଆସି ଅଭ୍ୟାସ ଅନୁଯାୟୀ ମା'ଙ୍କ ଉପରକୁ ଉଠିବାକୁ ଚେଷ୍ଟା କଲା । ଶ୍ରୀମା' ପୁଅକୁ ଲକ୍ଷ୍ୟ କରି କହିଲେ, ''ତୁମମାନଙ୍କର ମାୟା ପୂରାପୂରି ଛାଡ଼ିଯାଇଛି । ଚାଲିଯା, ଆଉ ପାରିବି ନାହିଁ ।'' ତା'ପରେ ସେବକଙ୍କୁ କହିଲେ, ''ଏହାକୁ ନେଇ ତା' ମା' ପାଖରେ ଛାଡ଼ିଦେଇ ଆସ । ଏମାନଙ୍କୁ ଆଉ ଦେଖିବାକୁ ଭଲ ଲାଗୁନାହିଁ ।'' ସେବକ ପୁଅକୁ କୋଳରେ ନେଇ ତା' ଆଈଙ୍କ ପାଖରେ ଛାଡ଼ିଦେଇ ଆସିଲେ ।

ମା'ଙ୍କର ରୋଗ ବଢ଼ିଚାଲିଛି; ଦେହ ଶୀର୍ଣ୍ଣ ହୋଇ ବିଛଣା ସହିତ ମିଶିଯାଇଛି, ଚିକିତ୍ସକମାନେ ଜୀବନର ଆଶା ଛାଡ଼ି ଦେଇଛନ୍ତି । ଶ୍ରୀମା' ମଧ୍ୟ ସେ କଥା ଜାଣନ୍ତି ଏବଂ ସେଥିପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ ହେଉଛନ୍ତି । ପୂର୍ବଥର ଅସୁସ୍ଥତା ପରେ ସେ କହିଥିଲେ, ''ପୁଣି ଏହିପରି ରୋଗ ଭୋଗିବାକୁ ହେବ ।'' ତାଙ୍କର ପ୍ରିୟ ସେବକ ଦିନେ ଅତି ବିନୟ ସହକାରେ କହିଲେ, ''ମା', ତୁମେ ଇଚ୍ଛା କଲେ ଭଲ ହୋଇଯିବ ।'' ମା' ଉତ୍ତର ଦେଲେ, ''ମରିବାକୁ କିଏ ଚାହେଁ ?'' ସେତେବେଳେ ତାଙ୍କର ଇଚ୍ଛା ବୋଲି କିଛି ନ ଥିଲା । ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ଶେଷ ଆହ୍ୱାନ ପାଇଁ ଚାହିଁ ବସିଛନ୍ତି, ଆଉ କହୁଛନ୍ତି — ସେ ଯେତେବେଳେ ନେଇଯିବେ, ଚାଲିଯିବି । ଜୀବର କଲ୍ୟାଣ ପାଇଁ ସେ ଦେହଧାରଣ କରିଥିଲେ ଏବଂ ମାୟାତୀତ ମନକୁ କୌଣସି ପ୍ରକାରେ ଜଗତରେ ନିଯୁକ୍ତ ରଖିବା ପାଇଁ ରାଧୁ ସହିତ ଗୋଟିଏ ମାୟିକ ସମ୍ବନ୍ଧ ସ୍ଥାପନ କରିଥିଲେ । ବର୍ତ୍ତମାନ ସେ ସମ୍ବନ୍ଧ କଟିଯାଇଛି, ତେଣୁ ରାଧୁକୁ ଦିନେ କହିଲେ, ''ବନ୍ଧନ କାଟି ଦେଇଛି । ତୁ ମୋର କଅଣ କରିବୁ, ମୁଁ କଅଣ ମଣିଷ ?'' ରାଧୁ ସହିତ ଏହା ତାଙ୍କର ଶେଷ କଥା । ରାଧୁ ତାଙ୍କୁ ନିଜର ପିଉସୀ ବୋଲି ଜାଣିଥିଲା, ସୁତରାଂ ଏହି କଥାର ମର୍ମ ସେ ସେତେବେଳେ ବୁଝିପାରି ନ ଥିଲା ଏବଂ ମା' ମଧ୍ୟ ତାକୁ ସେ କଥା ବୁଝିବାର କୌଣସି ସୁଯୋଗ ଦେଇ ନ ଥିଲେ ।

ଦେହତ୍ୟାଗ କରିବାର ମାସକ ପୂର୍ବେ ମା' ତାଙ୍କ ଘରେ ଶ୍ରୀଶ୍ରୀଠାକୁରଙ୍କର ଯେଉଁ ଛବି ପୂଜା ହେଉଥିଲା, ତାହା ଅନ୍ୟ ଘରକୁ ନେଇଯିବାକୁ କହିଲେ । ଏକଥା ଶୁଣି ସମସ୍ତେ ଅବାକ୍ ହେବାରୁ ମା' କହିଲେ ଯେ, ଶୌଚାଦି ପାଇଁ ସେ ଆଉ ବାହାରକୁ ଯାଇପାରିବେ ନାହିଁ । ତାଙ୍କ ଇଚ୍ଛାନୁଯାୟୀ ଠାକୁରଙ୍କ ଛବି ଅନ୍ୟ ଘରେ ରଖାହେଲା ।

ଲୀଳାବସାନର ସାତଦିନ ପୂର୍ବେ ସକାଳ ସାଢ଼େ ଆଠଟା ସମୟରେ ଶ୍ରୀମା' ଶରତ ମହାରାଜଙ୍କୁ ଡକାଇଲେ । ସେ ଆସି ମା'ଙ୍କ ଗୋଡ଼ ପାଖରେ ଆଣ୍ଠୁମାଡ଼ି ବସିଲେ ଏବଂ ନଇଁପଡ଼ି ମା'ଙ୍କ ହାତ ଆଉଁସିବା ପାଇଁ ହାତ ବଢ଼ାଇଲେ । ମା' ମହାରାଜଙ୍କର ଡାହାଣ ହାତଟି ନିଜ ବାମ ହାତ ତଳେ ରଖି କହିଲେ, ''ଶରତ, ଏମାନେ ରହିଲେ ।'' ଏତିକି କହି ହାତ କାଢ଼ିନେଲେ । ଶରତ ମହାରାଜ ଅତି

କଷ୍ଟରେ ଅଶ୍ରୁରୋଧ କରି ଭାରାକ୍ରାନ୍ତ ହୃଦୟରେ ଉଠି ଠିଆ ହେଲେ ଏବଂ ଆସ୍ତେ ଆସ୍ତେ ପଛେଇ ପଛେଇ ଘରୁ ବାହାରି ଆସିଲେ ।

ସେତେବେଳେ ସେବକମାନଙ୍କର କର୍ତ୍ତବ୍ୟ ଥିଲା ଡାକ୍ତରମାନଙ୍କ ଘରକୁ ଯିବା, ଔଷଧ ଆଣିବା, ପଥ୍ୟ ପ୍ରସ୍ତୁତ କରିବା, ପଙ୍ଖା କରିବା ଇତ୍ୟାଦି । ସେବିକାମାନଙ୍କର କାମ ମା'ଙ୍କର ଆହାର ପ୍ରସ୍ତୁତ କରିବା, ତାଙ୍କୁ ପଥ୍ୟ ଖୁଆଇବା, ତାଙ୍କ ଲୁଗାପଟା କାଚିବା, ବିଛଣା ପରିଷ୍କାର କରିବା ଇତ୍ୟାଦି । ମା'ଙ୍କର ସେତେବେଳେ ଛୋଟ ବାଳିକା ଭଳି ବ୍ୟବହାର—ସରଳ, ଛୋଟ ଛୋଟ ବିଷୟରେ ଜିଦ୍ କରିବା, ଅଥଚ ସବୁ ମାୟିକ ସମ୍ପର୍କର ଅତୀତ । ଦିନେ ରାତି ବାରଟା ସମୟରେ ସେବିକା ସରଳାଦେବୀ ତାଙ୍କୁ ଖୁଆଇବାକୁ ଯିବାରୁ ମା' ଜିଦ୍ ଧରିଲେ, ''ମୁଁ ଖାଇବି ନାହିଁ । ତୋର ଖାଲି ଗୋଟିଏ କଥା, ମା' ଖାଅ । ଆଉ କାଖରେ କାଠି (ଥର୍ମୋମିଟର) ଲଗାଅ ।'' ସେବିକା ଜାଣିଥିଲେ ଏପରି କ୍ଷେତ୍ରରେ ଶରତ ମହାରାଜଙ୍କୁ ଡାକିବା କଥା କହିଲେ ମା' ନିର୍ବିବାଦରେ ଆହାର କରୁଥିଲେ । ତେଣୁ କହିଲେ, ''ମା', ତାହାହେଲେ କଅଣ ମହାରାଜଙ୍କୁ ଡାକିବି ?'' ମା' କିନ୍ତୁ ଖାଇବାକୁ ରାଜି ନ ହୋଇ କହିଲେ, ''ଶରତକୁ ଡାକ୍, ମୁଁ ତୋ ହାତରେ ଖାଇବି ନାହିଁ ।'' ଖବର ପାଇ ସାରଦାନନ୍ଦଜୀ ତତ୍କ୍ଷଣାତ୍ ଉପସ୍ଥିତ ହେଲେ । ମା' ତାଙ୍କୁ ନିକଟରେ ବସାଇ କହିଲେ, ''ଟିକେ ହାତ ବୁଲାଇ ଦିଅ ତ ବାବା'' ଏବଂ ତାଙ୍କର ହାତ ଦୁଇଟି ଧରି କହିଲେ, ''ଦେଖୁଛ ବାବା, ଏମାନେ ମୋତେ କେତେ ବିରକ୍ତ କରୁଛନ୍ତି—ଖାଲି କହୁଛନ୍ତି ଖାଅ, ଖାଅ, ଆଉ ଖାଲି କାଖରେ କାଠି ଲଗାଇବା; ତୁମେ ସେମାନଙ୍କୁ କହିଦିଅ ଯେପରି ଆଉ ବିରକ୍ତ ନ କରନ୍ତି ।'' ସାରଦାନନ୍ଦଜୀ କୋମଳଭାବରେ କହିଲେ, ''ନା ମା', ସେମାନେ ଆଉ ଆପଣଙ୍କୁ ବିରକ୍ତ କରିବେ ନାହିଁ ।'' ଏହିଭାବରେ ସାନ୍ତ୍ୱନା ଦେଇ କିଛି ସମୟ ପରେ ପଚାରିଲେ, ''ମା' ଏବେ ଅଳ୍ପ କିଛି ଖାଇବେ କି ?'' ମା' ସେ କଥାରେ ରାଜି ହେଲେ । ମହାରାଜ ସେବିକାକୁ ଥାଳି ସଜାଇ ଆଣିବାକୁ କହିବାରୁ ମା' କହିଲେ, ''ନା, ତୁମେ ମୋତେ ଖୁଆଇଦିଅ, ମୁଁ ତା' ହାତରେ ଖାଇବି ନାହିଁ ।'' ସାରଦାନନ୍ଦଜୀ 'ଫିଡିଙ୍ଗ୍ କପ୍' ହାତରେ ନେଇ ଅଳ୍ପ ଦୁଧ ମୁହଁରେ ଦେଇ କହିଲେ, ''ମା, ଆସ୍ତେ ଆସ୍ତେ ଖାଆନ୍ତୁ ।'' ଏହି କୋମଳ କଥାରେ ମା' ଖୁସୀ ହୋଇ କହିଲେ, ''ଦେଖୁଛ, କିପରି ସୁନ୍ଦର କଥା, ମା' ଆସ୍ତେ ଆସ୍ତେ ଖାଆନ୍ତୁ ! ସେମାନେ କଅଣ ଆଉ ଏକଥା ଜାଣନ୍ତି ନାହିଁ ? ମିଛଟାରେ ପୁଅକୁ ଏତେ ରାତିରେ କଷ୍ଟ ଦେଲେ । ଯାଅ ବାବା, ଶୋଇପଡ଼ ।'' ଏହା କହି ପ୍ରିୟ ସନ୍ତାନ ଦେହରେ ହାତ ବୁଲାଇବାକୁ ଲାଗିଲେ । ସାରଦାନନ୍ଦଜୀ ମଶାରି ଟଙ୍ଗାଇ ଦେଇ କହିଲେ, ''ଏବେ ତାହା ହେଲେ ଆସୁଛି ମା' ?'' ମା' କହିଲେ, ''ଆସ ବାବା, ତୁମର କେତେ କଷ୍ଟ ହେଲା !'' ପୂର୍ବେ ସାରଦାନନ୍ଦଜୀଙ୍କର ସେବା କରିବାର

ଆକାଙ୍‌କ୍ଷା ଥିବା ସତ୍ତ୍ୱେ ସେ କେବଳ ଦୂରରୁ ତାହା କରୁଥିଲେ । ଏବେ ଶ୍ରୀମା' ତାଙ୍କର ସେ ଇଚ୍ଛା ପୂର୍ଣ୍ଣ କଲେ ।

ସେ ରାତିର ଘଟଣା ଯଦିଓ ସମାପ୍ତ ହେଲା, ତଥାପି ଶ୍ରୀମା'ଙ୍କର ପିଲାଳିଆ ବ୍ୟବହାର କମିଲା ନାହିଁ । ସକାଳେ ତାଙ୍କର ବାଳକ ସେବକ ବରଦାକୁ କହିଲେ, ''ତୁ ଆଉ କୁଆଡ଼େ ଯିବୁ ନାହିଁ, ସର୍ବଦା ମୋ ପାଖରେ ରହିବୁ । ସେମାନେ ମୋତେ ଭାରୀ ବିରକ୍ତ କରୁଛନ୍ତି—କେବଳ କାଠି ଲଗାଇବେ ଏବଂ କହିବେ ଖାଅ, ଖାଅ ।'' ମା'ଙ୍କର ଏହି ବିରକ୍ତିଭାବ ଦେଖି ଶରତ ମହାରାଜ ଅତି ଚିନ୍ତିତ ହେଲେ; ସେ ମା'ଙ୍କ ନିକଟକୁ ଆସି ତାଙ୍କ ବିଛଣାରେ ବସିଲେ ଏବଂ ଯତ୍ନ ସହକାରେ ତାଙ୍କ ମସ୍ତକରେ ହାତ ବୁଲାଇବାକୁ ଲାଗିଲେ, ଅତି ନମ୍ର ଓ କୋମଳ ସ୍ୱରରେ ବୁଝାଇଲେ, ''ମା', ସେମାନଙ୍କ ମନରେ ଖୁବ୍ କଷ୍ଟ ହେବ । ସେମାନେ ଆଉ କାଠି ଲାଗାଇବେ ନାହିଁ । ବର୍ତ୍ତମାନ ଖାଇବା ସମୟ ହେଲା, କିଏ ଖୁଆଇବ ?'' ପରେ ସେବକଙ୍କୁ କହିଲେ, ''ଦୁଧ ଫିଡିଙ୍ଗ୍ କପ୍‌ରେ ଆଣ, ମୁଁ ପିଆଇ ଦେବି ।'' ମା' କହିଲେ, ''କାହିଁକି, ବରଦା ପିଆଇବ । ବରଦା ଦୁଧ ଆଣ, ମୁଁ ପିଇବି ।'' ସେବକ ଦୁଧ ଆଣି ମା'ଙ୍କ ମୁହଁରେ ଦେବାରୁ ସେ ଚମକି ଉଠିଲେ । ଦୁଧ ଅଧିକ ଗରମ ଥିଲା, କାଳେ ଶରତ ମହାରାଜ କିମ୍ବା ସେବକ ଚିନ୍ତିତ ହେବେ ସେଥିପାଇଁ ଅତି କୋମଳଭାବରେ କହିଲେ, ''କିଛି ହୋଇ ନାହିଁ । ଅଳ୍ପ ଥଣ୍ଡା ହେଉ । ବରଦା ଏ କାମ ଭଲ ପାରିବ ।''

ପ୍ରତ୍ୟେକ ଘଟଣା ସହିତ ମିଶ୍ରିତ ଥିଲା ଏକ ଅସୀମ କରୁଣାର ଭାବ । ସେବକର ତ୍ରୁଟିସତ୍ତ୍ୱେ ତାଙ୍କପ୍ରତି ସସ୍ନେହ ବ୍ୟବହାର ଏକଥା ପ୍ରମାଣିତ କରେ । ସେବିକାଙ୍କ ପ୍ରତି ପରବର୍ତ୍ତୀ ବ୍ୟବହାରରେ ମଧ୍ୟ ଆମେ ଏହି ସ୍ନେହର ପରିଚୟ ପାଇବା । ସେତେବେଳେ ମା'ଙ୍କ ସେବା ପାଇଁ ଦୁଇ ଜଣ ସେବକ ଥିଲେ— ରାସବିହାରୀ ମହାରାଜ ଓ ବରଦା ମହାରାଜ ଏବଂ ଦୁଇଜଣ ସେବିକା— ସରଳାଦେବୀ ଓ ନବାସନର ବୋହୂ । କେବେ କେମିତି ଅନ୍ୟମାନେ ମଧ୍ୟ ଏମାନଙ୍କୁ ସାହାଯ୍ୟ କରୁଥିଲେ । ଜଣେ ରୋଗୀଙ୍କ ପକ୍ଷରେ ବାରମ୍ବାର ଖାଇବା ଆଉ ଥର୍ମୋମିଟର ଲଗାଇବା ବିଷୟରେ ବିରକ୍ତ ହେବା ସ୍ୱାଭାବିକ—ଏକଥା ଜାଣି ସେବିକା ସରଳାଦେବୀ ଶରତ ମହାରାଜଙ୍କୁ ଅନ୍ୟ କାମ ଦେବାକୁ କହିଲେ । ତା' ପର ଦୁଇଦିନ ବରଦା ଓ ନବାସନର ବୋହୂ ଦୁଧ ପିଆଇବା ଇତ୍ୟାଦି କାମ କଲେ ଏବଂ ସରଳାଦେବୀ ଅନ୍ୟ ଦାୟିତ୍ୱରେ ରହିଲେ । ଶ୍ରୀମା' ଲକ୍ଷ୍ୟ କଲେ ଯେ ସରଳାଦେବୀ ଆଉ ପୂର୍ବପରି ଆସୁ ନାହାନ୍ତି; ତେଣୁ ତାଙ୍କ ବିଷୟରେ ଜାଣିବାକୁ ଇଚ୍ଛା ପ୍ରକାଶ କଲେ । ଦ୍ୱିତୀୟ ଦିନ ଦ୍ୱିପ୍ରହରରେ ମା' ତାଙ୍କୁ ଡକାଇଲେ ଏବଂ ତାଙ୍କ ମସ୍ତକ ନିଜ ଉପରକୁ ଟାଣି ଆଣି କହିଲେ, ''ତୁ ମୋ ଉପରେ ରାଗିଛୁ ମା' ? ମୁଁ ଯଦି କିଛି କହିଥାଏ, କିଛି ମନେ କରିବୁ ନାହିଁ ।'' ସରଳାଦେବୀ କିଛି

କହିପାରିଲେ ନାହିଁ, ତାଙ୍କ ଆଖିରୁ ଅଶ୍ରୁ ଝରିବାକୁ ଲାଗିଲା । ସେ ପୁନର୍ବାର ପୂର୍ବପରି ସେବା କରିବାକୁ ଲାଗିଲେ ।

ଦୀର୍ଘକାଳ ବିଛଣାରେ ପଡ଼ିପଡ଼ି ମା'ଙ୍କ ଦେହରେ ଶଯ୍ୟାକ୍ଷତ ଦେଖାଦେଲା । ମା' ସେତେବେଳେ ଖୁବ୍ ଦୁର୍ବଳ ହୋଇ ପଡ଼ିଥାଆନ୍ତି । ବିଛଣାରୁ ଉଠିବାର ଶକ୍ତି ନ ଥାଏ । ଶ୍ରୀମତୀ ସୁଧୀରାଦେବୀ ଓ ନିବେଦିତା ବିଦ୍ୟାଳୟର ବାଳିକାମାନେ ପାଳିକରି ସେବା କରନ୍ତି । ଦେହାନ୍ତ ହେବାର ପାଞ୍ଚଦିନ ପୂର୍ବର କଥା । ଭକ୍ତ ଅନ୍ନପୂର୍ଣ୍ଣା-ମା' ଶ୍ରୀମା'ଙ୍କ ଦର୍ଶନ ପାଇଁ ଆସିଥାଆନ୍ତି; କିନ୍ତୁ ଭିତରକୁ ଯିବା ନିଷେଧ ବୋଲି ଦୁଆରବନ୍ଧରେ ଠିଆ ହୋଇ ରହିଲେ । ହଠାତ୍ କଡ଼ ଲେଉଟାଇ ମା' ତାଙ୍କୁ ଲକ୍ଷ୍ୟ କଲେ ଏବଂ ନିକଟକୁ ଆସିବାକୁ କହିଲେ । ଅନ୍ନପୂର୍ଣ୍ଣା-ମା' ପ୍ରଣାମ କରି କାନ୍ଦିବାକୁ ଲାଗିଲେ । ''ମା, ଆମର କ'ଣ ହେବ ?'' କରୁଣାବିଗଳିତ କ୍ଷୀଣ କଣ୍ଠରେ ଅଭୟ ଦେଇ ମା' ଆସ୍ତେ ଆସ୍ତେ କହିଲେ, ''ଭୟ କଅଣ ? ତୁମେ ଠାକୁରଙ୍କୁ ଦେଖିଛ, ତୁମର ଆଉ ଭୟ କଅଣ ?'' କିଛି ସମୟ ଚୁପ୍ ରହି କହିଲେ, ''ତେବେ ଗୋଟିଏ କଥା କହୁଛି—ଯଦି ଶାନ୍ତି ଚାହଁ ମା', ତେବେ କାହାରି ଦୋଷ ଦେଖିବ ନାହିଁ । ଦୋଷ ଦେଖିବ ନିଜର । ଜଗତକୁ ଆପଣାର କରିନେବାକୁ ଶିଖ । କେହି ପର ନୁହେଁ ମା', ଜଗତ ତୁମର ।'' ଯେଉଁମାନଙ୍କ ଦୁଃଖରେ ବିଚଳିତ ହୋଇ ଅଭୟା ଶରୀର ଧାରଣ କରିଥିଲେ ଏବଂ ଅଶେଷ ଯନ୍ତ୍ରଣା ଭୋଗ କରିଥିଲେ, ସେହି ଆର୍ତ୍ତମାନଙ୍କ ପ୍ରତି ଏହା ତାଙ୍କର ଶେଷ ବାଣୀ ।

ବିଦାୟର ତିନିଦିନ ପୂର୍ବରୁ ସେ ବେଶୀ କଥାବାର୍ତ୍ତା କରୁ ନ ଥିଲେ—ସର୍ବଦା ଆତ୍ମସ୍ଥ ହୋଇ ରହୁଥିଲେ । ସାଧାରଣ କଥାବାର୍ତ୍ତାରେ ବିରକ୍ତି ପ୍ରକାଶ କରୁଥିଲେ । ଧୀରେ ଧୀରେ ବାକ୍‌ରୁଦ୍ଧ ହେଲା । ରୋରୁଦ୍ୟମାନ ସେବକମାନଙ୍କ ପ୍ରତି ତାଙ୍କର ଶେଷ ସାନ୍ତ୍ୱନା—''ଶରତ ରହିଲା, ଭୟ କଅଣ !''

ଅବଶେଷରେ ୧୩୨୭ ସାଲ ୪ ଶ୍ରାବଣ, ମଙ୍ଗଳବାର ରାତି ଦେଢ଼ଟା ସମୟରେ (୨୧ ଜୁଲାଇ, ୧୯୨୦ ଖ୍ରୀଷ୍ଟାବ୍ଦ) ଶ୍ରୀମା' କେତେଥର ଦୀର୍ଘ ନିଃଶ୍ୱାସ ତ୍ୟାଗକରି ମହାସମାଧିରେ ନିମଗ୍ନ ହେଲେ । ରୋଗ ଭୋଗି ଭୋଗି ତାଙ୍କ ଦେହ ମଳିନ ଓ ଶୀର୍ଣ୍ଣ ହୋଇ ଯାଇଥିଲା; କିନ୍ତୁ ମହାସମାଧି ପରେ ରୋଗର ସମସ୍ତ ଚିହ୍ନ ଅପସୃତ ହୋଇ ମୁଖମଣ୍ଡଳ ଏକ ଅପୂର୍ବ ପୂର୍ଣ୍ଣତା ଲାଭ କଲା ଏବଂ ଏକ ଦିବ୍ୟଜ୍ୟୋତି ଓ ଶାନ୍ତିରେ ଉଦ୍‌ଭାସିତ ହୋଇଉଠିଲା । ଏହି ସ୍ୱର୍ଗୀୟ ଭାବ ଦେହ ଶୀତଳ ହେବାର ଅନେକ ପରେ ମଧ୍ୟ ବିରାଜିତ ଥିଲା । ଭକ୍ତମାନେ ଏହି ଉଜ୍ଜ୍ୱଳ ମୁଖକାନ୍ତି ଦର୍ଶନ କରି ବୁଝିପାରିଲେ ନାହିଁ ଯେ ଶ୍ରୀମା' ଆଉ ସ୍ଥୂଳ ଦେହରେ ନାହାନ୍ତି ।

ପରଦିନ ସକାଳେ ସାଢ଼େ ଦଶଟା ସମୟରେ ସାରଦାନନ୍ଦଜୀଙ୍କ ନେତୃତ୍ୱରେ ସାଧୁଭକ୍ତବୃନ୍ଦ ଗନ୍ଧପୁଷ୍ପମାଲ୍ୟାଦିରେ ସୁସଜ୍ଜିତ ଶ୍ରୀମା'ଙ୍କର ପୂତଦେହ

ସ୍କନ୍ଧରେ ବହନ କରି ଉଦ୍‌ବୋଧନରୁ ବରାହନଗର ଦେଇ ବେଲୁଡ଼ମଠକୁ ଯାତ୍ରା କଲେ । ରାମନାମ ସଂକୀର୍ତ୍ତନ ଚାଲିଥାଏ । ବହୁ ପ୍ରବୀଣ ଭକ୍ତ ମଧ୍ୟ ଏମାନଙ୍କ ସହିତ ଚାଲିଥାନ୍ତି । ରାସ୍ତାରେ ଶତ ଶତ ଭକ୍ତ ଏମାନଙ୍କ ସହିତ ସମ୍ମିଳିତ ହେଲେ । ବରାହନଗରରେ ନୌକାଦ୍ୱାରା ଗଙ୍ଗା ଉତ୍ତୀର୍ଣ୍ଣ ହୋଇ ଶ୍ରୀମା'ଙ୍କର ଦେହ ମଠଭୂମିରେ ଗଙ୍ଗାକୂଳରେ ରକ୍ଷିତ ହେଲା । ପରେ ସ୍ତ୍ରୀଭକ୍ତମାନେ ଦେହକୁ ସ୍ନାନ କରାଇ ନବବସ୍ତ୍ରରେ ସଜ୍ଜିତ କଲେ । ଅପରାହ୍ନରେ ତିନିଟା ସମୟରେ ସ୍ୱାମୀ ବିବେକାନନ୍ଦଙ୍କ ସମାଧିର ଉତ୍ତର ପାର୍ଶ୍ୱରେ ଚନ୍ଦନକାଠ–ସଜ୍ଜିତ ଚିତା ଉପରେ ଦେହ ରଖାଗଲା । ଚିତା ପ୍ରଜ୍ୱଳିତ ହେବାପରେ ଦେଖାଗଲା ଗଙ୍ଗାର ଅପରତୀରରେ ବର୍ଷା ହେଉଅଛି । ଭକ୍ତମାନେ ଶଙ୍କିତ ହେଲେ, କିନ୍ତୁ ଏ ତୀରରେ ବର୍ଷା ହେଲା ନାହିଁ । ସଂଧ୍ୟା ପୂର୍ବରୁ ଯେତେବେଳେ କାର୍ଯ୍ୟ ସମ୍ପନ୍ନ ହୋଇଯାଇଛି ଏବଂ ସ୍ୱାମୀ ସାରଦାନନ୍ଦଜୀ ଅଗ୍ନି ନିର୍ବାପିତ କରିବା ପାଇଁ କଳସୀରୁ ପାଣି ଢାଳିଦେଇଛନ୍ତି, ସେତେବେଳେ ମୂଷଳଧାରାରେ ବୃଷ୍ଟିପାତ ହେଲା । ହୋମାଗ୍ନି ନିର୍ବାପିତ ହେଲା । ମସ୍ତକରେ ଶାନ୍ତିବାରି ଏବଂ ହୃଦୟରେ ଗଭୀର ବିଷାଦ ନେଇ ସଂଧ୍ୟାବେଳେ ଭକ୍ତମାନେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ପବିତ୍ର ସ୍ଥାନ ଉପରେ ମାତୃମନ୍ଦିର ନିର୍ମିତ ହେଲା ଏବଂ ୧୩୨୮ ସାଲ ପୌଷ ମାସ ୬ ତାରିଖ (୧୯୨୧ ଖ୍ରୀଷ୍ଟାବ୍ଦ ୨୧ ଡିସେମ୍ବର) ବୁଧବାର ଦିନ ଶ୍ରୀଶ୍ରୀମା'ଙ୍କର ପୁଣ୍ୟ ଜନ୍ମତିଥି ଦିବସରେ ଯଥାବିଧି ପ୍ରତିଷ୍ଠିତ ହୋଇ ଅଦ୍ୟାପି ଦେଶବିଦେଶରେ ସହସ୍ର ସହସ୍ର ନରନାରୀଙ୍କର ଶ୍ରଦ୍ଧାଭକ୍ତି ଆକର୍ଷଣ କରୁଛି ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ !!!



# ବଂଶ ପରିଚୟ

## ଶ୍ରୀଶ୍ରୀମା'ଙ୍କର ପିତୃକୁଳର ବଂଶ ପରିଚୟ



# ପରିଶିଷ୍ଟ

## ଘଟଣାପଞ୍ଜିକା

| ଘଟଣା | ଖ୍ରୀଷ୍ଟାବ୍ଦ |
|---|---|
| ଶ୍ରୀଶ୍ରୀମା'ଙ୍କର ଜନ୍ମ | ୨୨ ଡିସେମ୍ବର, ୧୮୫୩ ମସିହା |
| ବିବାହ ଓ ଶ୍ୱଶୁରାଳୟ ଗମନ | ମେ, ୧୮୫୯ |
| ଦ୍ୱିତୀୟଥର ଶ୍ୱଶୁରାଳୟରେ | ଡିସେମ୍ବର, ୧୮୬୦ |
| ଦୁର୍ଭିକ୍ଷ | ୧୮୬୪ ମସିହା |
| ଶ୍ୱଶୁରାଳୟରେ ୩ୟଥର | ମେ, ୧୮୬୬ |
| ଶ୍ୱଶୁରାଳୟରେ ୪ର୍ଥ ଥର | ଡିସେମ୍ବର ୧୮୬୬ରୁ ଜାନୁଆରୀ, ୧୮୬୭ |
| ଶ୍ୱଶୁରାଳୟରେ ୫ମଥର (ଠାକୁରଙ୍କ ସହିତ) | ମେ'ରୁ ନଭେମ୍ବର, ୧୮୬୭ |
| ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନ | ମାର୍ଚ୍ଚ, ୧୮୭୨ |
| ଷୋଡ଼ଶୀପୂଜା | ୫ଜୁନ୍, ୧୮୭୨ |
| ଜୟରାମବାଟୀକୁ ପ୍ରତ୍ୟାବର୍ତ୍ତନ | ୧୮୭୩ର ମଧ୍ୟଭାଗ |
| ପିତାଙ୍କ ଦେହତ୍ୟାଗ | ୨୬ ମାର୍ଚ୍ଚ, ୧୮୭୪ |
| ଦକ୍ଷିଣେଶ୍ୱରକୁ ଦ୍ୱିତୀୟ ଆଗମନ | ୧୮୭୪ |
| ଜୟରାମବାଟୀକୁ ପ୍ରତ୍ୟାଗମନ | ୧୮୭୫ |
| ସିଂହବାହିନୀ ମନ୍ଦିରରେ ଅଧିଆ ପଡ଼ିବା | ୧୮୭୫ |
| ଜଗଦ୍ଧାତ୍ରୀପୂଜା | ନଭେମ୍ବର, ୧୮୭୫ |
| ପ୍ଲୀହା ଚିକିତ୍ସା | ୧୮୭୫ |
| ଶାଶୁଙ୍କର ଗଙ୍ଗାପ୍ରାପ୍ତି | ୨୭ ଫେବୃଆରୀ, ୧୮୭୬ |
| ଶମ୍ଭୁବାବୁଙ୍କ ଗୃହଦାନ | ୧୧ ଏପ୍ରିଲ, ୧୮୭୬ |
| ଦକ୍ଷିଣେଶ୍ୱରକୁ ତୃତୀୟ ଆଗମନ | ୧୭ ମାର୍ଚ୍ଚ,୧୮୭୬ |
| ଦକ୍ଷିଣେଶ୍ୱରକୁ ଚତୁର୍ଥ ଆଗମନ | ଜାନୁଆରୀ,୧୮୭୭ |
| ଶମ୍ଭୁବାବୁଙ୍କ ଦେହତ୍ୟାଗ | ୧୮୭୭ |
| ଦକ୍ଷିଣେଶ୍ୱରକୁ ପଞ୍ଚମ ଆଗମନ | ଫେବୃଆରୀ-ମାର୍ଚ୍ଚ, ୧୮୮୧ |
| ହୃଦୟ ଦକ୍ଷିଣେଶ୍ୱରରୁ ବହିଷ୍କୃତ | ୧୮୮୧ |
| ଦକ୍ଷିଣେଶ୍ୱରକୁ ୬ଷ୍ଠ ଆଗମନ | ୧୮୮୨ |
| ଦକ୍ଷିଣେଶ୍ୱରକୁ ୭ମ ଆଗମନ | ୧୮୮୪ |
| କାମାରପୁକୁରରେ ରାମଲାଲଙ୍କର ବିବାହ | ୧୮୮୫ (?) |
| ଦକ୍ଷିଣେଶ୍ୱରକୁ ୮ମ ଆଗମନ | ମାର୍ଚ୍ଚ, ୧୮୮୫ |

| | |
|---|---|
| ଶ୍ୟାମପୁକୁରରେ ଶ୍ରୀରାମକୃଷ୍ଣ | ଅକ୍ଟୋବର, ୧୮୮୫ |
| କାଶୀପୁରରେ ଅବସ୍ଥାନ | ୧୧ ଡିସେମ୍ବର, ୧୮୮୫ ରୁ ୧୬ ଅଗଷ୍ଟ, ୧୮୮୬ |
| କାଶୀପୁର ତ୍ୟାଗ | ୨୧ ଅଗଷ୍ଟ, ୧୮୮୬ |
| ବୃନ୍ଦାବନ ଯାତ୍ରା | ୩୦ ଅଗଷ୍ଟ, ୧୮୮୬ |
| କଲିକତାକୁ ଆଗମନ | ୩୧ ଅଗଷ୍ଟ, ୧୮୮୭ |
| କାମାରପୁକୁର ଯାତ୍ରା | ସେପ୍ଟେମ୍ବର, ୧୮୮୭ |
| ନୀଳାମ୍ବରବାବୁଙ୍କ ଘରେ (ବେଲୁଡ଼) | ଅକ୍ଟୋବର, ୧୮୮୮ ପର୍ଯ୍ୟନ୍ତ |
| ପୁରୀଧାମରେ | ୧୮୮୮ ନଭେମ୍ବରଠାରୁ ୧୮୮୯ ଜାନୁଆରୀ |
| କଲିକତାକୁ ଆଗମନ | ୧୨ ଜାନୁଆରୀ, ୧୮୮୯ |
| କାମାରପୁକୁର ଯାତ୍ରା | ୫ ଫେବୃଆରୀ, ୧୮୮୯ |
| ମାଷ୍ଟର ମହାଶୟଙ୍କ ଗୃହରେ | ୪ ମାର୍ଚ୍ଚ, ୧୮୯୦ |
| ଗୟାଯାତ୍ରା | ୨୫ ମାର୍ଚ୍ଚ, ୧୮୯୦ |
| ଘୁଷୁଡ଼ି ଗ୍ରାମରେ | ମେ'ରୁ ସେପ୍ଟେମ୍ବର ୧୮୯୦ |
| ଜୟରାମବାଟୀକୁ ଯାତ୍ରା | ଅକ୍ଟୋବର ୧୮୯୦ |
| ଜୟରାମବାଟୀରେ ଗିରିଶଚନ୍ଦ୍ର | ୧୮୯୧ର ପ୍ରଥମାର୍ଦ୍ଧ |
| ଜଗଦ୍ଧାତ୍ରୀପୂଜାରେ ସାରଦାନନ୍ଦଜୀ | ୧୦ ନଭେମ୍ବର ୧୮୯୧ |
| ନୀଳାମ୍ବରବାବୁଙ୍କ ଘରେ (ପଞ୍ଚତପାନୁଷ୍ଠାନ) | ୧୮୯୩ |
| ଜୟରାମବାଟୀରେ | ଜଗଦ୍ଧାତ୍ରୀପୂଜା ସମୟରେ (୧୩୦୦ ସାଲ) |
| କଇଲୋୟାରରେ | ୧୮୯୪ |
| ବେଲୁଡ଼ ଓ ଆଣ୍ଟପୁର ଗ୍ରାମରେ | ୧୮୯୫ |
| ବୃନ୍ଦାବନ ଗମନ | ୧୮୯୫ |
| ଗାଁକୁ ଗମନ | ୧୩ ମେ, ୧୮୯୫ |
| କଲିକତାରେ ଶରତ ସରକାରଙ୍କ ଘରେ | ଏପ୍ରିଲ୍, ୧୮୯୬ |
| ସରକାରବାଡ଼ି ଲେନ୍‌ରେ | ୧୮୯୬ |
| ଗାଁରେ | ନଭେମ୍ବର, ୧୮୯୬ |
| ବୋଷ୍‌ପଡ଼ା ଲେନ୍‌ରେ | ୧୮୯୮ରୁ ୧୮୯୯ |
| ବେଲୁଡ଼ମଠ ପ୍ରାଙ୍ଗଣରେ ପୂଜା | ୧୨ ନଭେମ୍ବର, ୧୮୯୮ |
| ନିବେଦିତାଙ୍କ ବିଦ୍ୟାଳୟ ପ୍ରତିଷ୍ଠା | ୧୨ ନଭେମ୍ବର, ୧୮୯୮ |
| ଯୋଗାନନ୍ଦଙ୍କ ମହାସମାଧି | ୨୮ ମାର୍ଚ୍ଚ, ୧୮୯୯ |

| | |
|---|---|
| ଅଭୟଚରଣଙ୍କ ମୃତ୍ୟୁ | ୨ ଅଗଷ୍ଟ, ୧୮୯୯ |
| ଜୟରାମବାଟୀରେ | ଅଗଷ୍ଟ, ୧୮୯୯ |
| ରାଧାରାଣୀର ଜନ୍ମ | ୨୬ ଜାନୁଆରୀ, ୧୯୦୦ |
| କଲିକତାକୁ ଆଗମନ | ଅକ୍ଟୋବର, ୧୯୦୦ |
| ବୋଷ୍‌ପଡ଼ା ଲେନ୍‌ରେ | ୧୯୦୧ରୁ ୧୯୦୨ |
| ମା' ବେଲୁଡ଼ମଠ ଦୁର୍ଗାପୂଜାରେ | ୧୮ରୁ ୨୨ ଅକ୍ଟୋବର ୧୯୦୧ |
| ବାଗ୍‌ବଜାର ଷ୍ଟ୍ରୀଟ୍ ଘରେ | ୧୪ଫେବୃଆରୀ୧୯୦୪ରୁ ୧୯୦୫ର ମଧ୍ୟଭାଗ |
| ପୁରୀଧାମରେ | ୧୯୦୪ ରୁ ୧୯୦୫ |
| ନୀଳମାଧବଙ୍କ ମୃତ୍ୟୁ | ୧୯୦୫ |
| ଜୟରାମବାଟୀରେ | ୧୯୦୫ ମଧ୍ୟଭାଗ |
| ଶ୍ୟାମାସୁନ୍ଦରୀଙ୍କ ଦେହତ୍ୟାଗ | ୧୯୦୬, ଜାନୁଆରୀ |
| ଗୋପାଳ-ମା'ଙ୍କ ଗଙ୍ଗାପ୍ରାପ୍ତି | ୮ ଜୁଲାଇ, ୧୯୦୬ |
| ଗିରିଶଙ୍କଘରେ ଦୁର୍ଗାପୂଜା ଉପଲକ୍ଷେ କଲିକତାରେ | ଅକ୍ଟୋବରରୁ ନଭେମ୍ବର, ୧୯୦୭ |
| କଲିକତା ଉଦ୍‌ବୋଧନ ଭବନରେ | ୨୩ ମେ, ୧୯୦୯ |
| ବସନ୍ତରୋଗରେ ଆକ୍ରାନ୍ତ | ଜୁନ୍, ୧୯୦୯ |
| ଜୟରାମବାଟୀକୁ ଯାତ୍ରା | ୧୬ ନଭେମ୍ବର, ୧୯୦୯ |
| କଲିକତାରେ | ଜୁନ୍ ୧୯୧୦ |
| କୋଠାର ଗ୍ରାମରେ (ଭଦ୍ରକ) | ୫ ଡିସେମ୍ବର ୧୯୧୦ ରୁ ଫେବୃଆରୀ ୧୯୧୧ |
| ଦାକ୍ଷିଣାତ୍ୟରେ | ଫେବୃଆରୀ-ମାର୍ଚ୍ଚ, ୧୯୧୧ |
| ପୁରୀଧାମରେ | ୩ ଏପ୍ରିଲ, ୧୯୧୧ |
| କଲିକତାରେ | ୧୧ ଏପ୍ରିଲ, ୧୯୧୧ |
| ଜୟରାମବାଟୀକୁ ଯାତ୍ରା | ୧୭ ମେ, ୧୯୧୧ |
| ରାଧାରାଣୀର ବିବାହ | ୧୦ ଜୁନ୍, ୧୯୧୧ |
| ରାମକୃଷ୍ଣାନନ୍ଦଙ୍କର ମହାସମାଧି | ୨୧ ଅଗଷ୍ଟ, ୧୯୧୧ |
| କଲିକତାକୁ ଆଗମନ | ୨୪ ନଭେମ୍ବର, ୧୯୧୧ |
| ବେଲୁଡ଼ରେ ଦୁର୍ଗାପୂଜା | ୧୬ ରୁ ୨୧ ଅକ୍ଟୋବର, ୧୯୧୨ |
| କାଶୀଧାମରେ | ୫ନଭେମ୍ବର, ୧୯୧୨ରୁ ୧୫ଜାନୁଆରୀ, ୧୯୧୩ |

| | |
|---|---|
| କଲିକତାରେ | ୧୬ ଜାନୁଆରୀରୁ ୨୩ ଫେବୃଆରୀ, ୧୯୧୩ |
| ଜୟରାମବାଟୀରେ | ୨୫ ଫେବୃଆରୀ, ୧୯୧୩ |
| କଲିକତାକୁ ଆଗମନ | ୨୯ ସେପ୍‌ଟେମ୍ବର, ୧୯୧୩ |
| ଜୟରାମବାଟୀରେ | ୧୯ ଏପ୍ରିଲ୍, ୧୯୧୫ |
| କୋଆଲପଡ଼ାରେ | ଅଗଷ୍ଟ-ସେପ୍ଟେମ୍ବର, ୧୯୧୫ |
| ଜୟରାମବାଟୀରେ ନୂତନ ଗୃହ ପ୍ରତିଷ୍ଠା | ୧୫ମେ, ୧୯୧୬ |
| କଲିକତା ଯାତ୍ରା | ୬ ଜୁଲାଇ, ୧୯୧୬ |
| ବେଲୁଡ଼ମଠରେ ଦୁର୍ଗୋତ୍ସବ | ୩ ରୁ ୬ ଅକ୍ଟୋବର, ୧୯୧୬ |
| ଜୟରାମବାଟୀ ଅଭିମୁଖେ ଯାତ୍ରା | ୩୧ ଜାନୁଆରୀ, ୧୯୧୭ |
| କୋଆଲପଡ଼ାରେ | ମାର୍ଚ୍ଚ ପ୍ରଥମାର୍ଦ୍ଧରୁ ୨୮ ଏପ୍ରିଲ ୧୯୧୮ |
| ଜୟରାମବାଟୀରେ | ୨୯ ଏପ୍ରିଲରୁ ୫ ମେ, ୧୯୧୮ |
| କଲିକତାକୁ ଆଗମନ | ୭ ମେ, ୧୯୧୮ |
| ପ୍ରେମାନନ୍ଦଙ୍କର ମହାସମାଧି | ୩୦ ଜୁଲାଇ, ୧୯୧୮ |
| ରାଧୁସହ ନିବେଦିତା ବିଦ୍ୟାଳୟରେ | ୩୧ ଡିସେମ୍ବର, ୧୯୧୮ |
| ଗ୍ରାମ ଅଭିମୁଖରେ | ୨୭ ଜାନୁଆରୀ, ୧୯୧୯ |
| ବିଷ୍ଣୁପୁରରେ | ୨୭ ରୁ ୩୦ ଜାନୁଆରୀ, ୧୯୧୯ |
| ରାଧୁ ସହିତ କୋଆଲପଡ଼ାରେ | ୩୧ ଜାନୁଆରୀରୁ ୨୩ ଜୁଲାଇ, ୧୯୧୯ |
| ଜୟରାମବାଟୀରେ ଜନ୍ମୋତ୍ସବ | ୧୩ ଡିସେମ୍ବର ୧୯୧୯ |
| କଲିକତା ଅଭିମୁଖରେ | ୨୪ ଫେବୃଆରୀ, ୧୯୨୦ |
| ସ୍ୱାମୀ ଅଦ୍ଭୁତାନନ୍ଦଙ୍କର ମହାସମାଧି | ୨୪ ଏପ୍ରିଲ, ୧୯୨୦ |
| ରାମକୃଷ୍ଣ ବସୁଙ୍କର ଦେହତ୍ୟାଗ | ୧୪ ମେ, ୧୯୨୦ |
| ବରଦାପ୍ରସାଦଙ୍କର ଦେହତ୍ୟାଗ | ୨୦ ଜୁନ୍, ୧୯୨୦ |
| ଲୀଳାସମ୍ବରଣ | ୨୧ ଜୁଲାଇ, ୧୯୨୦ |

